# HISTORY OF INDIA

IN OOTKUL

BY

PHUKIR MOHUN SENAPUTY

PART I.

*SECOND EDITION*

# ଭାରତବର୍ଷର ଇତିହାସ ।

ଶ୍ରୀ ଫକୀରମୋହନ ସେନାପତିଦ୍ୱାରା

ସଂକ୍ଷେପରେ ସଂଗୃହୀତ ।

ପ୍ରଥମ ଭାଗ ।

ଦ୍ୱିତୀୟବାର ମୁଦ୍ରିତ ।

CUTTACK
Printed by the Cuttack Printing Company.
1876.

# HISTORY OF INDIA

## IN OOTKUL

BY

PHUKEER MOHUN SENAPUTY

PART I.

*SECOND EDITION*



# ଭାରତବର୍ଷର ଇତିହାସ ।

ଶ୍ରୀ ଫକୀରମୋହନ ସେନାପତିଦ୍ୱାରା

ସଂକ୍ଷେପରେ ସଂଗୃହୀତ ।

ପ୍ରଥମ ଭାଗ ।

ଦ୍ୱିତୀୟବାର ମୁଦ୍ରିତ ।



CUTTACK
Printed by the Cuttack Printing Company
1876.

ଉତ୍ସର୍ଗପତ୍ର ।

ଭକ୍ତିଭାଜନ

ଶ୍ରୀଯୁକ୍ତ ରେଭେରଣ୍ଡ, ଇ, ସି, ବି, ହାଲମ

ସରଳାନ୍ତଃକରଣେଷୁ ।

ମହୋଦୟ !

ମୁଁ ଆପଣଙ୍କ ଅଧୀନରେ ବିଦ୍ୟାଦାନ କର୍ମ କରିଥିଲି, ସେହି ସମୟରେ ଆପଣ ମୋତେ ଅଧୀନସ୍ଥ ଲୋକପରି ଜ୍ଞାନ ନ କରି ସୁହୃଦ୍‌ବତ୍ ଜ୍ଞାନ କରୁଥିଲେ ଏହି କାରଣ ଓ ଅନ୍ୟାନ୍ୟ କାରଣ ପ୍ରଯୁକ୍ତ ଆପଣଙ୍କ ଅଧୀନରେ କର୍ମ କରି ମୁଁ ଅତ୍ୟନ୍ତ ସନ୍ତୁଷ୍ଟତା ଲାଭ କରିଥିଲି । ଏମନ୍ତ କି ତତ୍କାଳେ ଯେତେଦୂର ସନ୍ତୁଷ୍ଟତା ଲାଭ କରିଥିଲି ଶିକ୍ଷକତା କର୍ମରେ ନିଯୁକ୍ତ ହେବା ଦିନଠାରୁ ଏପରି ସନ୍ତୁଷ୍ଟତା କୌଣସିଠାରେ ମୋହର ଅଦୃଷ୍ଟରେ ଘଟିଥିଲା ନାହିଁ । ଏମନ୍ତ କି ଆପଣଙ୍କ ସହିତ ( ଯେ କୌଣସି ବିଷୟରେ ହେଉ ) କଥାବାର୍ତ୍ତା କହିବାକୁ ମଧ୍ୟ ଅତ୍ୟନ୍ତ ସୁଖକର ବିଷୟ ଜ୍ଞାନ କରେଁ ଆପଣଙ୍କର ସରଳ ନିରହଙ୍କାର ବାକ୍ୟାବଳୀ କଦାଚ ବିସ୍ମରଣୀୟ ନୁହଇ । ବିଶେଷରେ ଅମ୍ଭମାନଙ୍କର ଅବସ୍ଥା, ଜ୍ଞାନ ଓ ମାତୃଭାଷାର ଉନ୍ନତି ବିଷୟରେ କାୟମନୋବାକ୍ୟେ ଯେରୂପ ଚେଷ୍ଟା ଓ ଏକାନ୍ତ ଯତ୍ନ କରିଥାଅନ୍ତି ଅପଣଙ୍କ ପ୍ରତି ଭକ୍ତି ଜନ୍ମିବା ତାହା ଅନ୍ୟତର କାରଣ । ପାର୍ଥିବ କୌଣସି ବସ୍ତୁ ଅପଣଙ୍କର ଏହି ନିଃସ୍ୱାର୍ଥ କାର୍ଯ୍ୟର ପୁରସ୍କାର ଯୋଗ୍ୟ ନୁହଇ । ସେ ଯାହା ହେଉ ଅମ୍ଭମାନଙ୍କର ଦେଶୀୟ ପ୍ରଥା ଏହି ଯେ ପରିଚିତ ଲୋକମାନଙ୍କ ମଧ୍ୟରେ କୌଣସି ବସ୍ତୁ ଦିଆନିଆ ହୋଇଥାଏ; ମୁଁ ସେହି ଦେଶାଚାରର ବଶମ୍ବଦ ହୋଇ ଏହି ଅପାରିପାଟ୍ୟ ରଚନା ବିଶିଷ୍ଟ ଓ ଭ୍ରମସଙ୍କୁଳ ପୁସ୍ତକଖଣ୍ଡ ଉପହାର ସ୍ୱରୂପ ଅପଣଙ୍କୁ ପ୍ରଦାନ କଲି । ମୋହୋର ଧ୍ରୁବ ବିଶ୍ୱାସ ଅଛି ଏହି କୁତ୍ସିତ ପୁସ୍ତକ ଆପଣଙ୍କ ମହାମହିମ ନାମରେ କଦାଚ ଉତ୍ସର୍ଗ କରିବାର ଯୋଗ୍ୟ ନୁହଇ ତଥାପି " ପ୍ରିୟଦର୍ଶନ ଲୋକମାନେ କୌଣସି ଲୋକଦତ୍ତ ସାମାନ୍ୟ ବସ୍ତୁକୁ ମଧ୍ୟ ଘୃଣା କରନ୍ତି ନାହିଁ" । ଏହି ବାକ୍ୟ ପ୍ରତି ନିର୍ଭର କରି ଏହି କ୍ଷୁଦ୍ର ପୁସ୍ତକଖଣ୍ଡ ଅପଣଙ୍କ ଉଦ୍ଦେଶରେ ଉତ୍ସର୍ଗ କଲି । ଇତି ।

ଏକାନ୍ତ ବଶମ୍ବଦ

ଶ୍ରୀ ଫକୀରମୋହନ ସେନାପତି ।

# ବିଜ୍ଞାପନ ।

ଧୈର୍ଯ୍ୟ ଚିନ୍ତା ଏବଂ ବୁଦ୍ଧିବୃତ୍ତି ବିବେଚନାହୀନ ଚଞ୍ଚଳମତି ଲୋକମାନେ ପୂର୍ବାପର କୌଣସି ବିବେଚନା ନ କରି ଅବଶୀଭୂତମନର ଉପଦେଶାନୁସାରେ ପ୍ରାୟ ସକଳ ବିଷୟରେ ହସ୍ତକ୍ଷେପ କରି ଥାଆନ୍ତି । ଯେତେ ଜ୍ଞାନ ଓ ଶ୍ରମସାଧ୍ୟ କର୍ମ-ହେଉ ନା କିପାଁ ତତ୍ସାଧନ ବିଷୟରେ ପ୍ରବୃତ୍ତ ହେବା ସେମାନଙ୍କ ପକ୍ଷରେ ଅତି ସହଜ ଅଟେ । କିନ୍ତୁ ଏଥିରେ ଉଦ୍ଦେଶ୍ୟ ସଫଳ ନ ହୋଇ ଯେ କେବଳ ସେ-ମାନଙ୍କର ଚପଳତା ଓ ଅଜ୍ଞତା ସାଧାରଣ ସମୀପରେ ପ୍ରକାଶିତ ହୁଅଇ ଏକଥା ବୋଲିବା ଅଧିକ ଅଟେ । ମୁ ସେହିପରି ଉତ୍କଳ ପୁସ୍ତକର ନିତାନ୍ତ ଅଭାବ ଦେଖି ଗ୍ରନ୍ଥ ପ୍ରଣୟନ ବିଷୟରେ ହସ୍ତକ୍ଷେପ କରି ଅଛି । ସାଧାରଣତଃ ବିନୟୀ ଓ ନମ୍ର ଗ୍ରନ୍ଥକର୍ତ୍ତାମାନେ ଆପଣା୨ ରଚିତ ଗ୍ରନ୍ଥ ବିଜ୍ଞାପନକୁ ଆପଣାର ଖର୍ବତା ଓ ଶିଷ୍ଟତା ପ୍ରଭୃତି ବାକ୍ୟଦ୍ୱାରା ଭୂଷିତ କରି ଥାଆନ୍ତି । ଏଥକୁ କେହି୨ ପାଠକ ବା ମନରେ କରିବେ ମୁ ସେହିପରି ଲେଖିଅଛି; ତେବେ ମୁ ସେହି ପାଠକମହାଶୟଙ୍କୁ ବିନୟେ ବୋଲେଁ ସେ ଯେମନ୍ତ ମୋତେ ମିଥ୍ୟାବାଦୀ ନ ବୋଲନ୍ତୁ; ମୋହର ଉଲ୍ଲିଖିତ ବାକ୍ୟାବଳୀର ପୋଷକତା ପାଇଁ ଅଧିକ ବାଗାଡ଼ମ୍ବର କରିବାର ଆବଶ୍ୟକ କିସ? ପାଠକ ଅନୁଗ୍ରହ କରି ପୁସ୍ତକର କେତେକପୃଷ୍ଠା ଉଲଟାଇଲେ ମୁଁ ଯେ ଚପଳତା ଓ ଦୁରାଶାର ନିତାନ୍ତ ବଶମ୍ବଦ ହୋଇ ଏହି ପୁସ୍ତକ ଲେଖିଅଛି ଏକଥା ହୃଦୟଙ୍ଗମ କରିବାକୁ ତାହାଙ୍କ ପକ୍ଷରେ ଅଧିକ କଠିନ ହେବ ନାହିଁ । ସେ ଯାହା ହେଉ ମୁଁ ୩ ବରଷ ଯାବତ୍କାଳ ବହୁ ପରିଶ୍ରମ ସ୍ୱୀକାରପୂର୍ବକ ଏହି ଇତିହାସ ଖଣ୍ଡ ସଂଗ୍ରହ କରିଅଛି । ଏହା ପୁସ୍ତକ ବିଶେଷର ଅନୁବାଦ ବା ଗ୍ରନ୍ଥ ବିଶେଷରୁ ସଂଗୃହୀତ ହୋଇ ନାହିଁ । ଶ୍ରୀଯୁକ୍ତ ବାବୁ ତାରଣୀଚରଣଙ୍କ ଭାରବର୍ଷର ଇତିହାସ ଓ ଶ୍ରୀଯୁକ୍ତ ବାବୁ ନୀଳମଣି ବସାକଙ୍କ ରଚିତ ଇତିହାସ ଓ ଶ୍ରୀଯୁକ୍ତ ବାବୁ କୃଷ୍ଣଚନ୍ଦ୍ରରାୟ ରଚିତ ଇତି-ହାସ ଓ ଶ୍ରୀଯୁକ୍ତ ବାବୁ କେଦାର ନାଥଦତ୍ତ ରଚିତ ଭାରବର୍ଷର ଇତିହାସ ଏବଂ ବିବିଧାର୍ଥ ସଂଗ୍ରହ ନାମକ ମାସିକ ପତ୍ରିକା ଏବଂ ଶ୍ରୀଯୁକ୍ତ ବାବୁ କାଳୀପ୍ରସନ୍ନ ଦତ୍ତ ରଚିତ ଚରିତମଞ୍ଜରୀ ଏହି କେତେକଖଣ୍ଡ ପୁସ୍ତକ ଅବଲମ୍ବନ କରି ଏହା ସଂଗ୍ରହ କରି ଅଛି !

ଏହା ସଂଗ୍ରହ କରିବାକୁ ମୋତେ ଦ୍ୱିଗୁଣ ପରିଶ୍ରମ ସ୍ୱୀକାର କରିବାକୁ ହେ-ଲା । କାରଣ ପ୍ରଥମରେ ଯେରୂପ ଭାବରେ ସଂଗ୍ରହ କରିଥିଲି ତହିଁରେ ପୁସ୍ତକ କ-ଳେବର ଅତିବୃହତ୍ ହୋଇ ଥାଆନ୍ତା । ମାତ୍ର କଟକ ଓ ବାଲେଶ୍ୱରଜିଲାର ଭୂତ-

ଟ୍ୱଂ ଡେଃ ଇନସପେକ୍ଟରର ଶ୍ରୀଯୁକ୍ତ ବାବୁ ଶଶଧର ରାୟ ଏହାକୁ ଅତି ସଂକ୍ଷେପ କରିବା ପାଇଁ ଉପଦେଶ ଦେଲେ । ତାହାଙ୍କ ଉପଦେଷ୍ଟବ୍ୟ ବିଷୟ ନିତାନ୍ତ ଅ-ଯୌକ୍ତିକ ବୋଲି ମଧ୍ୟ ବୋଧ କଲୁଁ ନାହିଁ । କାରଣ ଆଜି କାଲି ଉଡ଼ିଶ୍ୟା ଶିକ୍ଷା ବିଭାଗର ଯେରୂପ ଅବସ୍ଥା ତହିଁରେ ଯେ ଅଧିକ ମୂଲ୍ୟ ଦେଇ ସମସ୍ତ ଛାତ୍ର ପୁସ୍ତକ କିଣିବାକୁ ସକ୍ଷମ ହେବେ ଏମନ୍ତ ବୋଧହୁଏ ନାହିଁ । ଏବଂ ଛାତ୍ରମାନେ ମଧ୍ୟ ଦୀର୍ଘ-କାଳ ଉଚ୍ଚ ବିଦ୍ୟାଳୟରେ ଶିକ୍ଷା କରନ୍ତି ନାହିଁ । ଉର୍ଦ୍ଧ୍ୱସଂଖ୍ୟା ଛାତ୍ରବୃତ୍ତି ପରୀକ୍ଷା ଦାନ କରି ସେମାନଙ୍କୁ ବିଦ୍ୟାଳୟ ପରିତ୍ୟାଗ କରିବାକୁ ହୁଏ । ଏହି ଅଳ୍ପ ସମୟ ମଧ୍ୟରେ ଏତେ ଦୀର୍ଘ କଳେବର ପୁସ୍ତକ ଅଧ୍ୟୟନ କରିବା ସେମାନଙ୍କ ପକ୍ଷରେ ନିତାନ୍ତ କଠିନ ଅଟେ । ଏହି ସକଳ ବିଷୟ ଆଲୋଚନା କରି ମୁଁ ଏହି ପୁସ୍ତକ ଅତି ସଂକ୍ଷେପରେ ସଙ୍କଳନ କରିଅଛି ।

ଇତିହାସରେ ଯେ ସକଳ ବିଷୟ ଥିବା ଉଚିତ, ଏଥିରେ ତାହା ଲିଖିହୁଁ ନାହିଁ । ବାଳକମାନଙ୍କ ପକ୍ଷରେ (ଐତିହାସିକ ସ୍ଥୂଳ ବିବରଣ ଜାଣିଲେ) ଉଚ୍ଚ-ତର ବିଦ୍ୟାଳୟରେ ଉତ୍କୃଷ୍ଟ ଇତିହାସ ପାଠ ସହଜ ହେବ ଏହି ଉଦ୍ଦେଶ୍ୟରେ ମୁଁ କେବଳ କାଳ ସୂତ୍ରରେ ଘଟନାବଳୀ ଗ୍ରନ୍ଥନ କରିଅଛି ।

କୃତଜ୍ଞତା ସହିତ ସ୍ୱୀକାର କରୁଅଛି ଯେ, ମୋହର ଅସେଚନକ ବନ୍ଧୁ ଶ୍ରୀଯୁତ ବାବୁ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ ଏହି ପୁସ୍ତକ ମୁଦ୍ରିତ ହେବା ସମୟରେ ଯଥେଷ୍ଟ ସାହାଯ୍ୟ କରିଅଛନ୍ତି । ଏମନ୍ତ କି ଯଦି ଏ ପୁସ୍ତକ ବ୍ୟବହାର ଯୋଗ୍ୟ ହୋଇଥାଏ ତେବେ କେବଳ ପଟ୍ଟନାୟକ ମହାଶୟଙ୍କ ନିଃସ୍ୱାର୍ଥ ଯତ୍ନ ଯେ ତାହାର ନିଦାନ ଏଥିରେ ସନ୍ଦେହର ଲେଶମାତ୍ର ନାହିଁ ।

ଦକ୍ଷିଣ ପଶ୍ଚିମ ବିଭାଗର ଇନସ୍ପେକ୍ଟର ଶ୍ରୀଲ ଶ୍ରୀଯୁକ୍ତ ଆର, ଏଲ, ମାର୍ଟିନ ଏମ, ଏ, ସାହେବ ଏହି ପୁସ୍ତକ ମୁଦ୍ରାଙ୍କନ ପାଇଁ ଅନେକ ଅର୍ଥ ସାହାଯ୍ୟ କରି ଅଛନ୍ତି, ଏଥିପାଇଁ ତାହାଙ୍କୁ ଶତ ଶତ ବାର ଧନ୍ୟବାଦ ପ୍ରଦାନ କରୁଅଛି ।

ଅବଶେଷେ ବିଦ୍ୟାଳୟଶିକ୍ଷକମାନଙ୍କ ଠାରେ ସବିନୟେ ପ୍ରାର୍ଥନା କରୁଅଛି ଯେ, ମାଦୃଶ ସାମାନ୍ୟ ଲୋକମାନଙ୍କର ପଦେ ଭ୍ରମ ହେବାର ସମ୍ଭାବନା ଅତଏବ ସେମାନେ ବିଶେଷ ଅନୁଗ୍ରହ ପ୍ରକାଶ କରି ପୁସ୍ତକଗତ ଭୁଲ ସକଳ ମୋତେ ଜଣା-ଇଲେ ମୁ ଅତ୍ୟନ୍ତ ଉପକୃତ ହେବି ଓ ପୁସ୍ତକ ୨ୟ ସଂସ୍କରଣ ସମୟରେ ସଂଶୋଧନ କରି ଦେବି ଇତି ।

ସନ ୧୮୬୯ ମାହ ମାର୍ଚ୍ଚ
ବାଲେଶ୍ୱର ମିଶନସ୍କୁଲ

ଶ୍ରୀଫକୀରମୋହନସେନାପତି

# ଭାରତବର୍ଷର ଇତିହାସ ।



## ପ୍ରଥମ ଅଧ୍ୟାୟ ।

**ଭାରତବର୍ଷର ସୀମା, ଇତିହାସର ଅଂଶ କଳ୍ପନା, ଯୁଗଚତୁଷ୍ଟୟ, ଭାରତବର୍ଷ ନାମର ବିବରଣ, ଆଦିମ ନିବାସୀ, ଆର୍ଯ୍ୟଜାତିର ଉତ୍ପତ୍ତି, ପ୍ରାଚୀନ ବିଭାଗ, ସଂସ୍କୃତ ଓ ଚଳିତ ଭାଷା ଏବଂ ଧର୍ମ ପରିବର୍ତ୍ତନ ।**

ଭାରତବର୍ଷର ଉତ୍ତରସୀମା ହିମାଳୟପର୍ବତ, ପୂର୍ବସୀମା ମଣିପୁର ପାହାଡ଼ ଓ ବଙ୍ଗୋପସାଗର, ଦକ୍ଷିଣସୀମା ଭାରତମହାସାଗର, ପଶ୍ଚିମସୀମା ଆରବ୍ୟ ସାଗର ଓ ସିନ୍ଧୁନଦୀ । ଭାରତବର୍ଷ ଦୀର୍ଘରେ ୮୦୦ ଶତ କ୍ରୋଶ ପ୍ରସ୍ଥ ପ୍ରାୟ ୭୬୦ କ୍ରୋଶ ।

ଭାରତବର୍ଷ କ୍ରମାଗତ ହିନ୍ଦୁ, ମୁସଲମାନ ଓ ଖ୍ରୀଷ୍ଟାନ ଏହି ତିନି ଜାତିର ଅଧିକୃତ ହୋଇଥିବାରୁ, ଏହାର ଇତିହାସ ତିନିଅଂଶରେ ବିଭକ୍ତ ହୋଇଅଛି । ଇଂରେଜୀ ଦଶଶତ ବରଷ ପୂର୍ବେ ଏ ଦେଶରେ ହିନ୍ଦୁମାନଙ୍କର ଅଖଣ୍ଡ ପ୍ରଭାବ ଥିଲା, ୧୦୦୦ ସାଲଠାରୁ ୧୭୫୭ ସାଲ ପର୍ଯ୍ୟନ୍ତେ ମୁସଲମାନମାନେ ଭାରତବର୍ଷୀୟ ସିଂହାସନକୁ ଅଧିକାର କରିଥିଲେ; ସେହିଦିନ (୧୭୫୭) ଠାରୁ ଅଦ୍ୟପର୍ଯ୍ୟନ୍ତେ (ଖ୍ରୀଷ୍ଟାନ) ଇଂରେଜ ଜାତିମାନେ ରାଜତ୍ୱ କରି ଆସୁଅଛନ୍ତି ।

ଭାରତବର୍ଷର ପ୍ରକୃତ ପ୍ରାଚୀନ ଇତିହାସ ଘୋର ତିମିରାଚ୍ଛନ୍ନ । ସଂସ୍କୃତ ଗ୍ରନ୍ଥମାନଙ୍କରେ ହିନ୍ଦୁମାନେ ଅତି ପ୍ରାଚୀନ ଜାତି ବୋଲି ବର୍ଣ୍ଣିତ ଅଛି । ପୃଥିବୀର ପ୍ରାୟ ସମସ୍ତ ଦେଶୀୟ ଲୋକେ, ଆପଣାମାନଙ୍କୁ ଅତି ପ୍ରାଚୀନଜାତି ବୋଲି ଲେଖନ୍ତି । ଏଥେନସଦେଶୀୟ ଲୋକେ ଚନ୍ଦ୍ରଠାରୁ ମଧ୍ୟ ଆପଣାମାନଙ୍କୁ ପ୍ରାଚୀନ ଜାତି ବୋଲି ଦର୍ପ କରନ୍ତି, ବେବିଲନ ଦେଶସ୍ଥ କାଲ୍‌ଡିୟନ ଲୋକେ କହନ୍ତି ଯେ, ସେମାନଙ୍କର ଇତିହାସ ସମସ୍ତ ପଞ୍ଚଦଶଅଯୁତବର୍ଷରୁ ମଧ୍ୟ ଅଧିକ ହେବ । ଚୀନ ଦେଶୀୟ ଇତିହାସର ସମୟ-ବିଷୟ ଏସ୍ଥାନରେ ଉଲ୍ଲେଖ ଯୋଗ୍ୟ ନୁହଇ । ବର୍ମୀ ଦେଶୀୟ ଇତିହାସ ସମ୍ବନ୍ଧ-ବିଷୟ ଶୁଣି ହାସ୍ୟ ସମ୍ବରଣ କରାଯାଇ ନ ପାରେ ।

ସେମାନେ ଲେଖନ୍ତି "୩ ବରଷକାଳ ପୃଥିବୀର ସର୍ବସ୍ଥାନରେ ଯେତେ ବିନ୍ଦୁ ଜଳ ପତନ ହୁଏ, ସେମାନଙ୍କର ଇତିହାସ ତେତେବରଷ, ବରଂ ତାହାଠାରୁ ଅଧିକ ବରଷ ହେଲା ସୃଷ୍ଟି ହୋଇଅଛି" । ଫଳତଃ ଏମାନଙ୍କର ଏହିସକଳ କଥା ଯେ ଏକାନ୍ତ କାଳ୍ପନିକ ଏହା ଜ୍ଞାନଲୋକେ ଅବଶ୍ୟ ସ୍ୱୀକାର କରିବେ । ଯାହା ହେଉ ଭାରତବର୍ଷ ଯେ ଅତି ପ୍ରାଚୀନ ଦେଶ ସେଥିରେ ସନ୍ଦେହ ନାହିଁ; କେବଳ ପୂର୍ବେ ଏଦେଶରେ ଇତିହାସ ଲେଖିବା ପ୍ରଥା ନ ଥିବାରୁ ଏଦେଶର ଇତିହାସ ଦୁଷ୍ପ୍ରାପ୍ୟ।

ହିନ୍ଦୁ ଜ୍ୟୋତିର୍ବେତ୍ତାମାନେ ପୃଥିବୀର ସୃଷ୍ଟିଠାରୁ ଆଜିପର୍ଯ୍ୟନ୍ତ ସମୟକୁ ଚାରିଅଂଶରେ ବିଭକ୍ତ କରନ୍ତି, ସେହି ଏକ୨ ଅଂଶର ନାମ ଯୁଗ । ଯଥା; ସତ୍ୟ ଦ୍ୱାପର, ତ୍ରେତା ଓ କଳିଯୁଗ । ବର୍ତ୍ତମାନ ସମୟକୁ କଳିଯୁଗ ବୋଲାଯାଏ । ଜ୍ୟୋତିଷଗ୍ରନ୍ଥ ଲିଖନ ପ୍ରମାଣେ ।

| | | |
|---|---|---|
| ସତ୍ୟଯୁଗ | ୧୭୨୮୦୦୦ | ବରଷ |
| ଦ୍ୱାପର | ୧୨୯୬୦୦୦ | ,, |
| ତ୍ରେତା | ୮୬୪୦୦୦ | ,, |
| କଳି | ୪୩୨୦୦୦ | ,, |

ଏହିକାଳ ସତ୍ୟତା ବିଷୟରେ କିଛି ପ୍ରମାଣ ନାହିଁ । କିନ୍ତୁ ପୁରାଣ ଲିଖିତ କଥା ଅବିଶ୍ୱାସ କଲେ ଅନ୍ୟ ସତ୍ୟ କାହିଁ ପାଇବା ବେଣ୍ଟଲିନାମକ ଜଣେ ସାହେବ ଅନେକ ଶାସ୍ତ୍ର ଆଲୋଚନା କରି ଲେଖିଅଛନ୍ତି ଯେ ଜଳପ୍ଲାବନଠାରୁ ମଶୀହ ଜନ୍ମ ୧୫୨୮ ବରଷ ପୂର୍ବ ପର୍ଯ୍ୟନ୍ତ ଯେ ସମୟ, ସେ ସତ୍ୟଯୁଗ, ସେହିଦିନଠାରୁ ମଶୀହ ଜନ୍ମ ୯୦୧ ବରଷ ପୂର୍ବପର୍ଯ୍ୟନ୍ତ ଯେ ସମୟ, ସେ ତ୍ରେତାଯୁଗ ଏବଂ ସେହି ଦିନଠାରୁ ମଶୀହ ଜନ୍ମ ୫୪୦ ବରଷ ପର୍ବ ପର୍ଯ୍ୟନ୍ତ ଯେଉଁ ସମୟ, ସେ ଦ୍ୱାପରଯୁଗ ଏବଂ ସେହି ଦିନଠାରୁ ଆଜିପର୍ଯ୍ୟନ୍ତ କଳିଯୁଗ । ସେ କାହିଁ ଏମନ୍ତ ପ୍ରମାଣ ପାଇଲେ ସେ ଜାଣନ୍ତି ମାତ୍ର ପୌରାଣିକ କଥାଠାରୁ ଯେ ତାହାଙ୍କ କଥା ଅଧିକ ବିଶ୍ୱାସର ଯୋଗ୍ୟ ଏହା ଆମ୍ଭେମାନେ କହି ନ ପାରୁଁ । ଯାହା ହେଉ ଜଳପ୍ଲାବନ ଉତ୍ତାରେ ଗ୍ରୀକ, ବେବିଲନୀୟାନ, ମିଶର ପ୍ରଭୃତି ଜାତୀୟମାନଙ୍କର ବସତି ସମୟ ଇତିହାସାନ୍ତରେ ଲିଖିତ ଅଛି; ମାତ୍ର ହିନ୍ଦୁମାନଙ୍କର ବସତି ସମୟ କୌଣସି ସ୍ଥାନରେ ଉଲ୍ଲେଖ ନାହିଁ । ଏଣୁ ଯୁଗାଦିର କାଳ ନିରୂପଣ କରିବା ଅତ୍ୟନ୍ତ କଠିନବିଷୟ ।

କଥିତ ଅଛି ଯେ, ଭାରତବର୍ଷ ମଧ୍ୟରେ ହିନ୍ଦୁଜାତୀୟ ଭରତନାମକ ଏକ ରାଜା ସର୍ବ ପ୍ରଥମ ପ୍ରବଳ ପରାକ୍ରାନ୍ତ ଥିଲେ; ତାହାଙ୍କ ନାମାନୁସାରେ ଏଦେଶର

"ଭାରତବର୍ଷ" ଏହି ନାମକରଣ ହୋଇଅଛି । ଭରତ ରାଜା ସମସ୍ତ ଭାରତବର୍ଷର ଆଧିପତ୍ୟ ପାଇଥିଲେ କି ନାହିଁ ତାହାର କୌଣସି ପ୍ରମାଣ ନାହିଁ । ତାହାଙ୍କ ସମ୍ବନ୍ଧରେ ଅନ୍ୟ ଯେ ସକଳ କଥା ଲିଖିତ ଅଛି, ତାହା ଏକାନ୍ତ ହାସ୍ୟାସ୍ପଦ । କଥିତ ଅଛି ଯେ, ଏହି ନରପତି ଦଶସହସ୍ର ବରଷ ରାଜପଣ କଲାଉତ୍ତାରୁ ମୃଗ ରୂପ ଧାରଣ କରି ପ୍ରାଣତ୍ୟାଗ କରିଥିଲେ ।

ବର୍ତ୍ତମାନର ହିନ୍ଦୁ ଲୋକମାନେ ଭାରତବର୍ଷର ଆଦିମ ନିବାସୀ ନୁହନ୍ତି, ପ୍ରଥମରେ କେତେକ ଅସଭ୍ୟ ଜାତୀୟ ଲୋକେ ଭାରତବର୍ଷ ମଧ୍ୟରେ ବାସ କରୁଥିଲେ; ପରେ ଅସିଆଖଣ୍ଡ ମଧ୍ୟଭାଗରୁ ହିନ୍ଦୁମାନେ ଆସି, ପୂର୍ବୋକ୍ତ ନିବାସିମାନଙ୍କୁ ତଡ଼ିଦେଇ ଏଦେଶରେ ବାସ କରୁ ଅଛନ୍ତି । ସେହି ଅସଭ୍ୟ ଲୋକେ ଏତେବେଳେ ଦେଶ ପରିତ୍ୟାଗ କରି, ନର୍ମଦା, ଶୋଣ, ଓ ମହାନଦୀ ତୀରସ୍ଥ ବନ ସମୂହରେ ଗୈଛାନାଗପୁର ଶିରଗୁଜ ଓ ଘୁମଶର ପ୍ରଭୃତି ଅରଣ୍ୟ ସ୍ଥାନରେ ବାସ କରୁ ଅଛନ୍ତି । ସେହି ସକଳ ଲୋକଙ୍କୁ ଭିଲ, ଗନ୍ଦ, ମିନାଜ, ଶାନ୍ତାଲ, କୁକ, ଚୁଆଡ଼, ରାଡ଼ ଓ ଭୂମିଜ ବୋଲାଯାଏ । ସେମାନେ ଯେଉଁ୨ ଭାଷାରେ କଥାବାର୍ତ୍ତା କହନ୍ତି, ତାହା ସହିତ ସଂସ୍କୃତ ଭାଷାର ସମ୍ପର୍କ ନାହିଁ । ପ୍ରଥମେ କେତାମାନେ ଭାରତବର୍ଷର ଉତ୍ତର ଭାଗରେ ରାଜତ୍ୱ କରିଥିଲେ; ନର୍ମ୍ମଦାନଦୀର ଦକ୍ଷିଣ ଭାଗରେ ଦୀର୍ଘକାଳସ୍ଥାୟୀ ରାଜତ୍ୱ ସ୍ଥାପନ କରି ନ ଥିଲେ, କାରଣ ଯେବେହେଁ ଭାରତବର୍ଷ-ଦକ୍ଷିଣ ଦେଶରେ ଅନେକ ହିନ୍ଦୁତୀର୍ଥ ବିଦ୍ୟମାନ ଅଛି; କିନ୍ତୁ ଚତୁର୍ଯୁଗବ୍ୟାପୀ ହିନ୍ଦୁତୀର୍ଥମାନ, ଭାରତବର୍ଷର ଉତ୍ତରଭାଗରେ ଦେଖାଯାଏ । ଏବଂ ପୁରାଣରେ ଯେଉଁ ରାଜାବଳୀର ନାମ ଉଲ୍ଲେଖ ଅଛି, ସେମାନେ କେବଳ ଭାରତବର୍ଷର ଉତ୍ତରଭାଗରେ ରାଜପଣ କରୁଥିଲେ ।

ପୂର୍ବେ ଭାରତବର୍ଷ ନିମ୍ନ ଲିଖିତ ଦଶ ଭାଗରେ ବିଭକ୍ତ ଥିଲା ବୋଲି କୌଣସି୨ ଗ୍ରନ୍ଥକର୍ତ୍ତା ଲେଖି ଅଛନ୍ତି । ଯଥା—୧ମ ସରସ୍ୱତୀ, ତନ୍ମଧ୍ୟରେ ପଞ୍ଜାବ । ୨ୟ କାନ୍ୟକୁବ୍‌ଜ; ଦିଲ୍ଲୀ, ଆଗରା, ଶ୍ରୀନଗର ଓ ଅଯୋଧ୍ୟା ତାହାର ଅନ୍ତର୍ଗତ । ୩ୟ ତ୍ରିହୋତ; କୁଶୀନଦୀଠାରୁ ଗଣ୍ଡକୀ ପର୍ଯ୍ୟନ୍ତ ବିସ୍ତୃତ ଦେଶ । ଚତୁର୍ଥ ଗୌଡ଼ ବା ବଙ୍ଗଦେଶ । ପଞ୍ଚମ ଗୁର୍ଜ୍ଜର ବା ଗୁଜରାଟ; ଖାନ୍ଦେଶ ଓ ମଲବାରର କିୟଦଂଶ ତାହାର ଅନ୍ତର୍ଗତ । ୬ଷ୍ଠ ଉତ୍କଳ ବା ଉଡ଼ିଶ୍ୟା । ୭ ମ ମହାରାଷ୍ଟ୍ର । ୮ ମ ତୈଲଙ୍ଗ; ଗୋଦାବରୀ ନଦୀଠାରୁ କୃଷ୍ଣାନଦୀ ପର୍ଯ୍ୟନ୍ତ ବିସ୍ତୃତ । ୯ ମ କର୍ଣ୍ଣାଟ । ୧୦ ମ ଦ୍ରାବିଡ଼ । ଏହି ସକଳ ଦେଶରେ ପୂର୍ବକାଳୀୟ ହିନ୍ଦୁରାଜାମାନେ ରାଜପଣ କରୁ-

ଥିଲେ ଏତଦ୍‌ଭିନ୍ନ ଭାରତବର୍ଷର ଦକ୍ଷିଣସ୍ଥ ଦେଶ ସମୂହ ବାନର ଓ ଭଲ୍ଲୁକସେନାପତି ଏବଂ ରାକ୍ଷସ ରାଜାର ଅଧୀନ ଥିଲା ।

ପୂର୍ବୋକ୍ତ ବଙ୍ଗ ଦେଶ ଓ ଭାରତବର୍ଷର ଅନ୍ୟାନ୍ୟ ଦେଶରେ ଯେଉଁ ଭାଷା ପ୍ରଚଳିତ ଅଛି, ସଂସ୍କୃତ ସମସ୍ତଙ୍କର ମୂଳ । ଏହି ସଂସ୍କୃତ ଭାଷା ଉତ୍ପତ୍ତି ବିଷୟରେ କୌଣସି୨ ଇତିହାସବେତ୍ତା ପ୍ରମାଣ ଦର୍ଶାଇ ସ୍ଥିର କରିଅଛନ୍ତି ଯେ, ଲୋକବ୍ୟବହୃତ ଭାଷା ସମୂହ ଶୁଦ୍ଧ କରିବାରୁ ସଂସ୍କୃତଭାଷା ନିଷ୍ପନ୍ନ ହୋଇଅଛି; କିନ୍ତୁ ଏକଥା ନିତାନ୍ତ ଅଗ୍ରାହ୍ୟ । କାରଣ ପୂର୍ବୋକ୍ତ ଦେଶସମୂହରେ ଯେଉଁ ଭାଷାମାନ ପ୍ରଚଳିତ ଅଛି, ତାହା ପରସ୍ପର ଅନେକ ଅନୈକ୍ୟ । ଏଣୁ ଏ ସକଳ ଭାଷାର ସାରାଂଶ ଗ୍ରହଣ କରି ଏକଭାଷା ରଚିତ ହୋଇ ନ ପାରେ, ପୁଣି ସଂସ୍କୃତ ଯେବେ ପୂର୍ବୋକ୍ତ ଭାଷାମାନଙ୍କର ସାରାଂଶ ହୁଅନ୍ତା ତେବେ ତାହାର ପ୍ରତ୍ୟେକ ଶବ୍ଦ ଚଳିତ ଭାଷା ମଧ୍ୟରେ ଦୃଷ୍ଟ ହୁଅନ୍ତା । ପୁନଶ୍ଚ ସଂସ୍କୃତଭାଷା ଅବହମାନ କାଳ ଭାରତବର୍ଷରେ ଚଳି ଆସୁଥିଲେ ମଧ ନଜାଣିଲା ଲୋକେ ତାହାର କିଛିହେଁ ବୁଝିପାରୁ ନାହାନ୍ତି । ବରଞ୍ଚ ଏକଥା ନିଶ୍ଚୟ ଯେ ସଂସ୍କୃତ ଭାରତବର୍ଷ—ଚଳିତଭାଷାମାନଙ୍କର ଜନନୀ ସଂସ୍କୃତଭାଷାର ପ୍ରଥମଗ୍ରନ୍ଥ ବେଦ । ବେଦ ଏପ୍ରକାର କଠିନ ଯେ, ସଂସ୍କୃତଭାଷାର ବିଶେଷଜ୍ଞ ପଣ୍ଡିତମାନେ ଟୀକା ବ୍ୟତିରେକେ ତାହା ବୁଝିପାରନ୍ତି ନାହିଁ । ଇଂରେଜୀ ସାଲର ୩ ଅଥବା ୪ ଶତ ବରଷ ପୂର୍ବେ ମହାଭାରତ ଓ ରାମାୟଣାଦି ରଚିତ ହୋଇଅଛି ତାହା ଅପେକ୍ଷାକୃତ ପ୍ରାଞ୍ଜଳ ଓ ଉତ୍ତମ ହୋଇ ଅଛି । ଅନୁମାନ ତାହାର ୬ଶତ ବରଷ ପରେ ସୁବିଖ୍ୟାତ ରାଜା ବିକ୍ରମାଦିତ୍ୟଙ୍କ ରାଜପଣ ସମୟରେ ଥୋକାଏ ପଣ୍ଡିତ ଜନ୍ମ, ସଂସ୍କୃତଭାଷାରେ ଅନେକ ଗ୍ରନ୍ଥ ରଚନା କରି ଅଛନ୍ତି ସେହି ଦିନଠାରୁ ସଂସ୍କୃତ ଅତି ସୁନ୍ଦର ଓ ଶୃଙ୍ଖଳାବଦ୍ଧ ଭାଷା ହୋଇ ଅଛି ।

ଭାରତବର୍ଷର ଅନ୍ୟାନ୍ୟ ଐତିହାସିକ ବିଷୟ ପରି ଧର୍ମ ପରିବର୍ତ୍ତନର ସମୟ ନିରୂପଣ କରିବା ମଧ ସହଜକଥା ନୁହଇ । ସେ ବିଷୟ ନିବିଡ ଭୁନ୍ଧାରେ ଅଛନ୍ନ ।

ବେଦାଗମନର ପୂର୍ବେ ଭାରତବର୍ଷରେ ଯେ ଧର୍ମ ପ୍ରଚଳିତ ଥିଲା ତାହା ସମ୍ପୂର୍ଣ୍ଣରୂପେ ବହିଷ୍କୃତ ହୋଇ ଅଛି; କେବଳ କେତେଗୁଡଏ ପାର୍ବତୀୟ ଅସଭ୍ୟ ଲୋକେ ସେହି ଧର୍ମାଚରଣ କରୁ ଅଛନ୍ତି ଆଦିମଧର୍ମ ତିରୋହିତ ହେଲା ଉତ୍ତାରେ ବେଦଧର୍ମ ଭାରତବର୍ଷରେ ବ୍ୟାପୀ ଥିଲା; ତାହା ମଧ ଲୋପ ହୋଇଅଛି । ବହ୍ନ୍ୟୋପାସନା ଅଦୃଶ୍ୟ ହୋଇ ଅଛି । ବୌଦ୍ଧ ଧର୍ମ ଭାରତରୁ ବହିଷ୍କୃତ ହୋଇ

ସିଂହଳଦ୍ୱୀପ ଓ ଅନ୍ୟ ପୂର୍ବ ଦେଶରେ ଆଶ୍ରୟଗ୍ରହଣ କରି ଅଛି । ସମ୍ପ୍ରତି ଜୈନ ଧର୍ମର ମଧ୍ୟ ସେପରି ପ୍ରାଦୁର୍ଭାବ ଦେଖାଯାଉ ନାହିଁ ।

ଶୈବ ଓ ବୈଷ୍ଣବ ଧର୍ମ ଯାହାକି ଇଦାନୀଂ ଭାରତବର୍ଷର ପ୍ରାୟ ସମସ୍ତ ଭାଗରେ ପ୍ରବଳ ରୂପେ ଚଳୁ ଅଛି ତାହା କିଛି, ଅତି ପ୍ରାଚୀନ ଧର୍ମ ନୁହଇ । ବଙ୍ଗ ଓ ଓଡ଼ିଶା ଦେଶରେ ପ୍ରଚଳିତ ଚୈତନ୍ୟଦେବଙ୍କ ଉପାସନାଧର୍ମ କାଲିକାର କଥା

ପୂର୍ବେ କେବଳ ବେଦ ଭାରତବର୍ଷରେ ହିନ୍ଦୁ ଧର୍ମ ଥିଲା । ସିନ୍ଧୁନଦୀ ପଶ୍ଚିମ ଭାଗରୁ ବ୍ରାହ୍ମଣମାନେ ଯେତେବେଳେ ଭାରତବର୍ଷ ଜୟ କରିବା ମାନସରେ ଅଥବା ଭାରତବର୍ଷୀୟମାନଙ୍କୁ ଆପଣାମାନଙ୍କର ମତାବଲମ୍ବୀ କରିବା ମାନସରେ ଆଗମନ କଲେ, ତେତେବେଳେ ବେଦ ଯେ, ସେମାନଙ୍କ ସହିତ ଆନୀତ ହୋଇଥିଲା ଏଥିରେ ସନ୍ଦେହ ନାହିଁ । ଇଦାନୀଂ ପ୍ରଚଳିତ ପୌତ୍ତଳିକ ଧର୍ମ ଭାରତବର୍ଷର ଆଦିମ ଧର୍ମ ନୁହଇ । କାରଣ ଆଦିମ ବୈଦିକ ଧର୍ମରେ ଯେଉଁସକଳ ଦେବୋପାସନାର ବିଧି ଅଛି, ସେ ସକଳ କେବଳ ସ୍ୱାଭାବିକ ପଦାର୍ଥର ମନୁଷ୍ୟ ରୂପରେ ବର୍ଣ୍ଣନ ଏବଂ ତାହା ଅଗ୍ନି, ବାୟୁ ଓ ସୂର୍ଯ୍ୟ ଏହି ତିନି ସ୍ୱାଭାବିକ ପଦାର୍ଥ ଅନାଦି ବ୍ରହ୍ମର ବିଶେଷ ମହିମା ମାତ୍ର ।

ଉକ୍ତ ବେଦରେ ବିଶେଷରୂପେ ପରମେଶ୍ୱରଙ୍କ ଗୁଣାନୁବାଦ ଓ ସ୍ତବ ଏବଂ ଅନେକ ସଦୁପଦେଶାଦି ଅଛି । ପୂର୍ବକାଳରେ ପୁରୋହିତମାନେ ସେ ସକଳ ମୌଖିକ ବାକ୍ୟଦ୍ୱାରା ଶିଷ୍ୟମାନଙ୍କୁ ଶିକ୍ଷା ଦେଉଥିଲେ । ପରେ ଭାରତବର୍ଷର ରାଜବଂଶୋଦ୍ଭବ ବ୍ୟାସଦେବ, ସେହି ସକଳ ବେଦକୁ ଚାରିଅଂଶରେ ବିଭକ୍ତ କଲେ । ସେହି ଦିନଠାରୁ ବେଦ ଶ୍ୟାମ, ଯଜୁ, ଋକ୍ ଓ ଅଥର୍ବ ଏହି ଚାରିଭାଗରେ ବିଭକ୍ତ ହୋଇଅଛି । ବ୍ୟାସଦେବଙ୍କ ଅଂଶ ବିଭାଗ କରିବା ପୂର୍ବରେ ପୁରାକାଳୀୟ ପୁରୋହିତମାନେ ମୌଖିକ ବାକ୍ୟଦ୍ୱାରା ସମସ୍ତଙ୍କୁ ଶିକ୍ଷା ଦେଉଥିଲେ । ଏଥିରୁ ଜଣା ଯାଏ ଯେ ବହୁଶତ ବରଷ ପୂର୍ବେ ବେଦ ପୁରୁଷାନୁକ୍ରମେ ମୌଖିକ ବାକ୍ୟଦ୍ୱାରା ଚଳୁଥିଲା । ବେଦରେ ଶ୍ରୀକୃଷ୍ଣ ଓ ଶିବଲିଙ୍ଗ ଉପାସନାର ବିଷୟ କୌଣସି ସ୍ଥାନରେ ଲିଖିତ ନାହିଁ । କେବଳ ଅଥର୍ବ ବେଦର ଶେଷ କେତେକ ପ୍ରକରଣରେ ଉକ୍ତ ଉପାସନାର ବିଧି ଅଛି, ତାହା ମଧ୍ୟ ନିତାନ୍ତ କାଳ୍ପନିକ ବୋଲି ବୋଧ ହୁଅଇ । ବେଦର ଅଧିକାଂଶ ବାକ୍ୟ ପ୍ରାୟ ଲୁପ୍ତ ହେବାରୁ ଅନ୍ୟାନ୍ୟ ଆଧୁନିକ ଧର୍ମୋପଦେଶ ଓ ପୂଜାଦି ତତ୍ପରିବର୍ତ୍ତେ ଗୃହୀତ ହୋଇଅଛି ଓ ପୁରାଣ ଏବଂ ଇତ୍ୟାଦିର ଉପାସନା ବିଧି ପ୍ରଚଳିତ ହେବାରୁ ମଧ୍ୟ ବେଦର କେତେକ ବାକ୍ୟ ଲୋପ ପ୍ରାପ୍ତ ହୋଇ

ଯାଇଅଛ । ଏବଂ ପ୍ରାଚୀନ ମତ ଅର୍ଥାତ୍ ସନାତନ ବ୍ରାହ୍ମଧର୍ମାବଲମ୍ବୀ ଲୋକମାନଙ୍କୁ ଅଧୁନାତନ ପୌତ୍ତଳିକ ଲୋକମାନେ ନାସ୍ତିକ ବୋଲି ମଣୁ ଅଛନ୍ତି । ମାତ୍ର ଭାରତବର୍ଷ—କ୍ରମ ନର ଉନ୍ନତ ସହକାରେ ଉକ୍ତ ବ୍ରାହ୍ମଧର୍ମ ପୁନର୍ବାର ଯେ ଦେଦୀପ୍ୟ-ମାନ ହେବ ଏଥିରେ ସନ୍ଦେହ ନାହିଁ ।

---

## ଦ୍ୱିତୀୟ ଅଧ୍ୟାୟ ।

ଚନ୍ଦ୍ର ଓ ସୂର୍ଯ୍ୟବଂଶ, ଇକ୍ଷ୍ୱାକୁ, ଇଳା, ଶ୍ରୀରାମଚନ୍ଦ୍ର ବିବରଣ, ସଗର, ଯଦୁବଂଶର ବିବରଣ, କୁରୁ ଓ ପାଣ୍ଡବ, ମହାଭାରତ ଯୁଦ୍ଧର ବିବରଣ, ଶ୍ରୀକୃଷ୍ଣ ବିନାଶ, ଯୁଧିଷ୍ଠିର—ଭାରତବର୍ଷ ପରିତ୍ୟାଗ, ରାଜାଅଜାତଶତ୍ରୁ ଓ ନନ୍ଦରାଜା ।

ଅତି ପୂର୍ବକାଳରୁ ଚନ୍ଦ୍ର ଓ ସୂର୍ଯ୍ୟବଂଶ ନାମଧେୟ ଦୁଇ ରାଜବଂଶ ବିଖ୍ୟାତ ଅଛନ୍ତି । ବୈବସ୍ୱତମନୁ ଏହି ଦୁଇ ରାଜବଂଶର ଆଦିପୁରୁଷ । ମନୁଙ୍କର ଏକପୁତ୍ର ଓ ଏକ କନ୍ୟା ଥିଲେ । ପୁତ୍ରଙ୍କର ନାମ ଇକ୍ଷ୍ୱାକୁ ଓ କନ୍ୟାଙ୍କର ନାମ ଇଳା । ଇକ୍ଷ୍ୱାକୁ ସୂର୍ଯ୍ୟବଂଶର ଆଦିପୁରୁଷ ଇଳା ବୁଧଙ୍କୁ ବିବାହ ହୋଇଥିଲେ ତାଙ୍କଠାରୁ ଚନ୍ଦ୍ରବଂଶ ଉତ୍ପତ୍ତି । ସୂର୍ଯ୍ୟବଂଶର ରାଜଧାନୀ ଅଯୋଧ୍ୟା ଚନ୍ଦ୍ରବଂଶର ରାଜଧାନୀ ପ୍ରୟାଗ। ଇକ୍ଷ୍ୱାକୁ ଓ ଇଳାଙ୍କ ଭିନ୍ନ ମନୁଙ୍କର ଆହୁରି ଅନେକ ପୁତ୍ର କନ୍ୟା ଥିଲେ; କିନ୍ତୁ ସେମାନେ ତାଦୃଶ ବିଖ୍ୟାତ ନୁହନ୍ତି ।

ଇକ୍ଷ୍ୱାକୁ ପରଲୋକ ଗମନ କରନ୍ତେ, କ୍ରମାଗତ ସେହି ବଂଶୀୟ ୫୪ଜଣ ରାଜା ଅଯୋଧ୍ୟାରେ ରାଜପଣ କରି ଥିଲେ । ତଦନନ୍ତର ରାମଚନ୍ଦ୍ର ଆବିର୍ଭୂତ ହୋଇ ଥିଲେ । ବାଲ୍ମୀକି କୃତ ରାମାୟଣ ପାଠ କଲେ ଜଣାଯାଏ ଯେ, ଶ୍ରୀ ରାମ-ଚନ୍ଦ୍ର ଅତି ପ୍ରବଳ ପରାକ୍ରାନ୍ତ ଭୂପତି ଥିଲେ । ସେ ଦକ୍ଷିଣ ରାଜ୍ୟରେ ହିନ୍ଦୁରାଜ୍ୟର ସୂତ୍ରପାତ କରି ଥିଲେ । ରାମଚନ୍ଦ୍ର କିଛିକାଳ ଦଣ୍ଡକାରଣ୍ୟରେ ବାସ କରି ଥିଲେ । ଦଣ୍ଡକାରଣ୍ୟ କାବେରୀ ନଦୀର ଉଭୟ ତଟେ ବହୁଦୂର ବିସ୍ତୃତ । ଦଣ୍ଡକାରଣ୍ୟର ଦକ୍ଷିଣାଂଶ ଲଙ୍କାଧିପତିର ଅଧୀନ ଥିଲା । ସେହି ସମୟରେ ପରଶୁରାମ ନାମକ ଏକ ବୀରପୁରୁଷ ଅନେକ କ୍ଷତ୍ରିୟରାଜା ବିନାଶ କରି ଭାରତର ଉତ୍ତରସ୍ଥିତ ଅନେକ ଦେଶ ବହୁ ସମ୍ମାନ ପୂର୍ବକ ବ୍ରାହ୍ମଣମାନଙ୍କୁ ଦାନ କରି ଥିଲେ ।

ବୋଧ ହୁଅଇ, ପୂର୍ବେ ମଧ ବ୍ରାହ୍ମଣମାନେ ପ୍ରବଳ ହୋଇ ରାମଚନ୍ଦ୍ରଙ୍କ ପୂର୍ବ ପୁରୁଷ ସଗର ନାମକ ରାଜାକୁ ତଡ଼ି ଦେବାରୁ ସେ ପୋତାରୋହଣ ପୂର୍ବକ ସମୁଦ୍ର ମଧ୍ୟସ୍ଥ ଦ୍ୱୀପାଦିରେ ଆପଣାର ଆଧିପତ୍ୟ ପ୍ରକାଶ କରି ଥିଲେ । ଏହାଙ୍କ ନାମାନୁସାରେ ଅର୍ଣ୍ଣବର "ସାଗର" ନାମ ହୋଇଅଛି । ସଗରରାଜ ଯେ, ବଙ୍ଗୋପସାଗରସ୍ଥ ଦ୍ୱୀପାଦିରେ ଆପଣାର ଆଧିପତ୍ୟ ପ୍ରକାଶ କରିଥିଲେ ତାହାର ଅନେକ ପ୍ରମାଣ ମିଳଇ । ଯାବାଦ୍ୱୀପର ସମୀପବର୍ତ୍ତୀ ବାଲିଦ୍ୱୀପଦ୍ୱୀପସ୍ଥ ଲୋକମାନେ ଅଦ୍ୟାବଧି ହିନ୍ଦୁ ଦେବ ଦେବୀଙ୍କ ପୂଜା କରୁଅଛନ୍ତି ଓ ସେ ସ୍ଥାନରେ ଅନେକ ଦେବମନ୍ଦିର ମଧ ଅଛି, ଏବଂ ସେ ସ୍ଥାନର ଲୋକମାନଙ୍କ ସହିତ ହିନ୍ଦୁମାନଙ୍କର କ୍ରିୟା କଳାପର ଅନେକ ସାମଞ୍ଜସ୍ୟ ଅଛି । ଏବଂ ଏହା ମଧ ପ୍ରମାଣୀକୃତ ହୋଇଅଛି ଯେ, ଇଂରେଜୀ ୮୦୦ ଶତ ବର୍ଷ ପୂର୍ବେ ସେ ସ୍ଥାନରେ କୌଣସି ଦେବମନ୍ଦିରାଦି ନ ଥିଲା ।

ରାମଚନ୍ଦ୍ରଙ୍କର ବିଲୋପ ହୁଅନ୍ତେ ଆଉ ୬୦ ଜଣ ରାଜା ତଦୀୟ ସିଂହାସନାରୋହଣ କରିଥିଲେ । ତଦୁତ୍ତାରେ ସୂର୍ଯ୍ୟବଂଶ ବିଲୋପ । ଅଯୋଧାରେ ସୂର୍ଯ୍ୟବଂଶର ବିଲୋପ ହୋଇଅଛି ସତ୍ୟ, ମାତ୍ର ଅନ୍ୟାନ୍ୟ ସ୍ଥାନରେ ତଦ୍‌ବଂଶଜମାନେ ଅଦ୍ୟାବଧି ରାଜପଣ କରୁଅଛନ୍ତି । ମେଓୟାର, ଉଦୟପୁର ପ୍ରଭୃତି ଦେଶୀୟ ରାଜାମାନେ ଆପଣାମାନଙ୍କୁ ସୂର୍ଯ୍ୟବଂଶୀୟ ବୋଲି ପରିଚୟ ଦେଉଅଛନ୍ତି ।

ବୁଧଙ୍କ ପ୍ରପୌତ୍ର ଜଜାତିର ପାଞ୍ଚପୁତ୍ର ଥିଲେ; ତନ୍ମଧରେ କୁରୁ ଓ ଯଦୁ ପ୍ରଧାନ । ପୁରୁବଂଶର ମଧ ଅତ୍ୟନ୍ତ ବୃଦ୍ଧି ହୋଇଥିଲା । ମଗଧାଧିପତି ରାଜା ଜରାସନ୍ଧ ଓ ଯୁଧିଷ୍ଠିର ପ୍ରଭୃତି କୁରୁବଂଶୀୟ ଥିଲେ । ଯଦୁବଂଶ ମଧରେ କେବଳ ଶ୍ରୀକୃଷ୍ଣ ଓ ବଳରାମ ପ୍ରଧାନ । ବୁଧଠାରୁ କୁରୁକ୍ଷେତ୍ର ଯୁଦ୍ଧ ପର୍ଯ୍ୟନ୍ତେ କ୍ରମେ ୪୨ ଜଣ ଚନ୍ଦ୍ରବଂଶୀୟ ରାଜା ରାଜପଣ କରିଥିଲେ । ତାହା ହେଲେ, ରାମଚନ୍ଦ୍ରଙ୍କ ଜନ୍ମ ପୂର୍ବେ ଶ୍ରୀକୃଷ୍ଣଙ୍କର ଆବିର୍ଭାବ ଗଣନା କରିବାକୁ ହେବ । କିନ୍ତୁ ତାହା ନୁହଇ, ଶ୍ରୀକୃଷ୍ଣଙ୍କ ଅନେକ ପୂର୍ବେ ଶ୍ରୀରାମଚନ୍ଦ୍ର ଜନ୍ମଗ୍ରହଣ କରିଥିଲେ; କାରଣ କୁରୁକ୍ଷେତ୍ର ଯୁଦ୍ଧ ସମୟରେ ଅଯୋଧା ନଗର ପତନ ହୋଇ କାନ୍ୟକୁବ୍ଜ ନଗରର ବୃଦ୍ଧି ହୋଇଥିଲା । ଏକ ବିଖ୍ୟାତ ନଗର ପତନ ହୋଇ ଆଉ ଏକ ନଗର ବୃଦ୍ଧି ହେବାକୁ ଅନେକ ଦିନ ପ୍ରୟୋଜନ । ପବୋକ୍ତ ବେଣ୍ଟଲି ସାହେବ ଓ ଜୋତିର୍ବେତ୍ତା ଗର୍ଗମୁନି ଗଣନା କରି ସ୍ଥିର କରିଅଛନ୍ତି ଯେ, ମହାଭାରତ ଯୁଦ୍ଧ ସମୟ ମଶୀହର ୫୦୦ ଶତ ବର୍ଷ ପୂର୍ବରୁ ଅଧିକ ହେବ ନାହିଁ । ଏଥିରୁ ବୋଧ ହୁଅଇ ପୂର୍ବ ଇତିହାସବେତ୍ତାମାନେ ସୂର୍ଯ୍ୟବଂଶୀୟ କେତେକଜଣ ରାଜାଙ୍କୁ ପରିତ୍ୟାଗ କରିଅଛନ୍ତି,

ଅଥବା ଚନ୍ଦ୍ରବଂଶୀୟ ରାଜାମାନେ ଅପେକ୍ଷାକୃତ ଦୀର୍ଘଜୀବୀ ଥିଲେ । ସେ ଯାହା ହେଉ, ଚନ୍ଦ୍ରବଂଶୀୟ ମଧ୍ୟରେ ମଗଧାଧିପତି ଜରାସନ୍ଧ, ମଥୁରାଧିପତି କଂସ ଓ ହସ୍ତିନାପୁରରେ * ପୌରବମାନେ ଅଧିକ ପ୍ରବଳ ପରାକ୍ରାନ୍ତ ଓ ସୁବିଖ୍ୟାତ ଥିଲେ । କଂସ ଜରାସନ୍ଧ ଦୁହିତାର ପାଣିଗ୍ରହଣ କରିଥିଲା । ଶ୍ରୀକୃଷ୍ଣଙ୍କ ସହିତ କଂସର ଶତ୍ରୁତା ଥିବାରୁ କୃଷ୍ଣ ତାକୁ ବଧ କରି, ମଥୁରାଧିକାର କରନ୍ତେ ଜରାସନ୍ଧ କୁପିତ ହୋଇ ତାହାଙ୍କ ସହିତ ଅପାର ଯୁଦ୍ଧ କଲା । ତହିଁରେ ଶ୍ରୀକୃଷ୍ଣ ପରାଜିତ ହୋଇ ଦେଶ ପରିତ୍ୟାଗପୂର୍ବକ ପଳାୟନ କରି, ଗୁଜରାଟ ଅନ୍ତର୍ଗତ ଦ୍ୱାରକା ନାମକ ନଗର ସ୍ଥାପନପୂର୍ବକ ସେ ସ୍ଥାନରେ ବାସ କଲେ । ପରେ ଶ୍ରୀକୃଷ୍ଣ ପଶ୍ଚାଲ୍ଲିଖିତ ଭୀମ ଓ ଅର୍ଜୁନଙ୍କ ସାହାଯ୍ୟରେ ଜରାସନ୍ଧକୁ ବଧ କଲେ ।

ଏତେବେଳେ ଆମ୍ଭେ ପୁରୁବଂଶ ବିଷୟ କିଞ୍ଚିତ ଉଲ୍ଲେଖ କରିବୁଁ । ପୁରୁବଂଶ ମଧ୍ୟରେ ଶାନ୍ତନୁ ନାମେ ଏକ ରାଜା ଜନ୍ମଗ୍ରହଣ କରିଥିଲେ । ଶାନ୍ତନୁଙ୍କର ତିନି ପୁତ୍ର; ଭୀଷ୍ମ, ବିଚିତ୍ରବୀର୍ଯ୍ୟ ଓ ଚିତ୍ରାଙ୍ଗଦ । ଚିତ୍ରାଙ୍ଗଦ ଅପୁତ୍ରିକ ହୋଇ ପରଲୋକ ଗମନ କଲେ । ବିଚିତ୍ରବୀର୍ଯ୍ୟ କାଶୀରାଜାର ଅମ୍ବା ଓ ଅମ୍ବାଳିକା ନାମ୍ନୀ ଦୁଇକନ୍ୟାର ପାଣିଗ୍ରହଣ କରିଥିଲେ, ଏହି ରାଜା ଅତ୍ୟନ୍ତ ଇନ୍ଦ୍ରିୟପରାୟଣ ଥିବାରୁ ଯକ୍ଷ୍ମାରୋଗଗ୍ରସ୍ତ ହୋଇ ପ୍ରାଣତ୍ୟାଗ କଲେ । ବିଚିତ୍ରବୀର୍ଯ୍ୟଙ୍କ ଜନନୀ ସତ୍ୟବତୀଙ୍କର ପରାଶର ଔରସଜାତ ଏକ କାନୀନପୁତ୍ର ଥିଲେ । ତାହାଙ୍କର ନାମ ଦ୍ୱୈପାୟନ । ଏହି ଦ୍ୱୈପାୟନ ବେଦର ସଂଗ୍ରହ ଓ ବିଭାଗକର୍ତ୍ତା । ତନ୍ନିବନ୍ଧନ ଏହାଙ୍କୁ ବ୍ୟାସ ବା ବେଦବ୍ୟାସ ବୋଲାଯାଏ । ବିଚିତ୍ରବୀର୍ଯ୍ୟ ପରଲୋକ ଗମନ କରନ୍ତେ, ସତ୍ୟବତୀ ତଦୀୟ ପତ୍ନୀଦ୍ୱୟ ଗର୍ଭରୁ ସନ୍ତାନ ଉତ୍ପାଦନ କରିବାପାଇଁ ବ୍ୟାସଙ୍କୁ ଆଜ୍ଞା ଦେଲେ; ତଦନୁସାରେ ଅମ୍ବାଙ୍କ ଗର୍ଭରୁ ପାଣ୍ଡୁ ଓ ଅମ୍ବାଳିକାଙ୍କ ଗର୍ଭରୁ ଧୃତରାଷ୍ଟ୍ର ଜାତ ହେଲେ । ଧୃତରାଷ୍ଟ୍ରଙ୍କର ଦୁର୍ଯ୍ୟୋଧନ ଦୁଃଶାସନ ପ୍ରଭୃତି ଏକଶତ ପୁତ୍ର ଜନ୍ମ ହେଲେ । ପାଣ୍ଡୁ, ଶ୍ରୀକୃଷ୍ଣଙ୍କ ପିତୃସୀ କୁନ୍ତୀ ଓ ମଦ୍ରରାଜତନୟା ମାଦ୍ରୀ ଏ ଦୁଇ ରମଣୀଙ୍କର ପାଣିଗ୍ରହଣ କଲେ । ଏ ଦୁଇ ରମଣୀଙ୍କ ଗର୍ଭରୁ, ଯୁଧିଷ୍ଠିର, ଅର୍ଜୁନ, ଭୀମ, ନକୁଳ ଓ ସହଦେବଙ୍କର ଜନ୍ମ ହୁଏ । ପ୍ରସିଦ୍ଧ ଅଛି ଯେ, ଏହି ପଞ୍ଚପାଣ୍ଡବ ପାଣ୍ଡୁର ଔରସଜାତ ନୁହନ୍ତି । ଯେବେହେଁ ଯୁଧିଷ୍ଠିର ଦୁର୍ଯ୍ୟୋଧନପ୍ରଭୃତି ଏକ ବଂଶୋଦ୍ଭବ, ତେବେହେଁ ସଚରାଚର ଲୋକମାନେ ପାଣ୍ଡୁପୁତ୍ରମାନଙ୍କୁ ପାଣ୍ଡବ

* କୁରୁକ୍ଷେତ୍ର ଯୁଦ୍ଧ ୯ ଶତ ବର୍ଷ ପୂର୍ବେ ହସ୍ତୀନାମକ ଏକରାଜା ହସ୍ତିନାପୁର ନଗର ସ୍ଥାପନ କରନ୍ତି । ହସ୍ତିନା ଦିଲ୍ଲୀର ତ୍ରିଶକ୍ରୋଶ ପୂର୍ବେ ଗଙ୍ଗାତଟରେ ଅବସ୍ଥିତ ।

ଓ ଧୃତରାଷ୍ଟ୍ର ପୁତ୍ରମାନଙ୍କୁ କୌରବ କୁହନ୍ତି ।

ଶାନ୍ତନୁ ପରଲୋକ ଗମନ କରନ୍ତେ, ଧୃତରାଷ୍ଟ୍ର ଜ୍ୟେଷ୍ଠ ଥିଲେ ହେଁ ଜନ୍ମାନ୍ଧ ହେତୁରୁ, ପାଣ୍ଡୁ ରାଜସିଂହାସନରେ ଉପବେଶନ କରିଥିଲେ; କିନ୍ତୁ ଦୀର୍ଘ କାଳ ରାଜତ୍ୱ ଭୋଗ କରିପାରିଲେ ନାହିଁ ଧୃତରାଷ୍ଟ୍ରଙ୍କ ବର୍ତ୍ତମାନରେ ତାହାଙ୍କର ପ୍ରାଣ ବିୟୋଗ ହେଲା । ଏଣୁ ଧୃତରାଷ୍ଟ୍ର, ନିଜପୁତ୍ର ଦୁର୍ଯ୍ୟୋଧନଙ୍କୁ ରାଜ୍ୟଭାର ନ ଦେଇ ବୟସର ଆଧିକ୍ୟ ହେତୁରୁ ଯୁଧିଷ୍ଠିରଙ୍କୁ ରାଜ୍ୟାଭିଷେକ କଲେ । ଦୁର୍ଯ୍ୟୋଧନ ରାଜ୍ୟଭୋଗ ପାଇଁ ଏକାନ୍ତ ଲୋଲୁପ ଓ ଦୁଷ୍ଟସ୍ୱଭାବ ଥିଲେ । ଯୁଧିଷ୍ଠିରଙ୍କ ସ୍ୱଭାବ ତାହାର ବିପରୀତ । ମହାଭାରତ ଲିଖନ ପ୍ରମାଣେ ଯୁଧିଷ୍ଠିର କେବଳ ଦୟା, ଧର୍ମ, କ୍ଷମା ଓ ସତ୍ୟ ପ୍ରଭୃତି ସଦ୍‌ଗୁଣର ଆଧାର ଥିଲେ । ଯାହା ହେଉ, ଦୁର୍ଯ୍ୟୋଧନ ନିୟତ ପାଣ୍ଡବ ବିନାଶର ଷଡ଼ଯନ୍ତ୍ର କରିବାରୁ ପାଣ୍ଡବମାନେ ଅତ୍ୟନ୍ତ ବିରକ୍ତ ହୋଇ, ହସ୍ତିନାପୁର ପରିତ୍ୟାଗ ପୂର୍ବକ ବାରଣାବତ ନଗରରେ ବାସ କରିବା ପାଇଁ ଗଲେ । ତନ୍ନଗରସ୍ଥ ଯେଉଁ ଗୃହରେ ପାଣ୍ଡବମାନଙ୍କର ରହିବାର କଥା ଥିଲା, ସେଥିରେ ଅଗ୍ନି ଲଗାଇ ସେମାନଙ୍କୁ ଦଗ୍ଧ କରିବା କାରଣ ଦୁର୍ଯ୍ୟୋଧନ ପୂର୍ବରୁ ଆୟୋଜନ କରିଥିଲେ; କିନ୍ତୁ ସୌଭାଗ୍ୟ ପ୍ରଯୁକ୍ତ ପାଣ୍ଡବମାନେ ସେ ବିଷୟ ଜାଣି ପାରିଲେ । ହସ୍ତିନାପୁରର ସମସ୍ତ ଲୋକ ପ୍ରତିକୂଳ ଓ ପାଣ୍ଡବ ବିନାଶସାଧନତତ୍ପର ଏହା ଭାବି, ପାଣ୍ଡବେ ଛଦ୍ମବେଶ ଧାରଣ ପୂର୍ବକ ଦେଶ ଦେଶାନ୍ତରରେ ଭ୍ରମି ବୁଲିଲେ । ପାଣ୍ଡବମାନେ ଦଗ୍ଧ ହୋଇ ଅଛନ୍ତି । ଦୁର୍ଯ୍ୟୋଧନ ଏକଥା ମନରେ ଭାବି, ପରମହ୍ଲାଦରେ ରାଜ୍ୟ ଭୋଗ କଲେ ।

କିଛିକାଳ ଉତ୍ତାରେ ପଞ୍ଚାଳଦେଶ ଅନ୍ତର୍ଗତ କାମ୍ପିଲ୍ୟ ନଗରସ୍ଥ ଦ୍ରୁପଦ ନାମକ ରାଜାଙ୍କ କନ୍ୟାର ସ୍ୱୟମ୍ବରୋପଲକ୍ଷେ ନନା ଦେଶରୁ ଅନେକ ନରପତି ଆହୂତ ହୋଇ ଥିଲେ । ରାଜାଙ୍କର ଏହି ପଣ ଥିଲା କି ଯେଉଁ ଲୋକ ନିର୍ଦ୍ଦିଷ୍ଟ ଲକ୍ଷ ଭେଦ କରି ପାରିବ, ଆମ୍ଭର ଦୁହିତା ଦ୍ରୌପଦୀ, ସେହି ଲୋକର ବନିତା ହେବ । ଦ୍ରୌପଦୀ ପରମସୁନ୍ଦରୀ କନ୍ୟା ଥିଲେ ; ଅତଏବ କନ୍ୟାଲାଭ ଲାଳସାରେ ଅନେକ ରାଜା ଲକ୍ଷ ଭେଦ କରିବାକୁ ଚେଷ୍ଟା କଲେ ; କିନ୍ତୁ କେହି କୃତକାର୍ଯ୍ୟ ହୋଇ ପାରିଲେ ନାହିଁ । ଅନନ୍ତର ଏକ ବିପ୍ରବେଶୀ ପୁରୁଷ ଲକ୍ଷ୍ୟ ଭେଦ କରି କନ୍ୟାକୁ ପ୍ରାପ୍ତ ହେଲା । ସେ ଛଦ୍ମବେଶୀ ତୃତୀୟ ପାଣ୍ଡବ ଅର୍ଜୁନ ଅଟନ୍ତି । ଅର୍ଜୁନ ସେହି କନ୍ୟାକୁ ବାସସ୍ଥାନକୁ ଘେନି ଗଲେ ଏବଂ ପାଞ୍ଚ ଭାଇ ମିଳି ବିବାହ କଲେ । କେଉଁ ନିୟମାନୁସାରେ ପାଞ୍ଚ ଭାଇ ମିଳି ଏକ ରମଣୀକୁ ବିବାହ କଲେ, ଆମ୍ଭେ ତାହା ଜାଣୁ ନାହିଁ । କେହି୨ କହନ୍ତି ଯେ, କୁନ୍ତୀଙ୍କ ଆଦେଶାନୁସାରେ ଏ କାର୍ଯ୍ୟ ସମାଧାନ ହୋଇ ଥିଲା । ମାତ୍ର ତାହା ଏକାନ୍ତ ଅଗ୍ରାହ୍ୟ ।

ପାଣ୍ଡବମାନେ ପ୍ରକାଶିତ ହୁଅନ୍ତେ, ଧୃତରାଷ୍ଟ୍ର ସେମାନଙ୍କୁ ଆହ୍ୱାନ ପୂର୍ବକ ରାଜ୍ୟ ୨ ଅଂଶ କରି ଏକ ଅଂଶ ଦୁର୍ଯ୍ୟୋଧନଙ୍କୁ ଅପରାଂଶ ପାଣ୍ଡବଙ୍କୁ ପ୍ରଦାନ କଲେ । ଦୁର୍ଯ୍ୟୋଧନ ପୂର୍ବ ରାଜଧାନୀ ହସ୍ତିନାପୁରରେ ରାଜତ୍ୱ କଲେ । ଯୁଧିଷ୍ଠିର ହସ୍ତିନାପୁରର ୩୦ କ୍ରୋଶ ପଶ୍ଚିମେ ଇନ୍ଦ୍ରପ୍ରସ୍ଥ * ନାମକ ଏକ ନଗର ସ୍ଥାପନ କରି ସେ ସ୍ଥାନରେ ବାସ କଲେ । ଅତ୍ୟଳ୍ପ କାଳ ମଧ୍ୟରେ ଇନ୍ଦ୍ରପ୍ରସ୍ଥ ଏକ ପ୍ରସିଦ୍ଧ ନଗର ହୋଇ ଉଠିଲା । ଯୁଧିଷ୍ଠିର ରାଜସୂୟ ଯଜ୍ଞ ଅନୁଷ୍ଠାନ କରିଥିଲେ । ସାର୍ବ ଭୌମ ଭିନ୍ନ ଏପରି ଯଜ୍ଞ ଅନୁଷ୍ଠାନ କରିବାର କାହାରି କ୍ଷମତା ନାହିଁ । ଫଳେ ଜରାସନ୍ଧ ଭିନ୍ନ ଅପର ସମସ୍ତ ଭୂପତି ଯଜ୍ଞ ସ୍ଥଳରେ ଉପସ୍ଥିତ ହୋଇ ଥିଲେ । ଏହି ସମୟ-ରେ ଶ୍ରୀକୃଷ୍ଣ ଏକ ଦଳ ସୈନ୍ୟ ସମଭିବ୍ୟାହାରେ ଭୀମ ଓ ଅର୍ଜୁନଙ୍କୁ ଘେନି ପାର୍ବତ୍ୟ ପ୍ରଦେଶ ଦେଇ ଗୁପ୍ତଭାବରେ ଗମନ ପୂର୍ବକ ଜରାସନ୍ଧଙ୍କୁ ବଧ କଲେ । ରାଜସୂୟ ଯଜ୍ଞ ସମ୍ପନ୍ନ ହେଲାରୁ ଯୁଧିଷ୍ଠିରଙ୍କର ଯଶଃଶଶଧରର ଜ୍ୟୋତିଃ ସର୍ବତ୍ର ବିସ୍ତାରିତ ହେଲା । ଲୋକେ ଧାର୍ମିକବର ଯୁଧିଷ୍ଠିରଙ୍କର ଯେତେ ସୁଖ୍ୟାତି କରନ୍ତି, ଖଳ ସ୍ୱଭାବ ଦୁର୍ଯ୍ୟୋଧନଙ୍କ ଅନ୍ତରାତ୍ମା ତେତେ ଈର୍ଷାନଳରେ ଦଗ୍ଧ ହେଉ-ଥାଏ । ପାମର ଦୁର୍ଯ୍ୟୋଧନ ପୁନର୍ବାର ଏକ ଷଡ଼ଯନ୍ତ୍ର ଆରମ୍ଭ କଲେ । ଯୁଧିଷ୍ଠିର ପରମଧାର୍ମିକ ଥିଲେ ସତ୍ୟ; କିନ୍ତୁ ଅତ୍ୟନ୍ତ ଅକ୍ଷକ୍ରୀଡ଼ାଶକ୍ତ ଥିଲେ । ଦୁର୍ଯ୍ୟୋଧନ ନିଜ ଦୁଷ୍ଟ ମନ୍ତ୍ରୀ ଶକୁନିର ପରାମର୍ଶାନୁସାରେ ଯୁଧିଷ୍ଠିରଙ୍କ ସହିତ ଅକ୍ଷକ୍ରୀଡ଼ା ଆର-ମ୍ଭିଲେ । ତହିଁରେ ଯୁଧିଷ୍ଠିର ଧନ ରାଜ୍ୟ ଇତ୍ୟାଦି ସମସ୍ତ ହାରି ଭ୍ରାତାଗଣ ସହିତ ୧୩ ବରଷ ନିମନ୍ତେ ନିର୍ବାସିତ ହେଲେ । ବାରବରଷ ଅରଣ୍ୟରେ ବୁଲି ଶେଷ ଏକ ବରଷ (ଛଦ୍ମବେଶ ଧାରଣ କରି ଦାସତ୍ୱ ସ୍ୱୀକାର ପୂର୍ବକ) ବିରାଟ ରାଜା-ରାଜଧାନୀରେ ଯାପନ କଲେ । ନିର୍ବାସନ କାଳ ଅତିବାହିତ ହେଲାରୁ ସେମାନେ ଯମୁନା ନଦୀ କୂଳକୁ ଆସି, ଦୁର୍ଯ୍ୟୋଧନଙ୍କୁ ଆପଣାର ରାଜ୍ୟ ପ୍ରାର୍ଥନା କଲେ । ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କର ପ୍ରାର୍ଥନା ଅବଜ୍ଞା ରୂପ ଅନ୍ଧକୂପରେ ନିକ୍ଷେପ କରି କହି ପଠାଇଲେ ଯେ "ବିନା ଯୁଦ୍ଧେ ସୂଚ୍ୟଗ୍ର ପରିମିତ ଭୂମି ଦିଆଯିବ ନାହିଁ" । ତେଣୁ ଥାନେଶ୍ୱର ସମୀପରେ କୁରୁକ୍ଷେତ୍ର ମହାଯୁଦ୍ଧ ଉପସ୍ଥିତ ହେଲା । ଏହି ଯୁଦ୍ଧରେ ହିମାଳୟ ପର୍ବତଠାରୁ କୁମାରିକା ଅନ୍ତରୀପ ପର୍ଯ୍ୟନ୍ତ ସମସ୍ତ ଭୂପତି ଅନ୍ୟ-ତରର ସହାୟ ହୋଇ ଥିଲେ । ଅଷ୍ଟାଦଶ ଦିବସ ଘୋରତର ଯୁଦ୍ଧ ହେଲା ଉତ୍ତାରୁ ଦୁର୍ଯ୍ୟୋଧନ ନିଧନ ପ୍ରାପ୍ତ ହେଲେ । ଯୁଧିଷ୍ଠିର ତାହାଙ୍କର ପ୍ରେତ କୃତ୍ୟାଦି ସମାପନ କଲେ । ଜ୍ଞାତିବଧ ହେତୁରୁ ମନ ମଧ୍ୟରେ ଅତ୍ୟନ୍ତ ନିର୍ବେଦ ଉପସ୍ଥିତ

---

* ଇହାକୁ ଏବେ ଦିଲ୍ଲୀ ନାମରେ ଖ୍ୟାତ ଅଟେ ।

ହେବାରୁ ଯୁଧିଷ୍ଠିର ରାଜ୍ୟ ଭାର ଗ୍ରହଣ କରିବାକୁ ଏକାନ୍ତ ଅନିଚ୍ଛୁକ ହୋଇ ଥିଲେ; କିନ୍ତୁ ପାଣ୍ଡବଙ୍କର ଅଦ୍ୱିତୀୟ ସହାୟ ଶ୍ରୀକୃଷ୍ଣଙ୍କର ଅନୁରୋଧ ପରିତନ୍ତ ହୋଇ ରାଜ୍ୟ ଶାସନ କରିବାକୁ ପ୍ରବୃତ୍ତ ହେଲେ । ରାଜତ୍ୱ କଲେ ସତ୍ୟ; କିନ୍ତୁ ଜ୍ଞାତି ଓ ଅସଂଖ୍ୟ ପ୍ରାଣୀଙ୍କ ବିନାଶ ହେତୁରୁ ଶୋକଶେଲ ତାହାଙ୍କ ହୃଦୟରୁ କ୍ଷଣକାଳ ନିମନ୍ତେ ଅପସାରିତ ହେଲା ନାହିଁ । ପରିଣାମେ ପାପର ପ୍ରାୟଶ୍ଚିତ୍ତ କାରଣ ଅଶ୍ୱ-ମେଧ ଯଜ୍ଞ ଆରମ୍ଭ କଲେ ; ଅନେକ ବିଘ୍ନ ଉତ୍ତାରୁ ଯଜ୍ଞ ସମ୍ପନ୍ନ ହେଲା । ପ୍ରବାଦ ଅଛି; ଶ୍ରୀକୃଷ୍ଣ ପାଣ୍ଡବମାନଙ୍କର ସପକ୍ଷ ଥିବାରୁ ସେମାନେ ଜୟୀ ହୋଇଥିଲେ । ସମର ସମାପ୍ତ ଉତ୍ତାରେ ଶ୍ରୀକୃଷ୍ଣ ସ୍ୱୀୟ ରାଜଧାନୀ ଦ୍ୱାରକାକୁ ଗମନ କଲେ । ତେ-ତେବେଳେ ତାହାଙ୍କର ଗୃହ ବିବାଦ ଉପସ୍ଥିତ ହୋଇଥିଲା । ସେହି ବିବାଦ ଶାନ୍ତି ନିମନ୍ତେ ଶ୍ରୀକୃଷ୍ଣ ତାବତ୍ ଯଦୁବଂଶୀୟମାନଙ୍କୁ ପ୍ରଭାସ ନାମକ ତୀର୍ଥକୁ ଘେନି ଗଲେ; କିନ୍ତୁ ସେମାନେ ସେସ୍ଥାନରେ ଉପସ୍ଥିତ ହୋଇ ସ୍ନାନାନ୍ତର ଅପରିମିତ ସୁରାପାନରେ ଉନ୍ମତ୍ତ ହୋଇ ପରସ୍ପର ଘୋରତର ଯୁଦ୍ଧ ଆଚରିଲେ । ଏହି ଯୁଦ୍ଧରେ ଯଦୁବଂଶର ଚରମ ଦଶା ଉପସ୍ଥିତ ହେଲା । ଶ୍ରୀକୃଷ୍ଣ ଏହିସକଳ ବିଷୟ ଦେଖି ଅତ୍ୟନ୍ତ ଦୁଃଖିତ ମନରେ ଏକାକୀ ଏକ ବନ ମଧ୍ୟରେ ବସି ଅଛନ୍ତି, ଏମନ୍ତ ସମୟରେ ଜଣେ ବ୍ୟାଧ ଆସି ମୃଗ ଭ୍ରମରେ ଶରାଘାତଦ୍ୱାରା ତାହାଙ୍କୁ ବଧକଲା । ଯୁଧିଷ୍ଠିର ଏହି ସମ୍ବାଦ ପାଇ ଅତ୍ୟନ୍ତ ଦୁଃଖିତ ହେଲେ । ପୂର୍ବରୁ ତାହାଙ୍କର ବୈରାଗ୍ୟ ଉପସ୍ଥିତ ହୋଇ ଥିଲା କେବଳ ଶ୍ରୀକୃଷ୍ଣଙ୍କ ଅନୁରୋଧରେ ରାଜ୍ୟ ଶାସନ କରୁଥିଲେ । ଏତେବେଳେ ଶ୍ରୀକୃଷ୍ଣଙ୍କ ନିଧନ ବାର୍ତ୍ତା ଶ୍ରବଣ କଲାମାତ୍ରକେ ଭାରତଭୂମି ପରି-ତ୍ୟାଗ କରି ପତ୍ନୀ ଓ ଭ୍ରାତାମାନଙ୍କୁ ସଙ୍ଗେ ଘେନି ତିବ୍ବତ ଦେଶକୁ ଗମନ କଲେ । ଏଥିରୁ ବୋଧ ହୁଅଇ ଯେ, ତିବ୍ବତ ଦେଶରେ ୩।୪ ଭ୍ରାତା ମିଳି ଏକ କନ୍ୟାକୁ ବିବାହ କରିବା ପ୍ରଥା ସେହି ଦିନଠାରୁ ଚଳି ଆସୁଅଛି । ଯୁଧିଷ୍ଠିରାଦି ଭାରତବର୍ଷ ପରିତ୍ୟାଗ କଲା ଉତ୍ତାରେ ସେମାନଙ୍କର କୌଣସି ସମ୍ବାଦ ନ ମିଳିବାରୁ କବି-ମାନେ ଲେଖିଅଛନ୍ତି ଯେ, ସେମାନେ ସ୍ୱଶରୀରରେ ସ୍ୱର୍ଗାରୋହଣ କରିଥିଲେ । ହିମାଳୟର ଯେ ଭାଗଦେଇ ପାଣ୍ଡବମାନେ ଗମନ କରିଥିଲେ ସେ ଭାଗକୁ ମହା-ପ୍ରସ୍ଥାନ ବୋଲାଯାଏ ।

ଶ୍ରୀରାମଚନ୍ଦ୍ରଙ୍କର କୀର୍ତ୍ତି କଳାପ, କୁରୁକ୍ଷେତ୍ର ଯୁଦ୍ଧ, ଇତ୍ୟାଦି ସୂର୍ଯ୍ୟ ଓ ଚନ୍ଦ୍ରବଂଶର ପ୍ରଧାନ୨ ଘଟନା କେଉଁ ସମୟରେ ଘଟି ଥିଲା, ତାହା ଜାଣିବାର କୌଣସି ଉପାୟ ନାହିଁ; ଇଉରୋପୀୟ ପ୍ରଧାନ୨ ଇତିହାସବେତ୍ତାମାନେ ବିବିଧ ପ୍ରମାଣ ଦର୍ଶାଇ ଲେଖିଅଛନ୍ତି ଯେ, ଖ୍ରୀଷ୍ଟୀୟ ୧୪ ଶତ ସାଲ ପୂର୍ବରେ କୁରୁକ୍ଷେତ୍ର ଯୁଦ୍ଧ ହୋଇଥିଲା । କୁରୁକ୍ଷେତ୍ର ଯୁଦ୍ଧ ଉତ୍ତାରେ ବହୁକାଳ ପର୍ଯ୍ୟନ୍ତ ଇତିବୃତ୍ତ

ଏପରି ଅପରିଜ୍ଞେୟ ଓ ଅସମ୍ବନ୍ଧ ଯେ, କୌଣସି ପ୍ରକାରେ କୌଣସି ବିଷୟ ସଙ୍କଳିତ ହୋଇ ନ ପାରେ । କେବଳ ଏତିକି ମାତ୍ର ଜଣାଯାଏ ଯେ ପରୀକ୍ଷିତଙ୍କ ସନ୍ତାନ ପରମ୍ପରା ଇନ୍ଦ୍ରପ୍ରସ୍ଥରେ ଓ ଜରାସନ୍ଧର ସନ୍ତାନ ପରମ୍ପରା ମଗଧରେ ରାଜତ୍ୱ କରିଥିଲେ । ଜରାସନ୍ଧ ପୁତ୍ର ସହଦେବଠାରୁ ୩୪ ଜଣ ରାଜା ଉତ୍ତାରୁ ଅଜାତଶତ୍ରୁ ନାମକ ଏକ ରାଜା ମଗଧ ସିଂହାସନରେ ଅରୋହଣ କରିଥିଲେ । ଏହାଙ୍କର ରାଜତ୍ୱ କରିବାର କିଞ୍ଚିତ୍କାଳ ଉତ୍ତାରେ ବୌଦ୍ଧ ଧର୍ମ ସ୍ଥାପନ କର୍ତ୍ତା ବୁଧଙ୍କର ଉତ୍ପତ୍ତି ହେଲା । ବୁଧଙ୍କର ଆଉ ଦୁଇ ନାମ ଶାକ୍ୟସିଂହ ଓ ଗୌତମ । ବିବିଧ ପ୍ରମାଣଦ୍ୱାରା ସ୍ଥିରୀକୃତ ହୋଇଅଛି ଯେ, ଖ୍ରୀଷ୍ଟାବ୍ଦ ୫୫୦ ବରଷ ପୂର୍ବରେ ଏହି ଘଟନା ହୋଇଥିଲା । ଅଜାତଶତ୍ରୁ ତଳେ ଗୃହଜଣ ରାଜା ବିଗତ ହେଲା ଉତ୍ତାରେ ନନ୍ଦରାଜା ସିଂହାସନାରୋହଣ କଲେ । ଏହି ରାଜା ଶୂଦ୍ରଜାତୀୟ ଥିଲେ ଏଣୁ କ୍ଷତ୍ରିୟମାନଙ୍କ ଉପରେ ନିଯୁତ ନାନା ଅତ୍ୟାଚାର କରିବାରୁ ତାତ୍କାଳିକ ପ୍ରାୟ ସମସ୍ତ କ୍ଷତ୍ରିୟ ଏହାଙ୍କ ପ୍ରତି ଅତ୍ୟନ୍ତ ବିରକ୍ତ ହୋଇ ଥିଲେ ।

---

## ତୃତୀୟ ଅଧ୍ୟାୟ ।

### ଅତିମ କାଳୀନ ଯବନରାଜାମାନଙ୍କର ଭାରତବର୍ଷ ଆକ୍ରମଣ ।

ମୁସଲମାନ ପୁରାବୃତ୍ତବିତ୍ମାନେ ବୋଲନ୍ତି ଯେ ବହୁକାଳରୁ ଭାରତବର୍ଷର ପଶ୍ଚିମ ଖଣ୍ଡ ପାରସ୍ୟ ସମ୍ରାଟର ଅଧୀନରେ ଥିଲା । କିନ୍ତୁ ପାରସ୍ୟାଧିପତି ଡେରାୟୁସ ଭିନ୍ନ ଆଉ କୌଣସି ପାରସ୍ୟ ଦେଶୀୟ ଭୂପାଳ ଯେ ଭାରତବର୍ଷ ଆକ୍ରମଣ କରିଥିଲେ, ଏପରି କୌଣସି ବିଶ୍ୱାସଯୋଗ୍ୟ ପ୍ରମାଣ ମିଳଇ ନାହିଁ । ଡେରାୟୁସ ଇଂ ସାଲର ୫୧୮ ବରଷ ପୂର୍ବେ ପାରସ୍ୟ ସିଂହାସନରେ ଆରୋହଣ କରିଥିଲେ ଏବଂ ଲବାଣ୍ଧି ସାଗରଠାରୁ ସିନ୍ଧୁ ନଦୀ ପର୍ଯ୍ୟନ୍ତ ସମସ୍ତ ଭୂଭାଗ ତାହାଙ୍କର ଅଧୀନରେ ଥିଲା । ସିଂହାସନାରୋହଣର କିଛିକାଳ ଉତ୍ତାରେ ସେ ଭାରତବର୍ଷ ଆକ୍ରମଣ ପୂର୍ବକ ପଶ୍ଚିମଦେଶସ୍ଥ କେତେକ ଭୂପତିଙ୍କୁ ତଡ଼ିଦେଇ ନବଲବ୍ଧ ଦେଶ ସକଳ ସ୍ୱୀୟ ଅଧିକାର ଭୁକ୍ତ କଲେ । ଡେରାୟୁସ ପରଲୋକ ଗମନ ଉତ୍ତାରେ ତାହାଙ୍କର ଅଧିକୃତ ଦେଶ ସକଳ କିଛିକାଳ ତଦୀୟ ଉତ୍ତରାଧିକାରିମାନଙ୍କ ଶାସନାଧୀନ ଥିଲା, ପରେ ପୂର୍ବାଧିକାରିମାନେ ପ୍ରବଳ ହୋଇ, ନିଜ ନିଜ ରାଜ୍ୟ ପୁନର୍ବାର ବାହୁବଳରେ ଅଧିକାର କରିନେଲେ ।

ଡେରାୟୁସ ଆକ୍ରମଣର ପ୍ରାୟ ୬୦୦ ବରଷ ଉତ୍ତାରେ ମାସିଡୋନିଆ-ଅଧି-ଶ୍ବର ମହାବୀର ଅଲେକଜାଣ୍ଡର ଭାରତବର୍ଷ ଆକ୍ରମଣ କରନ୍ତି । ସେ ପ୍ରଥମରେ ପଞ୍ଜାବ ଜୟ କରି ଅନୁଗଙ୍ଗ ପ୍ରଦେଶକୁ ଆସିବାକୁ ଇଚ୍ଛା କରି ଥିଲେ; କିନ୍ତୁ ତାହାଙ୍କର ସେନାମାନେ ଅଗ୍ରସର ହେବାକୁ ଅନିଚ୍ଛୁକ ହେବାରୁ ଥୋକାଏ ସୈନ୍ୟ ସହିତ ବିଲୁଚୀସ୍ଥାନ ମଧ ଦେଇ ସ୍ବଦେଶକୁ ଗମନ କଲେ । ଅବଶିଷ୍ଟ ସୈନ୍ୟମାନଙ୍କୁ ନିୟର୍କଶ ନାମକ ସେନାପତି ସହିତ ସିନ୍ଧୁନଦୀ ମୁହାଣଠାରୁ ଇୟୁଫ୍ରେଟିସ ନଦୀର ମୁହାଣ ପର୍ଯ୍ୟନ୍ତ ଜଳ ପଥ ଆବିଷ୍କ୍ରିୟା କରିବା କାରଣ ପ୍ରେରଣ କଲେ ।

---

## ଚତୁର୍ଥ ଅଧ୍ୟାୟ ।

### ଅଲିକଜଣ୍ଡର ସମୟଠାରୁ ମୁସଲମାନମାନଙ୍କର ଭାରତବର୍ଷ ଆକ୍ରମଣ ପର୍ଯ୍ୟନ୍ତ ଆର୍ଯ୍ୟାବର୍ତ୍ତର ବିବରଣ ।

ଯେତେବେଳେ ଅଲିକଜଣ୍ଡର ଭାରତବର୍ଷ ଆକ୍ରମଣ କଲେ, ସେତେବେଳେ ମଗଧଦେଶସ୍ଥ ନନ୍ଦରାଜାଙ୍କ ବଂଶୋଦ୍ଭବ ମହାନନ୍ଦ ପାଟଲୀ ପୁତ୍ରର ଅଧୀଶର ଥିଲେ । ସେ, ଆକ୍ରମଣକାରୀ ସହିତ ସମର କରିବା କାରଣ ସେନା ସଂଗ୍ରହ କରୁ୨ ଶୁଣିଲେ ଯେ, ସେ ଆପେ ଫେରିଯାଇ ଅଛନ୍ତି, ତେଣୁ ନିବୃତ୍ତ ହେଲେ ।

ମହା ନନ୍ଦଙ୍କର ଆଠପୁତ୍ର, ତନ୍ମଧ୍ୟରେ ଚନ୍ଦ୍ରଗୁପ୍ତ ଭଣ୍ଡାରୁଣୀ ଗର୍ଭସମ୍ଭୂତ ଥିଲେ; ଏଥିପାଇଁ ତାହାଙ୍କର ସୁଜାତ ଆନ ଭାଇମାନେ ତାହାଙ୍କୁ ଅବଜ୍ଞା କରିବାରୁ ସେ ସ୍ବୀୟ ମନ୍ତ୍ରୀ ଚାଣକ୍ୟଙ୍କ ମନ୍ତ୍ରଣାନୁସାରେ ଭାଇମାନଙ୍କୁ ବଧ କରି ଆପେ ରାଜା ହେଲେ । ଚାଣକ୍ୟ ଅତ୍ୟନ୍ତ ବୁଦ୍ଧିମାନ୍ ଥିଲେ, ସେ ବିବିଧ ଗ୍ରନ୍ଥ ପ୍ରଚାର କରିଯାଇ ଅଛନ୍ତି । ତାହାଙ୍କ ରଚିତ କେତେକ ଶ୍ଳୋକ ଆଜି ଯାଏ ଭାରତବର୍ଷର ନାନା ଦେଶରେ "ଚାଣକ୍ୟ" ନାମେ ପ୍ରଚଳିତ ଅଛି ।

କାଳକ୍ରମେ ଚନ୍ଦ୍ରଗୁପ୍ତଙ୍କ ପୌତ୍ର ଅଶୋକ ପିତୀୟ ସିଂହାସନରେ ଆରୋହଣ କଲେ । ଅଶୋକଙ୍କୁ କେହି୨ ପ୍ରିୟ ଦର୍ଶୀ ବୋଲି ମଧ କହନ୍ତି । ତାହାଙ୍କ ସମୟ-ରେ ପ୍ରାୟ ସମସ୍ତ ଆର୍ଯ୍ୟାବର୍ତ୍ତ ଓ ଦାକ୍ଷିଣାତ୍ୟର କେତେକ ଅଂଶ ମଗଧର ଅଧି-କାର ଭୁକ୍ତ ଥିଲା । ଅଶୋକ ସ୍ବୟଂ ବୌଦ୍ଧ ଧର୍ମାବଲମ୍ବୀ ଥିବାରୁ ଭାରତବର୍ଷର ଅନ୍ୟାନ୍ୟ ପ୍ରଦେଶରେ ତଦ୍ଧର୍ମ ପ୍ରଚାର କାରଣ ବିଶେଷ ଯତ୍ନବାନ୍ ହୋଇଥିଲେ । ଖ୍ରୀଷ୍ଟାନ ମିଷନରିମାନଙ୍କ ପରି ବୌଦ୍ଧ ଧର୍ମାବଲମ୍ବୀମାନଙ୍କର ନିୟମିତ ଧର୍ମ ପ୍ରଚାରକ ଥିଲେ । ଧର୍ମ ପ୍ରଚାରକ ଓ ପୁରୋହିତମାନେ ଶିରମୁଣ୍ଡନ, ପୀତବସନ ପରିଧାନ ଓ

ତ୍ରିଦଣ୍ଡ ଧାରଣ କରୁଥିଲେ ଏବଂ ଯାବଜ୍ଜୀବନ ଦାର ପରିଗ୍ରହଣ କରିପାରୁ ନ ଥିଲେ । ଧର୍ମ ପ୍ରଚାରକମାନେ ସର୍ବଦା ମଠରେ ବାସ କରୁଥିଲେ ସେମାନଙ୍କ ମଠକୁ ବିହାର ବୋଲାଯାଉ ଥିଲା । ଅଶୋକଙ୍କର ଗୋଟିଏ ପୁତ୍ର ମଧ୍ୟ ବେହାର ପରିତ୍ୟାଗ ପୂର୍ବକ ବିହାରରେ ବାସ କରୁଥିଲେ ଓ ଧର୍ମ ପ୍ରଚାର କାରଣ ସିଂହଳ ଦ୍ୱୀପକୁ ଗମନ-କରିଥିଲେ । ଅଶୋକଙ୍କ ପରଲୋକ ଗମନଠାରୁ ସୁବିଖ୍ୟାତ ରାଜାବିକ୍ରମାଦିତ୍ୟ ପର୍ଯ୍ୟନ୍ତ ଭାରତବର୍ଷର ପୁରାବୃତ୍ତ ଅତି ଅସ୍ପଷ୍ଟ ଓ ଅପରିଜ୍ଞେୟ, ଏପରି କିମ୍ବଦନ୍ତୀ ଉପନ୍ୟାସ ଅଛି ଯେ, ଏହି ସମୟରେ ଭାରତବର୍ଷର ପଶ୍ଚିମ ପ୍ରଦେଶରେ ଏକ ହିନ୍ଦୁରାଜବଂଶ ପ୍ରବଳ ହୋଇ ଥିଲେ । ଉଜ୍ଜୟିନୀ ନଗରୀରେ ସେମାନଙ୍କର ରାଜଧାନୀ ଥିଲା; ରାଜାବିକ୍ରମାଦିତ୍ୟ ଏହି ବଂଶ ସମ୍ଭୂତ ।

ଖ୍ରୀଷ୍ଟ ଜନ୍ମର ଛପନ ବର୍ଷ ପୂର୍ବେ ବିକ୍ରମାଦିତ୍ୟ ଜନ୍ମ ଗ୍ରହଣ କରିଥିଲେ । ସମ୍ବତ ନାମକ ତାହାଙ୍କର ଶକ ସେହି ଦିନଠାରୁ ଗଣନା କରି ଯାଏ । ବିକ୍ରମାଦିତ୍ୟ ଅତି ଜ୍ଞାନୀ ଓ ପ୍ରବଳ ପରାକ୍ରାନ୍ତ ନରପତି ଥିଲେ । ତାହାଙ୍କ ଅଧିକାର ସମୟରେ ସଂସ୍କୃତ ଭାଷା ଅନେକ ଉନ୍ନତ ଲାଭ କଲା ଓ ତାହାଙ୍କର ସଭା ତାତ୍କାଳିକ ଯାବତୀୟ ପଣ୍ଡିତଙ୍କ ଆଶ୍ରମ ସ୍ଥଳ ଥିଲା । ବିକ୍ରମାଦିତ୍ୟ ସଭାରେ ୯ ଜଣ ସର୍ବପ୍ରଧାନ ପଣ୍ଡିତ ଥିଲେ; ସେହି ୯ ଜଣ ନବରତ୍ନ ନାମରେ ବିଖ୍ୟାତ । ଭାରତବର୍ଷର କବି ଚୂଡ଼ାମଣି କାଳିଦାସ ସେହି ନବରତ୍ନ ମଧ୍ୟରେ ପ୍ରଧାନ ରତ୍ନ ଥିଲେ ।

ବିକ୍ରମାଦିତ୍ୟ ଉତ୍ତାରେ ଶାଳୀବାହନ ନାମରେ ଏକ ପ୍ରବଳ ପରାକ୍ରାନ୍ତ ଭୂପତି ଜନ୍ମଗ୍ରହଣ କଲେ । ଏହି ରାଜା ମଧ୍ୟ ଏକ ଶାକ ପ୍ରଚଳନ କରନ୍ତି । ତାହାର ନାମ ଶକାବ୍ଦା । ୧୩୪ ସମ୍ବତରେ ଏହା ଆରମ୍ଭ ହୁଏ । ଶାଳୀବାହନ ରାଜାଙ୍କ-ଠାରୁ ମୁସଲମାନମାନଙ୍କର ଆକ୍ରମଣ ପର୍ଯ୍ୟନ୍ତେ ଭାରତବର୍ଷର ପଶ୍ଚିମ ପ୍ରଦେଶରେ ଉଜ୍ଜୟିନୀ ରାଜାମାନଙ୍କର ଅତ୍ୟନ୍ତ ପ୍ରଭାବ ଥିଲା । ଖ୍ରୀଷ୍ଟ ଜନ୍ମ ୬୦ ବରଷ ପୂର୍ବେ ଅନ୍ଧ୍ର ଦେଶୀୟ ଭୂପାଲମାନେ ମଗଧସିଂହାସନ ଅଧିକାର କରି କ୍ରମାଗତ ୫ ବରଷ କାଳ ଭାରତବର୍ଷର ପୂର୍ବସ୍ଥ ଦେଶସମୂହ ନିଷ୍କଣ୍ଟକରେ ଶାସନ କରିଥିଲେ ଏମାନଙ୍କର ଖ୍ୟାତି ଓ ପ୍ରବଳତାର ଅନେକ ପ୍ରମାଣ ମିଳେ । ରୋମଦେଶୀୟ ଗ୍ରନ୍ଥ-କର୍ତ୍ତାମାନେ ଏମାନଙ୍କୁ ଭାରତବର୍ଷର ସର୍ବ ପ୍ରଧାନ ରାଜା ବୋଲି ଗଣି ଅଛନ୍ତି । ପ୍ରବଳ ପରାକ୍ରାନ୍ତ ଶୂଦ୍ରକ ନାମଧେୟ ଏକ ରାଜା ଏହି ବଂଶରେ ଜନ୍ମଗ୍ରହଣ କରି-ଥିଲେ । ଏହି ନରପତିଙ୍କର ଆଉ ଦୁଇ ନାମ କର୍ଣ୍ଣ ଓ ମହାକର୍ଣ୍ଣ । ଅନ୍ଧ୍ର ଦେଶୀୟ ଶେଷ ନରପତିଙ୍କ ନାମ ପୁଲମନ । ପୁଲମନଙ୍କ ସହିତ ଚୀନ ସମ୍ରାଟଙ୍କର ପରିଚୟ ଥିଲା ଏହି ବିଷୟର ଅନେକ ପ୍ରମାଣ ମିଳଇ ଚୀନାମାନେ ଭାରତବର୍ଷର ପୁଲମନ ନାମକ ଏକ ନରପତିଙ୍କ ବର୍ଣ୍ଣନା କରନ୍ତି ଓ ତାହାଙ୍କର ନାମାନୁସାରେ ସମଗ୍ର

ଭାରତବର୍ଷକୁ ପୁଲମନ ଅର୍ଥାତ୍ ପୁଲମନଙ୍କ ଦେଶ ବୋଲି ବୋଲନ୍ତି । ପୁରାଣରେ ମଧ୍ୟ ପୁଲମନ ନାମକ ଅନ୍ଧ୍ରବଂଶୀୟ ନରପତିର ବର୍ଣ୍ଣନା ଅଛି । ଏଥିରୁ ବୋଧ ହୁଏ ଯେ ପୁରାଣରେ ଲିଖିତ ପୁଲମନ ଓ ଚୀନାମାନଙ୍କର ଜାଣିତ ପୁଲମନ ଏକ ଲୋକ ହେବେ । ଅନ୍ଧ୍ରବଂଶ ଲୋପ ହେଲାରୁ ତାହାଙ୍କର କର୍ମକାରକମାନେ ମଗଧ ରାଜ୍ୟ ବିଭାଗ କରି ନେଇଥିଲେ; ସେହି ଦିନଠାରୁ ମଗଧ ରାଜ୍ୟ ଅନେକ ଅଂଶରେ ବିଭକ୍ତ ହୋଇ ଯାଇଅଛି; କିନ୍ତୁ ସେହି ବିଭାଜିତ ରାଜ୍ୟର ସଠିକ ଇତିବୃତ୍ତ କିଛି ମିଳୁ ନାହିଁ । କେବଳ ଏକ ରାଜାର ନାମ ମିଳେ ତାହାଙ୍କର ନାମ ଭୋଜ । ଭୋଜ ଖ୍ରୀଷ୍ଟୀୟ ୧୦ ମ ଶତାବ୍ଦୀରେ ଧାରାବାର ନଗରରେ ସିଂହାସନ ସ୍ଥାପନ କରିଥିଲେ ପୁରାଣାଦିର ଲିଖନ ପ୍ରମାଣେ ଆମ୍ଭେମାନେ କେବଳ ଆର୍ଯ୍ୟାବର୍ତ୍ତର ଅଯୋଧ୍ୟା, ହସ୍ତିନାପୁର, ଇନ୍ଦ୍ରପ୍ରସ୍ଥ ଓ ମଗଧ ପ୍ରଭୃତି ଦେଶୀୟ ରାଜାମାନଙ୍କର ବିବରଣ ଲେଖିଲୁଁ । ତଦ୍‌ଭିନ୍ନ ଗୌଡ଼, ମାଳବ, ଗୁର୍ଜ୍ଜର, ପଞ୍ଚାଳ, ମିଥିଳା, ଅଜମୀର, ଜସଲ-ମିୟର ଜୟପୁର, ଓ କାଶ୍ମୀର ପ୍ରଭୃତି ଦେଶ ବହୁକାଳରୁ ପ୍ରସିଦ୍ଧ ଅଛି; କିନ୍ତୁ ସେ ସକଳ ଦେଶୀୟ ରାଜାମାନଙ୍କର କୌଣସି ବିବରଣ ମିଳୁ ନାହିଁ ।

---

## ପଞ୍ଚମ ଅଧ୍ୟାୟ ।

### ଦାକ୍ଷିଣାତ୍ୟର ଆଦିମ ବିବରଣ । ଚୋଳ ଓ ପାଣ୍ଡ୍ୟରାଜ୍ୟ ।

ଦାକ୍ଷିଣାତ୍ୟ, ଉଡିଶ୍ୟା, ତୈଲଙ୍ଗ, ଦ୍ରାବିଡ଼, କର୍ଣ୍ଣାଟ ଓ ମହାରାଷ୍ଟ୍ର ଏହି ପାଞ୍ଚ ଖଣ୍ଡରେ ବିଭକ୍ତ । ଏହି ସକଳ ଦେଶରେ ପର୍ଯ୍ୟାୟ କ୍ରମେ ଓଡିଆ, ତେଲଙ୍ଗୀ, ଦ୍ରାବିଡ଼ୀ, କର୍ଣ୍ଣାଟୀ ଓ ମହାରାଷ୍ଟ୍ରୀ ଏହି ପଞ୍ଚଭାଷା ପ୍ରଚଳିତ ହୁଏ ଓ ଲୋକମାନେ ମଧ୍ୟ ଏହି ସକଳ ଭାଷାରେ କଥାବାର୍ତ୍ତା କହନ୍ତି । ପୂର୍ବେ ଉଲ୍ଲେଖ କରା ହୋଇଅଛି ଯେ, ଦାକ୍ଷିଣାତ୍ୟ ଆରଣ୍ୟମୟ ଓ ଅସଭ୍ୟ ଜାତିର ବାସସ୍ଥାନ ଥିଲା । ପରେ ରାମଚନ୍ଦ୍ରଙ୍କ ସମୟଠାରୁ ହିନ୍ଦୁଜାତିମାନେ ପୂର୍ବୋକ୍ତ ନିବାସୀମାନଙ୍କୁ ତଡ଼ି ଦେଇ ସେହି ସକଳ ପ୍ରଦେଶରେ ବାସ କରୁଅଛନ୍ତି । ସର୍ବ ପ୍ରଥମ ହିନ୍ଦୁମାନେ ଦ୍ରାବିଡ଼ ଦେଶରେ ଚୋଳ ଓ ପାଣ୍ଡ୍ୟ ନାମକ ୨ ରାଜ୍ୟ ସ୍ଥାପନ କରନ୍ତି । ପାଣ୍ଡ୍ୟର ରାଜଧାନୀ ମଥୁରା ଓ ଚୋଳର ରାଜଧାନୀ କାଞ୍ଚୀ । ସମ୍ପ୍ରତି ଶେଷୋକ୍ତ ନଗରକୁ କାଞ୍ଚିବେଲମ ବୋଲାଯାଏ । ଉପର୍ଯ୍ୟୁକ୍ତ ଦୁଇ ରାଜ୍ୟ ସର୍ବଦା ବିବାଦ ବିସମ୍ବାଦରେ ଆକୁଳିତ ହୋଇଥିଲା; କିନ୍ତୁ ଦୀର୍ଘକାଳ ବ୍ୟାପୀ ସ୍ୱାଧୀନତାରତ୍ନରୁ ବଞ୍ଚିତ ହୋଇଥିଲା ନାହିଁ ।

ଅବଶେଷେ ୧୭୩୬ ଖ୍ରୃଷ୍ଟାବ୍ଦେ ପାଣ୍ଡ୍ୟ ରାଜ୍ୟ ଆର୍କାଡ଼ୁ ନବାବର ଅଧିକାର ଭୁକ୍ତ ହୁଏ ଏବଂ ଚନ୍ଦରାଜ୍ୟ ଜଣେ ମହାରାଷ୍ଟ୍ରୀୟର ହସ୍ତଗତ ହୋଇ ତଞ୍ଜୋର ରାଜ୍ୟ-ନାମେ ଅଭିହିତ ହୋଇଅଛି । ପାଣ୍ଡ୍ୟରାଜ୍ୟର ପଶ୍ଚିମେ ଆରବ୍ୟସାଗର ଉପକୂଳ-ରେ ଚେର ନାମକ ଏକ କ୍ଷୁଦ୍ରରାଜ୍ୟ ଥିଲା; ସେ ଏକ ସ୍ୱତନ୍ତ୍ର ରାଜ୍ୟ ନୁହଇ, ତ୍ରିବାଙ୍କୁଡ଼ ମଲବାର ଓ କୋଇମ୍ବାଟୁରରୁ କଯ୍ୟଦଂଶ ଘେନ ଏହି ରାଜ୍ୟ ସଘଟିତ ହୋଇଥିଲା । ପରେ ଇଂରାଜୀ ଦଶମ ଶତାବ୍ଦିରେ ଚେର ଉତ୍ସନ୍ନ ହେଲେ ସେହି ସକଲ ଅଂଶ ସ୍ୱ ସ୍ୱ ଦେଶରେ ଲୀନ ହୁଏ ।

ପୂର୍ବେ ମଲବାର ଓ କେନଡ଼ା କେରଳ ନାମରେ ଖ୍ୟାତ ଥିଲା । କଥିତ-ଅଛି, କ୍ଷତ୍ରିୟ କୁଲାନ୍ତକାରୀ ପରଶୁରାମ ଆର୍ଯ୍ୟାବର୍ତ୍ତରୁ ବ୍ରାହ୍ମଣମାନଙ୍କୁ ଆଣି ଏହି ନଗର ସ୍ଥାପନ କରନ୍ତି । ସେହି ବ୍ରାହ୍ମଣମାନେ ଏହି ଦେଶର ଅଧିକାରୀ ଥିଲେ । ସେମାନଙ୍କ ସ୍ଥାପିତ ଗୋଟିଏ ସଭା ଥିଲା, ସେହି ସଭାର ମତାନୁସାରେ ସମସ୍ତ ରାଜ-କାର୍ଯ୍ୟ ସମ୍ପାଦିତ ହେଉଥିଲା । କାଲକ୍ରମେ କେରଳ ମଲବାର ଓ କାନଡ଼ା ଏହି ଦୁଇ ଅଂଶରେ ବିଭକ୍ତ ହୋଇ ଦୁଇଜଣ କ୍ଷତ୍ରିୟ ରାଜାଙ୍କର ହସ୍ତଗତ ହୁଏ । ଇଂରେଜୀ ନବମ ଶତାବ୍ଦୀରେ ମଲବାରର ରାଜା ମୁସଲମାନଧର୍ମ ଗ୍ରହଣ କରିବାରୁ ପ୍ରଜାମାନେ ବିଦ୍ରୋହୀ ହୋଇ ମଲବାରର ଭିନ୍ନ ଭିନ୍ନ ଭାଗରେ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟ ସ୍ଥାପନ କଲେ, ତନ୍ମଧ୍ୟରେ ତାମୁରୀମାନଙ୍କର ରାଜ୍ୟ ପରାକ୍ରାନ୍ତ ଥିଲା । ଇଂରେଜୀ ଦ୍ୱାଦଶ ଶତାବ୍ଦୀରେ କନଡ଼ା ରାଜ୍ୟ ବଲ୍ଲୋଲ ବଂଶୀୟ ରାଜାମାନଙ୍କଦ୍ୱାରା ଉତ୍ସନ୍ନ ହେଲାରୁ ବିଜୟ ନଗରର ଅଧିପତିମାନେ ତାହା ଆତ୍ମସାତ୍ କଲେ

କର୍ଣ୍ଣାଟଦେଶ ବଲ୍ଲୋଲ ବଂଶୀୟ ରାଜାମାନଙ୍କର ଅଧିକାର ଭୁକ୍ତ ଥିଲା । ଏହି ରାଜାମାନେ ଆପଣାମାନଙ୍କୁ ଯଦୁବଂଶୀୟ ବୋଲି ପରିଚୟ ଦିଅନ୍ତି । ଇଂରେଜୀ ୧୩୧୦ ସାଲରେ ମୁସଲମାନଙ୍କଦ୍ୱାରା ଏହି ନଗର ବିଧ୍ୱଂଶିତ ହେଲା । କର୍ଣ୍ଣାଟ ଓ ମହାରାଷ୍ଟ୍ରର ପ୍ରାନ୍ତ ଭାଗରେ ଚାଲୁକ୍ୟ ଗୋଷ୍ଠୀୟ ରଜପୁତମାନେ କଲ୍ୟାଣ ନାମ-ଧେୟ ଏକ ନଗର ସ୍ଥାପନ କଲେ । ସେହି ନଗର ଏତେବେଳେ ଦେବଗିରି ବା ଦୌଲତାବାଦର ଅନ୍ତର୍ଗତ ହୋଇଅଛି । ହାଇଦରାବାଦର ପ୍ରାୟ ୬୫ କ୍ରୋଶ ଈଶାନ କୋଣରେ ବରଙ୍ଗଲ ନାମରେ ଏକ ନଗର ଥିଲା, ତାହାର ସମୀପବର୍ତ୍ତୀ ସମସ୍ତ ଭୂଭାଗକୁ ଅନ୍ଧ୍ରଦେଶ ବୋଲାଯାଏ । ବୋଧ ହୁଅଇ, ମଗଧଦେଶର ଅନ୍ଧ୍ର ଭୂପତିମାନେ ଏହି ଦେଶ ସମ୍ଭୂତ ହେବେ । ପ୍ରଥମରେ ଏହି ଦେଶ ବିକ୍ରମାଦିତ୍ୟ ଓ ଶାଲବାହନଙ୍କର ଅଧୀନରେ ଥିଲା, ତଦନନ୍ତର ଚଲ ରାଜାମାନେ ଓ ୯ ଜଣ ମୁସଲମାନ ଭୂପତି ରାଜପଣ କଲେ । ତଦବସାନେ ଖ୍ରୃଷ୍ଟୀୟ ଦଶମ ଶତାବ୍ଦୀ ଶେ-ଷରେ ଗଣପତି ରାଜାମାନଙ୍କର ରାଜତ୍ୱ ଆରମ୍ଭ ହେଲା । ପରେ ମୁସଲମାନମାନେ

ଏଦେଶରେ ଉତ୍ପାତ କରବାରୁ ଉଡ଼ିଶ୍ୟା କରଦ ରାଜ୍ୟଭୁକ୍ତ ହୋଇଥିଲା; କିନ୍ତୁ କିଛିକାଳ ଉତ୍ତାରେ ଗୋଲକୁଣ୍ଡାସ୍ଥ ମୁସଲମାନମାନଙ୍କଦ୍ୱାରା ଏହାର ଉଚ୍ଛେଦ ସାଧିତ ହୁଏ ।

ଉଡ଼ିଶ୍ୟା ।—ଭାରତବର୍ଷର ଅନ୍ୟାନ୍ୟ ପ୍ରଦେଶପରି ଉଡ଼ିଶ୍ୟାର ପ୍ରାଚୀନ ଇତିହାସ ମଧ୍ୟ ଅତ୍ୟନ୍ତ ଦୁର୍ଜ୍ଞେୟ । ଇଂ ୪୭୩ ବରଷ ପୂର୍ବ ଏଦେଶର ପୁରାବୃତ୍ତ କିଛିହିଁ ଜଣା ନାହିଁ । ସେହି ସାଲରେ କେଶରୀବଂଶୀୟ ରାଜା ଯଜାତି ଉଡ଼ିଶ୍ୟାର ସିଂହାସନ ଅଧିକାର କଲେ । ତଦନନ୍ତର ଗଙ୍ଗାବଂଶୀୟ ରାଜାମାନଙ୍କର ଅଧିକାର ଆରମ୍ଭ ହେଲା । ଗଙ୍ଗାବଂଶୀୟମାନେ ଅତ୍ୟନ୍ତ ପ୍ରବଳ ଓ ପରାକ୍ରାନ୍ତ ଥିଲେ । ଏମାନେ ସ୍ୱକୀୟ ବାହୁବଳରେ ଉତ୍ତରେ ତ୍ରିବେଣୀ ଓ ଦକ୍ଷିଣେ କୁମାରିକା ଅନ୍ତରୀପ ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କରିଥିଲେ । ଏମାନଙ୍କର ରାଜପଣ ସମୟରେ (୧୧୦୯) ଜଗନ୍ନାଥ ଦେବଙ୍କ ବର୍ତ୍ତମାନ ମନ୍ଦିର ନିର୍ମିତ ହୁଏ । ଏହି ମନ୍ଦିର ନିର୍ମାଣରେ ପ୍ରାୟ ୪୦ଲକ୍ଷ ଟଙ୍କା ବ୍ୟୟିତ ହୋଇଅଛି । କାଳସହକାରେ ଗଙ୍ଗାବଂଶୀୟମାନେ ହୀନପ୍ରଭ ହୋଇ ଆସନ୍ତେ ଏକ ରଜପୁତବଂଶ ସେମାନଙ୍କୁ ସିଂହାସନଚ୍ୟୁତ କଲେ । ସେହି ରଜ୍ଞ· ପୁତବଂଶୀୟ ଶେଷ ରାଜା ମୁକୁନ୍ଦଦେବଙ୍କ ସମୟରେ ଦିଲ୍ଲୀର ପଠାଣମାନେ ଉଡ଼ିଶ୍ୟା ଆକ୍ରମଣ କରିଥିଲେ । ପରେ ନାନା ଗୋଲମାଲ ଉପସ୍ଥିତ ହେବାରୁ ଇଂ ୧୫୫୦ ସାଲରେ ତୈଲିଙ୍ଗଦେଶୀୟ ଜଣେ ରାଜା ଉଡ଼ିଶ୍ୟା ଅଧିକାର କଲେ । ଅବଶେଷେ ଇଂ ୧୫୭୮ ସାଲରେ ଉଡ଼ିଶ୍ୟା ମୋଗଲ ସାମ୍ରାଜ୍ୟର ଅନ୍ତର୍ଗତ ହେଲା । ଇଦାନୀଂ ଇଂ ୧୮୦୩ ସାଲଠାରୁ ଉଡ଼ିଶ୍ୟା ପ୍ରଜାବତ୍ସଳ ବ୍ରିଟିଶ ଅଧିକାରରେ ଅଛି ।

ମହାରାଷ୍ଟ୍ର—ଏହି ଦେଶରେ ଶାଳବାହନ ରାଜା ରାଜତ୍ୱ କରିଥିଲେ । ଇଂରେଜୀ ଦ୍ୱାଦଶ ଶତାବ୍ଦୀରେ ଯଦୁବଂଶୀୟ ରାଜାମାନେ ଦେବଗିରି ନଗର ସ୍ଥାପନ କଲେ ।

---

## ଷଷ୍ଠ ଅଧ୍ୟାୟ ।

### ଆଦିମ ଭାରତବର୍ଷୀୟମାନଙ୍କର ସଭ୍ୟତା ଓ ପାଣ୍ଡିତ୍ୟ ।

**ପ୍ରାଚୀନ ଭାରତବର୍ଷର ଇତିହାସ ବିବିଧ କଳ୍ପିତ ଉପନ୍ୟାସରେ କଳୁଷିତ ଅଟେ; ମାତ୍ର ପୁରାକାଳର ହନୁମାନଙ୍କର ଅଭ୍ରାନ୍ତ ଦର୍ପଣସ୍ୱରୂପ ବିବିଧ ଗ୍ରନ୍ଥ ଦୁଷ୍ପ୍ରାପ୍ୟ ନୁହଇ । ପ୍ରାଂଶୁ ଓ ବାମନ, ବୀରପୁରୁଷ ଓ ହୀନବଳ ମଧ୍ୟରେ ଯେତେ ପ୍ରଭେଦ**

ପୁରାକାଳର ଓ ଅଧୁନାତନ ହିନ୍ଦୁ ମଧ୍ୟରେ ଯେତେ ପ୍ରଭେଦ ; ପୂର୍ବକାଳରେ ବୈଦେଶିକ ଭ୍ରମଣକାରୀମାନେ ଭାରତବର୍ଷକୁ ଆସି, ଆର୍ଯ୍ୟଜାତିର ସାହସିକତା, କାନ୍ତିଷ୍ଣୁତା ଓ ସାରଲ୍ୟ ପ୍ରଭୃତିର ପରାକାଷ୍ଠା ଦେଖି ବିସ୍ମିତ ଓ ଚମତ୍କୃତ ହେଉଥିଲେ; ଅଧୁନାତନ ହିନ୍ଦୁମାନଙ୍କର ଉଲ୍ଲିଖିତ ଗୁଣସମୂହର ଅଭାବତା ପରିକୀର୍ତ୍ତିତ ହେଉଅଛି । ପୂର୍ବକାଳେ ହିନ୍ଦୁମାନେ ଦିଗ୍ବିଜୟ କରିବାକୁ ନିର୍ଗତ ହୋଇ ଚୀନ, ତାତାର ପ୍ରଭୃତି ଦେଶରେ ସ୍ୱୀୟ ପତାକା ଉଡ୍ଡୀନ କରିଥିଲେ । ସମ୍ପ୍ରତି ଏକ କ୍ଷୁଦ୍ର ଦ୍ୱୀପରୁ କେତେକ ଲୋକ ଆସି ଭାରତଭୂମି ଶାସନ କରୁଅଛନ୍ତି । ପୂର୍ବେ ହିନ୍ଦୁମାନଙ୍କର ବାଣିଜ୍ୟ ବୋଇତସକଳ ଯାବା, ସୁମାତ୍ରା ପ୍ରଭୃତି ଦ୍ୱୀପକୁ ଗମନ କରୁଥିଲା; କିନ୍ତୁ ଅଧୁନାତନ ହିନ୍ଦୁମାନେ ପୋତାରୋହଣ କଲେ ସମାଜଚ୍ୟୁତ ହେଉଅଛନ୍ତି । ଶୌର୍ଯ୍ୟାଦି ସଦ୍‌ଗୁଣ ସହିତ ହିନ୍ଦୁମାନଙ୍କର ଧର୍ମ ଓ ସାମାଜିକ ନିୟମର ମଧ୍ୟ ଅନେକ ପରିବର୍ତ୍ତନ ହୋଇଅଛି । ଅଧୁନାତନ ହିନ୍ଦୁମହିଳାମାନେ ଦାସୀପରି ବ୍ୟବହୃତ, ପୋଷିତ ପକ୍ଷୀପରି ଅବରୁଦ୍ଧ ଓ ଇତର ପ୍ରାଣୀପରି ସାମାନ୍ୟାବସ୍ଥାରେ ଦିନଯାପନ କରୁଅଛନ୍ତି; ମାତ୍ର ପନ୍ଦରଶତ ବରଷ ପୂର୍ବେ ସୀମନ୍ତିନୀମାନେ ମାନ୍ୟା ଶିକ୍ଷିତା ଓ ଅପେକ୍ଷାକୃତ ଅନବରୁଦ୍ଧା ଥିଲେ । ପୂର୍ବେ ବାଲ୍ୟବିବାହ ନିୟମ ପ୍ରଚଳିତ ନ ଥିଲା । ଅତି ସ୍ୱୟମ୍ବର ପ୍ରଥା ପ୍ରଚଳିତ ଥିବାରୁ ସ୍ପଷ୍ଟ ଅନୁମିତ ହେଉଅଛି ଯେ, ନାରୀମାନେ ମଧ୍ୟ ଅଧିକ ବୟସରେ ସ୍ୱାମୀ ଗ୍ରହଣ କରୁଥିଲେ । ଏଥିପାଇଁ କେହି ଚତୁର୍ଦ୍ଦଶ ପୁରୁଷନିରୟଗମନବିଭୀଷିକାରେ ଭୀତ ହେଉ ନ ଥିଲେ । ପୂର୍ବେ କେବଳ ଶୂଦ୍ରଜାତିଙ୍କପ୍ରତି ଅନେକ କଠିନ ନିୟମ ପ୍ରଚଳିତ ଥିଲା, ସମ୍ପ୍ରତି ତାହା ନିରାକୃତ ହୋଇ ଅଛି । ପୂର୍ବକାଳେ ଯେତେବେଳେ ପ୍ରାୟ ସମସ୍ତ ଭୂମଣ୍ଡଳ ଘୋର ମୂର୍ଖତା ରଜନୀରେ ଆଚ୍ଛନ୍ନ ଥିଲା ସେତେବେଳେ ଭାରତବର୍ଷରେ ବିଦ୍ୟାର ବିମଳ ଆଲୋକ କୌଣସିପ୍ରକାରେ ନିସ୍ପ୍ରଭ ନ ଥିଲା । ତୀକ୍ଷ୍ଣମନୀଷାସମ୍ପନ୍ନ ହିନ୍ଦୁମାନେ ଦର୍ଶନଶାସ୍ତ୍ର ସମ୍ବନ୍ଧୀୟ ଯେ ସକଳ ମତ ଉଦ୍ଭାବନ କରି ଯାଇଅଛନ୍ତି, ଇଉରୋପୀୟ ପଣ୍ଡିତମାନେ ତାହା ସମାଦର କରି ପାଠ କରନ୍ତି । ସେହି ହିନ୍ଦୁମାନେ ଜ୍ୟୋତିର୍ବିଦ୍ୟାରେ ମଧ୍ୟ ଅତ୍ୟନ୍ତ ବିଶାରଦ ଥିଲେ । ଗ୍ରହଣ ଗଣନାର ଉତ୍କୃଷ୍ଟ ଉପାୟ ଉଦ୍ଭାବନ କରି ଯାଇଅଛନ୍ତି ; କେହି' ମେରୁଦଣ୍ଡ ଉପରେ ପୃଥିବୀର ଆହ୍ନିକଗତିର ଅବସ୍ଥାନ ଓ ମାଧ୍ୟାକର୍ଷଣର ମଧ୍ୟ ପ୍ରସଙ୍ଗ କରି ଯାଇଅଛନ୍ତି । ଏତଦ୍ଭିନ୍ନ ପାଟୀଗଣିତ, ବୀଜଗଣିତ ଓ ତ୍ରିକୋଣମିତି ପ୍ରଭୃତି ଗ୍ରନ୍ଥରେ ଅତ୍ୟନ୍ତ ନିପୁଣ ଥିଲେ । ଦିଗ୍‌ଦିଗନ୍ତରବ୍ୟାପିନୀ ଦଶଗୁଣୋତ୍ତର ଲିଖନପ୍ରଣାଳୀ ଅଦ୍ୟାପି ହିନ୍ଦୁମାନେ ପ୍ରକାଶ କରନ୍ତି । ଗଣିତ ଓ ଦର୍ଶନଶାସ୍ତ୍ରରେ ହିନ୍ଦୁମାନେ ଯେପ୍ରକାର ବ୍ୟୁତ୍ପନ୍ନ ଥିଲେ, ତର୍କ ଓ ଶବ୍ଦଶାସ୍ତ୍ରରେ ମଧ୍ୟ ତାହାଠାରୁ ନ୍ୟୂନ ନ ଥିଲେ । ଭାଷା-

କତ୍ପ ପଣ୍ଡିତମାନେ ବୋଲନ୍ତି ସଂସ୍କୃତପଦ୍ୟ ସୁଲଳିତ ଓ ସୁଶ୍ରାବ୍ୟ ଓ ସୁସମ୍ପନ୍ନଭାଷା ଅଉ ନାହିଁ: ସଂସ୍କୃତଭାଷାରେ ପ୍ରକାଶ ହୋଇ ନ ପାରେ ଏମନ୍ତ ଭାବ ନିତାନ୍ତ ବିରଳ । ଏତାଦୃଶ ଉତ୍କୃଷ୍ଟଭାଷା ପାଇ ହିନ୍ଦୁମାନେ ଯେ ବିବିଧ କାବ୍ୟ ରଚନା କରିଅଛନ୍ତି ତହିଁରେ ଆଶ୍ଚର୍ଯ୍ୟ କି ? ଏହା ସାହସକରି ବୋଲାଯାଇ ପାରେ ଯେ, ଯେତେକାଳ ଅବନୀମଣ୍ଡଳସ୍ଥ ମନୁଷ୍ୟମାନଙ୍କର କାବ୍ୟ ଶାସ୍ତ୍ରପ୍ରତି ଶ୍ରଦ୍ଧା ଥିବ, ତାବତ୍କାଳ ବାଲ୍ମୀକି ଭବଭୂତି କାଳିଦାସ ପ୍ରଭୃତି କବିମାନଙ୍କର ନାମ କଦାଚ ଅପନୀତ ହେବ ନାହିଁ ।

---

## ସପ୍ତମ ଅଧ୍ୟାୟ ।

ମୁସଲମାନମାନଙ୍କର ଉତ୍ପତ୍ତି । ମହମ୍ମଦ । ମୁସଲମାନ ଧର୍ମପ୍ରଚାର । ଦିଗ୍ବିଜୟ । ମହମ୍ମଦ କାଶିମଙ୍କର ହିନ୍ଦୁରାଜ୍ୟ ଆକ୍ରମଣ । କାଶିମଙ୍କର ମୃତ୍ୟୁ । ସାମନିରାଜ୍ୟ । ଅଲପ୍ତଗିନ । ଶବକ୍ତଗିନ । ଭାରତବର୍ଷର ଅବସ୍ଥା ।

ଇଂ ୫୬୯ ସାଲରେ ମୁସଲମାନଧର୍ମର ସ୍ଥାପନକର୍ତ୍ତା ମହମ୍ମଦ ଆରବଦେଶର ଅନ୍ତର୍ଗତ ମକ୍କାନଗରରେ ଜନ୍ମଗ୍ରହଣ କରିଥିଲେ । ମହମ୍ମଦଙ୍କ ଜନ୍ମସମୟରେ ଆରବୀୟମାନେ ନାନା ଦେବଦେବୀଙ୍କର ବିଶେଷରେ ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ, ନକ୍ଷତ୍ରାଦିର ଆରାଧନା କରୁଥିଲେ । ମହମ୍ମଦ ସ୍ୱଭାବରେ ଈଶ୍ୱରଚିନ୍ତାରେ ଅନୁରକ୍ତ ଥିଲେ, ବ୍ୟାପକକାଳଚିନ୍ତାର ପର ତାହାଙ୍କର ଦୃଢ଼ବିଶ୍ୱାସ ଜନ୍ମିଲା ଯେ, ପରମେଶ୍ୱର ନିରାକାର ଓ ଅଦ୍ୱିତୀୟ । ସେହି କେବଳ ମନୁଷ୍ୟମାନଙ୍କର ଉପାସ୍ୟଦେବତା ଓ ତ୍ରାଣକର୍ତ୍ତା । ତାହାଙ୍କ ମନମଧ୍ୟରେ ଏହି ନିର୍ମଳତତ୍ତ୍ୱ ଉଦ୍ଭାବିତ ହୁଅନ୍ତେ କିପ୍ରକାରେ ଏହା ସାଧାରଣଙ୍କ ନିକଟରେ ପ୍ରଚାର କରିବେ, ଏହି ଚିନ୍ତାରେ ନିମଗ୍ନ ହେଲେ । ସେ ସାଂସାରିକ ବିଷୟକର୍ମରେ ପ୍ରବୃତ୍ତ ନ ହୋଇ ସନ୍ନିହିତ ହିରାପର୍ବତର ଗୁହାରେ ପ୍ରବେଶପୂର୍ବକ ଅନନ୍ୟମନରେ ସ୍ୱମତ ପ୍ରଚାରର ଉପାୟ ଅନୁଷ୍ଠାନ ଓ ପରମାତ୍ମାଙ୍କ ଚିନ୍ତାରେ ସମୟ ଯାପନ କରିବାକୁ ଲାଗିଲେ ।

ଅବଶେଷେ ତାହାଙ୍କର ଚାଳିଶବର୍ଷ ବୟସ ସମୟରେ ସେ ସାହସପୂର୍ବକ ନିଜମତ ପ୍ରକାଶ କରିବାକୁ ଆରମ୍ଭ କଲେ । "ପରମେଶ୍ୱର ଅଦ୍ୱିତୀୟ ଓ ନିରାକାର । ଲୋକମାନଙ୍କର ଭ୍ରମ ଦୂରକରି ଯଥାର୍ଥ ଧର୍ମ ପ୍ରଚାର କରିବା କାରଣ ସେ ଆମ୍ଭକୁ ପ୍ରେରଣକରି ଅଛନ୍ତି ଓ କୋରାନନାମକ ଏକ ଯଥାର୍ଥ ଧର୍ମଗ୍ରନ୍ଥ ପ୍ରଦାନ କରିଅଛନ୍ତି ତହିଁରେ ସକଳ ଧର୍ମର ସାର ସଙ୍କଳିତ ଅଛି" । ନିଜ ପାରିବାରିକ

ଲୋକମାନେ ସ୍ୱମତର ବଶମ୍ବଦ ହେଲା ଉତ୍ତାରେ ସେ ପ୍ରକାଶ୍ୟରୂପେ ପ୍ରଚାର ଆରମ୍ଭ କଲେ; କିନ୍ତୁ ସହସା କୃତକାର୍ଯ୍ୟ ହୋଇ ପାରିଲେ ନାହିଁ । ପ୍ରାଚୀନ ମତା-ବଲମ୍ବିମାନେ ତାଙ୍କୁ ଧର୍ମଦ୍ୱେଷୀ ଜାଣି ତାଙ୍କ ପ୍ରାଣନାଶ କରିବାକୁ ଉଦ୍ୟତ ହେଲେ, ମହମ୍ମଦ ସେହି ଭୟରେ ମକ୍କାରୁ ମଦିନାକୁ ପଳାଇଲେ । ମଦିନାରେ ତାହାଙ୍କ ମତ ଆଦରପୂର୍ବକ ପରିଗୃହୀତ ହେଲା । ମହମ୍ମଦ ସ୍ୱୀୟ ଶିଷ୍ୟମାନଙ୍କର ନାମ ମୁସଲମାନ ଓ ତଦ୍ଭିନ୍ନ ଉକ୍ତ ଯାବତୀୟ ଲୋକର ନାମ କାଫର ଅର୍ଥାତ୍ ଧର୍ମଭ୍ରଷ୍ଟ ଥୋଇଲେ । ମହମ୍ମଦ ମକ୍କାରୁ ମଦିନାକୁ ପଳାଇବା ଦିନ ଅର୍ଥାତ୍ ଇଂ ୬୨୨ ସାଲ ଠାରୁ ମୁସଲମାନମାନଙ୍କର ହିଜରିଶାକ ଗଣିତ ହୁଅଇ । ପ୍ରଥମେ ମହମ୍ମଦ ଯୁକ୍ତିମାର୍ଗ ଅବଲମ୍ବନ କରି ସ୍ୱକୀୟ ମତ ପ୍ରଚାର କରୁଥିଲେ, କିନ୍ତୁ ମଦିନାକୁ ଆସି କାଫରମାନଙ୍କ ବିରୁଦ୍ଧରେ ତରବାରି ଧାରଣ କରିବାପାଇଁ ଉପଦେଶ ଦେଇ କହିଲେ "ସମ୍ପ୍ରତି ପରମେଶ୍ୱର ଆଜ୍ଞା କରିଅଛନ୍ତି, ପୃଥିବୀର ଭ୍ରମ ନିରାକରଣ କରିବା କାରଣ ତରବାରି ଧାରଣ କରିବା ଉଚିତ ଏବଂ ଅମ୍ଭ ଅଭିଲଷିତ କାର୍ଯ୍ୟ ସାଧନ କରିବାକୁ ଯାଇ, ଯେଉଁମାନେ ନିଧନ ପ୍ରାପ୍ତ ହେବେ, ସେମାନେ ସ୍ୱର୍ଗରେ କଜ୍ଜଳନୟନା ରମଣୀମାନଙ୍କ ସହିତ ପରମସୁଖରେ ଦିନଯାପନ କରିବେ" । ଆରବୀୟମାନେ ସ୍ୱଭାବରେ ସମରପ୍ରିୟ, ତେଣୁ ତାହାଙ୍କର ଆଦିଷ୍ଟକର୍ମ ସତ୍ୱର ସମ୍ପାଦିତ ହୋଇଥିଲା । ଏହି ଉପାୟଦ୍ୱାରା ମହମ୍ମଦଙ୍କ ମୃତ୍ୟୁ ପୂର୍ବେ ମୁସଲମାନମା-ନଙ୍କର ପତାକା ସିନ୍ଧୁନଦୀଠାରୁ ସ୍ପେନ ପର୍ଯ୍ୟନ୍ତ ଉଡ୍ଡୀନ ହେଲା ।

ଏଥର ଅମ୍ଭେ ଦୁଃଖର କାହାଣୀ ଲେଖିବାକୁ ପ୍ରବୃତ୍ତ ହେଲୁଁ । ସମରେ-ନ୍ଦ୍ର ଅର୍ଥଗୃଧ୍ନୁ ଖଲିଫା ଅର୍ଥାତ୍ ମହମ୍ମଦଙ୍କ ଉତ୍ତରାଧିକାରିମାନେ ରତ୍ନଗର୍ଭା ଭାରତବର୍ଷ ଉପରେ ସତୃଷ୍ଣ ଦୃଷ୍ଟିପାତ କଲେ ।

ଇଂରାଜୀ ୭୦୫ ସାଲଠାରୁ ୭୧୫ ସାଲ ପର୍ଯ୍ୟନ୍ତ ଓ୍ୱାଲିଦ ନାମକ ପୁରୁଷ ଖଲିଫୀୟ ସିଂହାସନରେ ଆରୂଢ ଥିଲେ । ତାହାଙ୍କର ଅଧିକାର ସମୟରେ ସିନ୍ଧୁ ଦେଶର ଅନ୍ତର୍ଗତ ଦେବାଲ ନାମକ ସ୍ଥାନରେ ଖଣ୍ଡେ ଆରବୀ ବୋଇତ ଧରା ପଡିଲା । ଓ୍ୱାଲିଦ ସିନ୍ଧୁଦେଶାଧିପତି ଡାହିରଙ୍କୁ ସେହି ଅର୍ଣ୍ଣବତରୀ ମାଗି ପଠାଇ-ବାରୁ ସେ ଉତ୍ତର ଦେଲେ "ଅମ୍ଭେ ଓ୍ୱାଲିଦଙ୍କର ଅଧୀନ ନୋହୁଁ" । ଓ୍ୱାଲି-ଦଙ୍କର ବସୋରା ନଗରସ୍ଥ ଶାସନକର୍ତ୍ତା ସେହି ଉତ୍ତରରେ ଅସନ୍ତୁଷ୍ଟ ହୋଇ, ଛ ସହସ୍ର ସୈନ୍ୟ ସହିତ ମହମ୍ମଦ କାଶିମଙ୍କୁ ସିନ୍ଧୁରାଜ୍ୟ ଆକ୍ରମଣ ନିମନ୍ତେ ପଠାଇ ଦେଲେ । କାଶିମ ଦେବାଲରେ ପହୁଞ୍ଚିଲାକ୍ଷଣି ତନ୍ନଗର ଅଧିକାର କଲେ, ଏବଂ ସିନ୍ଧୁନଦୀ ପାର ହୋଇ ସିନ୍ଧୁରାଜ୍ୟର ତଦାନୀନ୍ତନ ରାଜଧାନୀ ଅଲୋର ନଗରର ବିରୁଦ୍ଧରେ ଯାତ୍ରା କଲେ । ଏହି ସମୟରେ ପାରସ୍ୟରୁ ଦୁଇସହସ୍ର ଅଶ୍ୱାରୋହୀ

ସେନା କାଶିମଙ୍କ ସାହାଯ୍ୟାର୍ଥ ଉପସ୍ଥିତ ହେଲେ । ଏଣେ ଡାହିର ପଞ୍ଚାଶସହସ୍ର ସୈନ୍ୟ ଘେନି ପ୍ରତୀକ୍ଷା କରୁଥିଲେ । କାଶିମ ଆପଣାର ସୈନ୍ୟବଳ ଅଳ୍ପ ଦେଖି ଗୋଟିଏ ଦୁର୍ଗମ ସ୍ଥାନ ମନୋନୀତ କରି, ସେଠାରେ ହିନ୍ଦୁମାନଙ୍କ ଆକ୍ରମଣ ପ୍ରତିଘାତର ପନ୍ଥାରେ ରହିଲେ । ଦୈବ ତାଙ୍କର ଅନୁକୂଳ ହେଲା । ତାଙ୍କ ସେନାମାନଙ୍କ ନିକ୍ଷିପ୍ତ ଗୋଟାଏ ଜ୍ୱଳନ୍ତ କନ୍ଦୁକ ଆସି ଡାହିରଙ୍କ ହସ୍ତୀକୁ ଆହତ କରିବାରୁ ହସ୍ତୀ ଭୀତ ହୋଇ ରଣସ୍ଥଳରୁ ପଳାଇଲା । ରାଜସେନାମାନେ ରାଜାଙ୍କର ପଳାଇବା ଭାବି ରଣଭଙ୍ଗ ଦେଲେ । ହସ୍ତୀ କିଞ୍ଚିତ୍ ଶାନ୍ତ ହେବାମାତ୍ର ରାଜା ଅବରୋହଣ କରି ଅଶ୍ୱପୃଷ୍ଠରେ ଆସି ସେମାନଙ୍କୁ ପୁନର୍ବାର ଏକତ୍ର କରିବାନିମନ୍ତେ ଅନେକ ଚେଷ୍ଟା କଲେ; କିନ୍ତୁ କୌଣସି ଫଳ ଦର୍ଶିଲା ନାହିଁ । ଅବଶେଷରେ ନିଜେ ପ୍ରଚୁର ସାହସିକତା ପ୍ରକାଶ କରି ଶତ୍ରୁ ହସ୍ତରେ ନିଧନ ପ୍ରାପ୍ତ ହେଲେ । ପରେ ରାଜଧାନୀ ଆକ୍ରାନ୍ତ ହୁଅନ୍ତେ ଡାହିରଙ୍କ ପତ୍ନୀ ସ୍ୱାମିର ଅନୁରୂପ ସାହସ ଅବଲମ୍ବନ କରି ନଗର ରକ୍ଷାର ଚେଷ୍ଟା କଲେ । ପରିଶେଷେ ଆହାର ସାମଗ୍ରୀ ଅପ୍ରତୁଳ ହେବାରୁ ଶତ୍ରୁ-ହସ୍ତେ ପତନ ଅପେକ୍ଷା ମରଣ ଶ୍ରେୟଃ ଜ୍ଞାନ କରି ସେ ନଗରବାସିମାନଙ୍କୁ ତାହାର ଆୟୋଜନ କରିବା ନିମନ୍ତେ କହିଲେ । ଏଥିରେ ସମସ୍ତେ ସମ୍ମତ ହେଲାରୁ ସର୍ବତ୍ର ଚିତା ପ୍ରଜ୍ୱଳିତ ହେଲା । ସ୍ତ୍ରୀ ଓ ଶିଶୁମାନେ ଅଗ୍ନି ପ୍ରବେଶଦ୍ୱାରା ପ୍ରାଣ ତ୍ୟାଗ କଲେ । ତଦନନ୍ତର ପୁରୁଷମାନେ ସ୍ନାନାଦି ସମାପନ କରି ଶସ୍ତ୍ର ଧାରଣ ପୂର୍ବକ ଯୁଦ୍ଧାର୍ଥ ବହିର୍ଗତ ହେଲେ ଏବଂ ଅଳ୍ପକାଳ ମଧ୍ୟରେ ମୁସଲମାନଙ୍କ କର୍ତ୍ତୃକ ନିହତ ହେଲେ । ଏ ସମସ୍ତ ଘଟନା ଉତାରୁ ଆଉ ଏକ ସଂଗ୍ରାମ ହେଲା, ସେଥିରେ ସୁଦ୍ଧା କାଶିମ ଜୟୀ ହେଲେ ଏବଂ ଡାହିର ରାଜାଙ୍କର ସମସ୍ତ ରାଜ୍ୟ ଅଧିକାର କଲେ ।

ସିନ୍ଧୁଦେଶର ଜୟାବସାନେ କାଶିମ ଭାରତବର୍ଷ ମଧ୍ୟରେ ପ୍ରବେଶର ଉଦ୍ଯୋଗ କରୁଥିଲେ, ଏମନ୍ତ ସମୟରେ ଏକସ୍ତ୍ରୀର ଚାତୁର୍ଯ୍ୟ-ଜାଲ ତାଙ୍କ ପକ୍ଷରେ କାଳ ହୋଇ ପଡ଼ିଲା । ସମର ଶେଷରେ ସିନ୍ଧୁଦେଶର ଯେଉଁ ସମସ୍ତ ସ୍ତ୍ରୀ ବନ୍ଦୀ ହେଲେ, ତନ୍ମଧ୍ୟରେ ରାଜା ଡାହିରଙ୍କର ଦୁଇଟି କନ୍ୟା ଥିଲେ । ଏ ଦୁହେଁ ଯେମନ୍ତ ଉଚ୍ଚକୁଳଜାତା, ତେମନ୍ତ ଅସାଧାରଣ ରୂପଲାବଣ୍ୟସମ୍ପନ୍ନା ଥିଲେ । କାଶିମ ଏହି ଦୁଇ ସୁନ୍ଦରୀଙ୍କୁ ଖଲିଫାଙ୍କର ଉପଯୁକ୍ତ ଉପଭୋଗ୍ୟ ଜାଣି ତାଙ୍କ ସମୀପକୁ ପ୍ରେରଣ କଲେ । ଓୟାଲିଦ ଜ୍ୟେଷ୍ଠାଙ୍କ ରୂପରେ ମୋହିତ ହୋଇ ତାଙ୍କ ପ୍ରତି ସନ୍ତୃଷ୍ଟ ଦୃଷ୍ଟିପାତ କଲେ । ତହିଁରେ ସେ ବିଗଳିତ ଅଶ୍ରୁଧାରା ବର୍ଷଣ କରି କହିଲେ, "ହାସ୍ତ ! ମୁଁ ଏତେବେଳେ ଆପଣଙ୍କ ଅନୁଗ୍ରହର ଯୋଗ୍ୟ ନୁହେଁ, ଯେହେତୁ କାଶିମ ପୂର୍ବରେ ମୋର ଧର୍ମ ନଷ୍ଟ କରିଅଛନ୍ତି" । ଓୟାଲିଦ ଉତ୍ତର ଏପ୍ରକାର

ବ୍ୟବହାର ଶ୍ରବଣ ମାତ୍ର, କ୍ରୋଧାନ୍ଧ ହୋଇ ଅଜ୍ଞା କଲେ ଯେ, "କାଶିମକୁ ବଧ କରି ଅମ୍ଭ ସମୀପକୁ ଆଣ" । ଅଜ୍ଞା ସମ୍ପନ୍ନ ହେଲାରୁ ଓଲ୍ଯାଲିଦ ରାଜକୁମାରୀଙ୍କୁ କାଶିମଙ୍କ ଶବ ଦେଖାଇଲେ । ତେତେବେଳେ ରାଜକନ୍ୟା ହର୍ଷୋତ୍ଫୁଲ୍ଲ ନୟନରେ କହିଲେ କାଶିମ ସମ୍ପୂର୍ଣ୍ଣ ନିର୍ଦ୍ଦୋଷୀ, ପିତା ମାତାଙ୍କ ମୃତ୍ୟୁ ଓ ସେମାନଙ୍କ ପ୍ରକୃତି ବର୍ଗର ଅବମାନନାର ପ୍ରତିଶୋଧ ନେବା ନିମନ୍ତେ ମୁଁ ତାଙ୍କୁ ଏରୂପ ମିଥ୍ୟାପବାଦ ଦେଇଥିଲି ।

କାଶିମ ଭାରତବର୍ଷରେ ଯେଉଁ ସକଳ ଗ୍ରାମ ପରାଜୟ କରିଥିଲେ, ସେହି ସମସ୍ତ ଗ୍ରାମ ପଞ୍ଚତ୍ରିଂଶ ବରଷ ପର୍ଯ୍ୟନ୍ତ ମୁସଲମାନମାନଙ୍କର ଅଧୀନରେ ଥିଲା; ତଦନନ୍ତରେ ହିନ୍ଦୁମାନେ ଅସ୍ତ୍ର ଧାରଣ ପୂର୍ବକ ସେମାନଙ୍କୁ ବହିଷ୍କୃତ କରି ଦେଲେ । ଏହି ସକଳ ଘଟନାର ଦୁଇ ଶତାବ୍ଦୀର ଅନଧିକ କାଳ ମଧ୍ୟରେ ଖଲିଫାମାନଙ୍କର ନାମ ଓ ଗୌରବ ଅନେକ ହ୍ରାସ ହୋଇଗଲା; ସେମାନଙ୍କ ରାଜ୍ୟ ଛିନ୍ନ ଭିନ୍ନ ଏବଂ ତହିଁରୁ ଅନେକ ସ୍ୱସ୍ୱ ପ୍ରଧାନ ରାଜ୍ୟ ସମୁଦ୍ଭୂତ ହେଲା । ସେହି ସମୁଦାୟ ରାଜ୍ୟ ମଧ୍ୟରେ ସାମନ୍ତ ନାମା ପୁରୁଷଙ୍କ ସ୍ଥାପିତ ରାଜ୍ୟ ଉତ୍ତମରୂପେ ବିଖ୍ୟାତ ହୋଇ ଉଠିଲା ଏବଂ ୧୬୦ ବର୍ଷ ପର୍ଯ୍ୟନ୍ତ ଅଭଗ୍ନ ଥିଲା । ସାମନ୍ତ ରାଜ୍ୟ ପାରସ୍ୟର ପୂର୍ବଭାଗରେ ଅବସ୍ଥିତ ଥିଲା ।

ସାମନ୍ତ ରାଜ୍ୟର ପଞ୍ଚମ ରାଜାଙ୍କର ଅଲପ୍ତଗିନ ନାମରେ ଏକ ଦାସ ଥିଲା । ରାଜା ତାହାକୁ ବୁଦ୍ଧିମାନ୍ ଓ କାର୍ଯ୍ୟଦକ୍ଷ ଦେଖି କ୍ରମଶଃ ଉଚ୍ଚତର ପଦରେ ଅଭିଷିକ୍ତ ଏବଂ ଅବଶେଷରେ ପାରସ୍ୟର ଉତ୍ତରଭାଗରେ ଖୋରାସାନର ଶାସନକର୍ତ୍ତା ପଦରେ ନିଯୁକ୍ତ କଲେ । ସେହି ରାଜାଙ୍କ ମୃତ୍ୟୁ ପରେ ତାହାଙ୍କ ଉତ୍ତରାଧିକାରୀ କୌଣସି ବିଶେଷ କାରଣରୁ ଅଲପ୍ତଗିନଙ୍କୁ କର୍ମଚ୍ୟୁତ କଲେ ଏବଂ ଉତ୍ସଙ୍ଗେ ତାହାଙ୍କ ଜୀବନ ନାଶର ମଧ୍ୟ ସମ୍ଭାବନା ଥିଲା । ତେତେବେଳେ ଅଲପ୍ତଗିନ ଆପଣାର ନିତାନ୍ତ ବିଶ୍ୱାସୀ ଅନୁଚରମାନଙ୍କ ସଙ୍ଗରେ ପଳାଇ ଆସି, ଅଧୁନାତନ ଅଫଗାନ ସ୍ଥାନର ପାର୍ବତ୍ୟ ପ୍ରଦେଶରେ ଉତ୍ତୀର୍ଣ୍ଣ ହେଲେ ଏବଂ ଗଜ୍ନି ନଗରରେ ବାସସ୍ଥାନ ନିର୍ଦ୍ଦିଷ୍ଟ କଲେ । ସେ ଗଜ୍ନିର ସନ୍ନିହିତ ପ୍ରଦେଶରେ ଚଉଦବର୍ଷ ପର୍ଯ୍ୟନ୍ତ ରାଜତ୍ୱ କରି ପରଲୋକ ଗମନ କଲେ ।

ସବକ୍ତଗିନ ନାମକ ଅଲପ୍ତଗିନଙ୍କର ଗୋଟିଏ ଦାସ ଥିଲା । ଅଲପ୍ତଗିନ ନିଜେ ଯେରୂପ ହୀନାବସ୍ଥାରୁ ଉନ୍ନତପଦରେ ଆରୋହଣ କରିଥିଲେ, ଏ ବ୍ୟକ୍ତିଙ୍କ ପକ୍ଷରେ ମଧ୍ୟ ସେହିରୂପ ଘଟିଥିଲା । ଏ ଆପଣା ପ୍ରଭୁଙ୍କ ଦୁହିତାର ପାଣିଗ୍ରହଣ କରିଥିଲେ ଏବଂ ପ୍ରଭୁଙ୍କ ମୃତ୍ୟୁ ପରେ ନିର୍ବିଘ୍ନେ ତାଙ୍କ ସିଂହାସନରେ ଆରୋହଣ କଲେ । ସବକ୍ତଗିନ, ଲାହୋରପତି ଜୟପାଳଙ୍କୁ ପରାସ୍ତ କରି ସିନ୍ଧୁନଦୀର ପଶ୍ଚିମ ତୀର ପର୍ଯ୍ୟନ୍ତ ଗଜ୍ନି ରାଜ୍ୟ ବିସ୍ତୃତ କରିଥିଲେ । ପରେ ୯୯୭ ଖ୍ରୀଷ୍ଟାବ୍ଦରେ କାଳ-

ଘାତରେ ପତିତ ହେଲେ । ପ୍ରଥମେ ତାଙ୍କ ପୁତ୍ର ଇସ୍ମେଲ ପିତୃସିଂହାସନରେ ଅଧି-ରୂଢ଼ ହେଲେ । କିନ୍ତୁ ଅଳ୍ପଦିନ ମଧ୍ୟରେ ଇସ୍ମେଲଙ୍କ ସୁପ୍ରସିଦ୍ଧ ଭ୍ରାତା ମହେମୁଦ ତାଙ୍କୁ ପରାଭବ କରି ରାଜ୍ୟେ ଅଧୀଶ୍ୱର ହେଲେ । ମୁସଲମାନମାନଙ୍କ ମଧ୍ୟରେ ଏହାଙ୍କ ଦୌରାତ୍ମ୍ୟରେ ସର୍ବପ୍ରଥମେ ଭାରତବର୍ଷ ବିପର୍ଯ୍ୟସ୍ତ ଓ ବ୍ୟତିବ୍ୟସ୍ତ ହେଲା ଏବଂ ଏହାଙ୍କ ଉତ୍ତରକାଳଠାରୁ ହିନ୍ଦୁମାନଙ୍କର ସ୍ୱାଧୀନତା କୃଷ୍ଣପ୍ରତିପଚନ୍ଦ୍ରମାର ନ୍ୟାୟ କ୍ରମଶଃ କ୍ଷୟପ୍ରାପ୍ତ ଓ ବିଲୁପ୍ତ ହେବାର ଆରମ୍ଭ ହେଲା । ସେହି ଦୁଃଖକାହାଣୀ କହିବା ପୂର୍ବେ ମହେମୁଦଙ୍କ ରାଜ୍ୟାଭିଷେକ ସମୟରେ ଆର୍ଯ୍ୟାବର୍ତ୍ତରେ କେଉଁ ୨ ରାଜ୍ୟ ପ୍ରଧାନ ଥିଲା ଅତିସଂକ୍ଷେପରେ ତାହା ଲେଖା ଯାଉଅଛି ।

କାଶିମଙ୍କ ଆକ୍ରମଣ ସମୟରେ ଉଜ୍ଜୟିନୀ ସାମ୍ରାଜ୍ୟ ଛିନ୍ନଭିନ୍ନ ହୋଇଲା । ତୁଆରବଂଶୀୟ ରାଜାମାନେ ଦିଲ୍ଲୀରେ ରାଜଧାନୀ ସ୍ଥାପନ କରି ଚଉଆଡେ ଅନେକ ସ୍ଥାନ ଅଧିକାର କଲେ; ଗୁର୍ଜ୍ଜର ସ୍ୱାଧୀନ ହୋଇ ପ୍ରଥମେ ଚୌରବଂଶୀୟ, ପରେ ସୋଲଙ୍କିବଂଶୀୟ ରାଜାମାନଙ୍କର ଅଧିକୃତ ହେଲା । ଉଦୟପୁର ରାଜ୍ୟ କ୍ରମଶଃ ଅନେକ ବିସ୍ତୃତ ହୋଇଥିଲା । ଏହି ସକଳ ରାଜ୍ୟ ଛଡ଼ା ଅଜମିର, କାଲଞ୍ଜର, କନୋଜ ଓ ଗୋଆଲିଅର ରାଜ୍ୟର ବିଲକ୍ଷଣ ପ୍ରାଦୁର୍ଭାବ ଥିଲା । ବଙ୍ଗଦେଶରେ ବୈଦ୍ୟବଂଶୀୟ ସେନ ଉପାଧିଧାରୀ ରାଜାମାନେ ରାଜତ୍ୱ କରୁଥିଲେ । ମହେମୁଦଙ୍କ କିଛିଦିନ ପୂର୍ବେ ବଙ୍ଗାଧିପ ଆଦିଶୂର କନୋଜରୁ ପାଞ୍ଚଜଣ ବ୍ରାହ୍ମଣ ଆଣିଥିଲେ । ଏତେବେଳେ ସେହି ପାଞ୍ଚଙ୍କ ସନ୍ତତି ବଙ୍ଗଦେଶୀୟ ବ୍ରାହ୍ମଣମାନଙ୍କ ମଧ୍ୟରେ ପ୍ରଧାନ ଅଟନ୍ତି ଏବଂ ସେହି ପଞ୍ଚ ବ୍ରାହ୍ମଣଙ୍କ ପଞ୍ଚ ଭୃତ୍ୟରୁ କାୟସ୍ଥ ଜାତି ଉତ୍ପନ୍ନ ହୋଇ-ଅଛନ୍ତି ।

---

## ଅଷ୍ଟମ ଅଧ୍ୟାୟ ।

ମହେମୁଦଙ୍କର ପୁନଃ ପୁନଃ ଭାରତବର୍ଷ ଆକ୍ରମଣ । ସୋମନାଥ-ମନ୍ଦିର ।

ମହେମୁଦ ୩୦ ବରଷ ବୟସ ସମୟରେ ଗଜନୀ ସିଂହାସନରେ ଆରୋହଣ କଲେ । ସେ ଅତ୍ୟନ୍ତ ଅର୍ଥ ପିଶାଚ, ଦେବାରି ଓ ଗୌରବାକାଙ୍କ୍ଷୀ ଥିଲେ । ଭାରତବର୍ଷ ତାଙ୍କର ସକଳ ବାସନା ପୂରଣ କରିବାର ପ୍ରକୃତ କ୍ଷେତ୍ର ଅଟେ । ତେଣୁ ସେ ଭାରତବର୍ଷସ୍ଥ ଦେଶ ସମସ୍ତ ଲୁଣ୍ଠନ କରିବାକୁ ଇଚ୍ଛା କରି, ଇଂ ୧୦୦୧ ସାଲରେ ରଣବେଶ ଧାରଣପୂର୍ବକ ପେଶୋଆରଠାରେ ଉପସ୍ଥିତ ହେଲେ । ସେ ସ୍ଥାନରେ ଲାହୋରାଧିପତି ଜୟପାଲ ସର୍ବାଗ୍ରେ ଉପସ୍ଥିତ ଥିଲେ । ଉଭୟପକ୍ଷରେ ଘୋର

ସଂଗ୍ରାମ ହେଲା । ଜୟପାଳ ପରାସ୍ତ, ବନ୍ଦୀକୃତ ଓ ଅବଶେଷେ କରଦାନରେ ସ୍ୱୀକୃତ ହୋଇ ମୁକ୍ତିଲାଭ କଲେ । କିନ୍ତୁ ସେ ମ୍ଳେଚ୍ଛ ମୁସଲମାନଙ୍କଦ୍ୱାରା ଅପମା-ନିତ ହେବାରୁ ସ୍ୱୀୟ ପୁତ୍ର ଅନଙ୍ଗପାଳଙ୍କ ହସ୍ତରେ ରାଜ୍ୟଭାର ପ୍ରଦାନ କରି, ଅଗ୍ନି ପ୍ରବେଶଦ୍ୱାରା ପ୍ରାଣତ୍ୟାଗ କଲେ । ପରେ ଅନଙ୍ଗପାଳ ମହମ୍ମଦଙ୍କ ବିରୁଦ୍ଧାଚାରୀ ହେବାରୁ ମହମ୍ମଦ ଅନଙ୍ଗପାଳ ସହିତ ଯୁଦ୍ଧ କଲେ । ତହିଁରେ ଅନଙ୍ଗପାଳ ପରାସ୍ତ ହୋଇ କାଶ୍ମୀରକୁ ପଳାଇଗଲେ । ପରେ ମହମ୍ମଦ ଅନଙ୍ଗପାଳଙ୍କୁ ଆକ୍ରମଣ କରିବାର ଉଦ୍ୟମ କରୁଅଛନ୍ତି ଏମନ୍ତ ସମୟରେ ଶୁଣିଲେ ଯେ, ତାତାରୀୟମାନଙ୍କଦ୍ୱାରା ତାହାଙ୍କର ସିଂହାସନ ଆକ୍ରାନ୍ତ ହୋଇଅଛି; ତେଣୁ ସେ ଆପଣା ସିଂହାସନ ରକ୍ଷା ନିମନ୍ତେ ଗମନ କଲେ । ତାତାରୀୟମାନେ ଦୂରୀକୃତ ହୁଅନ୍ତେ, ମହମ୍ମଦ ପୁନର୍ବାର ଅନଙ୍ଗପାଳଙ୍କ ସହିତ ଯୁଦ୍ଧ କରିବାପାଇଁ ଭାରତବର୍ଷରେ ଉପସ୍ଥିତ ହେଲେ । ଏଣେ ଅନଙ୍ଗପାଳ ଦିଲ୍ଲୀ, କାନ୍ୟକୁବ୍ଜ, ଉଜ୍ଜୟିନୀ, ଗୋଆଲିୟର ଓ କାଲଞ୍ଜର ପ୍ରଭୃତି ନୃପତିମାନଙ୍କର ସାହାଯ୍ୟ ପାଇ ଆଗନ୍ତୁକ ଶତ୍ରୁ ସହିତ ଯୁଦ୍ଧ କରିବାପାଇଁ ପେଶୋଆର ନିକଟରେ ଉପସ୍ଥିତ ହେଲେ । ଉଭୟ ପକ୍ଷରେ ଘୋର ରଣ ହେଲାରୁ ପ୍ରଥମେ ମୁସଲମାନମାନେ ପରାସ୍ତ ହେଲେ । ଦ୍ୱିତୀୟ ଯୁଦ୍ଧରେ ହିନ୍ଦୁମାନେ ପରାଜିତ ହୋଇ ପଳାୟନ କଲେ। ମହମ୍ମଦ ପଳାତକ ସୈନ୍ୟମାନଙ୍କ ଅନୁସରଣରେ ଆସି, କାଙ୍ଗଡ଼ାର ସମୀପବର୍ତ୍ତୀ ଏକ ଦେବାଳୟର ବହୁକାଳ ସଞ୍ଚିତ ବିପୁଳ ସମ୍ପତ୍ତି ଲୁଣ୍ଠନ କରି ଗଜ୍‌ନୀକୁ ପ୍ରତ୍ୟାଗମନ କଲେ । ଏଥିଉତ୍ତାରେ ମହ-ମ୍ମଦ ଆଉ ୭ଥର ଭାରତବର୍ଷକୁ ଧାଡ଼ି ଦେଇଥିଲେ । ଇଂ ୧୦୧୦ ସାଲରେ ପଞ୍ଚମ ଥର ଭାରତବର୍ଷକୁ ଆସି ମୁଲତାନ ଅଧିକାର କରିଥିଲେ । ଷଷ୍ଠଥର ଥାନେଶ୍ୱର ଲୁଣ୍ଠନ, ସପ୍ତମଥର କାଶ୍ମୀର ଲୁଣ୍ଠନ କରିବାର ଉଦ୍ୟୋଗ କରିଥିଲେ । ନବମଥର କାନ୍ୟକୁବ୍ଜରେ ଉପସ୍ଥିତ ହେବାରୁ ତତ୍ରତ୍ୟ ରାଜା ଅନନ୍ୟ ଉପାୟ ହୋଇ ତାଙ୍କ ସହିତ ସନ୍ଧି କଲେ । ମହମ୍ମଦ ସେ ସ୍ଥାନରୁ ଯାଇ ମଥୁରାନଗର ଅବଲୁଣ୍ଠନ ପୂର୍ବକ ସ୍ୱଦେଶକୁ ଯାତ୍ରା କଲେ ।

କାନ୍ୟକୁବ୍ଜାଧିପତି ମହମ୍ମଦଙ୍କ ସହିତ ସନ୍ଧି କରିବାରୁ ସମସ୍ତ ହିନ୍ଦୁ ଭୂପାଳ ତାହାଙ୍କପ୍ରତି ଅତ୍ୟନ୍ତ ବିରକ୍ତିଭାବ ବହିଲେ । ଏହି ଉପଲକ୍ଷରେ କାଲଞ୍ଜ-ରାଧିପତି ତାହାଙ୍କର ପ୍ରାଣ ବଧ କଲେ । ମହମ୍ମଦ ଏହା ଶୁଣି, ମିତ୍ରବୈର ସାଧନ ନିମନ୍ତେ ଦଶମ ଓ ଏକାଦଶଥର ଭାରତବର୍ଷକୁ ଧାଡ଼ି ଦେଇ ସମସ୍ତ ଲାହୋର ଗଜ୍‌ନୀର ଅନ୍ତର୍ଗତ କରିଗଲେ । ଇଂ ୧୦୨୪ ସାଲରେ ମହମ୍ମଦ ଦ୍ୱାଦଶଥର ଭାରତକୁ ଆସି ଗୁର୍ଜ୍ଜର ଉପକୂଳସ୍ଥ ସୁପ୍ରସିଦ୍ଧ ସୋମନାଥ-ମନ୍ଦିର ଲୁଣ୍ଠନ କରି

ଶିବଲିଙ୍ଗଙ୍କୁ ୪ ଖଣ୍ଡ କରି ପକାଇଲେ । ସେହି ୪ ଖଣ୍ଡ ମଧ୍ୟରୁ ୨ ଖଣ୍ଡ ମକ୍କା-ମଦିନାକୁ (ଦେଉଳର ଚନ୍ଦନ କାଷ୍ଠର କପାଟ ସହିତ) ଅନ୍ୟ ଦୁଇଖଣ୍ଡ ଗଜ୍‌ନୀକୁ ପଠାଇଦେଲେ । ସେହି କପାଟ ବହୁକାଳ ଗଜ୍‌ନୀରେ ଥିଲା, ଲର୍ଡ ଏଲେନ୍‌ବରା ଗବର୍ଣ୍ଣରଙ୍କ ସମୟରେ ଗଜ୍‌ନୀ ଇଂରେଜମାନଙ୍କ ହସ୍ତଗତ ହୁଅନ୍ତେ ସେହି କପାଟ ଭାରତବର୍ଷକୁ ଅଣାଯାଏ । ଅଧୁନା ତାହା ଇଂଲଣ୍ଡକୁ ପ୍ରେରିତ ହୋଇଅଛି । ଇଂ ୧୦୩୦ ସାଲରେ ମହେମୁଦଙ୍କର ମୃତ୍ୟୁ ହୁଏ । ମହେମୁଦ ଅତ୍ୟନ୍ତ ଦୁର୍ଗ୍ରହ ଓ ଅର୍ଥପିଶାଚ ଥିଲେ ସତ୍ୟ; କିନ୍ତୁ ସେ ଅତି ନ୍ୟାୟପର ଓ ଧାର୍ମିକ ଥିଲେ । ତାହାଙ୍କ ବିଚାରସମ୍ବନ୍ଧୀୟ ନିମ୍ନଲିଖିତ ଦୃଷ୍ଟାନ୍ତରୁ ଅପକ୍ଷପାତିତାର ଯଥେଷ୍ଟ ପ୍ରମାଣ ମିଳେ ।

ଏକଦା ଜଣେ ପ୍ରଜା ଆସି ମହେମୁଦଙ୍କୁ କହିଲା "ମହିମା ! ଜଣେ ସିପାହୀ ବଳପୂର୍ବକ ମୋତେ ଘରୁ ବାହାର କରି ଦେଇ ମୋ ପତ୍ନୀର ଧର୍ମନଷ୍ଟ କରଇ" ସେ କହିଲେ "ପୁନର୍ବାର ତୋ ଘରଠାକୁ ଆସିଲେ ଆମ୍ଭକୁ ସମ୍ବାଦ ଦେବୁ" ତଦନୁସାରେ ଏକ ରାତ୍ରୀରେ ପ୍ରଜା ଆସି ସମ୍ବାଦ ଦେଲାରୁ ମହେମୁଦ ତରବାରି ଧାରଣପୂର୍ବକ ତାହା ଘରଠାରେ ଉପସ୍ଥିତ ହୋଇ ଦେଖିଲେ ଯେ, ସିପାହୀ ଉପପତ୍ନୀକୁ କୋଳରେ ଘେନି ଶୋଇଅଛି, ମହେମୁଦ ପ୍ରଜାକୁ ଦୀପ ନିର୍ବାଣ କରିବାପାଇଁ ଆଦେଶ କଲେ । ପରେ ଏକ ଆଘାତରେ ସିପାହୀକୁ ବଧ କରି ପୁନର୍ବାର ଦୀପ ଜାଳିବାକୁ କହିଲେ ଦୀପ ଜାଳିଲାରୁ ମହେମୁଦ କଟାମୁଣ୍ଡ ଦେଖି, ପରମେଶ୍ୱରଙ୍କୁ ଧନ୍ୟବାଦ କଲେ । ତାହା ଦେଖି ଅଭିଯୋଗକାରି ପଚାରିଲା "ମହିମା ! ପ୍ରଥମେ ଦୀପ ନିର୍ବାଣ, ପରେ ପରମେଶ୍ୱରଙ୍କ ଧନ୍ୟବାଦ କରିବାର କାରଣ କି ? ମହେମୁଦ କହିଲେ, ଆମ୍ଭେ ମନରେ ବିଚାରିଥିଲୁଁ ଆମ୍ଭର ପୁତ୍ର ଅବା ଏପରି କୁକର୍ମ କରୁଅଛି, ତାହା ମୁଖ ଦେଖିଲେ ବାତ୍ସଲ୍ୟ ହେତୁରୁ ତାହାର ଉପଯୁକ୍ତ ଦଣ୍ଡ ଦେବାକୁ ଅକ୍ଷମ ହେବୁଁ ଏଥିପାଇଁ ଦୀପ ଲିଭାଇବା ନିମନ୍ତେ ଆଜ୍ଞା କରିଥିଲୁଁ । ଏତେବେଳେ ଦେଖିଲୁଁ ଯେ, ସେ ନୁହଇ, ଏଣୁ ପରମେଶ୍ୱରଙ୍କୁ ଧନ୍ୟବାଦ ଦେଉଅଛୁଁ ।

---

## ନବମ ଅଧ୍ୟାୟ ।

### ମହେମୁଦଙ୍କର ଉତ୍ତରାଧିକାରିମାନେ ।

ମହେମୁଦଙ୍କ ମୃତ୍ୟୁ ଉତ୍ତାରେ ତଦ୍‌ବଂଶୀୟ ରାଜାମାନେ ପ୍ରାୟ ଦେଢ଼ଶତ ବରଷ ଗଜ୍‌ନୀରେ ରାଜପଣ କଲେ । ପରେ ଇଂ ୧୧୮୬ ସାଲରେ ଘୋରୀୟ ରାଜା-ମାନେ ସେମାନଙ୍କୁ ଉତ୍ସନ୍ନ କଲେ । ପ୍ରଥମେ ଘୋରରାଜା ଅଲାଉଦ୍ଦୀନ ଆସି,

ଗଜ୍ନନଗର ଲୁଣ୍ଠନପୂର୍ବକ ବହ୍ନି ଓ ଅସୀଦ୍ୱାରା ତାହା ବିନାଶ କରି ପକାଇଲେ । ଅଲାଉଦ୍ଦୀନଙ୍କ ଆୟୁଷକାଳ ସମ୍ପୂର୍ଣ୍ଣ ହୁଅନ୍ତେ ଇଂ ୧୧୫୬ ସାଲରେ ତାହାଙ୍କ ଜ୍ୟେଷ୍ଠ ଭ୍ରାତୃଷ୍ପୁତ୍ର ଗୟସଉଦ୍ଦୀନ ଅଧିପତି ହୋଇ ମହମ୍ମଦ ସବାବୁଦ୍ଦୀନଙ୍କୁ ଅପଣାର ସହକାରୀ କଲେ । ସବାବଉଦ୍ଦୀନ ମହମ୍ମଦ ଗୋରୀନାମରେ ପ୍ରସିଦ୍ଧ । ମହମ୍ମଦ-ଗୋରୀ ଅନେକଥର ଭାରତବର୍ଷକୁ ଧାଉଁଦେଇ, ଅନେକ ସ୍ଥାନ ମୁସଲମାନଙ୍କ ରାଜ୍ୟଭୁକ୍ତ କରିଯାନ୍ତି । ମହମ୍ମଦଗୋରଙ୍କ ଭାରତବର୍ଷ ଆକ୍ରମଣ ପୂର୍ବେ ଦିଲ୍ଲୀରାଜାଙ୍କର ମୃତ୍ୟୁ ହୁଏ । ଅଜମୀର ଓ କାନ୍ୟକୁବ୍ଜ ଉଭୟ ସ୍ଥାନର ରାଜା ତାହାଙ୍କର ନାତି ଥିବାପ୍ରଯୁକ୍ତ, ସେ କେବଳ ଅଜମୀରର ରାଜାଙ୍କୁ ଦିଲ୍ଲୀର ଅଧିକାରୀ କରି-ଗଲେ । ଏଥିରେ ଅନ୍ୟତର ଦୌହିତ୍ର କାନ୍ୟକୁବ୍ଜର ରାଜା ଅତ୍ୟନ୍ତ ରାଗାନ୍ୱିତ ହୋଇ ମାତୃଷ୍ୱଶ୍ରୁପୁତ୍ର ସହିତ ସଂଗ୍ରାମ କଲେ । ଏହି ଗୃହବିବାଦ ମହମ୍ମଦ ଗୋରୀଙ୍କ ପକ୍ଷରେ ଅତ୍ୟନ୍ତ ଅନୁକୂଳ ହୋଇଥିଲା ସନ୍ଦେହ ନାହିଁ । ମହମ୍ମଦଗୋରୀ ପ୍ରଥମ-ରେ ଦିଲ୍ଲୀ ଓ ଅଜମୀରର ଅଧିପତି ପୃଥ୍ୱୀଙ୍କୁ ଆକ୍ରମଣ କଲେ । ଥାନେଶ୍ୱର ଓ କର୍ଣ୍ଣାଲର ମଧ୍ୟସ୍ଥାନରେ ଯୁଦ୍ଧ ଉପସ୍ଥିତ ହୁଅନ୍ତେ ମୁସଲମାନମାନେ ଭଙ୍ଗଦେଇ ପଳାଇଗଲେ । ଗୋରୀ ବହୁକାଳ ଗଜ୍ନୀରେ ରହି ବାଞ୍ଛିତ ଅଗତ୍ୟ ସାଧନ ସଙ୍କଳ୍ପ-ରେ ପୁନର୍ବାର ସସୈନ୍ୟେ ଭାରତବର୍ଷରେ ଉପସ୍ଥିତ ହେଲେ । ପୃଥ୍ୱୀରାଜ ମଧ୍ୟ ପୂର୍ବଠାରୁ ଅଧିକତର ସୈନ୍ୟ ସଂଗ୍ରହ କରିଥିଲେ । ଏକଦା ଯାମିନୀରେ ହିନ୍ଦୁ-ସେନାମାନେ ଶିବିରରେ ଅସାବଧାନ ହୋଇ ଆମୋଦ ପ୍ରମୋଦ କରୁଅଛନ୍ତି ଏମନ୍ତ ସମୟରେ ମୁସଲମାନ ସେନାମାନେ ହଠାତ୍ ଆକ୍ରମଣ କରି ହିନ୍ଦୁମାନଙ୍କୁ ପରାସ୍ତ କଲେ । ଏହି ସମୟରେ ଅନେକ ହିନ୍ଦୁସାମନ୍ତ ପତିତ ହେଲେ । ପୃଥ୍ୱୀରାଜ ମଧ୍ୟ କେତେକ କାଳ ବନ୍ଦୀଦଶାରେ ରହି ନିର୍ଦ୍ଦୟ ମୁସଲମାନମାନଙ୍କଦ୍ୱାରା ଅପଘାତ ମୃତ୍ୟୁରେ ପ୍ରାଣତ୍ୟାଗ କଲେ । ଅଜମୀର ମୁସଲମାନମାନଙ୍କର ଅଧିକାରଭୁକ୍ତ ହେଲା । ଏହାର କେତେକ ଅଧିବାସିଙ୍କ ଶିର ଛେଦନ କରାଗଲା ଏବଂ କେତେକ ଅଧିବାସୀ ନିର୍ବାସିତ ହେଲେ । ତଦନନ୍ତର ଗୋରୀ କୁତବୁଦ୍ଦୀନ ନାମଧେୟ ସେନାପତି ହସ୍ତରେ ଭାରତବର୍ଷର କର୍ତ୍ତୃତ୍ୱ ଭାର ଦେଇ ଗଜ୍ନନକୁ ପ୍ରସ୍ଥାନ କଲେ । ଇଂ ୧୧୯୩ ।

ତହିଁ ଆର ବରଷ ମହମ୍ମଦ ଗୋରୀ ଭାରତବର୍ଷକୁ ଆସି କୁତବୁଦ୍ଦୀନଙ୍କୁ ସଙ୍ଗରେ ଘେନି ବାରଣସୀରେ ଉତ୍ତୀର୍ଣ୍ଣ ହେଲେ । ସେହି ପବିତ୍ର ତୀର୍ଥର ଅନେକ ଦେବମୂର୍ତ୍ତି ଚୂର୍ଣ୍ଣୀଭୂତ କରି, ସମସ୍ତ ସମ୍ପତ୍ତି ଅପହରଣପୂର୍ବକ ଚାରିସହସ୍ର ଉଷ୍ଟ୍ର ବୋଝାଇ କରି ବହୁକାଳ ପାଇଁ ସ୍ୱସ୍ଥାନକୁ ପ୍ରସ୍ଥାନ କଲେ । ତହିଁ ଉତ୍ତାରେ ପୁନର୍ବାର ଭାରତବର୍ଷକୁ ଆସି ଗୋଆଲିୟରର ଅବରୋଧର ଉଦ୍ୟୋଗ କରୁଅଛନ୍ତି

ଏମନ୍ତ ସମୟରେ ସ୍ୱଦେଶରେ ଗୋଲମାଲ ଉପସ୍ଥିତ ସମ୍ବାଦ ଶ୍ରବଣ କରି, କୁତବଙ୍କ ଉପରେ ଗୋଆଲିୟର ଜୟଭାର ଅର୍ପଣ ପୂର୍ବକ ପ୍ରସ୍ଥାନ କଲେ । କୁତବ ଅଳ୍ପ-କାଳ ମଧ୍ୟରେ ସେହିଦେଶ ଜୟ କଲେ । ତହିଁ ଉତ୍ତାରେ ସମ୍ବାଦ ଆସିଲା ଯେ, ଗୁର୍ଜ୍ଜର ପ୍ରଭୃତିର ରାଜାମାନେ ସବାବୁଦ୍ଦୀନ ପ୍ରେରିତ ଅଜମିରର ସାମନ୍ତଙ୍କୁ ଅତି-ଶୟ ବିପଦ୍‌ଗ୍ରସ୍ତ କରି ଅଛନ୍ତି । କୁତବ ଏହି ସମ୍ବାଦ ପ୍ରାପ୍ତ ମାତ୍ର ତାହାଙ୍କ ସାହାଯ୍ୟ ନିମନ୍ତେ ଗମନ କଲେ ; କିନ୍ତୁ ସେ ସ୍ଥାନରେ ଆହତ ଓ ପରାଭୂତ ହୋଇ ପଳାଇ ଆସିଲେ । ପରେ କୁତବଙ୍କ ସାହାଯ୍ୟ କାରଣ ଅଜମେରରୁ ସେନା ଆସିବାରୁ ସେ ସେମାନଙ୍କ ସାହାଯ୍ୟରେ ଗୁର୍ଜ୍ଜର ଦେଶକୁ ଶତ୍ରୁ ହସ୍ତରୁ ମୁକ୍ତ କରାଇଲେ । କୁତବ ତହିଁ ଉତ୍ତାରେ ବିହାରର ସମସ୍ତ ଭାଗ ଓ ବଙ୍ଗଳାର ଅନେକ ଅଂଶ ଜୟ କରନ୍ତି । ସେତେବେଳେ ବଙ୍ଗଳାଦେଶ, ସେନବଂଶୀୟ ଲକ୍ଷ୍ମଣସେନ ନାମଧେୟ ଜଣେ ଭୂପାଳଙ୍କ ଅଧୀନରେ ଥିଲା । ଇଂ ୧୨୦୩ ସାଲ୍ ।

୧୨୦୬ ଖ୍ରୀଷ୍ଟାବ୍ଦେ ଗୟସଉଦ୍ଦୀନ ପ୍ରାଣତ୍ୟାଗ କରିବାରୁ ମହମ୍ମଦଗୋରୀ ଗଜ୍‌ନୀ-ଶ୍ୱର ହେଲେ । ସେତେବେଳେ ସେ କାର୍ଷିୟାନ ହ୍ରଦର ପୂର୍ବଦିଗସ୍ଥ ଖାରିଜମ ପ୍ରଦେଶର ଅଭିନବ ରାଜାମାନଙ୍କ ସହିତ ସମରରେ ଲିପ୍ତ ଥିଲେ । ଏହି ଯୁଦ୍ଧରେ ପରାସ୍ତ ହେବାରୁ ସେ ମରି ପଡ଼ିଅଛନ୍ତି ବୋଲି ଜନରବ ହେଲା । ତେଣୁ ତାହା-ଙ୍କର କର୍ମଚାରୀମାନେ ଆପଣାକୁ ସ୍ୱାଧୀନ ବୋଲି ପ୍ରଚାର କଲେ; କିନ୍ତୁ ସେ ଅବିଲମ୍ବେ ଫେରିଆସି ବିଶ୍ୱାସଘାତକ ଭୃତ୍ୟମାନଙ୍କୁ ଯଥୋଚିତ ଦଣ୍ଡ ଦେଲେ ଓ ଗୋକ୍ଷୁରମାନଙ୍କ ମଧ୍ୟରୁ କେତେକ ଲୋକଙ୍କୁ ବଧ ଓ କେତେକ ଲୋକଙ୍କୁ ମୁସଲ-ମାନ କରାଇଲେ । ଏହି ସକଳ ବିଷୟ ସମାଧାନ କରି ସେ ସ୍ୱଦେଶାଭିମୁଖେ ଗମନ କରୁ କରୁ ଦିନେ ସିନ୍ଧୁନଦୀ ତଟରେ ଅତ୍ୟନ୍ତ ଗ୍ରୀଷ୍ମ ହେତୁରୁ ଯବନିକା ଉଠାଇ ଦେଇ ଗଡ଼ିରେ ଶୟନ କରିଅଛନ୍ତି ଏମନ୍ତ ସମୟରେ ୨୦ ଜଣ ଗୋକ୍ଷୁରୀ ଆସି, ଛୁରିକାଦ୍ୱାରା ତାହାଙ୍କର ପ୍ରାଣ ନଷ୍ଟ କଲେ । ମହମ୍ମଦଗୋରିଙ୍କ କଳେବର ସହିତ ତାହାଙ୍କ ବଂଶ ଲୋପ ହେଲା ।

---

## ଦଶମ ଅଧ୍ୟାୟ ।

କୁତବୁଦ୍ଦୀନ । ଅଲ୍‌ଟମସ । ମୋଗଲମାନଙ୍କର ଆକ୍ରମଣ । ରକ୍ନୁଦ୍ଦୀନ । ରଜିଆ । ନଜିରଉଦ୍ଦୀନ । ବୁଲବନ । କାୟକୋବାଦ ।

ସବାବୁଦ୍ଦୀନ ମରଣ ଉତ୍ତାରେ କୁତବୁଦ୍ଦୀନ ୪ ବରଷ ସ୍ୱାଧୀନ ରୂପେ ରାଜ୍ୟ-ପଣ କରି ନିଜପୁତ୍ର ଆରାମଙ୍କ ହସ୍ତରେ ରାଜ୍ୟଭାର ପ୍ରଦାନ ପୂର୍ବକ ତନୁ ତ୍ୟାଗକ-ଲେ; ମାତ୍ର ଆରାମଙ୍କ ଭଗ୍ନୀପତି ଅଲ୍‌ଟମସ ତାଙ୍କୁ ପଦଚ୍ୟୁତ କରି ସ୍ୱୟଂ ଅଧୀଶ୍ୱର

ନ୍ତୁଅନ୍ତି । ଏହାଙ୍କର ଅଧିକାର ସମୟରେ ଅସିଆ ମହାରାଜ୍ୟରେ ଏକ ଭୟାବହ ଦୁର୍ଘଟନା ଘଟିଥିଲା । ତାତାର ଦେଶର ମଧ୍ୟଭାଗରେ ମୋଗଲ ନାମକ ଏକଜାତୀୟ ଲୋକେ ବାସ କରନ୍ତି । ସେମାନଙ୍କ ମଧ୍ୟରେ ଜଙ୍ଗିସଖାଁ ନାମକ ଏକ ରାଜା ସୈନ୍ୟ ସଂଗ୍ରହ କରି ଅସିଆସ୍ଥ ଦେଶ ସମୂହ ଲୁଟପାଟ କରିବାକୁ ଲାଗିଲେ । ଧର୍ମ ବା ସଭ୍ୟତା ବିସ୍ତାର ଓ କରଗ୍ରହଣ ଅଥବା ରାଜ୍ୟ ବିସ୍ତାର ଏହା ମଧ୍ୟରୁ ଗୋଟିଏ ହିଁବା ଏହି ଉତ୍ପାତର ମୂଳକାରଣ ନୁହଇ । କେବଳ ନରହତ୍ୟା ଓ ପରସ୍ୱାପହରଣ ଜଙ୍ଗିସଖାଁଙ୍କର ପ୍ରଧାନ ଉଦ୍ଦେଶ୍ୟ ଥିଲା । ଯେଉଁ ଯେଉଁ ଦେଶରେ ଏହି ଦୁଷ୍ଟଗଣ ପଦାର୍ପଣ କରିଥିଲେ, ସେହି ସେହି ଦେଶ ବହୁକାଲ ପର୍ଯ୍ୟନ୍ତ ହୃଦୟବିଦାରକ ହାହାକାର ଧ୍ୱନିରେ ଆକୁଳିତ ହୋଇଥିଲା । ସୌଭାଗ୍ୟର ବିଷୟ ଏହି ଯେ, କୌଣସିକାରଣ ବିଶେଷରୁ ଏହି ଦୁର୍ବୃତ୍ତର ଭାରତଭୂମି ସ୍ପର୍ଶ କରି ନାହିଁ । ଇଂ ୧୨୧୭ ସାଲ ।

ଏଣେ ଅଲ୍‌ଟମସ ମାଲବଦେଶ ପରାଜୟ ଓ ଆର୍ଯ୍ୟାବର୍ତ୍ତର ଅଧିକାଂଶ ଭାଗରେ ଦିଲ୍ଲୀର ପ୍ରାଧାନ୍ୟ ସ୍ଥାପନ କରି ୧୨୩୬ ଖ୍ରୀଃ ଅବ୍ଦେ ତନୁ ତ୍ୟାଗ କଲେ । ତାହାବାଦ କେତେକ ଦିନ ଉପର୍ଯ୍ୟୁପରି ଦଙ୍ଗାନ୍ତ, ବିଦ୍ରୋହ ଓ ବିପ୍ଳବ ଉପସ୍ଥିତ ହୁଏ । ପ୍ରଥମରେ ତାହାଙ୍କର ପୁତ୍ର ରକ୍ନୁଦ୍ଦୀନ ସିଂହାସନରେ ଅଗ୍ରୋହିତ ହେବା ମାତ୍ର ଅଳ୍ପକାଲ ମଧ୍ୟରେ ବ୍ୟସନମଗ୍ନ ହିଁ ଓ ସମାହିତ ହେଲେ । ପରେ ତାହାଙ୍କ କନ୍ୟା ରଜିଆ ରାଜଛତ୍ର ଧାରଣ କଲେ; (ଭାରତବର୍ଷର ମୁସଲମାନଙ୍କ ରାଜାସନରେ ତତ୍ପୂର୍ବରେ ବା ପରେ ଆଉ କୌଣସି ରମଣୀ ଉପବେଶନ କରିବାର ଦେଖାଯାଏ ନାହିଁ ।) କିନ୍ତୁ ରଜିଆ ଦୀର୍ଘକାଲ ରାଜ୍ୟ ଶାସନ କରି ପାରିଲେ ନାହିଁ । କାରଣ ସେ ଜଣେ ଅବସିନୀୟ ଦାସକୁ ଅତ୍ୟନ୍ତ ସ୍ନେହ କରିବାରୁ, ଆଉ ଆଉ କର୍ମଚାରୀମାନଙ୍କୁ ଅତିଶୟ ଅବଜ୍ଞା କରୁଥିଲେ, ତହିଁରେ କର୍ମଚାରୀମାନେ ଦଙ୍ଗାନ୍ତ କରି ରଜିଆଙ୍କୁ କାରାରୁଦ୍ଧ ଓ ଦାସକୁ ବଧ କଲେ । ରଜିଆ ବଳରେ ପରାସ୍ତ ହୋଇ କୌଶଳ ଅବଲମ୍ବନ କଲେ । ସେ ଯେଉଁ ଅମାତ୍ୟ ଗୃହରେ ବନ୍ଦୀ ହୋଇଥିଲେ, ତାହାଙ୍କୁ ବିବାହ କରି ସେହି ଅଭିନବ ସ୍ୱାମୀ ସହିତ ସୈନ୍ୟ ସଂଗ୍ରହ ପୂର୍ବକ ଯୁଦ୍ଧରେ ପ୍ରବୃତ୍ତ ହେଲେ । ଦୁଇଥର ତୁମୂଳ ଯୁଦ୍ଧ ହେଲା । ପରିଣାମେ ରଜିଆ ସ୍ୱାମୀ ସହିତ ଧୃତ ଓ ନିହତ ହେଲେ । ରଜିଆ ସାଢ଼େ ତିନିବରଷ ରାଜତ୍ୱ କରିଥିଲେ ।

ରଜିଆଙ୍କ ଭାଇ ବେହ୍ରାମ ତାହାଙ୍କ ସିଂହାସନରେ ଅଗ୍ରୋହଣ କଲେ; କିନ୍ତୁ ଅତ୍ୟଳ୍ପକାଳ ଉତାରେ ଏକଦଳ ମୋଗଲ ସେନା ଅସି ଲାହୋର ଠାରେ ଉପସ୍ଥିତ ହେଲେ ଏବଂ ରାଜ୍ୟରେ ସୁଦ୍ଧା ନାନା ଷଡ଼ଯନ୍ତ୍ର ଉପସ୍ଥିତ ହେଲା ଅବଶେଷେ ଅଭିନବ ରାଜା ଅଢ଼ାଇ ବରଷ ମଧ୍ୟରେ କାରାଗାରରେ ନିକ୍ଷିପ୍ତ ଓ ହତ

ହେଲେ । ଏହାଙ୍କର ଉତ୍ତରାଧିକାରୀ ମସାୟୁଦ ରାଜତ୍ୱ କରିବା ସମୟରେ ପୂର୍ବୋ-କ୍ତ ଘଟନାବଳୀ ପୁନର୍ବାର ଘଟିବାକୁ ଲାଗିଲା । ଏହି ସମୟରେ ଏକଦଳ ମୋଗଲ ସେନା ତିବ୍ବତ୍ ଦେଇ ବଙ୍ଗଳାରେ ଉପସ୍ଥିତ ହୁଅନ୍ତି । ତତ୍ପୂର୍ବରେ ବା ପରେ ମୋଗଲମାନଙ୍କୁ ସେ ବାଟରେ ଆସିବାକୁ ଦେଖାଯାଇ ନାହିଁ ।

ମସାୟୁଦ ପଦଚ୍ୟୁତ ହୁଅନ୍ତେ ନସିରଉଦ୍ଦୀନ ସିଂହାସନରେ ଆରୋହଣ କରନ୍ତି । ଏ ଅଲ୍ଟମସଙ୍କ ପୌତ୍ର ଅଟନ୍ତି, ପିତାମହଙ୍କ ମରଣ ଉତ୍ତାରେ କାରାଗାର-ରେ ନିକ୍ଷିପ୍ତ ଥିଲେ, ସେସ୍ଥାନରେ ଏହାଙ୍କର କେବଳ ଗ୍ରନ୍ଥ ଲେଖା ଜୀବନ ଧାରଣର ଏକମାତ୍ର ଉପାୟ ଥିଲା । ସେ ସିଂହାସନରେ ଆରୋହଣ କରି ମଧ୍ୟ ଗ୍ରନ୍ଥ ଲେଖା ବ୍ୟବସାୟ ପରିତ୍ୟାଗ କରି ନ ଥିଲେ । ନସିର ଅତି ପରିମିତ ବ୍ୟୟୀ ଓ ଭୋଗା-ଭିଲାଷଶୂନ୍ୟ ଥିଲେ । ତାହାଙ୍କର ଏକମାତ୍ର ବେଗମ ଯାବତୀୟ ଗୃହକାର୍ଯ୍ୟ ନିର୍ବାହ କରନ୍ତି । କଥିତ ଅଛି, "ଏକଦା ବେଗମ ରୁଟୀ ପ୍ରସ୍ତୁତ କରୁ କରୁ ଗୋଟିଏ ଅଙ୍ଗୁଳି ଦଗ୍ଧକରି ସ୍ୱାମିଙ୍କ ନିକଟରେ ଜଣେ ଦାସୀ ପ୍ରାର୍ଥନା କରିବାରୁ" ନସିର କହିଲେ "ମୁଁ ଜଣେ ଦେଶରକ୍ଷକ ମାତ୍ର । ସାମାନ୍ୟ ବ୍ୟୟକାରଣ ଦେଶର ସଞ୍ଚିତ ଧନ ନଷ୍ଟ କରିପାରେ ନାହିଁ" । ସେ ଅତ୍ୟନ୍ତ ଶିଷ୍ଟାଚାରୀ, ନମ୍ର, ଶାନ୍ତସ୍ୱଭାବ, ବିଦ୍ୟାବର୍ଦ୍ଧନ ବିଷୟରେ ଅତ୍ୟନ୍ତ ଉତ୍ସାହୀ, ଦାନଶୀଳ ଓ ପରହିତୈଷୀ ଥିଲେ । ନସିର ବିଂଶତି ବରଷ ରାଜତ୍ୱ କଲେ । ତାହାଙ୍କର ଅଧୀନସ୍ଥ ହିନ୍ଦୁସାମନ୍ତମାନେ ନାନା ବିଦ୍ରୋହ, ସଭାସଦମାନେ ନାନା ଚକ୍ରାନ୍ତ ଓ ମୋଗଲମାନେ ଉପର୍ଯ୍ୟୁପରି ଆକ୍ରମଣ କରିଥିଲେ । କିନ୍ତୁ " ଧର୍ମୋ ରକ୍ଷତି ଧାର୍ମିକଂ " ନସିରଙ୍କ ସ୍ୱଜାତୀୟ ଓ ପ୍ରାଡ୍‌ବିବାକ ବୁଲବନଙ୍କ ବୁଦ୍ଧିବଳରୁ ସକଳ ଆପଦ ଦୂରୀକୃତ ହେଲା । ବୁଲବନ ଅତ୍ୟନ୍ତ ଜ୍ଞାନୀ ମନ୍ତ୍ରୀ ଥିଲେ; ୧୨୬୬ଖ୍ରୀଃ ଅବ୍ଦେ ନସିର ନିଃସନ୍ତାନ ହୋଇ ପ୍ରାଣ-ତ୍ୟାଗ କରନ୍ତେ ରାଜଲକ୍ଷ୍ମୀ ବୁଲବନଙ୍କୁ ଆଲିଙ୍ଗନ କଲେ । ବୁଲବନଙ୍କର ଧୀଶକ୍ତି-ଠାରୁ ଦୁରାଗ୍ରହତା ଓ ଆତ୍ମମ୍ଭରିତା ଗୁଣ ଅଧିକ ଥିଲା; କିନ୍ତୁ ସୌଭାଗ୍ୟ ପ୍ରଯୁକ୍ତ ସେ ଦାନଶୀଳ ଥିବାରୁ ମୋଗଲମାନଙ୍କଦ୍ୱାରା ପରାଜିତ ଓ ରାଜ୍ୟଚ୍ୟୁତ ମୁସଲମାନ ରାଜାମାନେ, ତାହାଙ୍କର ଆଶ୍ରୟ ଗ୍ରହଣ କରନ୍ତେ । ଏହି ସମୟରେ ହିନ୍ଦୁ ଦସ୍ୟୁ-ମାନେ ଗଙ୍ଗା ଓ ଯମୁନା ନଦୀର ମଧ୍ୟବର୍ତ୍ତୀ ଭୂଭାଗରେ ଅତ୍ୟନ୍ତ ଅତ୍ୟାଚାର କରିବାରୁ ବୁଲବନ ଶୋଣିତ ପ୍ରବାହଦ୍ୱାରା ତାହା ନିବାରଣ କଲେ । ପ୍ରଥିତ ଅଛି ଯେ, ସେ ଏକ ସ୍ଥାନରେ ଏକଲକ୍ଷ ଲୋକଙ୍କର ପ୍ରାଣସଂହାର କରିଥିଲେ ।

ବଙ୍ଗଦେଶର ଶାସନକର୍ତ୍ତା ଟୋଗ୍ରଲ ରାଜଦ୍ରୋହୀ ହୋଇ କ୍ରମାନ୍ୱୟେ ଦୁଇ ଥର ବୁଲବନଙ୍କ ପ୍ରେରିତ ସେନାମାନଙ୍କୁ ପରାସ୍ତ କରିବାରୁ ସେ ସ୍ୱୟଂ ଯାଇ ବିଦ୍ରୋ-ହୀକୁ ଶାସ୍ତି ଦେଲେ । ଯେତେବେଳେ ସେ ପୂର୍ବାଞ୍ଚଳକୁ ଆସିଥିଲେ, ତେତେ-

ବେଳେ ତାହାଙ୍କର ଯୋଗ୍ୟ ପୁତ୍ର ମହମ୍ମଦ, ମୋଗଲମାନଙ୍କୁ ଆକ୍ରମଣ କରିବାକୁ ଯାଇ ସ୍ୱୟଂ ନିଧନ ପ୍ରାପ୍ତ ହେଲେ । ବୁଲବନ ଅଶୀତି ବର୍ଷ ବୟସରେ ମୁମୂର୍ଷୁ ଦଶାରେ ଅବଶିଷ୍ଟ ପୁତ୍ର ବଙ୍ଗଦେଶର ଶାସନକର୍ତ୍ତା ବଗରଖାଁଙ୍କୁ ରାଜ୍ୟ ଭାର ପ୍ରଦାନ କରିବା ନିମନ୍ତେ ଆହ୍ୱାନ କଲେ; କିନ୍ତୁ ବଗର ଉପସ୍ଥିତ ହୋଇ ପିତାଙ୍କର ଆଶୁମୃତ୍ୟୁର ସମ୍ଭାବନା ନ ଦେଖି ଅନୁମତିବିନା ଫେରିଗଲେ । ଏଣେ ବୁଲବନ ଶୀଘ୍ର ପ୍ରାଣତ୍ୟାଗ କରିବାରୁ ବଗରଙ୍କ ପୁତ୍ର କାୟକୋବାଦ ସିଂହାସନାରୋହଣ କରନ୍ତି । କାୟକୋବାଦଙ୍କ ଦୁଷ୍ଟ ମନ୍ତ୍ରୀ ସର୍ବନାଶ ବାସନାରେ ପ୍ରଭୁଙ୍କୁ ନାନା ମନ୍ଦ-କର୍ମରେ ପ୍ରବର୍ତ୍ତାଇଲା । ସେରାଜ୍ୟ ମଧ୍ୟରେ ନାନା ଅତ୍ୟାଚାର ଓ ଅନେକ ପ୍ରଧାନ ଲୋକଙ୍କର ପ୍ରାଣ ସଂହାର କଲା ।

ବଗରଖାଁ ଏହିସକଳ ସମ୍ବାଦ ପାଇ ପୁତ୍ରର ମଙ୍ଗଳ ସାଧନ ନିମନ୍ତେ ସସୈନ୍ୟ ଦିଲ୍ଲୀରେ ଉପସ୍ଥିତ ହେଲେ । ଦୁଷ୍ଟ ଉଜୀରର ମନ୍ଦ ପରାମର୍ଶାନୁସାରେ ଘୋରଯୁଦ୍ଧର ଆୟୋଜନ ହେଲା । ଉଭୟ ସୈନ୍ୟ ସମ୍ମୁଖୀନ ହୁଅନ୍ତେ ବଗରଖାଁ ଏମନ୍ତ କରୁଣ ସ୍ୱରରେ ପୁତ୍ରର ସାକ୍ଷାତ ପ୍ରାର୍ଥନା କଲେ ଯେ ଦୁଷ୍ଟ ଉଜୀର ତାହାର କିଛିମାତ୍ର ଅନ୍ୟଥା କରି ପାରିଲା ନାହିଁ । ତଥାପି ସେ ପ୍ରସ୍ତାବ କଲା ଯେ ବଗରଖାଁ ଯେବେ ସମ୍ରାଟଙ୍କ ସିଂହାସନ ତଳେ ଆସି ନମସ୍କାର କରିବେ ତେବେ ସେ ଦେଖା କରିପାରନ୍ତି । ଉଜୀର ଭାବିଥିଲା ଯେ ବଗର ଏହି ଅଦବ କାଏଦା ଶୁଣି ରାଗାନ୍-ବିତ ହେବେ; କିନ୍ତୁ ସରଳ ସ୍ୱଭାବ ବଗର ଅମ୍ଳାନ ବଦନରେ ତାହା ସ୍ୱୀକାର କଲେ । ସେ ଯାଇ କାୟକୋବାଦଙ୍କ ସିଂହାସନ ତଳେ ବାରମ୍ବାର ନମସ୍କାର କଲେ; କିନ୍ତୁ ପୁତ୍ରକୁ ସିଂହାସନରେ ଅବଚଳିତ ଦେଖି ଅତି ବିଷାଦ ସମ୍ବରଣ କରି ପାରିଲେ ନାହିଁ । ତହିଁ କାୟକୋବାଦ ପିତାର ସାଶ୍ରୁନୟନ ଦେଖି ତାହାଙ୍କ ଚ-ରଣତଳେ ପଡ଼ି କରୁଣସ୍ୱରରେ କ୍ଷମା ପ୍ରାର୍ଥନା କଲେ । ଅନନ୍ତର ପିତାଙ୍କୁ ସିଂହା-ସନରେ ବସାଇ ବିଧିମତେ ଭକ୍ତି ଏବଂ ପ୍ରୀତି କରିବାରେ ମଗ୍ନ ହେଲେ । ଯୁଦ୍ଧର କଥା ଏକାବେଳକେ ଅନ୍ତର୍ହିତ ହେଲା । ବଗର କିଛିଦିନ ଦିଲ୍ଲୀରେ ରହି ସ୍ୱ ସ୍ଥାନକୁ ପ୍ରସ୍ଥାନ କରନ୍ତି ।

କାୟକୋବାଦ ଅତ୍ୟନ୍ତ ବ୍ୟସନାସକ୍ତ ଥିବାରୁ ଅଳ୍ପକାଳ ମଧ୍ୟରେ ତାହାଙ୍କର କଳେବର ନାନା ରୋଗର ଆଧାର ହେଲା । ସେତେବେଳେ ତାହାଙ୍କର ଚେତନା ହେଲା ଓ ନିଜ ଉଜୀରକୁ ତଦବସ୍ଥାର ନିଦାନ ଜାଣି ବିଷ ପ୍ରୟୋଗଦ୍ୱାରା ତାହାର ପ୍ରାଣବଧ କଲେ । ଉଜୀର ମଲାରୁ ତୁରଷ୍କ ଓ ପଠାଣ ଏହି ଦୁଇ ଜାତୀୟ ଅମା-ତ୍ୟମାନେ ଉଜୀରପଦ ଲାଭର ଚେଷ୍ଟା କରିବାକୁ ଲାଗିଲେ । ଅବଶେଷରେ ପଠାଣମା-

ନେ' କାୟୁକୋବାଦଙ୍କୁ ବଧକରି, ଜଲାଲଉଦ୍ଦୀନଙ୍କୁ ସିଂହାସନରେ ବସାଇଲେ । ହତଭାଗ୍ୟ କାୟୁକୋବାଦ କେବଳ ଦୁଇବରଷ ମାତ୍ର ରାଜତ୍ୱ କରିଥିଲେ ।

---

## ଏକାଦଶ ଅଧ୍ୟାୟ ।

ଜଲାଲଉଦ୍ଦୀନ । ଅଲାଉଦ୍ଦୀନ ମୋବାରକ । ଗୟେସଉଦ୍ଦୀନ । ଟୋଗଲକ । ମହମ୍ମଦସା । ଫିରୋଜ ଟୋଗଲକ । ତୈମୁରର ଭାରତ ଆକ୍ରମଣ । ସୟଦ ରାଜ-ବଂଶ । ବହ୍ଲୋଲ ଲୋଦି । ସିକନ୍ଦର ଲୋଦି । ଇବ୍ରାହିମ ଲୋଦି ।

୧୨୮୮ ଖ୍ରୀଷ୍ଟାବ୍ଦରେ ଜଲାଲଉଦ୍ଦୀନ ସିଂହାସନ ଆରୋହଣ କଲେ । ସେ ଯେବେହେଁ ଅନ୍ୟାୟ ଉପାୟଦ୍ୱାରା ରାଜତ୍ୱ ପ୍ରାପ୍ତ ହୋଇଥିଲେ, ତାନ୍ତୁ ସିଂହାସନରେ ବସି ଅନ୍ୟମାନଙ୍କ ଦୁଷ୍କର୍ମରେ ହସ୍ତକ୍ଷେପ କରି ନାହାନ୍ତି । ଜଲାଲଉଦ୍ଦୀନ ସମୟରେ (ଇଂ ୧୨୯୪ ସାଲେ) ଦାକ୍ଷିଣାତ୍ୟ, ମୁସଲମାନମାନଙ୍କଦ୍ୱାରା ଆକ୍ରାନ୍ତ ହେଲା । ଆଲାଉଦ୍ଦୀନ ନାମକ ଜଲାଲର ଏକ ଭ୍ରାତୁଷ୍ପୁତ୍ର ଥିଲେ । ସେ ଖୁଡ଼ତାର ଠିକ ବିପରୀତ ଗୁଣାବଲମ୍ବୀ । ତେବେହେଁ ଜଲାଲ ତାହାଙ୍କୁ ଅଧିକ ସ୍ନେହ କରନ୍ତି । ଅଲା ପିତୃବ୍ୟର ଅନୁମତି ବିନା ୮ ସହସ୍ର ସୈନ୍ୟ ଘେନି ମହାରାଷ୍ଟ୍ରମାନଙ୍କର ତତ୍କାଳୀନ ରାଜଧାନୀ ଦେବଗିରି ନଗର ପରାଜୟ ଓ ଲୁଣ୍ଠନ କଲେ । ଜଲାଲ ଏହି ସମ୍ବାଦ ପାଇ ଅତ୍ୟନ୍ତ ଆନନ୍ଦିତ ହେଲେ; ମନ୍ତ୍ରିମାନେ ଆଲାଙ୍କର ମନ୍ଦାଭି-ପ୍ରାୟ ଜାଣି ଆତ୍ମରକ୍ଷା କାରଣ ତାହାଙ୍କୁ ପରାମର୍ଶ ଦେଲେ, କିନ୍ତୁ ଅଲାଙ୍କ ଉପରେ ଜଲାଲଙ୍କର ସମ୍ପୂର୍ଣ୍ଣ ବିଶ୍ୱାସ ଥିବାରୁ ମନ୍ତ୍ରିମାନଙ୍କ ହିତ ପରାମର୍ଶ ଅବଜ୍ଞାରୂପ ଅନ୍ଧ-କୂପରେ ନିକ୍ଷିପ୍ତ ହେଲା । ଅଲା ଉପସ୍ଥିତ ହୁଅନ୍ତେ ଜଲାଲ ବହୁଦିନ ସମାଗତ ସ୍ନେହଭାଜନ ଭ୍ରାତୁଷ୍ପୁତ୍ରଙ୍କୁ ଆଲିଙ୍ଗନ କରୁଅଛନ୍ତି ଏମନ୍ତ ସମୟରେ ପାପିଷ୍ଠ ଅଲାଙ୍କ ଶିକ୍ଷିତ କେତେଜଣ ଦୁରାତ୍ମା ଆସି ତାହାଙ୍କର ଶିରଚ୍ଛେଦନ କଲେ । (୧୨୯୫)

ଅଲାଉଦ୍ଦୀନ ନିର୍ବିବାଦରେ ରାଜପଣ କଲେ; ତାହାଙ୍କର କାଫୁର ନାମ-ଧେୟ ଏକ ଭୃତ୍ୟ ଥିଲା । ଅଲା ତାକୁ ଛାଡି ଆଉ କାହାକୁ ବିଶ୍ୱାସ କରନ୍ତି ନାହିଁ । ପାମର କାଫୁର ଅନେକ ପ୍ରଧାନ ଲୋକର ପ୍ରାଣ ସଂହାର କରାଇ ଅବଶେଷେ ବିଷପାନଦ୍ୱାରା ଅଲାଙ୍କୁ ମଧ୍ୟ ବଧ କଲା । ଯେଉଁମାନେ ପରର ଅମଙ୍ଗଳ କରନ୍ତି, ବିଧାତା ସେମାନଙ୍କୁ ଅମଙ୍ଗଳ ଘଟାଇ ଦିଅନ୍ତି । ଦେଖ ଅଲା ଯେପରି ଅନୁଗ୍ରାହକ ଖୁଡ଼ୁତାଙ୍କୁ ବଧ କରିଥିଲେ, ସେ ସେହିପରି ବିଶ୍ୱାସଭାଜନ ଲୋକଦ୍ୱାରା ହତ ହେଲେ । (୧୩୧୬)

ଆଲା ନିଷ୍ଠୁର ଓ ଦୁରନ୍ତ ଥିଲେ ସତ୍ୟ; କିନ୍ତୁ ଆଶ୍ଚର୍ଯ୍ୟ ବିଷୟ ଏହି ଯେ, ତାହାଙ୍କ ରାଜ୍ୟ ମଧ୍ୟରେ ସର୍ବତ୍ର ଶାନ୍ତି ଓ ସୌଭାଗ୍ୟ ବିରାଜୁଥିଲା । ଅଲାଙ୍କ ଅଧିକାର

ସମୟରେ ରାଜ୍ୟ ଅନେକ ଉନ୍ନତି ଲାଭ କରେ, ସେନାମାନେ ମଧ୍ୟ ଅତ୍ୟନ୍ତ ପରାକ୍ରାନ୍ତ ଓ ଶୃଙ୍ଖଳାବଦ୍ଧ ଥିଲେ ଓ ମୋଗଲମାନେ ବାରମ୍ବାର ରାଜ୍ୟ ଆକ୍ରମଣ କରି ସୁବିଧା କିଛି କରି ପାରି ନ ଥିଲେ । ଅଲା ତୈଲଙ୍ଗ, କର୍ଣ୍ଣାଟ ଓ ମଲବାରର ଅଧିକାଂଶ ପରାଜୟ କରିଥିଲେ । ବିଦ୍ୟା ବିଷୟରେ ସେ ସିଂହାସନରେ ବସିବା ପୂର୍ବରେ ବର୍ଣ୍ଣମାଳା ସୁଦ୍ଧା ଜାଣି ନ ଥିଲେ । କିନ୍ତୁ ତାହାଙ୍କର ବୁଦ୍ଧିବୃତ୍ତି ଏମନ୍ତ ତେଜସ୍ୱିନୀ ଥିଲା ଯେ, ପ୍ରକୃତ ମନୀଷାସମ୍ପନ୍ନ ମନ୍ତ୍ରୀ ବା ବୁଧବର୍ଗ ତାହାଙ୍କର ମତ ଖଣ୍ଡନ କରି ପାରନ୍ତି ନାହିଁ । ଆଲାଙ୍କ ଉତ୍ତାରେ ତାହାଙ୍କ ପୁତ୍ର ମଗୃବର ତତୀୟ ସିଂହାସନ ଅଧିରୋହଣ କରନ୍ତି, କିନ୍ତୁ ତାହାଙ୍କୁ ଦୀର୍ଘକାଳ ରାଜପଦଭୋଗ ହୋଇ ନ ଥିଲା । ପରେ ନାମକ ଜଣେ ଅମାତ୍ୟ (ଏ ବ୍ୟକ୍ତି ହିନ୍ଦୁକୁଳସମ୍ଭୂତ ଅଭିନବ ମୁସଲମାନ) ତାହାଙ୍କ ପ୍ରାଣ ବଧ କରି ସିଂହାସନରେ ଆରୋହଣ କରନ୍ତି । ପରେ ଆଲାଉଦ୍ଦୀନଙ୍କର ବଂଶ ନିର୍ମୂଳ କରି ଅବଶେଷେ ପଞ୍ଜାବର ଶାସନକର୍ତ୍ତା ଟୋଗଲକଖାଁ ନିଧନପ୍ରାପ୍ତ ହେଲେ । ପ୍ରାଚୀନ ରାଜବଂଶ ମଧ୍ୟରୁ କେହି ଜୀବିତ ନ ଥିବାରୁ ଟୋଗଲକ ଗିଆସଉଦ୍ଦୀନ ନାମ ଧାରଣ କରି ସିଂହାସନରେ ବସିଲେ । ୧୩୨୧ସାଲ

ଗିଆସ ବୁଲବନ ସମ୍ରାଟଙ୍କର ଜଣେ ଦାସର ପୁତ୍ର । ସେ ସଦ୍‌ବିଚାରରେ ରାଜତ୍ୱ କରିଥିଲେ; କିନ୍ତୁ ଦୁଃଖର ବିଷୟ ଏହି ଯେ, ଗୃହରବରଷ ଉତ୍ତାରେ ଅପଘାତ ମୃତ୍ୟୁରେ ତାହାଙ୍କର ପ୍ରାଣତ୍ୟାଗ ହେଲା । ସେ କୌଣସି କାର୍ଯ୍ୟୋପଲକ୍ଷେ ବଙ୍ଗଦେଶକୁ ଅସିଥିଲେ, ଏ ସ୍ଥାନରୁ ଫେରିବା ସମୟରେ ନିହୁତ ଅଧିକାର କଲେ । ଗିଆସ ଦିଲ୍ଲୀରେ ଉପସ୍ଥିତ ହେବା ପୂର୍ବେ ତାହାଙ୍କର ପୁତ୍ର ଜୁନାଖାଁ ତାହାଙ୍କ ବସିବାପାଇଁ ଗୋଟିଏ ଶୋଭିତ କାଷ୍ଠମୟ ସିଂହାସନ ପ୍ରସ୍ତୁତ କରିଥିଲା, ସମ୍ରାଟ ତହିଁରେ ଅଧୀନ ହେବାମାତ୍ର ପଡ଼ିଯାଇ ପ୍ରାଣତ୍ୟାଗ କଲେ । ୧୩୨୫ ସାଲ ।

ପିତା ପରଲୋକ ଗମନ କଲାରୁ ଜୁନାଖାଁ ସିଂହାସନାରୋହଣ କଲେ । ସେ ଅତ୍ୟନ୍ତ ବିଦ୍ୟାନୁରାଗୀ ଥିଲେ । କାବ୍ୟ, ଦର୍ଶନ, ଗଣିତ ଓ ନୀତି ପ୍ରଭୃତି ବିଦ୍ୟାରେ ତତ୍କାଳୀନ ସମସ୍ତ ସମ୍ରାଟଙ୍କଠାରୁ ଅତ୍ୟନ୍ତ ପାରଦର୍ଶୀ ଥିଲେ; ମାତ୍ର ତାହାଙ୍କର ବୁଦ୍ଧିବୃତ୍ତି ବିଦ୍ୟାର ସହବର୍ତ୍ତିନୀ ନ ଥିଲା । ଏହି ହେତୁରୁ ତାହାଙ୍କର ଯାବତୀୟ କର୍ମ କୁଫଳ ପ୍ରଦାନ କରୁଥିଲା ।

ଜୁନାଖାଁ ପାରସ୍ୟ ଆକ୍ରମଣ ବାସନାରେ ଅପାର ସେନା ସଂଗ୍ରହ କଲେ; ଏତେ ସେନା ସଂଗୃହୀତ ହୋଇଥିଲେ ଯେ, ସେମାନଙ୍କୁ ବେତନ ଦେବା ଲାଗି ତାହାଙ୍କ କୋଷାଗାରର ଧନ ଅଣ୍ଟିଲା ନାହିଁ । ସେନାମାନେ ବେତନ ନ ପାଇ ଦଳେ ଦଳେ କର୍ମ ତ୍ୟାଗ ଓ ଦସ୍ୟୁବୃତ୍ତିଦ୍ୱାରା ଜୀବିକା ନିର୍ବାହ କଲେ । ସମ୍ରାଟ ଏହି ଉତ୍ପାତର ଅଣ ପ୍ରତିକାରର ଉପାୟ ନ ପାଇ ଚୀନ ଲୁଣ୍ଠନ କାରଣ ଏକଲକ୍ଷ

ସେନା ପ୍ରେରଣ କରନ୍ତି; କିନ୍ତୁ ତାହାଙ୍କ ସେନାମାନେ ଶତ୍ରୁପକ୍ଷୀୟ ଅପାର ସୈନ୍ୟ ଦେଖି ପଳାଇବାର ଆରମ୍ଭ କଲେ । ପଶ୍ଚାଦ୍‌ଗାମୀ ଶତ୍ରୁମାନଙ୍କର ଉପଦ୍ରବ, ଦୁର୍ଗମ ଗିରିବର୍ତ୍ମ, ଖାଦ୍ୟଦ୍ରବ୍ୟର ଅଭାବ ଓ ବୃଷ୍ଟି ହେତୁରୁ ତୁଘ୍‌ଲକ୍‌ଙ୍କର ଭଗ୍ନ ଦୂତ ମଧ୍ୟ ଦିଲ୍ଲୀକୁ ଫେରି ଆସିଲା ନାହିଁ । ତୁଘ୍‌ଲକ୍ କୋଷ ପରିପୂର୍ଣ୍ଣ କିମନ୍ତେ ଚିନ୍ତା କରି ବସିଲେ । ସେ ଶୁଣିଥିଲେ ଚୀନରାଜ୍ୟରେ ମୁଦ୍ରା ପରିବର୍ତ୍ତେ କାଗଜଖଣ୍ଡ (ନୋଟ) ବ୍ୟବହୃତ ହୁଅଇ, ତହୁଁ ସେ ନୋଟ୍‌ସ୍ୱରୂପ ତାମ୍ରଖଣ୍ଡ ଚଳାଇବାକୁ ଆରମ୍ଭ କଲେ; ମାତ୍ର ତେତେବେଳେ ରାଜକୋଷରେ ଧନ ନ ଥିବାରୁ ତାହାକୁ କେହି ବିଶ୍ୱାସ କରି ଗ୍ରହଣ କଲେ ନାହିଁ । ଘରମଧ୍ୟରେ ବାଣିଜ୍ୟକାର୍ଯ୍ୟରେ ବ୍ୟାଘାତ ଓ ତ୍ରୁଟିସ୍ୱ ବିନିମୟରେ କେତେକ ତାମ୍ରଖଣ୍ଡ ମାତ୍ର ସଂଗୃହୀତ ହୋଇଥିଲା । ତୁଘ୍‌ଲକ୍ ଅର୍ଥ ଆୟ ବିଷୟରେ ଅନନ୍ୟୋପାୟ ହୋଇ ଅସଙ୍ଗତ କର ବୃଦ୍ଧି କଲେ; ସୁତରାଂ କୃଷକମାନେ ଅଧିକ କର ଦେବାକୁ ଅକ୍ଷମ ହୋଇ ଭୂମି ପରିତ୍ୟାଗପୂର୍ବକ ଅରଣ୍ୟକୁ ପଳାୟନ କଲେ; ମାତ୍ର ଦୁରାଗ୍ରହ ସମ୍ରାଟ୍ ସୈନ୍ୟ ପ୍ରେରଣ କରି ନିରୁପାୟ କୃଷକମାନଙ୍କୁ ସଂହାର କଲେ । କୃଷକମାନଙ୍କ ଉପରେ ଏପରି ଅତ୍ୟାଚାର ହେବାରୁ ସୁତରାଂ ଦୁର୍ଭିକ୍ଷ ଉପସ୍ଥିତ ହେଲା । ରାଜ୍ୟ ମଧ୍ୟରେ ପୁଣି ନାନା ବିଦ୍ରୋହ ଘଟିଲା । ଏହି ସମୟରେ ବଙ୍ଗଳାର ଶାସନକର୍ତ୍ତା ଦିଲ୍ଲୀର ବାଦ୍‌ସାହ ଅଧୀନରେ ରହିବା ଲଜ୍ଜାକର ଜ୍ଞାନ କରି ସ୍ୱାଧୀନ ବୋଲି ସର୍ବତ୍ର ଘୋଷଣା କରି ଦେଲେ; ତୈଲଙ୍ଗ କର୍ଣ୍ଣାଟ ମଧ୍ୟ ଏହି ସମୟରେ ସ୍ୱାଧୀନତା ଲାଭ କରଇ ।

ତୁଘ୍‌ଲକ୍ ୨୭ ବର୍ଷ ରାଜତ୍ୱ କରିଥିଲେ ତାହାଙ୍କର ରାଜପଣ ସମୟରେ ଭାରତବର୍ଷ ଦିନକପାଇଁ ମଧ୍ୟ ସୁସ୍ଥିର ନ ଥିଲା । ୧୩୫୧ ସାଲ୍ ।

ତୁଘ୍‌ଲକ୍ ପରେ ତାହାଙ୍କ ଭ୍ରାତୃଷ୍ପୁତ୍ର ଫିରୋଜ ରାଜ୍ୟାଭିଷିକ୍ତ ହୁଅନ୍ତି; ସେ ରାଜ୍ୟ ମଧ୍ୟରେ ଅନେକ ଉତ୍କୃଷ୍ଟ ଆଇନ ଚଳାଇଥିଲେ ଏବଂ ଦେଶ ମଧ୍ୟରେ ଅନେକ ମଙ୍ଗଳଜନକ କାର୍ଯ୍ୟ ମଧ୍ୟ ତାହାଙ୍କଦ୍ୱାରା ସାଧିତ ହୁଏ । ବିଶେଷରେ ଯମୁନା ନଦୀଠାରୁ ଗାର୍ଗନଦୀ ପର୍ଯ୍ୟନ୍ତ ଗୋଟିଏ ନଦୀ ଖୋଳି ସାଧାରଣର ଅସୀମ ଉପକାର ସାଧନ କରି ଯାଇଅଛନ୍ତି । ଫିରୋଜ ଉତ୍ତାରେ ତଦ୍‌ବଂଶୀୟ ଆଉ ଚାରିଜଣ ସିଂହାସନାରୋହଣ କରିଥିଲେ, ତନ୍ମଧ୍ୟରେ ଶେଷ ସମ୍ରାଟଙ୍କ ନାମ ମହେମୁଦ । ମହେମୁଦ ନାମମାତ୍ର ସମ୍ରାଟ ଥିଲେ, ମାତ୍ର ତାହାଙ୍କର କିଛିହେଁ କ୍ଷମତା ନ ଥିଲା । ଏହି ସମୟରେ ସମରକନ୍ଦାଧିପତି ତୈମୁର ଭାରତବର୍ଷ ଆକ୍ରମଣ କଲେ । ତୈମୁର ମାନବଜାତିର ଅତ୍ୟନ୍ତ ଶତ୍ରୁ ଥିଲେ । ନରହତ୍ୟା ଓ ଲୁଣ୍ଠନ ଏହାଙ୍କର ନିତ୍ୟକର୍ମ ଥିଲା । ତୈମୁର ଭାରତବର୍ଷରେ ଉପସ୍ଥିତ ହୋଇ ମାର୍ଗ ମଧ୍ୟରେ ନରହତ୍ୟା ଓ ଲୁଣ୍ଠନ କରି୨ ଦିଲ୍ଲୀଠାରେ ଉପସ୍ଥିତ ହେଲେ । ମହେମୁଦ ପ୍ରବଳ

ଶତ୍ରୁଙ୍କୁ ନିବାରଣ କରି ନ ପାରି ଗୁର୍ଜ୍ଜରଦେଶକୁ ପଳାୟନ କଲେ । ତହୁଁ ତୈମୁର ଅବାଧେ ନଗର ଅଧିକାର କରି ପାରିଲେ । କେତେକ ଦିନ ପର୍ଯ୍ୟନ୍ତ ଦିଲ୍ଲୀସହର ବନ୍ଧୁକର ବଜ୍ରଧ୍ୱନି, ପ୍ରଜାମାନଙ୍କର ଆର୍ତ୍ତନାଦ, ଅସୀର ଝନଝନ ଓ ହୁତାଶନର ଧୂଧୂ ଶବ୍ଦରେ ଆକୁଳିତ ହୋଇଥିଲା । ଅବଶେଷେ ଦିଲ୍ଲୀସ୍ଥ ସମସ୍ତ ପ୍ରଜାର ଧନ ପ୍ରାଣ ସହିତ ଏହି ଉତ୍ପାତର ଉପସଂହାର ହୁଏ । ତହିଁ ଉତ୍ତାରେ ନରରାକ୍ଷସ ତୈମୁର ମିରଟ ଓ ହରିଦ୍ୱାର ଲୁଣ୍ଠନ ଓ ତନ୍ନଗରବାସିମାନଙ୍କୁ ବଳିଦାନ ଦେଇ ସ୍ୱଦେଶାଭିମୁଖେ ପ୍ରସ୍ଥାନ କଲେ ।

ଏହି ସକଳ ଉତ୍ପାତ ନିବାରିତ ହେବାରୁ ମହମ୍ମଦ ପୁନର୍ବାର ଦିଲ୍ଲୀକୁ ଫେରି ଆସିଲେ ମାତ୍ର ତାହାଙ୍କର ଗମନୋନ୍ମୁଖ ସୌଭାଗ୍ୟ ଫେରିଲା ନାହିଁ । ୧୪୧୨ ସାଲେ ମହମ୍ମଦର ମୃତ୍ୟୁ ହେବାରୁ ଦୌଲତଖାଁ ନାମକ ଏକ ଲୋକ ରାଜତ୍ୱ କରନ୍ତି ତଦନନ୍ତର ପଞ୍ଜାବର ଶାସନକର୍ତ୍ତା ଖିଜିରଖାଁ ତାହାଙ୍କୁ ତଡି ଦେଇ ସ୍ୱୟଂ ସମ୍ରାଟ୍ ହୁଅନ୍ତି । ଖିଜିରଖାଁବଂଶୀୟ ତିନିଜଣ ସମ୍ରାଟ୍ ସିଂହାସନାରୂଢ଼ ହୋଇଥିଲେ । ଶେଷ ସମ୍ରାଟ୍ ବହ୍ଲୋଲ୍‌ଖାଁ ଲୋଦି ହସ୍ତରେ ରାଜ୍ୟଭାର ସମର୍ପଣ କରି ବଦାଉନ ନଗରରେ ବାସ କଲେ । ବହ୍ଲୋଲ୍ ଦୀର୍ଘକାଳ ରାଜତ୍ୱ କରିଥିଲେ । ଖିଜିରଖାଁ ବଂଶୀୟ ସମ୍ରାଟମାନଙ୍କ ସମୟରେ ଦିଲ୍ଲୀର ଅଧିକାର ଅନେକ ସଂକୀର୍ଣ୍ଣ ହୋଇଥିଲା ମାତ୍ର ବର୍ତ୍ତମାନ ସମ୍ରାଟର ବାହୁବଳରେ ପୁନର୍ବାର ବିସ୍ତାରିତାକୁ ପ୍ରାପ୍ତ ହେଲା । ବହ୍ଲୋଲ ସାମାନ୍ୟ ଅଳଂକାର ଧାରଣ କରିବାକୁ ଇଚ୍ଛା ନ କରି ସେ କେତେ-ଗୁଡିଏ ସଦ୍‌ଗୁଣ ଅଳଂକାରରେ ଅଳଂକୃତ ଥିଲେ ଏବ ବୃଥା ଆଡ଼ମ୍ବର ନ କରି ସାମାନ୍ୟ ଭାବରେ ଦିନଯାପନ କରିବାକୁ ଅଧିକ ଭଲ ମଣୁଥିଲେ । ସେ ବୋଲୁ-ଥିଲେ ଯେବେ ସମସ୍ତ ଲୋକ ଆମ୍ଭଙ୍କୁ ପ୍ରଧାନ ଲୋକ ବୋଲି ମାନ୍ୟ କରନ୍ତି, ତେବେ ଆମ୍ଭର ଲୋକମାନଙ୍କୁ ବଡପଣ ଦେଖାଇବାର ଆବଶ୍ୟକ କି ? ବହ୍ଲୋଲ୍ ନିଜେ ବିଦ୍ୱାନ୍ ନ ଥିଲେ ମାତ୍ର ବିଦ୍ୱାନ୍ ଲୋକମାନେ ତାହାଙ୍କଠାରେ ଅତ୍ୟନ୍ତ ସମ୍ମାନଭାଜନ ଥିଲେ ।

ବହ୍ଲୋଲ ଉତ୍ତାରେ ସିକନ୍ଦର ସିଂହାସନାରୋହଣ କଲେ । ସିକନ୍ଦର ପୂର୍ବାଧିକାରିର ସଦ୍‌ଗୁଣାବଳୀ ସହିତ ରାଜତ୍ୱ ପ୍ରାପ୍ତ ହୋଇଥିଲେ; ମାତ୍ର ଏହାଙ୍କ ଅଧିକାର ସମୟରେ ହିନ୍ଦୁଧର୍ମ ପ୍ରତି ଅତ୍ୟନ୍ତ ଅତ୍ୟାଚାର ହୋଇଥିଲା । ସେ ହିନ୍ଦୁ-ମାନଙ୍କର ଅନେକ ଦେବାଳୟ ଚୂର୍ଣ୍ଣୀଭୂତ ଓ ତୀର୍ଥ ଯାତ୍ରା ରହିତ କରିଥିଲେ । ଏକଦା ଜଣେ ପଣ୍ଡିତ ପ୍ରଚାର କଲେ ଯେ, "କାୟମନୋବାକ୍ୟେ ଅନୁଷ୍ଠାନ କଲେ ସକଳ ଧର୍ମ ଈଶ୍ୱରଙ୍କର ଗ୍ରାହ୍ୟ ଅଟେ" । ସିକନ୍ଦର ଏହି କଥା ଶୁଣି ତତ୍‌କ୍ଷଣାତ୍ ସେହି ପଣ୍ଡିତର ପ୍ରାଣବଧ ନିମନ୍ତେ ଆଦେଶ କଲେ । କୌଣସି ଧର୍ମପରାୟଣ

ମୁସଲମାନ ଏ ବିଷୟରେ ପ୍ରତିବାଦ କରିବାରୁ ସିକନ୍ଦର କହିଲେ "ରେ ଅଧମ ପୌତ୍ତଳିକତାର ପୋଷକତା କରୁଅଛୁ ?" ମୁସଲମାନ କହିଲା "ନା—ମୁଁ କହୁ-ଅଛି ପ୍ରଜାପୀଡ଼ନ ଅନ୍ୟାୟ"। ତହୁଁ ସିକନ୍ଦର ନୀରବ ହେଲେ।

ଏହି ସମୟରେ ( ୧୪୮୫ ସାଲରେ ) ଗଙ୍ଗା ଓ ଜଲଙ୍ଗୀ ନଦୀର ସଙ୍ଗମ ସ୍ଥଳେ ନବଦ୍ୱୀପ ନାମକ ଗ୍ରାମରେ ବୈଷ୍ଣବମାନଙ୍କର ପ୍ରବର୍ତ୍ତକ ଚୈତନ୍ୟ ⁕ ଆବିର୍ଭୂତ ହେଲେ, ଚୈତନ୍ୟଙ୍କ ସ୍ୱଭାବ ଅତି ନମ୍ର ଓ ଶାନ୍ତ ଥିଲା। ୧୫୦୯ ସାଲରେ ସିକନ୍ଦର ଆପଣା ପୁତ୍ର ଇବ୍ରାହିମଙ୍କ ହସ୍ତରେ ରାଜ୍ୟଭାର ଅର୍ପଣ କରି ପ୍ରାଣ ତ୍ୟାଗ କଲେ। ଇବ୍ରାହିମ ଅତ୍ୟନ୍ତ ସାହସୀ ଓ ଅହଙ୍କାରୀ ଥିଲେ। ଅଧୀନସ୍ଥ ଲୋକମାନଙ୍କ ସହିତ ଅତି ସାମାନ୍ୟ ଲୋକ ପରି ବ୍ୟବହାର କରୁଥିଲେ। ଏହାଙ୍କ ବିବେଚନାରେ ତାଙ୍କୁ ଛାଡ଼ି ପୃଥିବୀରେ ଅଉ କେହି କୁଳୀନ ବା ସମ୍ଭ୍ରାନ୍ତ ଲୋକ ଥିଲା ନାହିଁ। ଏଥିରୁ ଏହି ଲାଭ ହୋଇଥିଲା ଯେ, ପ୍ରଧାନ ୨ ଲୋକମାନେ ଚକ୍ରାନ୍ତ କରି ଅନେକ ଥର ବିପ୍ଳବ ଉପସ୍ଥିତ କରିଥିଲେ। ପରିଶେଷେ ପଞ୍ଜାବର ଶାସନକର୍ତ୍ତା ଦୌଲତଖାଁ କାବୁଲର ଅଧିପତି ସୁଲତାନ ବାବରଙ୍କୁ ଇବ୍ରାହିମଙ୍କ ସହିତ ଯୁଦ୍ଧ କରିବା କାରଣ ଆହ୍ୱାନ କଲେ। ଦିଲ୍ଲୀ ଆକ୍ରମଣ କରିବା ପାଇଁ ବାବରଙ୍କର ପୂର୍ବରୁ ବାସନା ଥିଲା, ସୁତରାଂ ଦୌଲତ ଖାଁ ଆହ୍ୱାନରେ ଉତ୍ତେଜିତ ହୋଇ ଇବ୍ରାହିମ ସହିତ ଯୁଦ୍ଧ କରିବା କାରଣ ଆସି ପାଣିପଥ ନଗରଠାରେ ଉପସ୍ଥିତ ହେଲେ, ଇବ୍ରାହିମ ମଧ୍ୟ ସସୈନ୍ୟେ ସେ ସ୍ଥାନରେ ଉପସ୍ଥିତ ହେଲେ। ଇବ୍ରାହିମ ସହିତ ଏକ ଲକ୍ଷ ସେନା ଓ ଏକ ସହସ୍ର ହସ୍ତୀ ଥିଲେ; କିନ୍ତୁ ବାବରସାହ ସୈନ୍ୟସଂଖ୍ୟା ବାର ସହସ୍ର ମାତ୍ର। ତଥାପି ବାବର ସାହସ ପ୍ରତି ନିର୍ଭର କରି ଅକୁତୋଭୟେ ଶତ୍ରୁ ସୈନ୍ୟ ଆକ୍ରମଣ କଲେ। ଉଭୟ ପକ୍ଷର ଘୋରଯୁଦ୍ଧ ଉପସ୍ଥିତ ହେବାରୁ

---

⁕ ନବଦ୍ୱୀପରେ ଜଗନ୍ନାଥମିଶ୍ରଙ୍କ ଔରସରେ ଓ ସଚୀଦେବୀଙ୍କ ଗର୍ଭରୁ ଚୈତନ୍ୟ ଜନ୍ମ ଗ୍ରହଣ କରନ୍ତି। ଚୈତନ୍ୟ ତରୁଣ ବୟସରେ ସଂସାର ତ୍ୟାଗ ପୂର୍ବକ ଧର୍ମ ପ୍ରଚାର କରିବାରେ ପ୍ରବୃତ୍ତ ହୋଇଥିଲେ ସେ ଧର୍ମ ପ୍ରଚାର ପାଇଁ ଉତ୍କଳକୁ ଆସିଥିଲେ। ସେ ସମୟରେ ପୁରୀର ରାଜା ପୁରୁଷୋତ୍ତମଦେବ। ଚୈତନ୍ୟଙ୍କ ମତ ରାଜ ସଭାରେ ଆଦର ପୂର୍ବକ ଗୃହୀତ ହୋଇଥିଲା। ସେହିଦିନଠାରୁ ଉତ୍କଳର ପ୍ରାୟ ସମସ୍ତ ଲୋକେ ତାହାଙ୍କ ମତ ଅବଲମ୍ବନ କରି ଆସୁଅଛନ୍ତି। ଦୁଃଖର ବିଷୟ ଏହି ଯେ, ଏହି ଧର୍ମାବଲମ୍ବୀ ବୈଷ୍ଣବମାନଙ୍କ ମଧ୍ୟରେ ଯେତେ ଭଣ୍ଡତପସ୍ୱୀ ଦେଖା ଯାଆନ୍ତି ଅନ୍ୟାନ୍ୟ ଉପଧର୍ମରେ ତାଦୃଶ ନୁହଇ ଏହି ଏବଂ ଅନ୍ୟାନ୍ୟ କାରଣ ପ୍ରଯୁକ୍ତ ବୋଧ ହୁଏ ଏହି ଧର୍ମ ଦୀର୍ଘକାଳ ସ୍ଥାୟୀ ହୋଇ ପାରିବ ନାହିଁ।

ଅସଂଖ୍ୟ ସୈନ୍ୟ ସହିତ ଇବ୍ରାହିମ ସମରଶାୟୀ ହେଲେ । ମୁସଲମାନ ସମ୍ରାଟବଂଶ ମଧ୍ୟ ଇବ୍ରାହିମ କଳେବର ସହିତ ଲୋପ ହୁଏ ।

---

## ଦ୍ୱାଦଶ ଅଧ୍ୟାୟ ।

### ବାବର ।

ସୁପ୍ରସିଦ୍ଧ ଟାଇମୁରଖାଁଙ୍କର ପ୍ରପୌତ୍ର ଅବସାୟୀଦରଙ୍କର ଅନେକ ପ୍ରପୌତ୍ର ଥିଲେ, ତନ୍ମଧ୍ୟରେ ସମରକନ୍ଦ ଓ କ୍ୟାସାଗରର ମଧ୍ୟବର୍ତ୍ତୀ ଫର୍ଗନାର ଅଧିପତି ଅମର ସେଖ ମିର୍ଜା ଏକ ଜଣ । ଅମର, ଜଙ୍ଗୀସଖାଁ ବଂଶଜା ଏକ କୁମାରୀର ପାଣି ଗ୍ରହଣ କଲେ; ବାବର ସେହି ବିବାହ ସମ୍ଭୂତ । ବାବର ଦ୍ୱାଦଶ ବରଷ ବୟସ ସମୟରେ ପିତୃହୀନ ହୋଇ ଫର୍ଗନାର ସିଂହାସନରେ ଅଧିରୋହଣ କଲେ ତାଙ୍କୁ ବାଳକ ଦେଖି ତାହାଙ୍କର ଜ୍ଞାତିମାନେ ଫର୍ଗନା ଆକ୍ରମଣ କରି ଥିଲେ; କିନ୍ତୁ ସେମାନଙ୍କର ମନୋରଥ ସଫଳ ହୋଇ ନ ଥିଲା । ଅଳ୍ପଦିନ ଉତ୍ତାରେ ସମରକନ୍ଦାଧିପତି ତାହାଙ୍କ ପିତୃବ୍ୟ ପ୍ରାଣତ୍ୟାଗ କରନ୍ତେ ତଦ୍ରାଜ୍ୟ ଫର୍ଗନା ସହିତ ମିଳିତ ହୁଏ; କିନ୍ତୁ ସେ ସମୟରେ ତାହା ରକ୍ଷାକରିବା ବାବରଙ୍କ ପକ୍ଷରେ ଅତ୍ୟନ୍ତ କଠିନ ହୋଇ ଥିଲା; କାରଣ ସେନାମାନେ ଉପଯୁକ୍ତ ସମୟରେ ବେତନ ନ ପାଇବାରୁ କ୍ରମାନ୍ୱୟେ କର୍ମ ତ୍ୟାଗ କରୁଥିଲେ ପୁଣି ଏହି ସମୟରେ ଟାମ୍ବେଲ ନାମକ ତାହାଙ୍କର ପ୍ରଧାନ ଅମାତ୍ୟ ବିଦ୍ରୋହାଚରଣ କଲେ । ବାବର ଏହି ବିଦ୍ରୋହାଗ୍ନି ନିର୍ବାଣ କରି ନ ପାରି ସମୀପବର୍ତ୍ତୀ ଏକ ନିବିଡ଼ ଅରଣ୍ୟକୁ ପଳାଇଲେ । ସେ କିଛିଦିନ ଉତ୍ତାରେ ୨୪୦ ଜଣ ମାତ୍ର ସୈନ୍ୟ ଘେନି, ଏକ ଅନ୍ଧକାରମୟୀ ରଜନୀରେ ସମରକନ୍ଦ ଆକ୍ରମଣ କରି ଏପରି ସାହସ ସହକାରେ ନଗରରକ୍ଷକ ସିପାହିମାନଙ୍କ ସହିତ ଯୁଝିଲେ ଯେ, ସେମାନେ ବାବରଙ୍କ ସହିତ ଅନେକ ସୈନ୍ୟ ଅଛନ୍ତି ଅନୁମାନ କରି ତାହାଙ୍କର ବଶୀଭୂତ ହେଲେ । ସେହି ଦିନ ସମରକନ୍ଦ ବାବରଙ୍କ କରତଳନ୍ୟସ୍ତ ହେଲା । ଉଜବେକ ଜାତୀୟ ଲୋକମାନେ ପୁନର୍ବାର ସମରକନ୍ଦ ଆକ୍ରମଣ କଲେ । ତହିଁ ବାବର ବିଶ୍ୱାସଘାତକ ସୈନ୍ୟମାନଙ୍କ ଦୋଷରୁ ପରାସ୍ତ ହୋଇ ପଳାୟନ ପୂର୍ବକ ଇତସ୍ତତଃ ଭ୍ରମଣ କଲେ । ସେତେବେଳେ ବାବରଙ୍କ ଅବସ୍ଥା ସାମାନ୍ୟ ଭିକ୍ଷୁକମାନଙ୍କ ଅବସ୍ଥାଠାରୁ ଅଧିକ ଉତ୍ତମ ନ ଥିଲା; ଏମନ୍ତ କି ସେ ଚୀନ ରାଜ୍ୟରେ ସାମାନ୍ୟ ପ୍ରଜାଭାବେ ଜୀବନଯାପନ କରିବା ପାଇଁ ସ୍ଥିର କରିଥିଲେ, କିନ୍ତୁ ଧୀଶକ୍ତି ସମ୍ପନ୍ନ ଉତ୍ସାହୀ ଲୋକେ ଯେ ଅବସ୍ଥାରେ ଥାଆନ୍ତୁ ସେମାନଙ୍କୁ ସୌଭାଗ୍ୟଲକ୍ଷ୍ମୀ କଦାଚ ପରିତ୍ୟାଗ କରନ୍ତି ନାହିଁ । ବାବର ସମରକନ୍ଦ ପରିତ୍ୟାଗ ସମୟରେ ତାହାଙ୍କ ସହିତ ୩୦୦ ମାତ୍ର

ଅନୁଚର ଓ ୭ ତୋପ ମାତ୍ର ଥିଲା । ସଙ୍ଗିମାନଙ୍କ ମଧ୍ୟରୁ ଅନେକ ଲୋକର ଯଷ୍ଟି ଛଡ଼ା ଅନ୍ୟ କିଛି ଅସ୍ତ୍ର ଥିଲା ନାହିଁ । ବାବର ଅନ୍ୟ କୌଣସି ଉପାୟ ସ୍ଥିର କରି ନ ପାରି ସହଚରମାନଙ୍କ ସହିତ କାବୁଲ୍‌କରେ ଉପସ୍ଥିତ ହେଲେ । ସୌଭାଗ୍ୟ ପ୍ରଯୁକ୍ତ ତତ୍ରତ୍ୟ ସିପାହିମାନେ ତାହାଙ୍କର ଅଭିନନ୍ଦନ କରିବାରୁ ସେ ସେମାନଙ୍କ ସାହାଯ୍ୟରେ ୧୫୦୪ ସାଲେ କାବୁଲ୍ ଅଧିକାର କଲେ । ଏହି ରାଜ୍ୟ ଯାବଜ୍ଜୀବନ ତାହାଙ୍କର ଶାସନାଧୀନ ଥିଲା ।

ପାଣିପଥ ଯୁଦ୍ଧ ଉତ୍ତାରେ ଦିଲ୍ଲୀ ଓ ଆଗ୍ରା ବାବରଙ୍କର ବଶତା ସ୍ୱୀକାର କରିଥିଲା; କିନ୍ତୁ ଗଙ୍ଗାନଦୀର ପୂର୍ବକୂଳସ୍ଥ ସମସ୍ତ ଭୂଭାଗ ଓ ଯମୁନାନଦୀର ପଶ୍ଚିମ ତୀରସ୍ଥ ଅନେକ ଦେଶ ସେତେବେଳେ ପର୍ଯ୍ୟନ୍ତେ ତାହାଙ୍କର ଅନଧୀନ ଥିଲା । ସେହି ସକଳ ଦେଶରେ ପୂର୍ବ ପଠାଣ ଭୂପତିମାନଙ୍କ ଅମାତ୍ୟମାନେ ରାଜତ୍ୱ କରୁଥିଲେ । ଗ୍ରୀଷ୍ମ ସମୟରେ ଭାରତବର୍ଷ, ଶୀତଳ ପ୍ରଦେଶୀୟ ଲୋକମାନଙ୍କ ପକ୍ଷରେ ସୁଖକର ନୁହଇ ; ତେଣୁ ବାବରଙ୍କର ସୈନ୍ୟମାନେ ଭାରତବର୍ଷରେ ରହି ନ ପାରି ସ୍ୱଦେଶକୁ ଯିବା କାରଣ ବାରମ୍ବାର ପ୍ରାର୍ଥନା କଲେ ଏବଂ କେହି୨ ମଧ୍ୟ ଅନୁମତି ବିନା ଚାଲିଗଲେ । ତହୁଁ ବାବର ସିପାହିମାନଙ୍କୁ ଆହ୍ୱାନ କରି କହିଲେ "ଦେଖ ସିପାହିମାନେ ଅମ୍ଭେମାନେ ଭାରତବର୍ଷ ଜୟ କରିବା କାରଣ ଅନେକ କ୍ଳେଶଭୋଗ କରିଅଛୁଁ, ଏତେଦୂର ଆସି ଫେରିଯିବା କି ପୁରୁଷର କର୍ମ ? ଅତଏବ ଯେଉଁମାନଙ୍କର ଇଚ୍ଛା ହୁଏ, ସେମାନେ ଫେରିଯାଉନ୍ତୁ ; କିନ୍ତୁ ଅମ୍ଭେ ଫେରିଯିବୁଁ ନାହିଁ" ଏହି କଥା ଶୁଣି, ସୈନ୍ୟମାନେ କାରୁତ୍ତ୍ୱ ହୋଇ ରହିଲେ, ସ୍ୱଦେଶକୁ ଫେରିଯିବା କଥା ଆଉ କାହାର ମୁଖରୁ ଶୁଣାଗଲା ନାହିଁ । ଏଣେ ଅମାତ୍ୟ ପଠାଣମାନେ ଦେଖିଲେ ଯେ, ବାବର ଶୀଘ୍ର ଭାରତବର୍ଷ ପରିତ୍ୟାଗ କରିବାର ପାତ୍ର ନୁହନ୍ତି ; ଅତଏବ ତାହାଙ୍କଠାରେ ଅବାଧ୍ୟାଚରଣ କରିବା ପରିଣାମେ କ୍ଳେଶକର ମାତ୍ର, ତେଣୁ ସେମାନେ ବିନା ଯୁଦ୍ଧରେ ବାବରଙ୍କଠାରେ ବଶତା ସ୍ୱୀକାର କଲେ । ଅବଶିଷ୍ଟମାନଙ୍କୁ ଯୁବରାଜ ହୁମାୟୁନ ପରାସ୍ତ କରନ୍ତି । ମୁସଲମାନମାନେ ପରାସ୍ତ ହେଲା ଉତ୍ତାରେ ହିନ୍ଦୁମାନଙ୍କ ସହିତ ଯୁଦ୍ଧ ଉପସ୍ଥିତ ହେଲା । ପ୍ରଥମେ ଚିତୋରର ଅଧୀଶ୍ୱର ସଙ୍ଗ, ଦିଲ୍ଲୀଶ୍ୱରଙ୍କ ବିରୁଦ୍ଧରେ ଖଡ଼୍‌ଗହସ୍ତ ହୁଅନ୍ତି । ସେ ସସୈନ୍ୟେ ଆଗ୍ରାର ୯କୋଶ ଦକ୍ଷିଣେ ଶିକ୍ରି ନାମକ ସ୍ଥାନରେ ଉପସ୍ଥିତ ହୋଇ ପ୍ରଥମ ଯୁଦ୍ଧରେ ବାବରଙ୍କ ପ୍ରେରିତ ସେନାମାନଙ୍କୁ ପରାସ୍ତ କଲେ । ସେତେବେଳେ ସଙ୍ଗ, ସେହି ଭଗ୍ନୋତ୍ସୁକ ସେନାମାନଙ୍କର ଅନୁଗମନ କରିଥିଲେ ଅନାୟାସରେ ଜୟଲାଭ କରିଥାଆନ୍ତେ ସନ୍ଦେହ ନାହିଁ; କିନ୍ତୁ ସେ ତାହା କଲେ ନାହିଁ । ତହୁଁ ବାବର ଅବକାଶ ପାଇ ଆପଣାର ଶିବିର ଏପରି ଦୃଢ଼ୀଭୂତ କଲେ ଯେ, ତାହା ଆକ୍ରମଣ କରି ପରାସ୍ତ

କରିବା ଶଙ୍ଗଙ୍କ ପକ୍ଷରେ ଅତ୍ୟନ୍ତ କଠିନ ହେଲା । ଯାହା ହେଉ, ବାବରଙ୍କର ଦୁର୍ଭାଗ୍ୟ ପ୍ରଯୁକ୍ତ ଏହି ସମୟରେ କାବୁଲରୁ ଜଣେ ଭବିଷ୍ୟଦ୍ବକ୍ତା ଆସି ତାହାଙ୍କ ଶିବିରରେ ପହଞ୍ଚିଲେ । ସେ ଆକାଶର ଆକାର ନିରୀକ୍ଷଣ କରି କହିଲେ ଯେ, " ଏହି ଯୁଦ୍ଧରେ ବାବର ସମ୍ପୂର୍ଣ୍ଣରୂପେ ପରାସ୍ତ ହେବେ " । ଏକଥା ଶୁଣି ବାବରଙ୍କର ସେନାପତିମାନେ ଅତ୍ୟନ୍ତ ଭୀତ ଓ ଭଗ୍ନୋତ୍ସାହ ଓ କେହିଂ ସେନା-ପତି ମଧ୍ୟ ପଳାୟନପରାୟଣ ହେଲେ । ଭବିଷ୍ୟଦ୍ବକ୍ତାଙ୍କ କଥାରେ ବାବରଙ୍କର କିଛିମାତ୍ର ବିଶ୍ୱାସ ନ ଥିଲା; କିନ୍ତୁ ଏହି ଭୟାନକ କଥା ଶୁଣି ଯେ, ସେନାମାନେ ଅତ୍ୟନ୍ତ ଭୀତ ହେବେ ଏହା ସେ ବୁଝି ପାରିଲେ । ଅତଏବ ସୈନ୍ୟମାନଙ୍କ ମନରୁ ଭୟ ଦୂର କରିବା କାରଣ ସୁରାପାନ-ତ୍ୟାଗ, ଶ୍ମଶ୍ରୁ-ଧାରଣ ଓ ଦରିଦ୍ର-ମାନଙ୍କୁ ରଜତକାଞ୍ଚନ-ଦାନ ଏବଂ ମୁସଲମାନ ପ୍ରଜାମାନଙ୍କର କର-ଲାଘବ ପ୍ରଭୃତି ଧର୍ମାନୁଷ୍ଠାନରେ ପ୍ରବୃତ୍ତ ହେଲେ । ପରେ ସେନାପତିମାନଙ୍କୁ ଏକତ୍ରିତ କରି କହିଲେ ଜୀବନ ନଶ୍ୱର; କିନ୍ତୁ କୀର୍ତ୍ତି ଚିରସ୍ଥାୟିନୀ । ସାମାନ୍ୟ ଜୀବନରକ୍ଷା ଅନୁରୋଧରେ ଭଙ୍ଗ ଦେଇ ପଳାୟନ କରିବା ନିତାନ୍ତ କାପୁରୁଷର କର୍ମ; ଅତଏବ ଉଠ ! ଶସ୍ତ୍ରହସ୍ତ ହୁଅ ! ବୀରତ୍ୱ ପ୍ରକାଶ କର ! ! " । ସେନାପତିମାନେ ବକ୍ତୃତା ଶୁଣି ଅତ୍ୟନ୍ତ ପ୍ରୋତ୍ସାହିତ ଓ ଶରୀର ପତନ ଅଥବା କାର୍ଯ୍ୟସାଧନ କରିବା କାରଣ ପ୍ରତିଜ୍ଞାରୂଢ଼ ହେଲେ । ଅନନ୍ତର ବାବର ଶିବିର ସମ୍ମୁଖରେ ଦଣ୍ଡବ୍ୟୂହ ରଚନା କରି ସ୍ୱୟଂ ଅଶ୍ୱପୃଷ୍ଠରେ ଆରୋହଣପୂର୍ବକ ସେନାମାନଙ୍କୁ ଉତ୍ସାହଜନକ ବାକ୍ୟ କହିବାରେ ମତ୍ତ ହେଲେ । ହିନ୍ଦୁମାନେ ପୁନର୍ବାର ଆକ୍ରମଣ କଲେ; କିନ୍ତୁ ବାବ-ରଙ୍କର ରଣଚାତୁର୍ଯ୍ୟ ହେତୁରୁ ଶୀଘ୍ର ପରାସ୍ତକୁ ଲଭିଲେ ।

ଶଙ୍ଗରାଜା ପରାଜିତ ହେଲାରୁ ବାବର ଅଯୋଧ୍ୟାଧିପତିଙ୍କ ବିରୁଦ୍ଧରେ ସୈନ୍ୟ ପଠାଇ ସ୍ୱୟଂ ମେଦନୀରାଜ ବିରୁଦ୍ଧରେ ଯୁଦ୍ଧଯାତ୍ରା କଲେ । ମେଦନୀ ରାଜପୁତବଂଶ ସମ୍ଭୂତ ଓ ଶଙ୍ଗ ରାଜାଙ୍କ ପରମବନ୍ଧୁ ଥିଲେ । ବୁନ୍ଦେଲଖଣ୍ଡ ପ୍ରାନ୍ତରେ ଚନ୍ଦେରୀ ନଗରରେ ତାହାଙ୍କର ରାଜଧାନୀ ଥିଲା । ଚନ୍ଦେରୀ ଅଳ୍ପ ଆୟାସରେ ବଶୀଭୂତ ହେଲା । ବାବର ସେ ସ୍ଥାନରୁ ଅଯୋଧ୍ୟାକୁ ଯାଇ ସେହି ନଗର ପରାଜୟ ପୂର୍ବକ ତତ୍ରତ୍ୟ ବିଦ୍ରୋହୀ ଅଧିବାସିମାନଙ୍କୁ ବଙ୍ଗଳାଦେଶକୁ ତଡ଼ିଦେଲେ ଅନନ୍ତର ବିହାରରାଜାଙ୍କୁ ସମ୍ପୂର୍ଣ୍ଣରୂପେ ପରାସ୍ତ କରି ନିଜ ରାଜଧାନୀକୁ ଫେରି ଆସି ବିଶ୍ରାମ ସୁଖ ସମ୍ଭୋଗ କଲେ ।

ମହମ୍ମଦ ତୋଗଲକଙ୍କ ରାଜତ୍ୱ ସମୟରେ ବଙ୍ଗଦେଶ, ଦିଲ୍ଲୀର ଅଧୀନତା ଶୃଙ୍ଖଳାରୁ ମୁକ୍ତିଲାଭ କରେ । ବାବର ସେହି ସ୍ୱାଧୀନତା ଉଚ୍ଛେଦ ବାସନାରେ ଗଙ୍ଗା ଓ ଘର୍ଘରାନଦୀ ପାର ହୋଇ ବଙ୍ଗୀୟ ସେନାମାନଙ୍କୁ ପରାସ୍ତ କଲେ । ବଙ୍ଗୀୟ-

ରାଜ୍ୟ ସନ୍ଧିଦ୍ୱାରା ମୁକ୍ତିଲାଭ କରନ୍ତି । ବାବର ସେ ସ୍ଥାନରୁ ଅଗସ୍ର ଯିବା କାରଣ ଉଦ୍‌ଯୋଗ କରୁଅଛନ୍ତି ଏମନ୍ତ ସମୟରେ ଶୁଣିଲେ ଯେ, ଲକ୍ଷ୍ନୌ ଏକଦଳ ମୁସ-ଲମାନ ସେନାଦ୍ୱାରା ଆକ୍ରାନ୍ତ ହୋଇଅଛି । ତହୁଁ ସେ ଜଣେ ଯୋଗ୍ୟ ସେନାପତିଙ୍କ ଅଧୀନରେ ଥୋକାଏ ସୈନ୍ୟ ପଠାଇ ଆକ୍ରମଣକାରୀମାନଙ୍କୁ ଛତ୍ରଭଙ୍ଗ କରିଦେଲେ ।

ଇତଃପୂର୍ବେ ବାବରଙ୍କ ସ୍ୱାସ୍ଥ୍ୟଭଙ୍ଗ ହୋଇଥିଲା । ବର୍ତ୍ତମାନ (୧୫୩୦ ସାଲ) ସ୍ୱୀୟ ପୁତ୍ର ହୁମାୟୁନଙ୍କ ହସ୍ତରେ ରାଜ୍ୟଭାର ସମର୍ପଣପୂର୍ବକ ୫୦ ବରଷ ବୟସ ସମୟରେ କଳେବର ପରିତ୍ୟାଗ କଲେ । ସେ ଚାରିବରଷ ମାତ୍ର ରାଜତ୍ୱ କରିଥିଲେ ।

ବାବରଙ୍କର ପ୍ରଚୁର ଶୌର୍ଯ୍ୟ ଓ ଦକ୍ଷତା, ତଦୀୟ କାର୍ଯ୍ୟପରମ୍ପରା କୀର୍ତ୍ତନ କରୁଅଛି ଏବଂ ତଦୀୟ ସ୍ୱହସ୍ତ ଲିଖିତ ଆତ୍ମଚରିତ୍ରରେ ତଦୀୟ ମନୁଷ୍ୟତ୍ୱ ସ୍ପଷ୍ଟ ପ୍ରତିଭାତ ହେଉଅଛି । ସେହି ସୁଲିଖିତ ଆଖ୍ୟାୟିକାରୁ ଜଣାଯାଏ ଯେ ତାହାଙ୍କର ଚିତ୍ତ ଅତ୍ୟନ୍ତ ପ୍ରଫୁଲ୍ଲ ଓ ଅକ୍ଷୁବ୍ଧ ଥିଲା । ସେ ବନ୍ଧୁବର୍ଗଙ୍କ ପ୍ରତି ସଦୟ ଓ ବତ୍ସଲ ଥିଲେ ଓ ସେମାନଙ୍କୁ ଅପଣାପର ମର୍ଯ୍ୟାଦାପନ୍ନ ଜ୍ଞାନ କରୁଥିଲେ । ତାହାଙ୍କର ସ୍ୱଭାବ ଅତ୍ୟନ୍ତ ହୃଦୟଗ୍ରାହିଣୀ ଓ ଅସଙ୍ଗଲିପ୍ସୁ ଥିଲା । ସେ ରମଣୀୟ ସ୍ଥାନ ଦେଖି ଅତ୍ୟନ୍ତ ମୋହିତ ହୁଅନ୍ତି ଓ ବନାଡ଼ମ୍ବରେ ପାନ ଭୋଜନ ସମାଧାନ କରନ୍ତି । ସେ ଏକସ୍ଥାନରେ ଲେଖି ଯାଇଅଛନ୍ତି—"ଅମ୍ଭେ ସମରକନ୍ଦରୁ ପଳାଇ ଆସିଲା ବାଦ ଯେଉଁ ଦିନ ପେଟ ପୂରାଇ ଆହାର କରି କରୁଣ୍ଡବେଗରେ ଶୋଉ-ଥିଲୁଁ, ସେଦିନ ଯେପରି ସୁଖାନୁଭବ କରିଥିଲୁଁ ସେପରି ସୁଖ ଆଉ ଅମ୍ଭ ଅଦୃଷ୍ଟରେ ଘଟିଲା ନାହିଁ" । ବାବର ବିଳାସୀ ନ ଥିଲେ । ନଦୀପାର ହେବା ସମୟରେ ବୋଇତ ନ ପାଇଲେ, ସନ୍ତରଣଦ୍ୱାରା ପାର ହେଉଥିଲେ । ଦୋଷ ମଧ୍ୟରେ ସେ ସୁରାସକ୍ତ ଓ ଈଷଦ୍‌ହିଂସାତ୍ମକ ଥିଲେ । ତାହାଙ୍କର ସୁରାପାନ କରିବା ଗିନାରେ ଗୋଟିଏ କବିତା ଲେଖାଥିଲା ତାହାର ମର୍ମ ଏହି;—

ପ୍ରାଚୀନ ସୁରା ନବୀନ ଗୀତ ।
ଅଧର ନବୀନା ଯୁବତୀ ॥
ଜଗତେ ସୁଖ ଏ ମଣିବ ।
ବାବର ଏହା ନ ଛାଡିବ ॥

ସେ ଯାହା ହେଉ, ଜଗଦ୍‌ବିଖ୍ୟାତ ମହାତ୍ମା ଆକବରଙ୍କୁ ଛାଡ଼ି, ବାବରଙ୍କ ପରି ଲୋକ ମୋଗଲ ସମ୍ରାଟଙ୍କ ମଧ୍ୟରେ ଆଉ କେହି ନ ଥିଲା ।

## ତ୍ରୟୋଦଶ ଅଧ୍ୟାୟ ।

## ହୁମାୟୁନ ।

ବାବରଙ୍କର ଚାରିପୁତ୍ର ଥିଲେ । ହୁମାୟୁନ, କାମରାନ, ହିନ୍ଦାଲ ଓ ମିର୍ଜ୍ଜା-ଅସ୍କରି । କାମରାନଙ୍କ ହସ୍ତରେ କାବୁଲର ଶାସନକର୍ତ୍ତୃତ୍ୱର ଭାର ଥିଲା । ହିନ୍ଦାଲ ଓ ମିର୍ଜ୍ଜାଅସ୍କରି ଭାରତବର୍ଷ ମଧ୍ୟରେ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟର ଅଧିପତି ଥିଲେ । ବାବର ପରଲୋକ ଯାତ୍ରା କରନ୍ତେ ହୁମାୟୁନ ତଦୀୟ ସିଂହାସନରେ ଆରୂଢ଼ ହେଲେ । ସେ ସିଂହାସନରେ ବସିବା ମାତ୍ର ଜୋୟାନପୁର ଓ ବିହାରରେ ଯୋଦ୍ଧାଏ ମୁସଲ-ମାନ ବିଦ୍ରୋହର ବୈଜୟନ୍ତୀ ଉଡାଇଲେ, କିନ୍ତୁ ଅଳ୍ପ ଆୟାସରେ ପରାଜିତ ଓ ତାଡିତ ହେଲେ । ତଦନନ୍ତର ଗୁଜରାଟର ରାଜା ବାହାଦୁରସାହାଙ୍କ ସହିତ ଯୁଦ୍ଧ ଉପସ୍ଥିତ ହେଲା । ବାହାଦୁର ମାଳବଦେଶ ଓ ଦାକ୍ଷିଣାତ୍ୟର ଅନେକ ଦେଶ ଜୟ କରି ଅତ୍ୟନ୍ତ ଅହଂକାରୀ ହୋଇଥିଲେ । ବର୍ତ୍ତମାନ ଅକାରଣ ସମ୍ରାଟଙ୍କ ସହିତ ସମରାଙ୍ଗଣରେ ଉପସ୍ଥିତ ହୁଅନ୍ତି । ହୁମାୟୁନ ବୈରନିର୍ଯ୍ୟାତନ ସଙ୍କଳ୍ପରେ ଗୁଜରା-ଟରେ ଉପସ୍ଥିତ ହୋଇ ଦେଖିଲେ ଯେ, ଶତ୍ରୁସୈନ୍ୟ ଏକ ଦୁର୍ଜ୍ଜୟ ଦୁର୍ଗରେ ବାସ କରିଅଛନ୍ତି, ଫରାସିମାନେ* ତାହାଙ୍କ ସାହାଯ୍ୟ ପାଇଁ ଉପସ୍ଥିତ ଅଛନ୍ତି ଏବଂ ସେମାନଙ୍କ ସହିତ ଯୁଦ୍ଧୋପକରଣ ଅନେକ ଦ୍ରବ୍ୟ ମଧ୍ୟ ଅଛି । ଅତଏବ ହୁମାୟୁନ ସହସା ଯୁଦ୍ଧରେ ପ୍ରବୃତ୍ତ ହେବା, ପରିଣାମେ ପରାଜୟର ମୂଳକାରଣ ଜାଣି ନଗର ଆକ୍ରମଣ ନ କରି ଅବରୁଦ୍ଧ କଲେ । ନଗର ଅବରୁଦ୍ଧ ହେବାରୁ ଆହାରୀୟ ଦ୍ରବ୍ୟ ଗତାୟାତ ରହିତ ହୋଇ ସୁତରାଂ ଦୁର୍ଭିକ୍ଷ ପଡିଲା । ତହୁଁ ସାହା ନଗର ମଧ୍ୟରେ ରହି ନ ପାରି ଗୋୟାନଗରକୁ ପଳାୟନ କଲେ ଏବଂ ସେମାନଙ୍କର ଛତ୍ରଭଙ୍ଗ ହୋଇ ଯିବାରୁ ବିନା ଯୁଦ୍ଧରେ ନଗର ହସ୍ତଗତ ହେଲା । ସେହି ସ୍ଥାନରେ ହୁମା-ୟୁନ, ବିହାରରେ ବିଦ୍ରୋହ ହୋଇଥିବାର ଶୁଣି ଦ୍ୱିତୀୟ ବିଦ୍ରୋହୀ ଚମ୍ପାରଣର ଶାସନ ପାଇଁ ମିର୍ଜ୍ଜା ଅସ୍କରିଙ୍କୁ ପ୍ରେରଣପୂର୍ବକ ସ୍ୱୟଂ ବିହାର ଦେଶକୁ ଗମନ କଲେ ।

ହୁମାୟୁନ ଗୁଜରାଟ ପରିତ୍ୟାଗ କରିବା ମାତ୍ର ତତ୍ରତ୍ୟ ରକ୍ଷୀ ସେନାମାନେ ପରସ୍ପର ବିବାଦରେ ପ୍ରବୃତ୍ତ ହେଲେ । ଏହି ଆତ୍ମବିଦ୍ରୋହ ବାହାଦୁରଙ୍କ ପକ୍ଷରେ ଅତ୍ୟନ୍ତ ମଙ୍ଗଳପ୍ରଦ ହୋଇଥିଲା । ସେ ଏହି ସମ୍ବାଦ ପାଇବା ମାତ୍ର ଅବିଳମ୍ବେ ଆସି ଗୁଜରାଟ ଅଧିକାର କରନ୍ତି । ଏଣେ ହୁମାୟୁନ ତାହାଙ୍କ ପ୍ରବଳ ପ୍ରତିପକ୍ଷୀ ସେରଖାଁଙ୍କ ବିରୁଦ୍ଧରେ ଆଗ୍ରାଠାରୁ ଯାତ୍ରା କଲେ । ସେରଖାଁ ଜଣେ ପଠାଣ

---

* ଇଉରୋପୀୟମାନଙ୍କର ଭାରତୀୟ ଯୁଦ୍ଧରେ ପ୍ରବୃତ୍ତ ହେବା ଏହା ସର୍ବ-ପ୍ରଥମ ଘଟଣା ।

ଅମାତ୍ୟର ପୁତ୍ର । ତାହାଙ୍କର ଜନ୍ମସ୍ଥାନ ବିହାରଦେଶରେ ଥିଲା । ସେ ଅତ୍ୟନ୍ତ ଦକ୍ଷ ଓ ପ୍ରବଳ ଥିଲେ । ବାବରଙ୍କ ସ୍ୱତ୍ୱ ସମୟରୁ ଉନ୍ନତିର ଅଭିଳାଷା ତାହାଙ୍କର ଅନ୍ତଃକରଣରେ ଅଙ୍କୁରିତ ହୁଏ । ବିବିଧ ବିପ୍ଳବ ଉତ୍ତାରେ ସେ ବିହାରର ଶାସନକର୍ତ୍ତୃତ୍ୱ ପ୍ରାପ୍ତ ହୁଅନ୍ତି । ଅନନ୍ତର ବଙ୍ଗଦେଶ ଅଧିକାର ବାସନାରେ ଗୌଡ଼ ନଗର ଅବରୁଦ୍ଧ କରିଥିଲେ, ଏମନ୍ତ ସମୟରେ ହୁମାୟୁନ ତାହାଙ୍କ ବିରୁଦ୍ଧରେ ଉପସ୍ଥିତ ହେଲେ । ଶେର ମାର୍ଗ ମଧ୍ୟରେ ଆଗନ୍ତୁକ ସମ୍ରାଟଙ୍କୁ ବ୍ୟାପୃତ ରଖି ବଙ୍ଗଦେଶ ଅଧିକାର କରିବା କାରଣ ବାରାଣଶୀ ନିକଟସ୍ଥ ଚଣ୍ଡାଲଗଡ଼ରେ ଦୀର୍ଘକାଳ ଅବରୁଦ୍ଧସହନୋପଯୋଗୀ ଅନ୍ନାଦ୍ୟ ଦ୍ରବ୍ୟ ସହିତ ବହୁସଂଖ୍ୟକ ସେନା ସ୍ଥାପନ କଲେ । ହୁମାୟୁନ ଆସି ସେହି ନଗର ଅନେକ ଦିନ ପର୍ଯ୍ୟନ୍ତ ଅବରୁଦ୍ଧ କଲେ; କିନ୍ତୁ କିଛିହିଁ କରି ପାରିଲେ ନାହିଁ । ଅବଶେଷେ ହୁମାୟୁନଙ୍କର ଚଣ୍ଡାଲ ଗଡ଼ ଓ ଶେରଙ୍କର ବଙ୍ଗଦେଶ ଅଧିକାର ଏକସମୟରେ ଘଟିଲା; କିନ୍ତୁ ଶେରଖାଁଙ୍କର ସେତେବେଳ ପର୍ଯ୍ୟନ୍ତେ ମନୋରଥ ସଫଳ ନ ହୋଇ ଥିବାରୁ ସିକ୍ରାଗଲିଠାରେ କିଛି ସୈନ୍ୟ ରଖି ସମ୍ରାଟଙ୍କ ଆଗମନ ବ୍ୟାଘାତ କରିବାରେ ରହିଲେ ଏବଂ ସେହି ଅବସରରେ ଆପଣାର ସମସ୍ତ ସମ୍ପତ୍ତି ସହିତ ପରିବାରମାନଙ୍କୁ ରୋଟାସ ଗଡ଼କୁ ଅଣି ବଙ୍ଗଦେଶରୁ ବହିର୍ଗତ ହେଲେ । ସେତେବେଳେ ସିକ୍ରାଗଲିରୁ ସୈନ୍ୟମାନେ ମଧ୍ୟ ଶେରଙ୍କ ସଙ୍କେତାନୁସାରେ ସମ୍ରାଟଙ୍କ ମାର୍ଗ ମୁକ୍ତ କରିଦେଲେ ତହୁଁ ସମ୍ରାଟ୍ ବଙ୍ଗଦେଶରେ ଉପସ୍ଥିତ ହୋଇ ବିନାଯୁଦ୍ଧରେ ନଗର ହସ୍ତଗତ କଲେ । ସେତେବେଳେ ବର୍ଷାକାଳ ଉପସ୍ଥିତ ହୋଇଥିବାରୁ କିଛିଦିନ କାରଣ ସୈନିକକାର୍ଯ୍ୟ ସ୍ଥଗିତ ରହିଲା । ବଙ୍ଗଳାରେ ଅବସ୍ଥାନ ସମୟରେ ତତ୍ରତ୍ୟ ଜଳ ବାୟୁ ଦୋଷରୁ ହୁମାୟୁନଙ୍କ ସୈନ୍ୟମାନେ ପୀଡ଼ାଗ୍ରସ୍ତ ହେଲେ । ଥୋକାଏ ସୈନ୍ୟ ମଧ୍ୟ ପୀଡ଼ା ଭୟରେ ପଳାୟନପରାୟଣ ହେଲେ । ହୁମାୟୁନ କାଳବିଳମ୍ବ ଅନିଷ୍ଟର ମୂଳୀଭୂତ ବୁଝି ଶୀଘ୍ର ବଙ୍ଗଳାରୁ ବହିର୍ଗତ ହେଲେ । ଶେରଖାଁ ମଧ୍ୟ ସେ ସମୟରେ ବାସସ୍ଥାନରୁ ବହିର୍ଗତ ହୋଇ ବିହାର ଓ ବାରାଣଶୀ ଅଧିକାର ପୂର୍ବକ ଚଣ୍ଡାଲଗଡ଼ ଅବରୋଧ କଲେ ଏବଂ ଆପଣାର ନିର୍ଭୀକତା ଦେଖାଇବା କାରଣ ଏହି ସମୟରେ ଶାହୋପାଧି ଧାରଣ କଲେ । ୧୫୩୮ ସାଲେ ହୁମାୟୁନ ସ୍ୱୟଂ ଗମନ କରିବା ପୂର୍ବେ ଜଣେ ସେନାପତି ସମଭିବ୍ୟାହାରରେ ଥୋକାଏ ସୈନ୍ୟ ପଠାଇଥିଲେ । ମୁଙ୍ଗେରଠାରେ ଶେରଙ୍କ ସେନାମାନଙ୍କ ସହିତ ତାହାଙ୍କର ଭେଟ ହେଲା । ଯୁଦ୍ଧ ଉପସ୍ଥିତ ହେଲାରୁ ସମ୍ରାଟସେନାନୀ ପରାସ୍ତ ହେଲେ । ଅନନ୍ତର ସମ୍ରାଟଙ୍କ ସେନାମାନେ ଯାଇ ବକସାରରେ ଉପସ୍ଥିତ ହେଲେ । ତତ୍ପୂର୍ବରୁ ଶେରଖାଁ ସେସ୍ଥାନରେ ଉପସ୍ଥିତ ଥିଲେ । ଉଭୟ ପ୍ରତିଦ୍ୱନ୍ଦ୍ୱୀ ସହସା ସମରାଙ୍ଗଣରେ

ଉତ୍ତୀର୍ଣ୍ଣ ହୋଇ ସ୍ୱସ୍ୱ ଶିବିର ଦୃଢ଼ୀଭୂତ କରି ବସିଲେ । ଏହିରୂପେ ୨ମାସ ଅତୀତ ହେଲା । ଏକଦା ରଜନୀ ସମୟରେ ଶେର୍ କେତେକ ସୈନ୍ୟ ସହିତ ଯାଇ ହୁମାୟୁନଙ୍କ ଶିବିରର ପାର୍ଶ୍ୱଦେଶ ଆକ୍ରମଣ କଲେ । ସେ ଏମନ୍ତ ଜଡ଼ବତ୍‌ବର୍ତ୍ତୀ ହୋଇ ଥିଲେ ଯେ, ହୁମାୟୁନ ଅଶ୍ୱାରୋହଣ କରିବାକୁ ମଧ୍ୟ ଅବକାଶ ପାଇଲେ ନାହିଁ । କଷ୍ଟସୃଷ୍ଟରେ ଅଶ୍ୱାରୋହଣ କରି ଶେରଙ୍କର ସମ୍ମୁଖୀନ ହେବାକୁ ଯାଉଥିଲେ; କିନ୍ତୁ ଭୃତ୍ୟମାନେ ଏପରି ଭୟାନକ ସମୟରେ ଶତ୍ରୁର ସମ୍ମୁଖୀନ୍ ହେବା ପ୍ରାଣ ନାଶର ସମ୍ଭାବନା ଜାଣି ତାହାଙ୍କୁ ବାରମ୍ବାର ନିଷେଧ କଲେ; ମଧ୍ୟ ଜଣେ ଭୃତ୍ୟ ଅଶ୍ୱର ଲଗାମ ଧରି ନଦୀ ତଟକୁ ଟାଣି ଆଣିଲା । ସମ୍ରାଟ୍ ସନ୍ତରଣଦ୍ୱାରା ନଦୀ ପାର ହେବା ପାଇଁ ଅଶ୍ୱ ସହିତ ଗଙ୍ଗାରେ ପ୍ରବିଷ୍ଟ ହେଲେ; କିନ୍ତୁ ନଦୀ ମଧ୍ୟରେ ପ୍ରବେଶ ହେବାମାତ୍ର ଜଳ ମଧ୍ୟରେ ଅଶ୍ୱ ବୁଡିଗଲା । ହୁମାୟୁନ ମଧ୍ୟ ବୁଡ଼ି ଯାଉଥିଲେ; ସୌଭାଗ୍ୟ ପ୍ରଯୁକ୍ତ ରକ୍ଷା ପାଇଲେ । ସେହି ସମୟରେ ଜଣେ ଭିସ୍ତୀ ଆପଣା ମଷ୍କ ସ୍ଫୀତ କରି ତାହା ଅବଲମ୍ବନ ପୂର୍ବକ ନଦୀ ପାର ହେଉଥିଲା, ସମ୍ରାଟଙ୍କୁ ବୁଡିବାର ଦେଖି ମଷ୍କର ଏକ ପାର୍ଶ୍ୱରେ ତାଙ୍କୁ ଆରୋହଣ କରାଇ ନଦୀ ପାର କରି ଦେଲା । ସମ୍ରାଟ ଯାଇ ଆଗ୍ରାରେ ଉପସ୍ଥିତ ହେଲେ । ହୁମାୟୁନ ମୁକ୍ତିଲାଭ କଲେ ସତ୍ୟ, କିନ୍ତୁ ସେନାମାନେ ହତ ଏବଂ ବେଗମ ବନ୍ଦୀକୃତ ହେଲେ । ଶେର୍ ବହୁ ମାନ୍ୟ ପୁରଃସର ବେଗମଙ୍କୁ ତାହାଙ୍କ ଅଭିଲଷିତ ସ୍ଥାନକୁ ପଠାଇଦେଲେ ।

ଅତଃପର କୋନଠାରେ ଏକ ଯୁଦ୍ଧ ଉପସ୍ଥିତ ହେଲା; ସେ ସ୍ଥାନରେ ମଧ୍ୟ ସମ୍ରାଟ୍ ପରାସ୍ତ ହୋଇ ସେ ସ୍ଥାନରୁ ଲାହୋରକୁ ପଳାୟନ କଲେ । ତେତେବେଳେ ହୁମାୟୁନଙ୍କର କନିଷ୍ଠଭ୍ରାତା କାମରାନ ଲାହୋରର ଶାସନ କର୍ତ୍ତାଥିଲେ, ସମ୍ରାଟ କନିଷ୍ଠ ଭ୍ରାତାଠାରୁ ଉପକାର ପାଇବେ ବୋଲି ଅତ୍ୟନ୍ତ ପ୍ରତ୍ୟାଶା କରି ଥିଲେ । କାମରାନ ଜ୍ୟେଷ୍ଠ ଭ୍ରାତାଙ୍କର ଅବା କି ଉପକାର କରିବେ, ସେ ସ୍ୱୟଂ ପଞ୍ଜାବ ଦେଶ ଦାନଦ୍ୱାରା ଶେରଖାଁଙ୍କ ସହିତ ସନ୍ଧି କରି କାବୁଲ୍ ଗମନ କଲେ । ତେତେବେଳେ ହୁମାୟୁନ ପଞ୍ଜାବ ଦେଶରେ ରହିବା ବ୍ୟର୍ଥ ଜାଣି ଅମରକୋଟକୁ ଯାତ୍ରା କଲେ । ଅମରକୋଟ ଯିବାକୁ ହେଲେ ଏକ ମରୁଭୂମି ଅତିକ୍ରମ କରିବାକୁ ହୁଏଇ । ଅନ୍ୟତ୍ର ସ୍ୱର୍ଣ୍ଣ ରୌପ୍ୟ ଯେପରି ମହାମୂଲ୍ୟ, ମରୁଭୂମିରେ ଜଳ ସେହିରୂପ ମହାର୍ଘ; ସୁତରାଂ ଗମନ ସମୟରେ ତାହାଙ୍କ ସହଚରମାନଙ୍କର ଅତ୍ୟନ୍ତ କ୍ଳେଶ ହେଲା । ସେ ମରୁଭୂମିର ମଧ୍ୟଦେଶରେ ଉପସ୍ଥିତ ହୋଇ ଦେଖିଲେ ଯେ, କତିପୟ ଅଶ୍ୱାରୋହୀ ସେନା ତାହାଙ୍କର ଅନୁସରଣ କରୁଅଛନ୍ତି । ପରେ ସେ ଯେତେବେଳେ ଜାଣି ପାରିଲେ ଯେ, ସେହି ଅନୁସରଣକାରୀମାନେ ତାହାଙ୍କର ପୂର୍ବପରି

ଯୋଧପୁର ରାଜାଙ୍କ ପ୍ରେରିତ, ତେତେବେଳେ ଉଭୟର ପରସ୍ପର ମଧ୍ୟରେ କୌଣସି ପ୍ରୀତି ନାହିଁ, ବିଶେଷରେ ବେଗମ ସଙ୍ଗରେ ଥିବାରୁ ତାଙ୍କର ଦୁଶ୍ଚିନ୍ତା ତାହାଙ୍କ ମନ ମଧ୍ୟରେ କ୍ରମଶଃ ଉଦୟ ହେଲା । କିନ୍ତୁ ସେନାମାନେ ସମସ୍ତ କୂପ ଅଧିକାର କରିବାରୁ ମୁସଲମାନମାନେ ଦାରୁଣ କ୍ଲେଶ ଭୋଗ କଲେ; କିନ୍ତୁ ବିପନ୍ନଙ୍କ ପ୍ରତି ଅତ୍ୟାଚାର କରିବା ଅନ୍ୟାୟ; ହିନ୍ଦୁମାନେ ସେମାନଙ୍କର ପରୀକ୍ଷାଗ୍ରସ୍ତ ସମୟ ଲଙ୍ଘନ କଲେ ନାହିଁ । ସେମାନେ ଅବଶ୍ୟ ସୂଚକ ଶ୍ୱେତବୈଜୟନ୍ତୀ ଉଡ଼ାଇ ହୁମାୟୁନଙ୍କ ସମୀପସ୍ଥ ହେଲେ ଓ ବିନାନୁମତିରେ ଯୋଧପୁର ମାର୍ଗଦେଇ ଗମନ ଏବଂ ଗୋହତ୍ୟା ହେତୁରୁ ତିରସ୍କାର କରି ପରିତ୍ୟାଗ କଲେ, ତେବେହେଁ ହୁମାୟୁନ କ୍ଲେଶମୁକ୍ତ ହେଲେ ନାହିଁ । ମରୁଭୂମିର ଅସହ୍ୟ ଯନ୍ତ୍ରଣା ସହ୍ୟ କରିବାକୁ ନ ପାରି ଅଧିକାଂଶ ସହଚର ପଞ୍ଚତ୍ୱ ପ୍ରାପ୍ତ ହେଲେ । ଅମରକୋଟ ନଗରରେ ଉପସ୍ଥିତ ସମୟରେ ତାହାଙ୍କ ସହିତ ୭ଜଣ ମାତ୍ର ସହଚର ଅବଶିଷ୍ଟ ଥିଲେ । ତତ୍ରତ୍ୟ ରାଜା ତାହାଙ୍କୁ ଆଦର ପୂର୍ବକ ଗ୍ରହଣ କଲେ ।

ଏହି ଦାରୁଣ ଦୁଃସମୟରେ ମହାତ୍ମା ଅକବର, ହୁମାୟୁନଙ୍କ ଏକ ପାରସ୍ୟ ଦେଶୀୟ ବେଗମଙ୍କ ଗର୍ଭରୁ ପୃଥିବୀରେ ଅବତୀର୍ଣ୍ଣ ହୁଅନ୍ତି ।

ହୁମାୟୁନ ରାଜ୍ୟଚ୍ୟୁତ ହୋଇ ଅନୁସିନ୍ଧୁଦେଶରେ ବାସ କରିବା ସମୟରେ ଦିନେ ବିମାତାଙ୍କ ଗୃହରେ ଉଲ୍ଲିଖିତ ରମଣୀକୁ ଦେଖି ତାହାଙ୍କ ରୂପଲାବଣ୍ୟ ଦର୍ଶନେ ବିମୋହିତ ହୋଇ ତାହାଙ୍କ ପାଣିଗ୍ରହଣ କଲେ । ମରୁଭୂମି ଅତିକ୍ରମ କରିବା ସମୟରେ ସେହି ବେଗମ ପୂର୍ଣ୍ଣଗର୍ଭା ଥିଲେ । ଜଣେ ଅମାତ୍ୟ ଆରୋହଣ କରିବା ପାଇଁ ତାହାଙ୍କୁ ଗୋଟିଏ ଘୋଟକ ପ୍ରଦାନ କରିଥିଲା; କିନ୍ତୁ କିଛିଦୂର ଗଲାରୁ ସେ ଆପଣା ଅଶ୍ୱକୁ କ୍ଲାନ୍ତ ଦେଖି ତାହାଙ୍କୁ ତଳେ ଓହ୍ଲାଇଦେଇ ଘୋଟକ ଘେନିଯାଏ; ସୁତରାଂ ପୂର୍ଣ୍ଣଗର୍ଭା ବେଗମଙ୍କୁ ଅନନ୍ୟ ଉପାୟ ହୋଇ ପ୍ରଚଣ୍ଡୋତ୍ତପ୍ତ ବାଲୁକା ଉପରେ ପଦ ସଞ୍ଚାରଣପୂର୍ବକ ଚାଲିଯିବାକୁ ହୋଇଥିଲା । ସେ ସମୟରେ ସେ ଯେ କିପର୍ଯ୍ୟନ୍ତ କ୍ଲେଶ ଭୋଗ କରିଥିଲେ ତାହା ବର୍ଣ୍ଣନ କରିବା ବାହୁଲ୍ୟ । ଅମରକୋଟରେ ଯେତେବେଳେ ଅକବର ଜନ୍ମଗ୍ରହଣ କରନ୍ତି ତେତେବେଳେ ସମ୍ରାଟ୍ ସିନ୍ଧୁଦେଶରେ ବାସ କରୁଥିଲେ । ସେ ନବକୁମାରର ଜନ୍ମସମ୍ବାଦ ଶୁଣି ଅତ୍ୟନ୍ତ ଆନନ୍ଦିତ ହେଲେ ଓ ଗୋଟିଏ କସ୍ତୁରୀଡିମ୍ବି ଭାଙ୍ଗି ବନ୍ଧୁମାନଙ୍କୁ ସମ୍ବୋଧନ କରି କହିଲେ "ଏହାର ସୌରଭ ଯେପରି ବିସ୍ତୃତ ହୁଏ, ଆପଣମାନେ ଆଶୀର୍ବାଦ କରନ୍ତୁ ଯେ ଅମ୍ଭ ପୁତ୍ରର ଯଶଃ ସେହିପରି ବିସ୍ତାର ହେଉ"। ହୁମାୟୁନ ଯେତେବେଳେ ହିନ୍ଦୁ ଯୁଦ୍ଧଯାତ୍ରା କଲେ, ତେତେବେଳେ ତାହାଙ୍କର ଏକଶତ ଜଣରୁ ଅଧିକ ସୈନ୍ୟ ଥିଲେ ନାହିଁ । କେବଳ ରାଣୀଙ୍କ ପ୍ରସାଦରୁ ସେ ପ୍ରାପ୍ତ ୧୫ ହଜାର ଅ-

ଅଶ୍ୱାରୋହୀ ସୈନ୍ୟ ପାଇ ଥିଲେ; କିନ୍ତୁ ହୁମାୟୁନଙ୍କର ମନ୍ଦଭାଗ୍ୟ ଅଥବା ମନ୍ଦବୁଦ୍ଧି ପ୍ରଯୁକ୍ତ କୌଣସି କାରଣ ପ୍ରତିବନ୍ଧକ ହେବାରୁ ସିନ୍ଧୁ ଦେଶ ପରାଜୟ ଚେଷ୍ଟା ବିଫଳ ହେଲା । ତହୁଁ ସେ କାନ୍ଦାହାର ଯିବାକୁ କୃତସଙ୍କଳ୍ପ ହେଲେ । ତେତେବେଳେ କାନ୍ଦାହାର ମିର୍ଜାଅସ୍କରଙ୍କ ଶାସନରେ ଥିଲା । ହୁମାୟୁନ ପ୍ରଚାର କରି ଦେଲେ “ଆମ୍ଭେ କାନ୍ଦାହାରରେ ପୁତ୍ରକୁ ରଖି ମକ୍କା ତୀର୍ଥକୁ ଯିବୁଁ ” । କାନ୍ଦାହାରର ଅଠାବନ କ୍ରୋଶ ଦକ୍ଷିଣରେ ଉପସ୍ଥିତ ହୋଇଅଛନ୍ତି ଏମନ୍ତ ସମୟରେ ତାହାଙ୍କର କୌଣସି ପ୍ରାଚୀନ ବନ୍ଧୁର ପ୍ରେରିତ ଏକ ଅଶ୍ୱାରୋହୀ ଉଗର ଦ୍ରୁତବେଗେ ଆସି ତାହାଙ୍କୁ ସମ୍ବାଦ ଦେଲା ଯେ “ଆପଣଙ୍କୁ ବନ୍ଦୀ କରିବାପାଇଁ ଅସ୍କର ଆସୁଅଛନ୍ତି ଶୀଘ୍ର ପଳାୟନ କରନ୍ତୁ ।” ହୁମାୟୁନ କେବଳ ବେଗମଙ୍କୁ ସଙ୍ଗରେ ଘେନି ଯିବାକୁ ଅବକାଶ ପାଇଲେ; ଅକବରଙ୍କୁ ଅସ୍କରଙ୍କ ଅନୁଗ୍ରହ ଉପରେ ନିର୍ଭର କରି ଛାଡିଯିବାକୁ ହେଲା । ଅସ୍କର ଆସି, ଆପଣାର କୌଣସି ମନ୍ଦାଭିପ୍ରାୟ ଥିଲା ନାହିଁ ଏହିପରି ବାହାନା କଲେ ଓ ସ୍ନେହ ପ୍ରଦର୍ଶନ ପୂର୍ବକ ଅକବରଙ୍କୁ କାନ୍ଦାହାରକୁ ଘେନି ଗଲେ । ଏଣେ ହୁମାୟୁନ ପଳାୟନ କରି ପାରସ୍ୟ ରାଜଧାନୀ ହିରାଟରେ ଉପସ୍ଥିତ ହେଲେ । ସେ ସ୍ଥାନରେ ତାହାଙ୍କର ଅନେକ ଅନୁଚର ମଧ୍ୟ ଆସି ତାହାଙ୍କ ସହିତ ମିଳିତ ହେଲେ । ୧୫୪୩

---

## ଚତୁର୍ଦ୍ଦଶ ଅଧ୍ୟାୟ ।

### ସେରସାହା ।

ହୁମାୟୁନଙ୍କୁ ପରାସ୍ତ କରି ଶେର ସାହା ଉପାଧି ଧାରଣପୂର୍ବକ ଦିଲ୍ଲୀସାମ୍ରାଜ୍ୟ ଓ ପଞ୍ଜାବଦେଶ ଅଧିକାର କଲେ । ସେର ସିଂହାସନାରୋହଣ କରି ପ୍ରଥମେ ମାଲବଦେଶ ବଶୀଭୂତ କଲେ । ଅନନ୍ତର ଭୂପାଳର ଅନ୍ତର୍ଗତ ରାଇସୀନଦୁର୍ଗ ଆକ୍ରମଣ କଲେ । ଦୁର୍ଗରକ୍ଷକମାନେ ଦୁର୍ଗ ସମର୍ପଣ କରି ଧନ ପ୍ରାଣ ସହିତ ଯଥେଚ୍ଛା ଗମନ କରି ପାରିବେ, ଅବରୋଧକାରୀମାନଙ୍କ ସହିତ ଏହିପରି ବନ୍ଦୋବସ୍ତ କରି ଦୁର୍ଗଦ୍ୱାର ଫିଟାଇଦେଲେ; କିନ୍ତୁ ଦୁରାତ୍ମା ସାହ, ଦୁର୍ଗରକ୍ଷକମାନେ ବହିର୍ଗତ ହେବାମାତ୍ର ସେମାନଙ୍କୁ ପରାସ୍ତ କରି ବଧ କଲେ । ଅଦ୍ୟପର୍ଯ୍ୟନ୍ତ ତଇମୁର ଭିନ୍ନ କୌଣସି ମୁସଲମାନନେତା ଏପରି ଭୟଙ୍କର ମହାପାପରେ ଲିପ୍ତ ହୋଇ ନ ଥିଲେ । ସାହା କି ହେତୁରୁ ଏହି ଅସ୍ୱର୍ଗ୍ୟ କର୍ମ କଲେ ତାହା ଜଣା ଯାଏ ନାହିଁ । ଯାହା ହେଉ ସାହାଙ୍କୁ ଅଣ୍ଟ ସେହି ମହାପାପର ଫଳଭୋଗ କରିବାକୁ ହେଲା । ରାଇସୀନ ଦୁର୍ଗ ଅଧିକାର କରି ସାହା ମାଡୋୟାର ଦେଶ ଆକ୍ରମଣ କଲେ; କିନ୍ତୁ ସେ ସ୍ଥାନରେ ଏପରି ଆପଦରେ ପଡିଲେ ଯେ ପ୍ରାଣରକ୍ଷା କରିବାର ତାହାଙ୍କ ପକ୍ଷରେ

କଠିନ ହୋଇ ଥିଲା । ସେ ସ୍ଥାନରୁ ମୁକ୍ତିଲାଭ କରି ସେ କହିଥିଲେ "ମୁଁ ଅବୋଧ ମୁଠିଏ ଚିଣ୍ଟା ପାଇଁ ଏହିକ୍ଷଣି ଭାରତ ସାମ୍ରାଜ୍ୟ ହରାଇ ଥିଲି ।"

ପରେ ସେର ସେ ସ୍ଥାନରୁ ବହିର୍ଗତ ହୋଇ କାଲଞ୍ଜର ଅବରୋଧ କଲେ । ଉଭୟ ପକ୍ଷର ଘୋରତର ଯୁଦ୍ଧ ହେଉଅଛି ଏମନ୍ତ ସମୟରେ ଶତ୍ରୁ ପକ୍ଷରୁ ଗୋଟାଏ ଜ୍ୱଳନ୍ତ ଗୋଳା ଆସି ଶେରସାହାଙ୍କ ବାରୁଦ ଖାନାରେ ପଡ଼ିଲା । ସେ ସେସ୍ଥାନରେ ଉପସ୍ଥିତ ଥିବାରୁ ଦଗ୍ଧୀଭୂତ ହେଲେ ଏବଂ "ପରମେଶ୍ୱର ତୁମ୍ଭର ଧନ୍ୟବାଦ କରୁଁ" ଏହି ବାକ୍ୟ ଉଚ୍ଚାରଣ କରି ତନୁତ୍ୟାଗ କଲେ । ଶେରସାହ ଅତି ପରାକ୍ରାନ୍ତ ଓ ଚତୁର ସମ୍ରାଟ୍ ଥିଲେ । ସେ ଅର୍ଥୋପାର୍ଜନ ଅନୁରୋଧରେ ଧର୍ମାଧର୍ମ ବିଚାର କରୁ ନ ଥିଲେ, ସତ୍ୟ ଅଟେ, କିନ୍ତୁ ପ୍ରଜାମାନଙ୍କ ହିତସାଧନ ବିଷୟରେ ଅତି ତତ୍ପର ଥିଲେ । ତାହାଙ୍କ ଅଧିକାର ସମୟରେ ବଙ୍ଗଳା ଦେଶଠାରୁ ପଞ୍ଜାବ ପର୍ଯ୍ୟନ୍ତେ ରାଜବର୍ତ୍ମ ନିର୍ମିତ ଓ ସ୍ଥାନେ୨ ପାନ୍ଥନିବାସ ସ୍ଥାପିତ ହୁଏ । ଏତଦ୍ଭିନ୍ନ ସେ ଅନେକ କୂପ ଖନନ ଓ ଜଳନାଳୟ ନିର୍ମାଣ କରି ଯାଇଅଛନ୍ତି । ଏହାଙ୍କ ପ୍ରତାପଦ୍ୱାରା ଦସ୍ୟୁଭୟ ଏକାବେଳକେ ଦେଶରୁ ନିବାରିତ ହୋଇଥିଲା ।

ଶେର ପରଲୋକ ଗମନ କଲାରୁ ତାହାଙ୍କର ପୁତ୍ର ଜଲାଲ୍‌ଖାଁ ସିଂହାସନାରୋହଣ କରନ୍ତି । ଏହାଙ୍କ ଅଧିକାର ସମୟରେ ଇତିହାସରେ ଲେଖିବା ଯୋଗ୍ୟ କୌଣସି ଘଟନା ଘଟି ନାହିଁ । ୧୫୫୩ ସାଲରେ ଜଲାଲ ପ୍ରାଣତ୍ୟାଗ କରିବାରୁ ତାହାଙ୍କର ପୁତୁରା ମହମ୍ମଦ ଖାଁ ରାଜଦଣ୍ଡ ଧାରଣ କଲେ । ମହମ୍ମଦ ଅତ୍ୟନ୍ତ ମୂର୍ଖ ଓ ଜଘନ୍ୟଚରିତ୍ର ଏବଂ କୁତ୍ସିତବ୍ୟବହାରୀ ଥିଲେ । ଏହାଙ୍କ ଅପବ୍ୟୟିତା ହେତୁରୁ ରାଜକୋଷ ଶୀଘ୍ର ଶୂନ୍ୟ ହୋଇଗଲା ସେହି ଅର୍ଥାଭାବ ନିରାକରଣ ପାଇଁ ସମ୍ରାଟ ଅମାତ୍ୟମାନଙ୍କର ଜାୟଗିର ଭୂମି ହସ୍ତଗତ କରିବାକୁ ଆରମ୍ଭ କରନ୍ତେ ସୁତରାଂ ଅତିଶୀଘ୍ର ବିଦ୍ରୋହ ଉପସ୍ଥିତ ହେଲା । କର୍ମଚାରମାନେ ନାନା ଉତ୍ପାତ କରିବାରୁ ରାଜ୍ୟଶାସନ ପକ୍ଷରେ ବିଷମ ଗୋଲମାଲ ଘଟିଲା । ଏହି ସମୟ ସିଂହାସନଭ୍ରଷ୍ଟ ହୁମାୟୁନଙ୍କ ପକ୍ଷରେ ଅତ୍ୟନ୍ତ ଅନୁକୂଳ ହୋଇଥିଲା । ସେ କାବୁଲରେ ରହି ଦିଲ୍ଲୀ ସିଂହାସନ ପ୍ରତି ସତୃଷ୍ଣ ଦୃଷ୍ଟିପାତ କରୁଥିଲେ, ଏତେବେଳେ ଭାରତବର୍ଷର ରାଜ୍ୟଶାସନର ବିଶୃଙ୍ଖଳ ସମ୍ବାଦ ଶୁଣିବା ମାତ୍ର ସୈନ୍ୟସଂଗ୍ରହ ପୂର୍ବକ ଦିଲ୍ଲୀ ଆକ୍ରମଣ ଓ ହସ୍ତଗତ କଲେ; କିନ୍ତୁ ଏହି ସମୟରେ ତାହାଙ୍କର ଆୟୁଷ୍କାଳ ସମ୍ପୂର୍ଣ୍ଣ ହେଲା । ସେତେବେଳେ ଯୁବରାଜ ଅକବରଙ୍କ ବୟଃକ୍ରମ ୧୩ ବରଷ ମାତ୍ର । ୧୫୫୬ ସାଲ ।

———

## ପଞ୍ଚଦଶ ଅଧ୍ୟାୟ ।

### ଅକବର ।

ଭାରତବର୍ଷୀୟ ମୁସଲମାନ ସମ୍ରାଟମାନଙ୍କ ମଧ୍ୟରେ ଅକବର ସର୍ବପ୍ରଧାନ ଥିଲେ, ସେ ଅତ୍ୟନ୍ତ ତେଜସ୍ୱୀ, ଧୀମାନ୍, କର୍ମଦକ୍ଷ, ସାହସୀ, ସଦାଶୟ ଏବଂ ପ୍ରକୃତିକୁଳର ଅଧିକ ହିତକାରୀ ଥିଲେ । ମହମ୍ମଦ ତୋଗଲକ ମରଣ ଦିନଠାରୁ ଭାରତବର୍ଷର ଦଶା ଅତ୍ୟନ୍ତ ବିଶୃଙ୍ଖଳ ଓ ଦିଲ୍ଲୀର ଆଧିପତ୍ୟ କ୍ରମଶଃ ସଂକୀର୍ଣ୍ଣ ହୋଇ ଆସୁଥିଲା; କିନ୍ତୁ ଅକବରଙ୍କ ଶାସନ ପ୍ରଭାବରୁ ପ୍ରଜାମାନେ ପରମସୁଖରେ ଦିନ ଯାପନ କଲେ । ସାମ୍ରାଜ୍ୟ ମଧ୍ୟ ଅତ୍ୟନ୍ତ ବିସ୍ତୃତ ହୋଇ ଆସିଲା । ସିଂହାସନ ଆରୋହଣ ସମୟରେ ଅକବରଙ୍କର ୧୩ ବରଷ ମାତ୍ର ବୟଃକ୍ରମ ହୋଇଥିଲା । ସେ ଯେବେହେଁ ନାନା ସଦ୍‌ଗୁଣାବଳୀରେ ବିଭୂଷିତ ଥିଲେ, ତଥାପି ବିଶାଳତମ ଭାରତରାଜ୍ୟର ଶାସନଭାର ବହନ କରିବା ତାହାଙ୍କ ପକ୍ଷରେ ଅବଶ୍ୟ କଠିନ ଥିଲା ସନ୍ଦେହ ନାହିଁ । ହୁମାୟୁନଙ୍କ ଜୀବଦଶା ସମୟରେ ବୈରାମ ଖାଁ ନାମକ ଜଣେ ସଚୀବ ଅକବରଙ୍କ ଦେହରକ୍ଷକ ସ୍ୱରୂପ ନିଯୁକ୍ତ ଥିଲେ; ବର୍ତ୍ତମାନ ମଧ୍ୟ ସେହି ପଦରେ ନିଯୁକ୍ତ ଥାଇ ରାଜକାର୍ଯ୍ୟ ନିର୍ବାହ କଲେ । ବୈରାମ ଅତି ପ୍ରଭୁଭକ୍ତ ଓ ସଂଗ୍ରାମନିପୁଣ ଥିଲେ; କିନ୍ତୁ ତାହାଙ୍କର ସ୍ୱଭାବ ତାଦୃଶ ହୃଦୟଗ୍ରାହିଣୀ ନ ଥିଲା ଏବଂ ସେ କାମାସକ୍ତ, ଅହଙ୍କାରୀ ଓ ଅବିନୟୀ ଥିବାରୁ ଅନ୍ୟାନ୍ୟ କର୍ମଚାରୀମାନେ ତାହାଙ୍କୁ ଭଲ ପାଉ ନ ଥିଲେ । ପୁଣି କେତେକ ଜଣ ପ୍ରଧାନ୨ କର୍ମଚାରୀଙ୍କ ସହିତ ଅନ୍ୟାୟ ବ୍ୟବହାର କରିବାରୁ ନ୍ୟାୟପରାୟଣ ଅକବର ମଧ୍ୟ ତାହାଙ୍କ ପ୍ରତି ଅତ୍ୟନ୍ତ ବିରକ୍ତ ହେଲେ । ତହୁଁ ଅକବର କେତେକ ଜଣ ସୁହୃଦ୍ ଅମାତ୍ୟଙ୍କ ସହିତ ପରାମର୍ଶ କରି ବୈରାମଙ୍କ ଅଧୀନତା ପରିତ୍ୟାଗ ଉପାୟ ଅବଧାରଣପୂର୍ବକ ଏକଦା ବୈରାମଙ୍କ ସହିତ ମୃଗୟାର୍ଥ ଯାତ୍ରା କଲେ; କିନ୍ତୁ ମାର୍ଗ ମଧ୍ୟରେ ଜନନୀଙ୍କ ଆକସ୍ମିକ ଉତ୍କଟପୀଡ଼ାର ସମ୍ବାଦ ପ୍ରାପ୍ତିର ଛଳ କରି ସହସା ନଗରକୁ ଫେରି ଆସିଲେ । ଅକବର ରାଜଧାନୀରେ ଉପସ୍ଥିତ ହୋଇ ଆପଣାକୁ ବୈରାମଙ୍କ କ୍ଷମତା ବହିର୍ଭୂତ ଦେଖାଇବା ମାତ୍ର ପ୍ରଚାର କରି ଦେଲେ "ଆମ୍ଭେ ସ୍ୱୟଂ ରାଜ୍ୟଶାସନର ଭାର ଗ୍ରହଣ କରୁଅଛୁଁ । ଏ ଉତ୍ତାରେ ଆଉ କାହାର ଆଜ୍ଞା ମାନ୍ୟ ନୁହଇ" ୧୫୬୦ ।

ଏଣେ ବୈରାମ ଏହି ସମ୍ବାଦ ପାଇ ନିତାନ୍ତ ହତାଶ ହେଲେ ଏବଂ ସମ୍ରାଟଙ୍କ ମନ ଫେରାଇବା କାରଣ ବିବିଧ ଯତ୍ନ କରିବାକୁ ଲାଗିଲେ; କିନ୍ତୁ ଦୃଢ଼ପ୍ରତିଜ୍ଞ ଅକବରଙ୍କ ମନ କାହିଁରେ ବିଚଳିତ ହେଲା ନାହିଁ । ଅନନ୍ତର ବୈରାମ ବୃତ୍ତିଭୋଗୀ ହୋଇ ମକ୍କା ଗମନ ମାନସରେ ରାଜଧାନୀରୁ ବହିର୍ଗତ ହେଲେ ।

ଗୁର୍ଜରଦେଶଠାରେ ମକ୍କା ଗମନପାଇଁ ପୋତ ଅନ୍ୱେଷଣ କରୁଅଛନ୍ତି ଏମନ୍ତ ସ-ମୟରେ ଜଣେ ଲୋକ ତାହାଙ୍କୁ ଅଣୁ ନାଶ କଲା । ହୁମାୟୁନଙ୍କ ଅଧିକାର ସମୟ-ରେ ଏହି ଘାତକର ପିତା ବେହ୍ରାମଙ୍କ ହସ୍ତରେ ନିଧନପ୍ରାପ୍ତ ହୋଇଥିଲା ।

ବେହ୍ରାମଙ୍କ ଅପାୟେ ଅଷ୍ଟାଦଶବର୍ଷୀୟ ସମ୍ରାଟ୍ ନାନା ବିପ୍ଳବସଙ୍କୁଳ ସିଂହାସ-ନରେ ବସି ବିପକ୍ଷମାନଙ୍କୁ ବଶୀକରଣ ଓ ସର୍ବତ୍ର ସୁଶୃଙ୍ଖଳା ସ୍ଥାପନ ପ୍ରଭୃତି ନାନା ଦୁରୂହ କର୍ମରେ ପ୍ରବୃତ୍ତ ହୁଅନ୍ତି । ସେତେବେଳେ ତାହାଙ୍କର ଅର୍ଥ ମଧ୍ୟ ତାଦୃଶ ଅଧିକ ଥିଲା ନାହିଁ ଏବଂ ସେନାମାନେ ବିଦେଶୀୟ ଓ ବୃତ୍ତିଭୁକ୍ ଥିବାରୁ ସମ୍ରାଟଙ୍କ ପ୍ରତି ସେମାନଙ୍କର ତାଦୃଶ ଆସ୍ଥା ମଧ୍ୟ ଥିଲା ନାହିଁ । କେବଳ ଅକବରଙ୍କର ମହାୟସୀ ଧୀଶକ୍ତିଦ୍ୱାରା ତାବତ୍ ବିପଦ ନିରାକୃତ ହୋଇଥିଲା । ସିଂହାସନ ଅରୋ-ହଣଠାରୁ ତାହାଙ୍କର ୨୫ ବରଷ ବୟକ୍ରମ ପର୍ଯ୍ୟନ୍ତ ୭ ବରଷ କାଳ ସେ ଶତ୍ରୁ ଦମନ ଓ ବିଦ୍ରୋହୀ ଭୃତ୍ୟମାନଙ୍କୁ ବଶୀକରଣ ପ୍ରଭୃତି ଗୁରୁତର କାର୍ଯ୍ୟରେ ନିଯୁକ୍ତ ଥିଲେ । ସେ ଅନେକ ରାଜପୁତ ରାଜାଙ୍କୁ ପରାସ୍ତ କରିଥିଲେ; କିନ୍ତୁ କାହାର କିଛି ଅନିଷ୍ଟ କରି ନାହାନ୍ତି । ମୋଗଲ ଓ ରଜପୁତମାନଙ୍କ ମଧ୍ୟରେ ବୈବାହିକ ସୂତ୍ରର ସମ୍ବନ୍ଧ ରହିବା କାରଣ ଅକବରଙ୍କର ଐକାନ୍ତିକ ଯତ୍ନ ଥିଲା । ସେ ସ୍ୱୟଂ ଜୟପୁରର ଓ ଯୋଧପୁରର ରାଜକନ୍ୟାଙ୍କ ପାଣିଗ୍ରହଣ କରନ୍ତି ଏବଂ ଯୁବରାଜ ଜୟପୁରର ଅନ୍ୟ ଏକ ରାଜକୁମାରୀଙ୍କର ପାଣିଗ୍ରହଣ କରିଥିଲେ । ସମ୍ରାଟ୍ ମନସ୍ତୁଷ୍ଟି ପାଇଁ ଉଦୟପୁରର ଭୂପତି ଭିନ୍ନ ଯାବତୀୟ ଭୂପତିଙ୍କଦ୍ୱାରା ଏବିଷୟ ଅନୁମୋଦିତ ହୋ-ଇଥିଲା । ଅତଏବ ଉଦୟପୁରର ରାଜବଂଶ ଜାତ୍ୟାଂଶେ ଉତ୍କୃଷ୍ଟ ଓ ରଜପୁତ ରାଜବଂଶ ମଧ୍ୟରେ ପବିତ୍ର ବଂଶ ବୋଲି ଖ୍ୟାତିଲାଭ କରୁଅଛନ୍ତି । ସେହି ସମୟରେ ବିଦ୍ରୋହାନଳ ରଜପୁତ ଦେଶ ପରିତ୍ୟାଗ କରି ଗୁର୍ଜର ଦେଶରେ ପ୍ରଜ୍ୱଳିତ ହୁଏ । ଅକବରଙ୍କର ଧୋକାଏ ବିଦ୍ରୋହୀ ଅମାତ୍ୟ ଗୁର୍ଜର ଦେଶକୁ ଯାଇ ନାନା ଉତ୍ପାତ କଲେ ସମ୍ରାଟ ସେ ସ୍ଥାନରେ ଉପସ୍ଥିତ ହେବା ମାତ୍ର ବିଦ୍ରୋହୀମାନେ ପଲାୟନ କରିବାକୁ ଆରମ୍ଭ କଲେ, ସମ୍ରାଟ ମଧ୍ୟ ସେହି ପଳାୟିତମାନଙ୍କର ଅନୁସରଣ କଲେ ଏହି ଅନୁସରଣ କ୍ରିୟା ତାହାଙ୍କ ପକ୍ଷରେ ଯେ ଏକାନ୍ତ ଅବିମୃଷ୍ୟକାର କାର୍ଯ୍ୟ ହୋଇଥିଲା ତାହାର ସନ୍ଦେହାଭାବ । କାରଣ ତାହାଙ୍କ ସହିତ ଯେତେ ସୈନ୍ୟ ଥିଲେ ଶତ୍ରୁ ସୈନ୍ୟ ତାହାର ଛଗୁଣ ଅଧିକ । ଫଳେ ଜୟପୁରର ରାଜା ଭଗବାନ୍ ସିଂହ ଓ ମାନସିଂହ ଉପସ୍ଥିତ ନ ଥିଲେ ପ୍ରାଣରକ୍ଷା କରିବା ସମ୍ରାଟଙ୍କ ପକ୍ଷରେ ଅତ୍ୟନ୍ତ କଠିନ ହୋଇଥାଆନ୍ତା । ଗୁର୍ଜର ବିଷୟ ନିଷ୍ପତ୍ତି ହେଲାରୁ ସମ୍ରାଟ୍ ଫେରି ଆସି ବଙ୍ଗ ଓ ବେହାରକୁ ଯୁଦ୍ଧ ଯାତ୍ରା କଲେ । ସେତେବେଳେ ବଙ୍ଗଦେଶ ଦାଉଦ ନାମକ ଜଣେ କାପୁରୁଷ ହସ୍ତରେ ନ୍ୟସ୍ତ ଥିଲା । ସମ୍ରାଟ୍ ଅନାୟାସରେ ତାହାକୁ

ପର୍ଯ୍ୟନ୍ତ କରି ତଦ୍ଦେଶ ଅଧିକାର କଲେ । ତହିଁ ଉତ୍ତାରେ କାଶ୍ମୀର ଓ ପେଶୋୟା ସମ୍ରାଟଙ୍କର ହସ୍ତଗତ ହେଲା; କିନ୍ତୁ ଶେଷୋକ୍ତ ଦେଶ ଯୁଦ୍ଧରେ ତାହାଙ୍କର ଅତି ପ୍ରିୟପାତ୍ର ସୁଦକ୍ଷ ବାକ୍‌ଚତୁର ବିରବଲ ନାମକ ଅମାତ୍ୟ ପ୍ରାଣତ୍ୟାଗ କରନ୍ତି । ବିରବଲ ମୃତ୍ୟୁସମ୍ବାଦ ପାଇ ଅକବର ଅନେକ ବିଲାପ ଓ ପରିତାପ କରିଥିଲେ । ୧୫୮୬ ।

ଅକବରଙ୍କ ବାହୁବଳଦ୍ୱାରା ଅଳ୍ପକାଳ ମଧ୍ୟରେ ଉଦୟପୁର ଓ ଅଫଗାନିସ୍ଥାନର ପାର୍ବତୀୟ ଭୂଭାଗ ଭିନ୍ନ ସମସ୍ତ ଆର୍ଯ୍ୟାବର୍ତ୍ତ ଦିଲ୍ଲୀସାମ୍ରାଜ୍ୟ ଭୁକ୍ତ ହେଲା । ତତଃପର ଦାକ୍ଷିଣାତ୍ୟ ତାହାଙ୍କର ଲକ୍ଷସ୍ଥଳ ହୋଇ ପଡ଼ିଲା । ସେହି ଦେଶ ମଧ୍ୟ ଆତ୍ମବିଦ୍ରୋହ ନିବନ୍ଧନ ତାହାଙ୍କ ମାର୍ଗ ପୂର୍ବରୁ ନିଷ୍କଣ୍ଟକ ହୋଇଥିଲା । ୧୫୯୫ସାଲେ ଅହମ୍ମଦ ନଗର ସିଂହାସନରେ ଉପବେଶନ କରିବା ପାଇଁ ଚାରିଜଣ ପ୍ରତିଦ୍ୱନ୍ଦ୍ୱୀ ଉପସ୍ଥିତ ଥିଲେ । ତନ୍ମଧ୍ୟରୁ ଜଣେ ସମ୍ରାଟଙ୍କ ସାହାଯ୍ୟ ପ୍ରାର୍ଥନା କରି ପଠାନ୍ତି । ତଦନୁସାରେ ୧ ଦଳ ମୋଗଲସେନା ପ୍ରେରିତ ହୋଇଥିଲେ; କିନ୍ତୁ ଏହି ସେନାମାନଙ୍କ ଉପସ୍ଥିତ ପୂର୍ବେ ସିଂହାସନ ଆହ୍ୱାନକାରିଙ୍କ ହସ୍ତଗତ ହୋଇ ଥିଲା । ଅଳ୍ପକାଳ ଉତ୍ତାରେ ଚାନ୍ଦବିବି ନାମ୍ନୀ ଜଣେ ରାଜ୍ଞୀ ପ୍ରାଗୁକ୍ତ ଅଧିକାରିଙ୍କୁ ଅପସାରିତ କରି ଏକ ଶିଶୁର ରକ୍ଷାକର୍ତ୍ତ୍ରୀ ସ୍ୱରୂପ ହୋଇ ତାହା ନାମରେ ନଗର ଅଧିକାର କଲେ । ଚାନ୍ଦବିବି ଓ ମୋଗଲ ସୈନ୍ୟମାନଙ୍କ ସହିତ ବିଷମ ଯୁଦ୍ଧ ଘଟିଲା । ଅକବରଙ୍କ ପୁତ୍ର ମୁରାଦ ମୋଗଲ ସେନାମାନଙ୍କର ନେତା ଥିଲେ । କିଛି କ୍ଷଣ ଯୁଦ୍ଧ ଉତ୍ତାରେ ମୋଗଲ ସେନାମାନେ ଦୁର୍ଗର ବପ୍ର କିୟଦଂଶ ଭଗ୍ନକରି ମଧ୍ୟରେ ପ୍ରବିଷ୍ଟ ହୁଅନ୍ତି । ତହିଁ ଦୁର୍ଗାଧିପ ସେନାମାନେ ପଳାୟନ କରିବାରେ ପ୍ରବୃତ୍ତ ହେଲେ । ତେତେବେଳେ ଚାନ୍ଦବିବି ଅବଗୁଣ୍ଠନଦ୍ୱାରା ବଦନ ଆଚ୍ଛାଦନ କରି ବର୍ମ ପରିହିତ ଶରୀରରେ ଓ ନିଷ୍କୋଷ ଅସି ହସ୍ତେ ମୋଗଲ ସେନାମାନଙ୍କର ସମ୍ମୁଖୀନ ହେଲେ । କର୍ତ୍ତ୍ରୀର ଏତାଦୃଶ ସାହସ ଦେଖି ପଳାୟନପରାୟଣ ସେନାମାନେ ନିବୃତ୍ତ ହେଲେ ଓ ଅସୀମ ସାହସ ପ୍ରକାଶ ପୂର୍ବକ ବିପକ୍ଷମାନଙ୍କ ସହିତ ଯୁଦ୍ଧରେ ମାତିଲେ । ସେ ଦିବସ ସନ୍ଧ୍ୟା ପର୍ଯ୍ୟନ୍ତେ ଯୁଦ୍ଧ ଚଳିଲା । ମୋଗଲ ସେନାମାନେ ଅଗତ୍ୟା ପ୍ରତିନିବୃତ୍ତ ହେଲେ । ପରଦିବସ ଚାନ୍ଦବିବି ସନ୍ଧିର ପ୍ରସ୍ତାବ କରିବାରୁ ମୋଗଲ ସେନାଧ୍ୟକ୍ଷ ତହିଁରେ ସମ୍ମତ ହେଲେ । ସନ୍ଧିରେ ଏହି ନିୟମ ନିର୍ଦ୍ଧାରିତ ହେଲା ଯେ ଅହମ୍ମଦ ନଗରାଧିପତି ସମ୍ରାଟଙ୍କୁ ବିରାର ଦେଶ ଅର୍ପଣ କରିବେ ସମ୍ରାଟ ଅହମ୍ମଦ ପ୍ରତି ଆଉ କେବେ ଅତ୍ୟାଚାର କରିବେ ନାହିଁ । ୧୫୯୬ ।

ସମ୍ରାଟଙ୍କ ସହିତ ସନ୍ଧିର ଅଳ୍ପକାଳ ଉତ୍ତାରେ ଅହମ୍ମଦ ନଗରରେ ପୁନର୍ବାର ବିଦ୍ରୋହ ପତାକା ଉଡ୍ଡୀନ ହୁଏ । ନିଜାମରାଜ୍ୟର ସାହାଯ୍ୟ ପାଇଁ ମୋଗଲ

ସେନାମାନଙ୍କୁ ପୁନର୍ବାର ଦାକ୍ଷିଣାତ୍ୟକୁ ଯିବାକୁ ହେଲା । ତାହାଙ୍କ ସଙ୍ଗେ ମହାମହିମ ଅକବର ମଧ୍ୟ ଯାଇଥିଲେ । ଅଳ୍ପ ଆୟାସରେ ଅମେଦ ନଗର ଓ ଖାନ୍ଦେସ ଦିଲ୍ଲୀ ସାମ୍ରାଜ୍ୟଭୁକ୍ତ ହେଲା । ତହୁଁ ଅକବର କୁମାର ଡାନିୟେଲଙ୍କୁ ନଗର ଓ ଖାନ୍ଦେ-ସର ଶାସନ କର୍ତ୍ତୃତ୍ୱରେ ଓ ସୁପ୍ରସିଦ୍ଧ ମନ୍ତ୍ରୀ ଅବଦୁଲ୍‌ଫାଜଲଙ୍କୁ ସୈନ୍ୟାପତ୍ୟରେ ନିଯୁକ୍ତ କରି ଆଗ୍ରାକୁ ପ୍ରତ୍ୟାଗମନ କଲେ । ୧୬୦୧ ।

ଅକବର ଯେତେବେଳେ ଦାକ୍ଷିଣାତ୍ୟକୁ ଗମନ କରନ୍ତି ସେତେବେଳେ ତାହାଙ୍କର ବଂଶତିବର୍ଷୀୟ ଜ୍ୟେଷ୍ଠକୁମାର ସେଲିମଙ୍କୁ ଅଜମୀରର ଶାସନକର୍ତ୍ତା ପଦରେ ନିଯୁକ୍ତ କରି ଯାଇଥିଲେ ଏବଂ ଘୋଷଣା କରିଥିଲେ ଯେ, ସେଲିମ ସିଂହାସନର ଉତ୍ତରାଧିକାରୀ ଅଟନ୍ତି; କିନ୍ତୁ ସେ ତହିଁରେ ସୁଖୀ ତୁଷ୍ଟ ନ ହୋଇ ପିତାଙ୍କ ଅନୁପସ୍ଥିତ ସମୟରେ ସିଂହାସନ ଅଧିକାର ସଂକଳ୍ପ କରିଥିଲେ । ସେଲିମ ସ୍ୱଭାବରେ ନିର୍ବୋଧ ଥିଲେ ନାହିଁ । ଅପରିମିତ ସୁରାପାନ ଓ ଅହିଫେନ ଭକ୍ଷଣ-ଦ୍ୱାରା ତାହାଙ୍କ ବୁଦ୍ଧି କଲୁଷିତ ହୋଇ ଯାଇଥିଲା । ସମ୍ରାଟ୍ ଦାକ୍ଷିଣାତ୍ୟରେ ଉପସ୍ଥିତ ସମୟରେ ଏହି ସମ୍ବାଦ ପାଇ ତାହାଙ୍କୁ ଲେଖିଲେ—

"ସେଲିମ !

ତୁମ୍ଭର ଅବଲମ୍ବିତ ଗର୍ହିତ ଉପାୟ ପରିତ୍ୟାଗ କର, ନଚେତ୍ ଭବିଷ୍ୟତରେ ତୁମ୍ଭର ମହାନ୍ ଅନିଷ୍ଟ ଘଟିବାର ସମ୍ଭାବନା । ଅତଏବ ଲେଖୁଅଛୁଁ ଯଦି ଶୀଘ୍ର ସତ୍‌ପଥାଶ୍ରୟୀ ହୁଅ ତେବେ ତୁମ୍ଭର ସମସ୍ତ ଅପରାଧ ମାର୍ଜନା କରିବୁଁ" ।

ଏହି ପତ୍ର ପାଇ ସେଲିମ ବଶ୍ୟତା ସ୍ୱୀକାର କଲେ ଓ ଅବିଳମ୍ବେ ପିତା ନିକଟରୁ ବଙ୍ଗ ଓ ଓଡ଼ିଶାର ଅଧିକାର ପ୍ରାପ୍ତ ହେଲେ । ସେଲିମଙ୍କର ଗୋଟିଏ ପୁତ୍ର ଥିଲା ତାହାର ନାମ ଖସ୍ରୁ । ଏହି ପିତା ପୁତ୍ରଙ୍କ ମଧ୍ୟରେ ସମ୍ପ୍ରୀତି ଥିଲା ନାହିଁ । ସମ୍ପ୍ରତି ସେଲିମ ଶୁଣିଲେ ଯେ, ଖସ୍ରୁ ସମ୍ରାଟଙ୍କର ଅତି ପ୍ରୀତିଭାଜନ ହୋଇଅଛନ୍ତି ଅତଏବ ସମ୍ରାଟ୍ ତାହାଙ୍କୁ ସିଂହାସନର ଉତ୍ତରାଧିକାରୀ କରିଗଲେ ମଧ୍ୟ ଯାଇ ପାରନ୍ତି ସେ ଏହି ଅନୁମାନ କରି ଖସ୍ରୁଙ୍କ ବଧୋପାୟ ଚିନ୍ତା କଲେ । ମାନସିଂହଙ୍କ ଭଗିନୀ, ଖସ୍ରୁଙ୍କ ଜନନୀ ଏହି ସମ୍ବାଦ ପାଇ ଅତ୍ୟନ୍ତ ଦୁଃଖିତ ହୋଇ ବିଷପାନ କରନ୍ତି ।

ଏହି ଘଟନାର କିଛିଦିନ ଉତ୍ତାରେ ମହାତ୍ମା ଅକବରଙ୍କ ସହିତ ସେଲିମ-ଙ୍କର ଥରେ ଭେଟ ହେଲା । ସମ୍ରାଟ୍ ପ୍ରଥମରେ ତାହାଙ୍କୁ ଅବରୁଦ୍ଧ କଲେ; କିନ୍ତୁ ପରେ ଅନୁଗ୍ରହ ପ୍ରଦର୍ଶନପୂର୍ବକ କିଛି ନ କହି ଛାଡ଼ି ଦେଲେ ।

କେତେକବର୍ଷ ପୂର୍ବରେ ଅକବରଙ୍କ ଦ୍ୱିତୀୟ ପୁତ୍ର ମୋରାଦ ପଞ୍ଚତ୍ୱ ପ୍ରାପ୍ତ ହୋଇଥିଲେ; ବର୍ତ୍ତମାନ ତୃତୀୟ ପୁତ୍ର ଡାନିୟେଲଙ୍କର ମଧ୍ୟ ମୃତ୍ୟୁସମ୍ବାଦ ଆସି ଉପସ୍ଥିତ ହେଲା । ଏହି ସମ୍ବାଦ ପାଇ ସମ୍ରାଟ୍ ଅତ୍ୟନ୍ତ ବିଳାପ କଲେ ।

ଉପର୍ଯ୍ୟୁପରି ପ୍ରିୟପାତ୍ରମାନଙ୍କର ପ୍ରାଣନାଶ ସମ୍ବାଦ ଶ୍ରବଣଦ୍ୱାରା ସମ୍ରାଟଙ୍କର ଏପରି ସ୍ୱାସ୍ଥ୍ୟଭଙ୍ଗ ଆରମ୍ଭ ହେଲା ଯେ ସେ ଆଉ କୌଣସି ଉପାୟଦ୍ୱାରା ପ୍ରକୃତିସ୍ଥ ହୋଇ ପାରିଲେ ନାହିଁ । ମୁମୂର୍ଷୁ ଦଶାରେ ଅକବର ସମସ୍ତ ପ୍ରଧାନ ପ୍ରଧାନ ଅମାତ୍ୟ ଓ ସେଲିମଙ୍କୁ ଶଯ୍ୟା ପାର୍ଶ୍ୱକୁ ଆହ୍ୱାନ କରି କହିଲେ "ଯଦି ଆମ୍ଭେ ତୁମ୍ଭମାନଙ୍କ ମଧ୍ୟରୁ କାହାରିଠାରେ କିଛି ଅପରାଧ କରିଥାଉଁ ତେବେ ଏତେବେଳେ ତାହା ମାର୍ଜନା କର"। ଏହି ଶ୍ରବଣେ ସେଲିମ ଅଶ୍ରୁ ସମୁକ୍ଷାଳିତ ଲୋଚନେ ପିତୃଚରଣରେ ନିପତିତ ହେଲେ ।

ତତ୍ପରେ ମହାମହିମ ଅକବର ନିଜ ତରବାରି ସେଲିମଙ୍କ ହସ୍ତରେ ଅର୍ପଣ କରି ଅବରୋଧବାସିନୀମାନଙ୍କର ରକ୍ଷଣାବେକ୍ଷଣ, ବନ୍ଧୁ ଓ ଦାସବର୍ଗଙ୍କପ୍ରତି ଯତ୍ନ ଓ ଅନୁଗ୍ରହ ପ୍ରଦର୍ଶନ କରିବାପାଇଁ ନିର୍ଦ୍ଦେଶ କରି ମୁସଲମାନମାନଙ୍କ ପଦ୍ଧତି ଅନୁସାରେ ଈଶ୍ୱରାରାଧନା ଉତ୍ତାରେ ତନୁ ତ୍ୟାଗ କଲେ । ୧୬୦୫ । ସେ ୫୦ ବରଷ ରାଜତ୍ୱ କରିଥିଲେ । ଅକବର ଦୃଢ଼, ସୁଗଠିତ ଓ ଗୌର କଳେବର ଥିଲେ । ସେ ଯୌବନକାଳରେ ସୁରାପ୍ରିୟ ଓ ବିଳାସୀ ଥିଲେ ସତ୍ୟ; କିନ୍ତୁ ପରେ ଅତ୍ୟନ୍ତ ମିତାଚାରିତାର ବଶମ୍ବଦ ହୋଇଥିଲେ । ମୃଗୟାରେ ତାହାଙ୍କର ଅତ୍ୟନ୍ତ ଅନୁରାଗ ଥିଲା । ହସ୍ତୀ ବ୍ୟାଘ୍ର ପ୍ରଭୃତି ଯେ ସକଳ ଶିକାରରେ ପଦେ ପଦେ ବିପଦ ଘଟିବାର ସମ୍ଭାବନା ସେହି ସକଳ ଶିକାରକୁ ଅଧିକ ଭଲ ମଣୁଥିଲେ । ଅଶ୍ୱାରୂଢ଼ ହୋଇ ଭ୍ରମଣ କରିବା ତାହାଙ୍କର ବିନୋଦନୋପାୟ ଥିଲା । କେବେ କେବେ ସେ ଇଚ୍ଛାପୂର୍ବକ ଏକଦିନେ ୧୫ । ୧୬ କ୍ରୋଶ ମାର୍ଗ ପଦବ୍ରଜେ ଭ୍ରମଣ କରୁଥିଲେ । ଅପରିମିତ ଶ୍ରମ ତାହାଙ୍କୁ ଏକାବେଳେକେ ପରିତ୍ୟାଗ କରିଥିଲା । ସେ ଅତି ସାହସୀ ଥିଲେ ଅଥଚ ଯୁଦ୍ଧରେ ତାହାଙ୍କର ସ୍ପୃହା ଥିଲା ନାହିଁ । ସେ କେବଳ ଦିଲ୍ଲୀ ସାମ୍ରାଜ୍ୟର କେତେକ ଲୁପ୍ତ ରାଜ୍ୟ ପୁନର୍ଗ୍ରହଣ ପାଇଁ ସମରକ୍ଷେତ୍ରରେ ଉତ୍ତୀର୍ଣ୍ଣ ହୋଇଥିଲେ । ତାହାଙ୍କର ଚିତ୍ତ ସଦାଶୟତା, ନମ୍ରତା, ଉଦାରତା ଓ ବଦାନ୍ୟତା ପ୍ରଭୃତି ସଦ୍‌ଗୁଣାବଳୀରେ ବିଭୂଷିତ ଥିଲା । ଅକବର ଦର୍ଶନ ଓ ପରମାର୍ଥ ବିଷୟକ ତର୍କବିତର୍କରେ ଏକାନ୍ତ ରତ ଥିଲେ; କିନ୍ତୁ ସ୍ୱମତ ବିପରୀତବାଦୀମାନଙ୍କ ପ୍ରତି ତାହାଙ୍କର ଅଣୁମାତ୍ର ବିଦ୍ୱେଷ ଥିଲା ନାହିଁ । ବଳେ ବା କୌଶଳେ ପ୍ରଜାପୀଡ଼ନଦ୍ୱାରା କୋଷପୂର୍ତ୍ତି କରିବା ତାହାଙ୍କର ଉଦ୍ଦେଶ୍ୟ ଥିଲା ନାହିଁ । ପ୍ରକୃତ ପ୍ରଜାବଲ୍ଲଭ ହେବା ପାଇଁ ତାହାଙ୍କର ଐକାନ୍ତିକ ଯତ୍ନ ଥିଲା । ହିନ୍ଦୁ ଓ ମୁସଲମାନ ବୋଲି ଇତର ବିଶେଷ ବିବେଚନା ତାହାଙ୍କ ମନରେ ସ୍ଥାନ ପ୍ରାପ୍ତ ହୋଇ ଥିଲା ନାହିଁ । ସେ (ଗୁଣ ଥିଲେ) ଉଭୟ ଜାତୀୟ ଲୋକଙ୍କୁ ଉଚ୍ଚପଦ ପ୍ରଦାନ କରୁଥିଲେ । ହିନ୍ଦୁ ଓ ମୁସଲମାନ ଉଭୟ ଜାତୀୟ ଲୋକଙ୍କୁ ଏକମେଳ କରି ରାଜତ୍ୱ କରିବା ତାହାଙ୍କର

ମୁଗ୍ଧ୍ୟାତି ପ୍ରାପ୍ତ ଥିଲା । ଫଳେ ଅକବରଙ୍କ ପରି ମହାତ୍ମା ରାଜା ଭାରତବର୍ଷରେ ଅବା ପୃଥିବୀରେ ବିରଳ ଦେଖା ଯାଏ । ଅକବର ପ୍ରଥମେ ମୁସଲମାନ ଧର୍ମରେ ଦୀକ୍ଷିତ ଥିଲେ । ପରେ ଏକମାତ୍ର ଅଦ୍ୱିତୀୟ ପରମେଶ୍ୱରଙ୍କ ନିର୍ମଳ ଉପାସନା ଅବଲମ୍ବନ କରିଥିଲେ । ତାହାଙ୍କର ଏହି ମତ ଥିଲା ଯେ ମନୁଷ୍ୟ ପ୍ରଣୀତ କୌଣସି ପ୍ରକାର ଅର୍ଚ୍ଚନା ପ୍ରଣାଳୀ ବା କର୍ମକାଣ୍ଡ ମାନ୍ୟ ନୁହଇ । ଯେ ହେତୁରୁ କି ପ୍ରଧାନ କି ଅପ୍ରଧାନ ପ୍ରତ୍ୟେକ ଲୋକର ମତଭ୍ରମ ହେବାର ସମ୍ପୂର୍ଣ୍ଣ ସମ୍ଭାବନା; ଅତଏବ କେବଳ ଯୁକ୍ତି ଅମ୍ଭମାନଙ୍କର ପ୍ରକୃତ ଉପଦେଶକ, ତଦ୍ୱାରା ପରମେଶ୍ୱରଙ୍କର ଅଦ୍ୱିତୀୟତ୍ୱ ଓ ପରମ ଦୟାଳୁତ୍ୱ ଉତ୍ତମରୂପେ ପ୍ରତିପନ୍ନ ହେଉଅଛି । ଆହାର ବିଷୟରେ ତାହାଙ୍କର କୌଣସି ପ୍ରକାର ଦ୍ରବ୍ୟର ନିଷେଧ ଥିଲା ନାହିଁ । ସେ ଜାତିଭେଦ ମଧ୍ୟ ସ୍ୱୀକାର କରୁ ନ ଥିଲେ । ସେ ହିନ୍ଦୁ ଓ ମୁସଲମାନ ଉଭୟ ଜାତିର କେତେ ଗୁଡିଏ ଅଯୌକ୍ତିକ କ୍ରିୟା ଲୋପ କରିବାକୁ ବିଶେଷ ଯତ୍ନଶୀଳ ଥିଲେ । ଅଗ୍ନିପରୀକ୍ଷା ଓ ବାଲ୍ୟବିବାହ ନିବାରଣ ଏବଂ ବିଧବା ବିବାହ ପ୍ରଚଳନ ପ୍ରଭୃତି ବିବିଧ ସତ୍କାର୍ଯ୍ୟର ଅନୁଷ୍ଠାନ କରି ଯାଇଅଛନ୍ତି । ପୂର୍ବେ ମୁସଲମାନ ରାଜାମାନଙ୍କ ସମୟରେ ହିନ୍ଦୁମାନଙ୍କୁ ଅନେକ ଅବୈଧ ଶୁଳ୍କ ଦେବାକୁ ହେଉଥିଲା ଓ ମୁସଲମାନ ପ୍ରଜା ଭିନ୍ନ ଆଉ ସମସ୍ତ ପ୍ରଜାମାନଙ୍କୁ ଜିଜୟା ନାମକ ଏକ ପ୍ରକାର ଶୁଳ୍କ ଦେବାକୁ ହେଉଥିଲା । ଅକବରଙ୍କ ଶାସନ ସମୟରେ ତାହା ସମୂଳେ ଉତ୍ପାଟିତ ହୁଏ । ଅକବରଙ୍କର ଜ ୨ ଣ ସହକାରୀ ଥିଲେ । ପ୍ରଥମଙ୍କ ନାମ ଫୈଜୀ ଓ ଦ୍ୱିତୀୟଙ୍କ ନାମ ଅବଦୁଲଫାଜଲ । ମୁସଲମାନମାନଙ୍କ ମଧ୍ୟରୁ ଫୈଜୀ ପ୍ରଥମରେ ସଂସ୍କୃତ ଭାଷା ଶିକ୍ଷା କରନ୍ତି ଏବଂ ସଂସ୍କୃତ ଭାଷାରୁ ବିବିଧ କାବ୍ୟ, ଦର୍ଶନ, ବୀଜଗଣିତ ଓ ଲୀଳାବତୀ ତାହାଙ୍କଦ୍ୱାରା ଅନୁବାଦିତ ହୁଅଇ । ଫୈଜୀଙ୍କ ଭ୍ରାତା ଅବଦୁଲଫାଜଲ ମଧ୍ୟ ଅସାଧାରଣ ପଣ୍ଡିତ ଥିଲେ । ସେ ଅକବରଚରିତ ନାମକ ସୁପ୍ରସିଦ୍ଧ ଗ୍ରନ୍ଥର ରଚୟିତା ଅଟନ୍ତି । ମହାତ୍ମା ଅକବର ରାଜସ୍ୱ ଅଦାୟ, ସୈନ୍ୟ ଏବଂ ରାଜ୍ୟଶାସନ ସମ୍ବନ୍ଧୀୟ ପ୍ରଭୃତି ଅନ୍ୟାନ୍ୟ ବିଷୟର ଅନେକ ସୁଶୃଙ୍ଖଳାବଦ୍ଧ କରିଯାଇ ଥିଲେ । ଆଜକାଲି ଓଡିଶା ଗଡ଼ଜାତ ମହାଲର ରାଜାମାନେ ଯେରୂପ ପାଉଣାଦାରମାନଙ୍କୁ ଖୋଦ ଟଙ୍କା ନ ଦେଇ ବରାତ ଚିଠି ଦିଅନ୍ତି, ପୂର୍ବତନ ମୁସଲମାନ ରାଜାମାନଙ୍କ ସମୟରେ ମଧ୍ୟ ତଦ୍ରୂପ ନିୟମ ପ୍ରଚଳିତ ଥିଲା, କିନ୍ତୁ ଅକବର ତାହା ରହିତ କରି ଯାହାର ଯାହା ପ୍ରାପ୍ୟ ତାକୁ ରାଜକୋଷରୁ ନଗଦ ଟଙ୍କା ଦେଉଥିଲେ । ମହାତ୍ମା ଅକବର ସ୍ୱୟଂ ପରିଚ୍ଛଦ ଓ ଆଭରଣ ବିଷୟରେ ବିଶେଷ ଆଡମ୍ବର କରନ୍ତି ନାହିଁ କିନ୍ତୁ ତାହାଙ୍କର ସ୍ୱଭାବ ଅତ୍ୟନ୍ତ ସମୃଦ୍ଧିଶାଳୀ ଥିଲା ।

## ଷୋଡଶ ଅଧ୍ୟାୟ ।

### ଜାହାଙ୍ଗୀର ।

୧୬୦୫ ସାଲେ କୁମାର ସେଲିମ ଜାହାଙ୍ଗୀର ଅର୍ଥାତ୍ ଭୁବନବିଜୟୀ ଉପାଧି ଧାରଣ ପୂର୍ବକ ସିଂହାସନାରୋହଣ କଲେ । ସେ ପ୍ରଥମେ ରାଜ୍ୟମଧ୍ୟରେ ବିରକ୍ତି-ଜନକ କେତେକ ଶୁଳ୍କ, ଗୃହସ୍ଥମାନଙ୍କ ଗୃହରେ ବଳପୂର୍ବକ ରାଜପୁରୁଷମାନଙ୍କର ବସା କରି ରହିବା, ମଦ୍ୟପାନ ଓ ଦୋଷିମାନଙ୍କର ନାସାକର୍ଣ୍ଣଚ୍ଛେଦ ନିଷେଧକ ପ୍ରଭୃତି କେତେକ ସୁନିୟମ ପ୍ରଚଳିତ କରନ୍ତି । ଯାହାର ଇଚ୍ଛା ସେ ରାଜସାକ୍ଷାତ୍ ଲାଭ କରିବାକୁ ପାରିବ ଏହି ଉଦ୍ଦେଶେ ସେ ନିଜ ଆବାସଗୃହରେ କେତେ ଗୁଡ଼ିଏ ସ୍ୱର୍ଣ୍ଣଘଣ୍ଟା ଟଙ୍ଗାଇ ସେହି ଘଣ୍ଟାବଳୀରେ ଶୃଙ୍ଖଳ ବନ୍ଧନ ପୂର୍ବକ ତାହାର ଅପର ପ୍ରାନ୍ତ ବାହାରରେ ରଖିଥିଲେ । ସେହି ଶୃଙ୍ଖଳ ଆକୃଷ୍ଟ ହୋଇ ଘଣ୍ଟାଧ୍ୱନି ହେଲେ ସେ ଜାଣିପାରନ୍ତି ଯେ, କୌଣସି ଆବେଦନକାରୀ ସାକ୍ଷାତ୍କାର ପ୍ରାର୍ଥନା କରୁଅଛି । ପୂର୍ବେ ଉଲ୍ଲେଖ ହୋଇଅଛି ଯେ, ଜାହାଙ୍ଗୀରଙ୍କର ଖସ୍ରୁ ନାମ-ଧେୟ ଏକ ପୁତ୍ର ଥିଲେ; ସେହି ପୁତ୍ର ସହିତ ତାହାଙ୍କର ପ୍ରଣୟ ଥିଲା ନାହିଁ । ଏତେ-ବେଳ ଯାଏ ମଧ୍ୟ ସେମାନଙ୍କର ମନୋମାଳିନ୍ୟ ଅନ୍ତର୍ହିତ ହୋଇ ନ ଥିଲା । ରାଜ୍ୟାଭିଷେକର ଚାରିମାସ ଉତ୍ତାରେ ଦିନେ ରଜନୀରେ ସମ୍ରାଟ୍ ପ୍ରବୋଧିତ ହୋଇ ଦେଖିଲେ ଯେ, କୁମାର ଖସ୍ରୁ ଥୋକାଏ ଅନୁଚର ସହିତ ଦିଲ୍ଲୀକୁ ପଳାୟନ କରୁଅଛନ୍ତି, ସେ କୁମାରଙ୍କ ଅନୁସରଣପାଇଁ ଅବିଲମ୍ବେ ଲୋକ ପ୍ରେରଣ କଲେ ଏବଂ ପ୍ରାତଃ ଉପସ୍ଥିତ ସୈନ୍ୟମାନଙ୍କୁ ନେଇ ସ୍ୱୟଂ ଯାତ୍ରା କଲେ । ଖସ୍ରୁ ମାର୍ଗରେ ଦେଶ ଲୁଣ୍ଠନ କରୁ କରୁ ଯାଇ ୧୦ସହସ୍ର ସୈନ୍ୟସହିତ ପଞ୍ଜାବରେ ଉପସ୍ଥିତ ହେଲେ ସେ ସ୍ଥାନରେ ସମ୍ରାଟଙ୍କ ଅଗ୍ରଗ ସେନାମାନଙ୍କ ସହିତ ତାହାଙ୍କର ଯୁଦ୍ଧ ହେଲା । ସେହି ଯୁଦ୍ଧରେ ଖସ୍ରୁ ପରାସ୍ତ, ଧୃତ ଓ କଠିନଶୃଙ୍ଖଳରେ ବଦ୍ଧ ହୋଇ ସମ୍ରାଟଙ୍କ ନିକଟକୁ ଆନୀତ ହେଲେ । ସମ୍ରାଟ୍ ପୁତ୍ରକୁ ପ୍ରାଣଦାନ କଲେ ସତ୍ୟ, କିନ୍ତୁ ତାହା-ଙ୍କର ୭ ଶତ ଅନୁଚରଙ୍କୁ ଶୂଳଦ୍ୱାରା ବଧ କଲେ । ସେହି ବଧକ୍ରିୟା ସାଧନ ସମୟରେ ସମ୍ରାଟଙ୍କ ଆଦେଶାନୁସାରେ କୁମାର ଏକ କରିପୃଷ୍ଠରେ ଆରୋହିତ ହୋଇ ସେମାନଙ୍କ ମଧ୍ୟ ଦେଇ ଚାଲିତ ହେଲେ ଏବଂ ଜଣେ ବେତ୍ରଧାରୀ ପୁରୁଷ କହିଲେ "କୁମାର ଆପଣଙ୍କ ସାହାଯ୍ୟ ପାଇଁ ଏମାନେ ଦଣ୍ଡାୟମାନ ଅଛନ୍ତି । ଆପଣ ଏମାନଙ୍କ ଅଭିବାଦନ ଗ୍ରହଣ କରନ୍ତୁ" । ଅନନ୍ତର କୁମାର କାରାଗାରକୁ ନୀତ ହେଲେ । ସେ ସ୍ଥାନରେ ସେ ୩ ଦିବସ ଆହାର ପରିତ୍ୟାଗ କରି କେବଳ ଅଶ୍ରୁପାତ କରିଥିଲେ । ପରବର୍ଷ ୧୬୦୭ ସାଲେ ବସନ୍ତ ସମୟରେ ଜାହାଙ୍ଗୀର କାବୁଲକୁ ଗମନ କଲେ [illegible] ।

୧୬୧୧ ସାଲେ ଜାହାଙ୍ଗୀର, ସୁପ୍ରସିଦ୍ଧ ନୂରଜାହାନୀୟାଙ୍କ ପାଣିପୀଡ଼ନ କରନ୍ତି । ପାରସ୍ୟର ଅନ୍ତର୍ଗତ ତିହାରାନ ନଗରର ଏକ ପ୍ରଧାନ କର୍ମଚାରୀର ପୁତ୍ର ଗଏସଉଦ୍ଦୀନ ଦରିଦ୍ରଭାବାପନ୍ନ ହୋଇ ଭାଗ୍ୟ ବଢ଼ାଇବା ଉଦ୍ଦେଶ୍ୟରେ ଦୁଇପୁତ୍ର ଓ ଅନ୍ତଃସତ୍ତ୍ୱା ରମଣୀଙ୍କ ସହିତ ଭାରତବର୍ଷକୁ ଆସୁଥିଲେ । କାନ୍ଦାହାରଠାରେ ସେହି ରମଣୀ ଗୋଟିଏ କନ୍ୟା ସନ୍ତାନ ପ୍ରସବ କଲା । ପଥଶ୍ରାନ୍ତି ଓ ପ୍ରସବବେଦନା ହେତୁରୁ ତାହାଙ୍କ ସ୍ତନ୍ୟରେ ଏପରି ଦୁଗ୍ଧ ନ ଥିଲା ଯେ, ତଦ୍ଦ୍ୱାରା ନବପ୍ରସୂତା କନ୍ୟା ଜୀବନ ଧାରଣ କରିବାକୁ ପାରେ । ଗଏସ ମଧ୍ୟ ଏପରି ନିଃସମ୍ବଳ ହୋଇଥିଲେ ଯେ, ଧାତ୍ରୀ ନିଯୁକ୍ତ କରିବା ତାହାଙ୍କର କ୍ଷମତାତୀତ ଥିଲା । ସୁତରାଂ ଅପତ୍ୟସ୍ନେହ ପରିତ୍ୟାଗପୂର୍ବକ ସେହି ପାନ୍ଥଦର୍ଶିତ ମାର୍ଗ ମଧ୍ୟରେ ନବପ୍ରସୂତା କନ୍ୟାକୁ ଅଗତ୍ୟା ପରିତ୍ୟାଗ କରିବାକୁ ବାଧ୍ୟ ହୋଇଥିଲେ; କିନ୍ତୁ ଅନୁକୂଳ ଦୈବବଶରୁ ସେହି ମାର୍ଗ ଦେଇ ଏକଦଳ ଭାରତବର୍ଷଆଗମନଶୀଳ ବଣିକ ଆସୁଥିଲେ । ସେମାନଙ୍କ ମଧ୍ୟରୁ ପ୍ରଧାନ ବଣିକ ସେହି ମାର୍ଗତ୍ୟକ୍ତା କନ୍ୟାକୁ ପ୍ରତିପାଳନ କରିବା ବାସନାରେ ଗ୍ରହଣ କଲେ ଏବଂ ପୟୋଦାନ ନିମନ୍ତେ ଏକ ଧାଈ ନିଯୁକ୍ତ କଲେ । ସେହି କନ୍ୟାର ଜନନୀ ଯେ ଧାଈସ୍ଥାନୀୟା ହୋଇଥିଲେ ଏ କଥା ବୋଲିବା ବାହୁଲ୍ୟମାତ୍ର । କାରଣ ସେହି ଦୁର୍ଗମ ମାର୍ଗରେ ଅନ୍ୟ ଧାଈ ମିଳିବାର ସମ୍ଭାବନା କି ? ପରେ ଗଏସ ଏବଂ ତାହାଙ୍କ ପୁତ୍ରଦ୍ୱୟ ମଧ୍ୟ ତତ୍ସଙ୍ଗେ ଭାରତବର୍ଷରେ ଆସି ଉପସ୍ଥିତ ହେଲେ । ବଣିକ, ଗଏସ ପରିବାରର ସଦାଶୟତା ଗୁଣର ବଶମ୍ବଦ ହୋଇ, ମହାତ୍ମା ଅକବରଙ୍କଠାରେ ପରିଚୟ କରାଇ ଦେଇ ଏକ୬ ପଦରେ ନିଯୁକ୍ତ କରାଇ ଦେଲେ । ସେହି ଦିନଠାରୁ ଗଏସ ସ୍ୱକୀୟ ସ୍ୱଭାବସିଦ୍ଧ ବିଚକ୍ଷଣତାଦ୍ୱାରା ଉତ୍ତରୋତ୍ତର ଉନ୍ନତପଦ ଲାଭ କରନ୍ତି । ପୂର୍ବୋକ୍ତ ବଣିକପାଳିତା କନ୍ୟା କାଳକ୍ରମେ ଅନୁପମ ରୂପଲାବଣ୍ୟମୟୀ ହେଲେ । ସମ୍ରାଟଙ୍କ ଅନ୍ତଃପୁର ମଧ୍ୟକୁ ଗମନ କରିବା ଗଏସପତ୍ନୀଙ୍କ ପକ୍ଷରେ କୌଣସି ପ୍ରତିବନ୍ଧକ ନ ଥିଲା । ନୂରଜାହାନୀୟା ମଧ୍ୟ ଜନନୀଙ୍କ ସହିତ ଗମନ କରୁଥିଲେ । ଦିନକରେ ସେହି ସଂସାରଲଲାମ ଯୁବତୀ କୁମାର ସେଲିମଙ୍କ ଦୃଷ୍ଟିପଥବର୍ତ୍ତିନୀ ହେବାରୁ ସେ ତାହାଙ୍କର ରୂପଲାବଣ୍ୟ ଦେଖି ଅଧୈର୍ଯ୍ୟ ହୋଇ ତାହାଙ୍କ ପ୍ରଣୟ ପ୍ରାର୍ଥନା କଲେ । ତତ୍ ଶ୍ରବଣରେ ଗଏସଜାୟା ଅତ୍ୟନ୍ତ ବିରକ୍ତ ହୋଇ କୌଣସି ଅବରୋଧବାସିନୀଦ୍ୱାରା ସମ୍ରାଟଙ୍କ ଶ୍ରୁତିଗୋଚର କରାଇ ଦେଲେ । ନ୍ୟାୟପରାୟଣ ସମ୍ରାଟ୍ ଏହି କଥା ଶ୍ରବଣ କରିବା ମାତ୍ର ଅତ୍ୟନ୍ତ ରାଗାନ୍ୱିତ ହେଲେ ଓ ପୁତ୍ରକୁ ଅନେକ ଭର୍ତ୍ସନା କଲେ ଏବଂ କନ୍ୟାକୁ ପାତ୍ରସାତ୍ କରିବାପାଇଁ ଗଏସଙ୍କୁ ମତ୍ପର୍ଶ ଦେଲେ । ତଦନୁସାରେ ଶେରଅଫଗାନଙ୍କ ସହିତ ନୂରଜାହାନୀୟାଙ୍କର ପରିଣୟ କାର୍ଯ୍ୟ ସମ୍ପନ୍ନ ହେଲା । ସଦାଶୟ ଅକବର

ଯୌତୁକ ସ୍ୱରୂପ ଶେର ଅଫଗାନଙ୍କୁ ବଙ୍ଗଦେଶରେ ଖଣ୍ଡେ ଜାଗିର ପ୍ରଦାନ କଲେ ।

ଯୁବତୀ ପରିଣୀତା ହୋଇ ଦୂରଦେଶକୁ ନୀତ ହେଲେ ସତ୍ୟ, କିନ୍ତୁ ତାହାଙ୍କର ମୋହିନୀମୂର୍ତ୍ତି ସେଲିମଙ୍କର ହୃଦୟପଟରୁ ଅପନୀତ ହୋଇ ନ ଥିଲା । ବର୍ତ୍ତମାନ ସିଂହାସନାରୂଢ଼ ହୋଇ ସେହି ରମଣୀରତ୍ନ ଲାଭର ଉପାୟ ଅନ୍ୱେଷଣରେ ପ୍ରବୃତ୍ତ ହେଲେ । ସମ୍ରାଟ୍ ପ୍ରଥମେ ବହୁଳସମ୍ପତ୍ତି ସହିତ ନୂରଜାହାନୀୟାଙ୍କୁ ବିନିମୟ କରିବା କାରଣ ଶେରଅଫଗାନଙ୍କ ନିକଟକୁ ଦୂତ ପଠାଇଲେ । ଅଫଗାନ କିନ୍ତୁ ସାମାନ୍ୟ ଲୋକ ନୁହନ୍ତି, ସାମାନ୍ୟ ଧନ ଲୋଭରେ ଯେ, ଏତାଦୃଶ ଜଘନ୍ୟବିଷୟରେ ସମ୍ମତ ହେବେ ଏହା କଦାପି ଅସମ୍ଭବ ; ସୁତରାଂ ଶେରଅଫଗାନ ଏହି ପ୍ରସ୍ତାବ ଶୁଣି ଅତ୍ୟନ୍ତ ରାଗାନ୍ୱିତ ହେଲେ ଓ ଆପଣାକୁ ବିଦ୍ରୋହୀ ବୋଲି ଘୋଷଣା କରି ଦେଲେ ଏବଂ ବର୍ଷ ମଧ୍ୟରେ ଖଣ୍ଡେ ଛୁରିକା ଗୋପନ ଭାବରେ ଘେନି ଏହି ପ୍ରସ୍ତାବର ମଧ୍ୟସ୍ଥ ବଙ୍ଗଦେଶର ତାତ୍କାଳିକ ସୁବାଦାରଙ୍କ ସାମ୍ନାରେ ଉପସ୍ଥିତ ହେଲେ । ପ୍ରଥମ ସମ୍ଭାଷଣ ଉତ୍ତାରେ ପୂର୍ବୋକ୍ତ ବିଷୟ ଉତ୍ଥାପିତ ହେବାମାତ୍ର ଶେରଅଫଗାନ ସୁବାଦାରଙ୍କୁ ବଧ କଲେ; କିନ୍ତୁ ସୁବାଦାରଙ୍କ ପକ୍ଷୀୟ ଲୋକମାନଙ୍କ ଦ୍ୱାରା ସ୍ୱୟଂ ନିଧନ ପ୍ରାପ୍ତ ହେଲେ । ସୁବାଦାରବଧ ଅପରାଧରେ ଶେରଅଫଗାନଙ୍କ ସମସ୍ତ ସମ୍ପତ୍ତି ସହିତ ବିଧବା ରମଣୀ ଦିଲ୍ଲୀକୁ ନୀତ ହେଲେ । ନୂରଜାହାନୀୟା ଦିଲ୍ଲୀରେ ଉପସ୍ଥିତ ହେବାମାତ୍ର ନିର୍ଦ୍ଦୟ ଜାହାଙ୍ଗୀର ତାହାଙ୍କର ପ୍ରଣୟ ପ୍ରାର୍ଥନା କଲେ; କିନ୍ତୁ ସେ ପତିହନ୍ତାଙ୍କ ପ୍ରାର୍ଥନାରେ କର୍ଣ୍ଣପାତ ମଧ୍ୟ କଲେ ନାହିଁ । ଏପରି ଅବସ୍ଥାରେ ସାମାନ୍ୟ କାମୁକମାନେ ଏପରି ଅସହାୟା ରମଣୀ ପ୍ରତି ବଳ ପ୍ରକାଶ କରନ୍ତେ ସନ୍ଦେହ ନାହିଁ; କିନ୍ତୁ ଜାହାଙ୍ଗୀର ତାହା କଲେ ନାହିଁ । ନୂରଜାହାନୀୟା ସାମାନ୍ୟାବସ୍ଥାରେ ୪ବର୍ଷ କାଳ ସମ୍ରାଟଙ୍କ ଅନ୍ତଃପୁରରେ ବାସ କରିଥିଲେ । କମଳିନୀ ପଙ୍କିଲ ସରୋବରରେ ବାସ କରି ମଧ୍ୟ ସୌରଭ ବିସ୍ତାର କରିଥାଏ । ନୂରଜାହାନୀୟା ଯେ କେବଳ ବାହ୍ୟ ସୌନ୍ଦର୍ଯ୍ୟର ଆଧାର ଥିଲେ ଏମନ୍ତ ନୁହେ । ସେ ଶିଳ୍ପ, ଚାରୁକାର୍ଯ୍ୟ ଓ କବିତା ରଚନା ପ୍ରଭୃତି ଅନେକ ଗୁଡ଼ିଏ ସଦ୍‌ଗୁଣରେ ଅଲଙ୍କୃତ ଥିଲେ । ରମଣୀ ତାଙ୍କର କଥା ଅବା କି କହିବା; ଉଲ୍ଲିଖିତ ଗୁଣାବଳୀ ବିଷୟରେ ଭାରତବର୍ଷରେ ତାତ୍କାଳିକ ଅଳ୍ପ ପୁରୁଷ, ତାହାଙ୍କ ଉପମାସ୍ଥାନୀୟ ଥିଲେ ପୁଣି ମନ୍ତ୍ରଣା ବିଷୟରେ ଅନେକ ଦକ୍ଷ ସଚୀବ ମଧ୍ୟ ତାହାଙ୍କ ଠାରେ ପରାସ୍ତ ମାନିଥିଲେ । ସାମାନ୍ୟାବସ୍ଥାରେରହି ମଧ୍ୟ ଅସାଧାରଣରୂପଲାବଣ୍ୟମୟୀ ନୂରଜାହାନୀୟା ଗୁଣବତ୍ତା ପ୍ରକାଶ ପାଇଲା । ସେ ସାମାନ୍ୟାବସ୍ଥାରେ ରହି ନାନା ପ୍ରକାର ଜରିର କାରୁକାର୍ଯ୍ୟ ଓ କବିତା ରଚନା କରି ଦିନଯାପନ କରୁଥିଲେ । ଏହି ବିଷୟ କର୍ଣ୍ଣ ପରମ୍ପରାୟ

ସମ୍ରାଟଙ୍କର କଣ୍ଠଗୋଚର ହେଲାରୁ ତାହାଙ୍କର ବିଲୁପ୍ତପ୍ରାୟପ୍ରଣୟ ପୁନର୍ଦୀପ୍ତ ହୋଇ ଉଠିଲା । ନୂରଜାହାନୀୟା ମଧ୍ୟ ବିରହ ଯନ୍ତ୍ରଣା ସହ୍ୟ କରି ନ ପାରି ସମ୍ରାଟଙ୍କ ପ୍ରାର୍ଥନାରେ ସମ୍ମତ ହେଲେ । ସେହି ଦିନଠାରୁ ନୂରଜାହାନୀୟାଙ୍କ ଯଶଗଗଧର ଭାରତବର୍ଷ ମଧ୍ୟରେ ଜାଜ୍ୱଲ୍ୟମାନ ହେବାର ଆରମ୍ଭ ହେଲା ଏବଂ ଦିଲ୍ଲୀ ସାମ୍ରାଜ୍ୟ ମଧ୍ୟରେ ତାହାଙ୍କର ଯେପରି ଆଧିପତ୍ୟ ଚଳଲା, ଅଉ କୌଣସି ବେଗମର ଏପରି ଆଧିପତ୍ୟ ଚଳିଥିଲା ନାହିଁ । କେହି୨ ବୋଲନ୍ତି, ନୂରଜାହାନୀୟା ଆପଣାର ସମ୍ମାନ ବଢ଼ାଇବା ପାଇଁ ପ୍ରଥମେ ସମ୍ରାଟଙ୍କ ପ୍ରାର୍ଥନାରେ ଅସମ୍ମତ ହୋଇ ଥିଲେ; କିନ୍ତୁ ଆମ୍ଭେମାନେ କହୁଁ, ଏହା ନିନ୍ଦୁକମାନଙ୍କର ଅପବାଦ ମାତ୍ର । ବୁଦ୍ଧିମତୀ ଓ ଗୁଣବତୀ ରମଣୀ ଯେ ପତିହନ୍ତା ବାକ୍ୟରେ ସହସା ଅସମ୍ମତ ହେବେ ଏଥିରେ ବିଚିତ୍ର କି ଅଛି ?

ବିବାହର ପରି ବରଷ ଅର୍ଥାତ୍ ୧୬୧୨ ସାଲେ ସମ୍ରାଟ୍ ଦାକ୍ଷିଣାତ୍ୟ ବଶୀକରଣ ପାଇଁ ୨ଦଳ ସେନା ପ୍ରେରଣ କଲେ; କିନ୍ତୁ ସେମାନେ ଶୀଘ୍ର ପରାସ୍ତ ହୋଇ ପଳାଇ ଆସିଲେ । ସେହି ସଙ୍ଗେ ସମ୍ରାଟଙ୍କ ପୁତ୍ର ଖରମ ମଧ୍ୟ ଥୋକାଏ ସେନା ଘେନି ଉଦୟପୁର ଜୟ କରିବାକୁ ଯାଇ ଥିଲେ । ସେ ତତ୍ରତ୍ୟ ରାଣାଙ୍କୁ ପରାସ୍ତ କରନ୍ତି । ପରାଭୂତ ରାଣା ବଶତା ସ୍ୱୀକାର କରିବାରୁ ଅକବରଙ୍କ ଆଚରିତ ନିୟମାନୁସାରେ ଖରମ ଆନନ୍ଦ ପୂର୍ବକ ତାହାଙ୍କୁ ଆଲିଙ୍ଗନ କଲେ ଓ ଆପଣା ପାର୍ଶ୍ୱରେ ବସାଇ ପ୍ରଚୁର ଆଦର ଓ ସମ୍ମାନ ସହିତ କଥୋପକଥନ କରି ବସିଲେ । ପରେ ପୂର୍ବ୨ ମୋଗଲ ସମ୍ରାଟମାନଙ୍କ ଦ୍ୱାରା ଉଦୟପୁରରୁ ଯେ ସମସ୍ତ ଭୂଖଣ୍ଡ ଗୃହୀତ ହୋଇ ଥିଲା, ତତ୍ସମସ୍ତ ଫେରାଇ ଦେଲେ ଓ ରାଣାଙ୍କ ପୁତ୍ରକୁ ଅମୀରପଦ ପ୍ରଦାନ କଲେ । ଏପରି ସାଧୁ ବ୍ୟବହାର ଦ୍ୱାରା ଖରମଙ୍କର ସୁଖ୍ୟାତି ବୃଦ୍ଧି ହେଲା । ଏହି ସମୟରେ ସେ ସମ୍ରାଟଙ୍କ ଦ୍ୱାରା ସାଜାହାନ ଅର୍ଥାତ୍ ଭୂବନାଧିପ ଏହି ପଦ ପାଇ ସିଂହାସନର ଉତ୍ତରାଧିକାରୀ ବୋଲି ଜଣାଯାଉ ଥିଲେ; କିନ୍ତୁ ଜାହାଙ୍ଗୀରଙ୍କ ଖସ୍ରୁ ଓ ପାର୍ଭିଜ ନାମକ ଅପର ଦୁଇ ପୁତ୍ର ତାହାଙ୍କର ପ୍ରବଳ ପ୍ରତିଯୋଗୀ ଥିବାରୁ ସିଂହାସନପ୍ରାପ୍ତି ଆଶା ଦଣ୍ଡକ ପାଇଁ ମଧ୍ୟ ତାହାଙ୍କ ଅନ୍ତଃକରଣରେ ବଦ୍ଧମୂଳ ହୋଇ ପାରିଲା ନାହିଁ । ସେ ଯାହା ହେଉ କିଛି ଦିନ ଉତାରେ ଖରମ, ଅହମଦ ଓ ଅନ୍ୟାନ୍ୟ ନଗର ବଶୀକରଣାର୍ଥ ଦାକ୍ଷିଣାତ୍ୟକୁ ଗମନ କଲେ । ସେହି ସମୟରେ ଖସ୍ରୁ ମଧ୍ୟ ତାହାଙ୍କ ସଙ୍ଗରେ ଥିଲେ । ଦିନେ ସହସା ସ୍କନ୍ଧାବାର ମଧ୍ୟରେ କ୍ରନ୍ଦନ ଧ୍ୱନି ଶୁଭିଲା । ପଚାରିବାରୁ ଜଣାଗଲା ଯେ ଖସ୍ରୁ ପରଲୋକ ଯାତ୍ରା କଲେ । ଏଥିକୁ ସମସ୍ତେ ଅନୁମାନ କରନ୍ତି ଯେ, ଖରମ ଏହି ଘଟନାର ମୂଳ କାରଣ ଅଟନ୍ତି । ମୁସଲମାନମାନଙ୍କର ଅର୍ଥଗୃଧ୍ନୁତା ଦେଖି ଆମ୍ଭମାନଙ୍କୁ ମଧ୍ୟ ଏହି ପ୍ରବାଦ ଅଳୀକ

ବୋଲି ବୋଧ ହେଉ ନାହିଁ । ଅନନ୍ତର ଖୁରମ ଦାକ୍ଷିଣାତ୍ୟର ଅନେକ ସ୍ଥାନ ଜୟ କରି ସାନନ୍ଦ ମନରେ ସମ୍ରାଟଙ୍କ ନିକଟରେ ଉପସ୍ଥିତ ହେଲେ । ଏହି ଘଟନାର ଅଳ୍ପକାଳ ଉତ୍ତାରେ ଖୁରମଙ୍କର ଅନ୍ୟ ଏକ ପ୍ରତିଯୋଗୀ ଉପସ୍ଥିତ ହେଲା, ସେ ବିଷୟ ନିମ୍ନେ ବର୍ଣ୍ଣିତ ହେଉ ଅଛି;—

ସେର ଅଫଗାନ ଔରସଜାତ ନୂରଜାହାନୀୟାଙ୍କର ଗୋଟିଏ କନ୍ୟା ଥିଲା। ସମ୍ରାଟଙ୍କର ଚତୁର୍ଥ ପୁତ୍ର ସହେରୟାରଙ୍କ ସହିତ ତାହାର ବିବାହ ହୁଏ; ଅତଏବ ନୂରଜାହାନୀୟା ସପତ୍ନୀ ପୁତ୍ରଙ୍କୁ ଉପେକ୍ଷା କରି ସ୍ୱକୀୟ ଜାମାତାର ରାଜ୍ୟପ୍ରାପ୍ତି ବିଷୟରେ ଯେ ଅନୁକୂଳ୍ୟ କରିବେ ଏକଥା ଉଲ୍ଲେଖ କରିବା ବାହୁଲ୍ୟ-ମାତ୍ର । ସେ ଏହା ମଧ୍ୟ ବିବେଚନା କଲେ ଯେ, ତେଜସ୍ୱୀ ଖୁରମ ସିଂହାସନାରୋ-ହଣ କଲେ ସ୍ୱକୀୟ ଆଧିପତ୍ୟ ହ୍ରାସ ହୋଇ ଯିବ; ଅତଏବ ସେ ଖୁରମଙ୍କୁ ସମ୍ରାଟ-ଙ୍କ ନିକଟରୁ ଦୂରଦେଶରେ ରଖିବା କାରଣ ଉପାୟ ଅନ୍ୱେଷଣ କରିବାରେ ରହିଲେ । ଏହି ସମୟରେ ନୂରଜାହାନୀୟାଙ୍କର ଅନୁକୂଳଜନକ ଏକ ଘଟନା ଉପସ୍ଥିତ ହେଲା । ସମ୍ବାଦ ଆସିଲା ଯେ, ପାରସିକମାନେ କାନ୍ଦାହାର ଅଧିକାର କରିଅଛନ୍ତି; ସୁତରାଂ ସମ୍ରାଟଙ୍କୁ ସୈନ୍ୟ ପ୍ରେରଣ କରିବା ଆବଶ୍ୟକ ହେଲା । ନୂରଜାହାନୀୟାଙ୍କ ପ୍ରବର୍ତ୍ତନାରେ ଖୁରମ ପ୍ରେରିତ ହେଲେ, କିନ୍ତୁ ସାଜାହାନ ଅର୍ଥାତ୍ କୁମାର ଖୁରମ କିଛି ଦୂର ଯାଇ ବିମାତାର ଚକ୍ରାନ୍ତ ବୁଝି ପାରିବାରୁ ନାନା ଛଳ କରି ଯୁଦ୍ଧ ଯାତ୍ରା ସ୍ଥଗିତ କଲେ । ଏଣେ ନୂରଜାହାନ କୌଣସି ମନୋଭିପ୍ରାୟ ହେତୁରୁ ସାଜାହାନ ଗମନ ରହିତ କଲେ ଇତ୍ୟାଦି ବିଷୟ ବ୍ୟାଖ୍ୟା କରି କୁମା-ରଙ୍କ ପ୍ରତି ସମ୍ରାଟଙ୍କର କ୍ରୋଧ ଜନ୍ମାଇ ଦେଲେ । ଅନନ୍ତର କୁମାର ସହେରୟାରଙ୍କ ପ୍ରତି କାନ୍ଦାହାର ଉଦ୍ଧାରର ଭାର ଅର୍ପିତ ହେଲା ଏବଂ କୁମାର ସାଜାହାନଙ୍କ ସମଭିବ୍ୟାହାରୀ ସମସ୍ତ ସେନା ସହେରୟାରଙ୍କୁ ପ୍ରଦାନ କରିବା ପାଇଁ ଆଦେଶ ପ୍ରେରିତ ହେଲା । ଏହି ସମସ୍ତ ବ୍ୟାପାର ସମାଧାନ ସମୟରେ ଗ୍ରୀଷ୍ମାଗମ ହେତୁରୁ ସମ୍ରାଟ୍ କାଶ୍ମୀରକୁ ଯାତ୍ରା କଲେ । ଦୂତଦ୍ୱାରା ପିତା ପୁତ୍ରଙ୍କର ବାଦାନୁବାଦ ଚଳିଲା । ସାଜାହାନ ପିତାଙ୍କ ସହିତ ପୁନର୍ମିଳନର ସମ୍ଭାବନା ନ ଦେଖି ସସୈନ୍ୟେ ଦିଲ୍ଲୀ ଅଭିମୁଖକୁ ଧାବିତ ହେଲେ । ଏହି ସମ୍ବାଦ ପ୍ରଚାରିତ ହେବା ମାତ୍ର ସମ୍ରାଟ୍ ତାହାଙ୍କର ଅନୁସରଣ କଲେ । ଏକ ସ୍ଥାନରେ ଉଭୟ ପକ୍ଷର ଏକ ସାମାନ୍ୟ ଯୁଦ୍ଧ ଘଟିଲା ସେ ସ୍ଥାନରେ ସମ୍ରାଟଙ୍କ ସେନାମାନେ ପରାସ୍ତ ହେଲେ, କିନ୍ତୁ ଜୟୀ ସେନା-ମାନେ କ୍ରମଶଃ କୁମାରଙ୍କ ପକ୍ଷ ପରିତ୍ୟାଗ କଲେ । ତହୁଁ ସେ ପଳାୟନ ପୂର୍ବକ ଦାକ୍ଷିଣାତ୍ୟମାର୍ଗେ ମଚ୍ଛଲିବନ୍ଦରରେ ପ୍ରବିଷ୍ଟ ହୋଇ ବଙ୍ଗ ଦେଶରେ ଉପସ୍ଥିତ ହେଲେ ଓ ଉତ୍କଳ ଓ ବିହାର ହସ୍ତଗତ କରି ଆଲ୍ଲାହାବାଦକୁ ଧାବିତ ହେଲେ ।

ସେ ସ୍ଥାନରେ ସମ୍ରାଟ ପ୍ରେରିତ କୁମାରପାର୍ଜିବଙ୍କ ସହିତ ଯୁଦ୍ଧ ଉପସ୍ଥିତ ହେଲା । ସେହି ଯୁଦ୍ଧରେ ସାଜହାନ ପରାସ୍ତ ହୋଇ ପୁନର୍ବାର ଦାକ୍ଷିଣାତ୍ୟକୁ ପଳାୟନ କଲେ । ଏହି ଘଟନାର ଅବସାନେ ଅର୍ଥାତ୍ ୧୬୨୬ ଖ୍ରୀଷ୍ଟାବ୍ଦେ ରୌସିୟାନାମାନଙ୍କୁ ବଶୀଭୂତ କରିବା ପାଇଁ ଜାହାଙ୍ଗୀର କାବୁଲ ଯାତ୍ରା କଲେ । ସେହି ସ୍ଥାନରେ ଅବସ୍ଥାନ ସମୟରେ ନୂରଜାହାନୀୟାଙ୍କ ଭ୍ରାତାଙ୍କଦ୍ୱାରା ଅଭିଯୋଗ ଉପସ୍ଥିତ ହେଲା ଯେ, ବଙ୍ଗଦେଶରେ ଅବସ୍ଥିତ ସମୟରେ ମହବତଖାଁ ତହବିଲ ଭଙ୍ଗ ଓ ପ୍ରଜାପୀଡନ କରି ଅଛନ୍ତି । ତନ୍ନିବନ୍ଧନ ସମ୍ରାଟ ତାହାଙ୍କୁ ତଲବ କରି ପଠାଇଲେ । ତଦନୁସାରେ ମହବତ ଏକାନ୍ତ ଅନୁଗତ ୧୫ ସହସ୍ର ସୈନ୍ୟ ସହିତ ଉପସ୍ଥିତ ହୋଇ ସମ୍ରାଟଙ୍କ ଶିବିରର ଅନତିଦୂରରେ ଶିବିର ସନ୍ନିବେଶିତ କଲେ । ଦୂତ-ଦ୍ୱାରା କେତେକ କଥାବାର୍ତ୍ତା ଚଳିଲା ଉତ୍ତାରେ ମହବତ ବୁଝିଲେ ଯେ, ସମ୍ରାଟଙ୍କ ସହିତ ସମ୍ମିଳନର ସମ୍ଭାବନା ନାହିଁ । ଅତଏବ ସେ ଏକାବେଳକେ ସମ୍ରାଟଙ୍କ ଶିବିର ଆକ୍ରମଣ କରିବା ପାଇଁ ମନସ୍ଥ କଲେ । ଦିନକରେ ରଜନୀ ଯୋଗେ ସହସା ସମ୍ରାଟଙ୍କ ଶିବିର ଆକ୍ରମଣ କଲେ ଓ ତେତେବେଳେ ସୈନ୍ୟମାନେ ନିଦ୍ରିତ; ସୁତରାଂ ପ୍ରସ୍ତୁତ ନ ଥିବାରୁ ଏକାବେଳକେ ସମ୍ରାଟଙ୍କ ଶୟନ ପଟ୍ଟବାସ ମଧ୍ୟରେ ପ୍ରବିଷ୍ଟ ହେଲେ । ସମ୍ରାଟ ତେତେବେଳେ ନିଦ୍ରାଭିଭୂତ ଥିଲେ; ହଠାତ୍ ଜାଗରିତ ହୋଇ ମହବତଙ୍କୁ ଈଦୃଶ ମନ୍ଦାଚରଣର କାରଣ ପଚାରିଲେ । ତହୁଁ ମହବତ ପ୍ରଣତି ପୂର୍ବକ ନିବେଦନ କଲେ "ଆପଣଙ୍କ ସହିତ ସାକ୍ଷାତ୍ ନ ହେବାରୁ ଏହି ପ୍ରକାର ଆଚରଣ କରିଅଛି, ଅତଏବ ପ୍ରାର୍ଥନା କରେଁ ଯେ, ଆପଣ ବାହାରକୁ ଆସି ସମସ୍ତଙ୍କୁ ଦର୍ଶନ ଦେଉନ୍ତୁ" । ଏହିରୂପେ ସମ୍ରାଟ ବିପାଶା ନଦୀକୂଳରେ ମହ-ବତଙ୍କ ଶିବିରରେ ବନ୍ଦୀସ୍ୱରୂପ ହୋଇ ରହିଲେ ।

ଏହି ଦାରୁଣ ବିପଦ ସମୟରେ ମଧ୍ୟ ନୂରଜାହାନୀୟାଙ୍କ ସାହସ ତିରୋହିତ ହୋଇ ନ ଥିଲା । ସେ ଏକ କରୀ ପୃଷ୍ଠରେ ଆରୋହଣ କରି ସସୈନ୍ୟ ମହବତଙ୍କ ସୈନ୍ୟ ଆକ୍ରମଣ କଲେ । ବିପକ୍ଷ ସୈନ୍ୟମାନେ ଅପର ସୈନ୍ୟମାନଙ୍କୁ ଉପେକ୍ଷା କରି ନୂରଜାହାନୀୟାଙ୍କ ହସ୍ତୀ ଉପରେ ଅସ୍ତ୍ରବର୍ଷଣ କଲେ । ପ୍ରଥମେ ଗୋଟାଏ ଶର ଆସି ତାହାଙ୍କ ପାର୍ଶ୍ୱବର୍ତ୍ତିନୀ ଦୌହିତ୍ରୀ ଉପରେ ପତିତ ହେଲା ପରେ ମାହୁନ୍ତ ବଧ ହେଲା; ଅବଶେଷେ ହସ୍ତୀକରରେ ଗୋଟାଏ ବାଣ ପଡିବାରୁ ସେ ଅଗତ୍ୟା ଭଙ୍ଗ-ଦେଇ ପଳାୟନ କଲେ, ପରେ ନୂରଜାହାନୀୟା ସମ୍ରାଟଙ୍କୁ ଉଦ୍ଧାର କରିବାର ଅନ୍ୟ କୌଣସି ଉପାୟ ନ ଦେଖି ଇଚ୍ଛାପୂର୍ବକ ତାହାଙ୍କର କାରାସହବାସିନୀ ହୁଅନ୍ତି । ମହ-ବତ ସେ ସ୍ଥାନରୁ ଯାଇ ଅଟକନଗରରେ ଉପସ୍ଥିତ ହେଲେ । ସେ ସ୍ଥାନରେ ଆଜଫ ଖାଁ ଓ ତଦ୍ଭିନ୍ନ ଅନ୍ୟାନ୍ୟ କର୍ମଚାରୀମାନଙ୍କୁ ବନ୍ଦୀ କଲେ । ବୁଦ୍ଧିମତୀ

ନୂରଜାହାନାମ୍ନୀ ସମ୍ରାଟଙ୍କ ଉଦ୍ଧାର ପାଇଁ ଅନ୍ୟ ଏକ ପ୍ରତାରଣାଜାଲ ବିସ୍ତାର କଲେ । ତାହାଙ୍କର ଉପଦେଶାନୁସାରେ ସମ୍ରାଟ୍ ମହବତଙ୍କ ନିକଟରେ ସର୍ବଦା ନୂରଜାହାନାମ୍ନୀ ଓ ଆସଫଖାଁଙ୍କର ମୌଖିକ ନିନ୍ଦା କରୁଥିଲେ ଏବଂ ଏପରି ଭାବ ପ୍ରକାଶ କଲେ ଯେ, ସେମାନେ ଏହି ଉତ୍ପାତର ମୂଳାଧାର । ଏହି ଉପାୟଦ୍ୱାରା ସମ୍ରାଟଙ୍କ ପ୍ରତି ମହବତଙ୍କର ଅଣୁମାତ୍ର ଅବିଶ୍ୱାସ ରହିଲା ନାହିଁ । ଦିନେ ସମ୍ରାଟ୍ ମହବତଙ୍କଠାରେ ପ୍ରସ୍ତାବ କଲେ ଯେ "ସୈନ୍ୟ ରଖିବାପାଇଁ ଆମ୍ଭର ଅନେକ ଲୋକ ଜାଗିର ଭୋଗ କରୁଅଛନ୍ତି; କିନ୍ତୁ ଶୁଣି ପାଉଁ ସେମାନେ ଉପଯୁକ୍ତ ସୈନ୍ୟ ରଖି ନାହାନ୍ତି ଅତଏବ ଏ ବିଷୟ ବେଳେ ଅନୁସନ୍ଧାନ କରିବା ଉଚିତ" । ମହବତ ଏଥିରେ ଅସ୍ୱୀକୃତ ହେଲେ ନାହିଁ । ଉପସ୍ଥିତ ବିଷୟର ଅନୁସନ୍ଧାନ ଲାଗିଲା । ନୂରଜାହାନାମ୍ନୀ ମଧ୍ୟ ଜାଗିରୀ ଭୋଗ କରୁଥିଲେ । ସୈନ୍ୟ ଦେଖାଇବା କାରଣ ତାହାଙ୍କ ପ୍ରତି ଆଦେଶ ପ୍ରେରିତ ହେଲା । ପ୍ରଥମେ ସେ ସାମାନ୍ୟ ଲୋକ-ମାନଙ୍କ ସହିତ ଗଣିତ ହେଲେ ବୋଲି କାଳ୍ପନିକ ଅତ୍ୟନ୍ତ ରାଗାନ୍ୱିତ ହେଲେ; କିନ୍ତୁ ଅବ୍ୟବହିତ ପରେ ସେ ଭାବ ଅନ୍ତର୍ହିତ ହେଲା । ଦିନକରେ ନୂରଜାହାନାମ୍ନୀଙ୍କ ସୈନ୍ୟମାନେ ଆସି ଏକକ୍ଷେତ୍ରରେ ଦଣ୍ଡାୟମାନ ହେଲେ । ଜାହାଙ୍ଗୀର ସେନା ପର୍ଯ୍ୟବେକ୍ଷଣ କରିବାକୁ ଯାଇ ସେମାନଙ୍କ ସହିତ ମିଳିତ ହୋଇ ଗଲେ । ଏହି ରୂପେ ସମ୍ରାଟ୍ ମୁକ୍ତି ଲାଭ କଲେ ସତ୍ୟ; କିନ୍ତୁ ଆସଫଖାଁ ପ୍ରଭୃତି ସେତେବେଳ ପର୍ଯ୍ୟନ୍ତ ବନ୍ଦୀ ଥିଲେ, ଅତଏବ ବାଧ୍ୟ ହୋଇ ସମ୍ରାଟଙ୍କୁ ସନ୍ଧି କରିବାକୁ ହେଲା । ଏହି ସମୟରେ ସାଜାହାନ ସହସ୍ର ମାତ୍ର ସୈନ୍ୟ ଘେନି ଅଜମୀରଠାରେ ଉପସ୍ଥିତ ହେଲେ କିନ୍ତୁ ଦୁର୍ଭାଗ୍ୟବଶରୁ ଉପସ୍ଥିତ ମାତ୍ର ତାହାଙ୍କର ପ୍ରଧାନ ସହଯୋଗୀ ପ୍ରାଣ ତ୍ୟାଗ କଲେ । ତହୁଁ ସେ କାବୁଲକୁ ପଳାଇଲେ । ଏହି ସମୟରେ ସେ ଏପରି ଦୂରବସ୍ଥାରେ ପଡିଥିଲେ ଯେ, ସୁସ୍ଥ ଶରୀରରେ ଥିଲେ ପାରସ୍ୟକୁ ଆଶ୍ରୟ ଗ୍ରହଣପାଇଁ ପଳାୟନ କରି ଥାଆନ୍ତେ; କିନ୍ତୁ ପୁରୁଷର ସୌଭାଗ୍ୟ ବିଷୟ ଦେବତାମାନେ ମଧ୍ୟ କହି ନ ପାରନ୍ତି । ଏହି ପ୍ରାଚୀନ ବଚନରେ ମିଥ୍ୟାର ଲେଶମାତ୍ର ଦେଖାଯାଏ ନାହିଁ । ଅଦୃଷ୍ଟବଶରୁ କେତେ ରାଜରାଜେଶ୍ୱର ସାମାନ୍ୟାବସ୍ଥା ପ୍ରାପ୍ତ ହେଉଅଛନ୍ତି ଓ କେତେକ ସାମାନ୍ୟାବସ୍ଥା ଲୋକେ ସୁଦ୍ଧା ରାଜରାଜେଶ୍ୱର ସିଂହାସନାରୋହଣ କରୁଅଛନ୍ତି । ସେ ଯାହା ହେଉ ଯେ କୁମାର ସାଜାହାନ ସାମାନ୍ୟ ପ୍ରଜା ଭାବରେ ମଧ୍ୟ ଭାରତବର୍ଷରେ ରହି ନ ପାରି ଦେଶାନ୍ତରିତ ହେବାପାଇଁ ମାନସ କରିଥିଲେ । ଏତେବେଳେ ତାହାଙ୍କ ପକ୍ଷରେ ଭାରତସମ୍ରାଟାସନ ପ୍ରାପ୍ତିମାର୍ଗ ନିଷ୍କଣ୍ଟକ ହୋଇ ଆସି-ଲା । ସେହି ସମୟରେ କୁମାର ପାର୍ଭିଜଙ୍କର ପରଲୋକ ଗମନ ହୁଏ । ୧୬୨୭ ସାଲେ ସମ୍ରାଟଙ୍କୁ ମଧ୍ୟ ଶ୍ୱାସରୋଗ ହେତୁରୁ ଲୋକଲୀଳା ସମ୍ବରଣ କରିବାକୁ ହେଲା ।

୧୬୧୭ ସାଲେ ଜାହାଙ୍ଗୀରଙ୍କ ରାଜତ୍ୱ ସମୟରେ ଇଂଲଣ୍ଡେଶ୍ୱର ପ୍ରଥମ ଚାର୍ଲସ ଭାରତବର୍ଷକୁ ଏକଦୂତ ପଠାଇଥିଲେ । ଉକ୍ତ ଦୂତ ଲେଖନରେ ମୋଗଲ ସମ୍ରାଟମାନଙ୍କର ମହତୀ ଶ୍ରୀବୃଦ୍ଧି ଓ ଭାରତବର୍ଷର ବିବିଧ ଶିଳ୍ପଚାତୁର୍ଯ୍ୟ ବିଷୟ ଉଲ୍ଲେଖ ଅଛି ।

---

## ସପ୍ତଦଶ ଅଧ୍ୟାୟ ।

## ସାଜାହାନ ।

ଜାହାଙ୍ଗୀର ଉପରତ ହେଲେ ନୂରଜାହାନା ସ୍ୱୀୟ ଜାମାତା ସହରସ୍ୟା-ରଙ୍କୁ ସିଂହାସନରେ ବସାଇବାପାଁଇ ଯତ୍ନ କରିଥିଲେ; କିନ୍ତୁ ଆଜଫଖାଁ ତାହା କରିବାକୁ ନ ଦେଇ ସ୍ୱୀୟ ଜାମାତା ସାଜାହାନଙ୍କୁ ରାଜ୍ୟାଭିଷିକ୍ତ କରାଇଲେ । ସେହି ଦିନଠାରୁ ନୂରଜାହାନୀୟାଙ୍କ ପ୍ରଭାବ କ୍ରମଶଃ ତିରୋହିତ ହେଲା । ସେ ବାର୍ଷିକ ୨୫ ଲକ୍ଷ ଟଙ୍କାମାତ୍ର ବୃତ୍ତି ଭୋଗ କରି ଅନ୍ତଃପୁରରେ ବାସ କଲେ । ସହେରୟାର ତେତେବେଳେ ଲାହୋରରେ ବାସ କରୁଥିଲେ । ସେ ସ୍ଥାନରେ ସେ ଆଧିପତ୍ୟ ସ୍ଥାପନ ପାଁଇ ଇଚ୍ଛା କରିବାରୁ ସାଜାହାନ ଯାଇ ତାହାଙ୍କୁ ବଧ କଲେ । ଏହି ସମୟରେ ଖାଁଜାହାନ ନାମକ ଜଣେ ଦାକ୍ଷିଣାତ୍ୟସ୍ଥ ଉଚ୍ଚ-ପଦାରୂଢ଼ ବ୍ୟକ୍ତି ସ୍ୱାଧୀନ ହେବାକୁ ଚେଷ୍ଟିତ ହେଲେ । ସୁତରାଂ ସମ୍ରାଟଙ୍କ ସହିତ ତାହାଙ୍କର ଯୁଦ୍ଧ ଘଟିଲା, ଅବଶେଷେ ଖାଁଜାହାନ ବଶତା ସ୍ୱୀକାରପୂର୍ବକ ସମ୍ରାଟଙ୍କ ନିର୍ଦ୍ଦେଶାନୁସାରେ ଆଗରାରେ ବାସ କଲେ; କିନ୍ତୁ ଅଳ୍ପଦିନ ମଧ୍ୟରେ ସେ, ସମ୍ରାଟ୍ ତାହାଙ୍କ ଅନିଷ୍ଟ ଚିନ୍ତା କରୁଅଛନ୍ତି ଶୁଣି, ୨୦୦୦ ସୈନ୍ୟ ସହିତ ପ୍ରକାଶ୍ୟରୂପେ ଆଗରା ପରିତ୍ୟାଗ କଲେ । ସମ୍ରାଟଙ୍କ ସେନାମାନେ ତାହାଙ୍କର ଅନୁସରଣରେ ରହିଲେ । ପରିଶେଷେ ଖାଁଜାହାନ ପରାସ୍ତହେଲେ ଓ ତାହାଙ୍କ ଛିନ୍ନମସ୍ତକ ସମ୍ରାଟଙ୍କ ସମୀପକୁ ପ୍ରେରିତ ହେଲା । ଖାଁଜାହାନଙ୍କ ମୃତ୍ୟୁ ଉତାରେ ୨ ବର୍ଷ ପର୍ଯ୍ୟନ୍ତ ଦାକ୍ଷିଣାତ୍ୟ ମହାମାରୀ ଓ ଦୁର୍ଭିକ୍ଷଦ୍ୱାରା ଆକ୍ରାନ୍ତ ହୋଇଥିଲା । ପରେ ୧୬୩୭ ଖ୍ରୀଷ୍ଟାବ୍ଦେ ସମ୍ପୂର୍ଣ୍ଣରୂପେ ସ୍ଥିରତା ଲାଭକରି ସମ୍ରାଟଙ୍କ କରତଳନ୍ୟସ୍ତ ହେଲା । ବିଜୟପୁର ଓ ଗୋଲକୁଣ୍ଡାର ରାଜାମାନେ ଏହି ସମୟରେ ବିନା ଯୁଦ୍ଧେ ବଶତା ସ୍ୱୀକାର କରନ୍ତି ।

ସମ୍ରାଟ୍ ଦାକ୍ଷିଣାତ୍ୟ ବିଷୟ ନିଷ୍ପତ୍ତି କରି ଅଧିକଦିନ ବିଶ୍ରାମଲାଭ କରିପାରିଲେ ନାହିଁ । ୧୬୩୭ ସାଲେ କାବୁଲର ଶାସନକର୍ତ୍ତା ଅଲିମର୍ଦ୍ଦନଖାଁ ଆପଣାର ଅଯୋଗ୍ୟ ପାରସିକ ରାଜାଙ୍କ ହସ୍ତରୁ ଉଦ୍ଧାର ପାଇବା ବାସନାରେ ସାଜାହାନଙ୍କ ଶରଣାପନ୍ନ ହେବାରୁ ତାହାଙ୍କୁ କାବୁଲ ଯାତ୍ରା କରିବାକୁ ହେଲା । ତଦର୍ଥେ ସମ୍ରାଟଙ୍କର ଦୁଇ

ପୁତ୍ର ଦାରା ଓ ଆରଙ୍ଗଜେବ ମଧ୍ୟ ଯାଇଥିଲେ । ୧୬୩୭ ସାଲଠାରୁ ୧୬୫୩ ସାଲ ପର୍ଯ୍ୟନ୍ତ ଦିଲ୍ଲୀ ସମ୍ରାଟ୍ ଓ ପାରସିକ ରାଜାଙ୍କ ମଧ୍ୟରେ ଅପାର ଯୁଦ୍ଧ ଘଟିଲା; କିନ୍ତୁ କାହାର ପକ୍ଷରେ କୌଣସି ବିଶେଷ ଅନିଷ୍ଟ ହୋଇ ନ ଥିଲା । ଆଲିମର୍ଦ୍ଦନଖାଁ ଅତି ଯୋଗ୍ୟଲୋକ ଥିଲେ; ସେ ସାଧାରଣ ଉପକାର ପାଇଁ ଅନେକ ସ୍ଥାନରେ ବିବିଧ କାର୍ଯ୍ୟ କଳାପ ଅନୁଷ୍ଠାନ କରି ଯାଇଅଛନ୍ତି । ଉତ୍ତ୍ପ ମଧ୍ୟରେ ଦିଲ୍ଲୀସ୍ଥ ତାହାଙ୍କର ସ୍ୱ ନାମ ଖ୍ୟାତ ସରେ୍ବର ସର୍ବପ୍ରଧାନ ।

ଅତଃପର ବି ୬ ବର୍ଷ କାଳ ମୋଗଲ୍ ସାମ୍ରାଜ୍ୟ ମଧ୍ୟରେ ଗୋଲମାଲର ନାମ ମାତ୍ର ଶୁଣା ନ ଗଲା । ଇତି ପୂର୍ବେ ବି ୨୦ ବର୍ଷ ହେଲା ଦାକ୍ଷିଣାତ୍ୟ ଜୟିବା ପାଇଁ ଲୋକ ନିଯୁକ୍ତ ହୋଇଥିଲେ । ବର୍ତ୍ତମାନ ତାହା ସମ୍ପୂର୍ଣ୍ଣ ହୁଅଇ । ଆକବରଙ୍କ ରାଜତ୍ୱ ସମୟରେ ରାଜା ଟୋଗଲମଲ୍ଲ ଆର୍ଯ୍ୟାବର୍ତ୍ତର ରାଜସ୍ୱ ସମ୍ବନ୍ଧେ ଯେପ୍ରଣାଳୀ ଉଦ୍ଭାବନ କରନ୍ତି ଦାକ୍ଷିଣାତ୍ୟରେ ତାହା ପ୍ରଚଳ ହେଲା । ଏହି ଶାନ୍ତି ସମୟରେ ସମ୍ରାଟଙ୍କ ଉଜୀର ଶାଯୁଦ୍ଦୁଲଖାଁ ପରଲୋକ ଗମନ କରନ୍ତି । ଭାରତବର୍ଷସ୍ଥ ଯାବତୀୟ ଉଜୀରମାନଙ୍କ ମଧ୍ୟରେ ଏବ୍ୟକ୍ତି ସବୁଠାରୁ ଦକ୍ଷ ଓ ଧର୍ମଭୀରୁ ଥିଲେ ।

ଚିରକାଳ ସମାନାବସ୍ଥାରେ ଅତିବାହିତ ହେବା ନିତାନ୍ତ ଅସମ୍ଭବ । ଶୁକ୍ଳ ଓ କୃଷ୍ଣପକ୍ଷ ପରି ପୃଥିବୀରେ ସୁଖ ଦୁଃଖର ନିୟତ ପରିବର୍ତ୍ତନ ହେଉଅଛି । ଏହି ଶାନ୍ତି ସମୟରେ ଗୋଲକୁଣ୍ଡାପତିଙ୍କ ଉଜୀର ମୀରଜୁମଲା ସ୍ୱୀୟ ପ୍ରଭୁଦ୍ୱାରା ଅପଦସ୍ଥ ହୋଇ ସମ୍ରାଟଙ୍କର ସାହାଯ୍ୟ ପ୍ରାର୍ଥନା କରନ୍ତି । ତହୁଁ ସମ୍ରାଟ ମିଳନ ବାସନା ଗୋଲକୁଣ୍ଡାପତିଙ୍କୁ ଲେଖିଲେ; କିନ୍ତୁ ତହିଁରେ କିଛି ଫଳ ଦର୍ଶିଲା ନାହିଁ । ଅତଏବ ତାହାଙ୍କ ଦମନ ପାଇଁ କୁମାର ଆରଙ୍ଗଜେବଙ୍କ ପ୍ରତି ଆଦେଶ ପ୍ରେରିତ ହେଲା । ସେ ସେତେବେଳେ ଅରଙ୍ଗାବାଦରେ ଅବସ୍ଥିତି କରୁଥିଲେ । ଆରଙ୍ଗଜେବ କାର୍ଯ୍ୟ ସାଧନ ପାଇଁ ଦେହବଳ ପ୍ରୟୋଗଠାରୁ ଚାତୁରୀ ପ୍ରୟୋଗ କରିବାକୁ ଭଲ ମଣିଲେ । ଆରଙ୍ଗଜେବ ଆଜ୍ଞାପତ୍ର ପ୍ରାପ୍ତିମାତ୍ର ସ୍ୱୀୟପୁତ୍ର ମହମ୍ମଦଙ୍କ ସହିତ ଭ୍ରାତୁଷ୍ପୁତ୍ରୀର ବିବାହ ହେବ, ଏପରି ଏକ ମିଥ୍ୟା ଘୋଷଣା କରିଦେଲେ । ସେହି କୁମାରୀ ବଙ୍ଗ-ଦେଶରେ ଥିଲେ । ଅରଙ୍ଗାବାଦରୁ ବଙ୍ଗଦେଶକୁ ଯିବାକୁ ହେଲେ ମଛଲିବନ୍ଦର ମାର୍ଗଦେଇ ଯିବାକୁ ହୁଏ । ଆଉ ଗୋଲକୁଣ୍ଡା ରାଜଧାନୀ, ମଛଲିବନ୍ଦରଠାରୁ ବହୁଦୂରବର୍ତ୍ତୀ ନୁହେ । ଆରଙ୍ଗଜେବ ଅଳ୍ପ ସଂଖ୍ୟକ ମାତ୍ର ସୈନ୍ୟ ସହିତ କୌଣସି ପ୍ରକାର ଯୁଦ୍ଧ ସଜ୍ଜା ନ କରି ମଛଲିବନ୍ଦରଠାରେ ଉପସ୍ଥିତ ହେଲେ; କିନ୍ତୁ ପ୍ରଚ୍ଛନ୍ନ ଭାବରେ ତାହାଙ୍କ ସହିତ ଅପାର ସୈନ୍ୟ ଥିଲେ । ଗୋଲକୁଣ୍ଡାପତି କୌଣସି ପ୍ରକାର ସନ୍ଦେହ ନ କରି ଯୁବରାଜଙ୍କ ସହିତ ସାକ୍ଷାତ୍ କରିବାକୁ ଆସିବାରୁ ଆର-ଙ୍ଗଜେବଙ୍କ ଇଙ୍ଗିତାନୁସାରେ ଲୁକ୍କାୟିତ ସେନାମାନେ ହଠାତ୍ ଉପସ୍ଥିତ ହୋଇ

ତାହାଙ୍କୁ ସମ୍ପୂର୍ଣ୍ଣରୂପେ ପରାସ୍ତ କଲେ । ତେତେବେଳେ ଗୋଲ୍‌କୁଣ୍ଡାପତିଙ୍କଠାରୁ ସନ୍ଧିପତ୍ରରେ ସ୍ୱାକ୍ଷର କରାଇ ନେବା ଅରଙ୍ଗଜେବଙ୍କ ପକ୍ଷରେ ଅଧିକ କଠିନ ବ୍ୟାପାର ହେଲା ନାହିଁ । ୧୬୫୭ । ଅରଙ୍ଗଜେବ ସେ ସ୍ଥାନରୁ ବାହାର ବିଜୟ୍ପୁର ରାଜ୍ୟ ଆକ୍ରମଣ କଲେ; ଅଳ୍ପକାଳ ଯୁଦ୍ଧରେ ତଦ୍ଦେଶୀୟ ଭୂପତିଙ୍କୁ ଏମନ୍ତ ଅସ୍ଥିର କଲେ ଯେ, ସେ ଯଦି ବିଶେଷ କାର୍ଯ୍ୟ ଅନୁରୋଧରେ ଅନ୍ୟତ୍ର ଆହୂତ ହୋଇ ନ ଥାନ୍ତେ ତେବେ ବିଜୟ୍ପୁରରେ ନିଶ୍ଚୟ ତାହାଙ୍କ ବିଜୟ୍ପତାକା ଉଡି ଥାଆନ୍ତା ।

ଦାରା, ସୁଜା, ଅରଙ୍ଗଜେବ ଓ ମୁରାଦ ନାମରେ ସାଜାହାନଙ୍କର ଚାରିପୁତ୍ର ଥିଲେ । ଦାରା ସାହସୀ, ଉଦାର ଓ ବଦାନ୍ୟ କିନ୍ତୁ ଗର୍ବିତ ଓ ଉଦ୍ଧତ ଥିଲେ । ଧର୍ମବିଷୟରେ ସେ ଆକବରଙ୍କ ଅନୁସରଣ କରନ୍ତି । ସୁଜା ବୁଦ୍ଧିମାନ୍ କିନ୍ତୁ ସୁରା ନି ଆମୋଦପରାୟଣତା ହସ୍ତରୁ ବିମୁକ୍ତ ଥିଲେ ନାହିଁ । ମୁରାଦ ନିର୍ବୋଧ, ସୁରାସକ୍ତ ଓ ଏକାନ୍ତ ବ୍ୟସନାସକ୍ତ ଥିଲେ । ଅରଙ୍ଗଜେବଙ୍କ ପ୍ରକୃତି ସେମାନଙ୍କ ସହିତ ସାମଞ୍ଜସ୍ୟ ନ ଥିଲା । ତାହାଙ୍କର ଅବୟବ ସୁଦୃଶ୍ୟ ଓ ସୌମ୍ୟଭାବ ପ୍ରଶାନ୍ତ, ନିର୍ମଳ ଓ ସନ୍ଦେହାନ ଥିଲା । ସେ ଅତ୍ୟନ୍ତ ସାହସୀ କପଟୀ ଓ ଧୂର୍ତ୍ତ ଥିଲେ । ମହମ୍ମଦୀୟ ଧର୍ମପ୍ରତି ତାହାଙ୍କର ଦୃଢ଼ବିଶ୍ୱାସ ଥିଲା ତେଣୁ ମୁସଲମାନ ପ୍ରଜାମାନେ ତାହାଙ୍କ ପ୍ରତି ଅତ୍ୟନ୍ତ ଅନୁରକ୍ତ ଥିଲେ ।

ସାଜାହାନଙ୍କ ବାର୍ଦ୍ଧକ୍ୟଦଶା ଉପସ୍ଥିତ ହୋଇଥିଲା । ସେ ରାଜ୍ୟଶାସନ ସଂକ୍ରାନ୍ତ ଅଧିକାଂଶ ଭାର ଦାରାଙ୍କ ହସ୍ତରେ ଅର୍ପଣ କରିଥିଲେ, ଏଥିରୁ ବୋଧହୁଏ ଆନ ତିନି ପୁତ୍ରଙ୍କୁ ଉପେକ୍ଷା କରି ଦାରାଙ୍କୁ ସିଂହାସନରେ ବସାଇବା ତାହାଙ୍କର ଆନ୍ତରିକ ଇଚ୍ଛା ଥିଲା । ଏକଦା ସମ୍ରାଟ ପୀଡ଼ିତ ହୋଇ ମୁମୂର୍ଷୁ ଦଶା ପ୍ରାପ୍ତ ହୁଅନ୍ତି । ଦାରା ଭ୍ରାତାମାନଙ୍କଠାରେ ସମ୍ରାଟଙ୍କ ତାତ୍କାଳିକ ଅବସ୍ଥା ପ୍ରଚ୍ଛନ୍ନ ରଖିବା କାରଣ ବିଶେଷ ଚେଷ୍ଟା କରିଥିଲେ, କିନ୍ତୁ ତାହା ସେମାନଙ୍କଠାରେ ଅବିଦିତ ରହିଲା ନାହିଁ । ସୁଜା ବଙ୍ଗଦେଶରେ ସୁବାଦାର ଥିଲେ । ସେ ରାଜୋପାଧି ଧାରଣ କରି ଆଗ୍ରା ପ୍ରତି ଧାବିତ ହେଲେ । ଗୁଜରାଟ ଦେଶସ୍ଥ ମୁରାଦ ମଧ୍ୟ ସୁଜାଙ୍କର ଅନୁକରଣ କଲେ । ଧୂର୍ତ୍ତ ଅରଙ୍ଗଜେବ ପ୍ରକାଶ୍ୟରେ କୌଣସି କର୍ମରେ ହସ୍ତକ୍ଷେପ କଲେ ନାହିଁ ଏବଂ ରାଜ୍ୟେଶ୍ୱର ହେବା ବାସନା ପ୍ରଚ୍ଛନ୍ନ ରଖି ମୁରାଦଙ୍କ ସହାୟତାରେ କାର୍ଯ୍ୟ ସାଧନ କରିବା ପାଇଁ ମନସ୍ଥ କଲେ । ଅତଏବ ମୁରାଦ ରାଜ୍ୟେଶ୍ୱର ବୋଲି ଘୋଷଣା କରି ଦେଲେ । ଅରଙ୍ଗଜେବ ତହିଁରେ କାଳ୍ପନିକ ଅତ୍ୟନ୍ତ ଆନନ୍ଦ ଓ ଅଭିନନ୍ଦନ ପ୍ରକାଶ କଲେ; ଏବଂ ମୋରାଦଙ୍କୁ ଲେଖି ପଠାଇଲେ ଯେ, "ଭାଇ! ଆମ୍ଭେ

ସଂସାର ତ୍ୟାଗ କରି ମକ୍କା ତୀର୍ଥକୁ ଯାଇ ଧର୍ମଚିନ୍ତା କରିବୁଁ, ମାତ୍ର ତତ୍ପୂର୍ବେ କାଫିର ଦାରା ଓ ତତ୍ପକ୍ଷୀୟ ରାଜା ଯଶୋବନ୍ତସିଂହର ଦମନ ପାଇଁ ତୁମ୍ଭର ସହାୟ ହେବାକୁ ବାସନା କରୁଁ"। ଏହି କପଟତା ଶୀଘ୍ର ପ୍ରକାଶ ହୋଇଥିଲା ମାତ୍ର ନିର୍ବୋଧ ମୁରାଦ ତାହା ବୁଝି ପାରିଲେ ନାହିଁ । ୧୬୫୭ ।

ଏହି ସମୟରେ ସାଜାହାନ ସୁସ୍ଥତା ଲାଭ କଲେ ଏବ ପୁତ୍ରମାନଙ୍କର ଗର୍ହିତ ଆଚରଣ ବିଷୟ ଶୁଣି ଅତ୍ୟନ୍ତ ବିରକ୍ତ ହେଲେ । ଅନନ୍ତର ଶୀଘ୍ର ଶୁବାକୁ ଫେରି ଯିବା ପାଇଁ ପୁତ୍ରାଙ୍କ ପ୍ରତି ଆଦେଶ ଗଲା ; କିନ୍ତୁ "ଏହି ଆଦେଶ ସମ୍ରାଟଙ୍କର ନୁହଇ ଦାରାଙ୍କର ଅଟେ" ଏହିରୂପେ ଛଳ କରି ରାଜଧାନୀ ଅଭିମୁଖେ ଅଗ୍ରସର ହେଲେ; କିନ୍ତୁ ଦାରାଙ୍କ ପୁତ୍ର ସଲିମାନ ଯାଇ ତାହାଙ୍କୁ ବାରାଣସୀଠାରେ ପରାସ୍ତ କରିବାରୁ ସେ ଅଗତ୍ୟା ବଙ୍ଗଦେଶକୁ ପଳାୟନ କରିବାକୁ ବାଧ୍ୟ ହେଲେ । ଏଣେ ମୁରାଦ ଓ ଅରଙ୍ଗଜେବ ସମ୍ରାଟପ୍ରେରିତ ଯଶୋବନ୍ତ ସିଂହଙ୍କୁ ମାଳବଦେଶଠାରେ ପରାସ୍ତ କରି ରାଜଧାନୀ ଅଭିମୁଖେ ଆଗମନ କଲେ । ଦାରା ସେମାନଙ୍କ ଆଗମନ ନିବାରଣ ପାଇଁ ପ୍ରସ୍ତୁତ ହେଲେ । ଆଗ୍ରାଠାରେ ଉଭୟ ପକ୍ଷୀୟ ସେନାମାନଙ୍କର ଭେଟ ହେଲା । ଦାରା ଓ ତତ୍ପକ୍ଷୀୟ ସେନାମାନେ ବିକ୍ରମ ପ୍ରକାଶିବାକୁ ଆରମ୍ଭ କଲେ ମୁରାଦ ମଧ୍ୟ ସ୍ୱୀୟ ବାହୁବଳର ପରିଚୟ ଦେବାକୁ ତ୍ରୁଟି କଲେ ନାହିଁ । ଅବିଶ୍ରାନ୍ତ ବାଣ ନିପତିତ ହେବାରୁ ଦାରାଙ୍କ ଆରୋହିତ କରୀ ଶୀଘ୍ର ଶଲ୍ଲକିର ଆକାର ଧାରଣ କଲା । ଏଣେ ଅରଙ୍ଗଜେବ ସ୍ୱକୀୟ ସାହସିକତା ଓ ବିମୃଷ୍ୟକାରିତା ଦେଖାଇବାରେ ତତ୍ପରହେଲେ । ଯେଉଁ ସ୍ଥାନରେ ସେନାମାନେ କାତରହୋଇ ପଡ଼ନ୍ତି ସେହି ସ୍ଥାନରେ ତାହାଙ୍କର ହସ୍ତୀ ଉପସ୍ଥିତ ଥାଏ ଓ ତାହାଙ୍କ କଣ୍ଠନିଃସାରିତ "ପରମେଶ୍ୱର ଅମ୍ଭମାନଙ୍କ ପକ୍ଷରେ ଅଛନ୍ତି ! ଭୟ ନାହିଁ ସାହସ ଅବଲମ୍ବନ କର, ବୀରତ୍ୱ ପ୍ରକାଶ କର" ଏହି ବାକ୍ୟାବଳୀ ପ୍ରତିଧ୍ୱନିତ ହେଉଥାଏ । ଘୋରତର ଯୁଦ୍ଧ ହେଉଅଛି ଏମନ୍ତ ସମୟରେ ଗୋଟାଏ ଜଳନ୍ତ ଗୋଳା ଦାରାଙ୍କ ହସ୍ତୀ ଉପରେ ପତିତ ହେବାରୁ ସେ ରଣ ଭୂମି ତ୍ୟାଗ କରି ପଳାୟନ କଲା । ତାହାଙ୍କ ସେନାମାନେ ପ୍ରଭୁଙ୍କୁ ନ ଦେଖି ଭଙ୍ଗ ଦେଲେ । ତେଣୁ ବିପକ୍ଷ ପକ୍ଷ ଅନାୟାସରେ ଜୟୀ ହେଲେ । ୧୬୫୮ ସାଲ । ଯୁଦ୍ଧରେ ଜୟୀ ହୋଇ ଅରଙ୍ଗଜେବ ପରମେଶ୍ୱରଙ୍କୁ ଧନ୍ୟବାଦ କଲେ ଓ ମୋରାଦ ନିକଟକୁ ଯାଇ "ତୁମ୍ଭେ ରାଜା ହେଲ" ଏହା କହି ଅଭିନନ୍ଦନ କରି ବସିଲେ । ପରେ ଅରଙ୍ଗଜେବ ସମ୍ପୂର୍ଣ୍ଣରୂପେ ବଶତା ସ୍ୱୀକାର କରି ସମ୍ରାଟଙ୍କୁ ପତ୍ର ଲେଖନ୍ତି । ମାତ୍ର ସମ୍ରାଟ ତହିଁରେ ଦୃକ୍‌ପାତ ମଧ୍ୟ କଲେ ନାହିଁ । ଅବଶେଷେ ସମ୍ରାଟଙ୍କ ଆବାସ ଦୁର୍ଗ ଅଧିକାର କରିବାପାଇଁ ଆପଣା ପୁତ୍ର ମହମ୍ମଦଙ୍କୁ ପ୍ରେରଣ କଲେ । ଦୁର୍ଗ ଅଧିକୃତ

ହେଲା । ଅତଃପର ସାହାହାନ ତାଙ୍କ ମରଣ ପର୍ଯ୍ୟନ୍ତ ୭ ବରଷ କାଳ ବନ୍ଦୀକୃତ ହୋଇ ରହିଲେ ।

ବର୍ତ୍ତମାନ ଅରଙ୍ଗଜେବଙ୍କ ସମସ୍ତ କାମନା ପୂର୍ଣ୍ଣ ହେବାରୁ ମୁରାଦଙ୍କୁ ବିସର୍ଜନ ଦେବାର ଉପାୟ ଅନ୍ୱେଷଣ କଲେ । ଏକଦା ନୈଶଭୋଜନରେ ଅରଙ୍ଗଜେବ କୌଶଳ କ୍ରମେ ମୋରାଦଙ୍କୁ ଏତେ ମଦିରା ପାନ କରାଇଲେ ଯେ, ସେ ସଂଜ୍ଞାହୀନ ମୃତ୍ପିଣ୍ଡବତ୍ ପଡ଼ି ରହିଲେ । ଏହି ସୁଯୋଗରେ ସେ ତାହାଙ୍କୁ ବନ୍ଦୀ କରି "ଆଲମଗୀର" ଅର୍ଥାତ୍ ଜଗଜ୍ଜୟୀ ନାମଧାରଣ ପୂର୍ବକ ଦିଲ୍ଲୀସିଂହାସନରେ ଅଧିରୋହଣ କଲେ । ଏହିରୂପେ ସମ୍ରାଟ୍ ସାହାହାନଙ୍କ ଆଧିପତ୍ୟ ବିଲୁପ୍ତ ହୁଏ । ସେ ଅନେକ ବିଷୟରେ ବାବର ବା ଆକବର ତୁଲ୍ୟ ଥିଲେ ନାହିଁ ସତ୍ୟ, ମାତ୍ର ଭାରତବର୍ଷ ମଧ୍ୟରେ ଯେ ଜଣେ ମଙ୍ଗଳବର୍ଦ୍ଧକ ଓ ହିତୈଷୀ ରାଜା ଥିଲେ ତାହାର ସନ୍ଦେହାଭାବ । ତାହାଙ୍କ ଅଧିକାର ସମୟରେ ଭାରତବର୍ଷର ଯେରୂପ ଉନ୍ନତ ହୋଇଥିଲା, ଅନ୍ୟ କୌଣସି ରାଜାର ଅଧିକାର ସମୟରେ ସେପରି ଲକ୍ଷିତ ହୋଇନାହିଁ । ସାହାହାନ ଭିନ୍ନ ରାଜାମାନଙ୍କ ସହିତ ଯୁଦ୍ଧରେ ଲିପ୍ତ ଥିଲେ ସତ୍ୟ, କିନ୍ତୁ ସ୍ୱୀୟରାଜ୍ୟ ମଧ୍ୟରେ ସର୍ବଦା ଶାନ୍ତି ବିରାଜୁଥିଲା ।

ଧର୍ମାଧିକରଣରେ ତାହାଙ୍କର ସର୍ବଦା ଦୃଷ୍ଟି ଥିବାରୁ କୌଣସି ବିଚାରକ ଅନ୍ୟାୟ ବିଚାର କରିବାକୁ ସାହସୀ ହୋଇ ପାରୁ ଥିଲେ ନାହିଁ । ରାଜସ୍ୱ ଆଦାୟୀମାନେ ମଧ୍ୟ ପ୍ରଜାମାନଙ୍କପ୍ରତି ଅତ୍ୟାଚାର କରି ପାରୁ ନ ଥିଲେ । ଫଳେ ପିତା ଯେମନ୍ତ ପୁତ୍ରମାନଙ୍କୁ ଶାସନ କରନ୍ତି, ସେ ପ୍ରଜାମାନଙ୍କୁ ତଦ୍ରୂପ ଶାସନ କରୁଥିଲେ ସାହାହାନ ତୁଲ୍ୟ ସମୃଦ୍ଧିମାନ ସମ୍ରାଟ୍ ଭାରତବର୍ଷରେ ଆଉ ଦେଖା ଯାଇ ନାହିଁ । ସେ ସୁପ୍ରସିଦ୍ଧ ମୟୂରାସନର ନିର୍ମାତା ଅଟନ୍ତି । ସେହି ଆସନ ଦେଖିବାକୁ ଅବିକଳ ଶିଖୀ ତୁଲ୍ୟ, ତାହାର ଚନ୍ଦ୍ରିକା କଲାପ ମହାର୍ଘ ମଣି ମୁକ୍ତାରେ ଖଚିତ ଥିଲା । ଏହି ଆସନ ପ୍ରସ୍ତୁତରେ ପ୍ରାୟ ଛ କୋଟି ମୁଦ୍ରା ପର୍ଯ୍ୟବସିତ ହୋଇଥିଲା । ଅନ୍ୟାନ୍ୟ ବିଷୟ ମଧ୍ୟରେ ତତ୍କୃତ ହର୍ମ୍ୟରୁ ତାହାଙ୍କ ବିଭବଶାଳିତାର ଅନେକ ପରିଚୟ ମିଳେ । ସେ ଦିଲ୍ଲୀରେ ଏକ ନୂତନ ନଗରୀ ନିର୍ମାଣ କରନ୍ତି ପ୍ରାଚୀନଦିଲ୍ଲୀଠାରୁ ତାହାର ଶୋଭା ଅତୀବ ଉତ୍କୃଷ୍ଟ । ଏହିସକଳ ହର୍ମ୍ୟ ମଧ୍ୟ ତତ୍କୃତ ମମତାଜମହଲ ବା ତାଜମହଲ ନାମକ ଆଗ୍ରାସ୍ଥ ସମାଧିମନ୍ଦିର ସର୍ବଠାରୁ ଉତ୍କୃଷ୍ଟ । ତତ୍ତୁଲ୍ୟ ହର୍ମ୍ୟ ଧରାତଳେ କୁତ୍ରାପି ବିଦ୍ୟମାନ ନାହିଁ । ସମ୍ରାଟଙ୍କ ମମତାଜମହଲ ନାମ୍ନୀ ପ୍ରିୟତମା ମହିଷୀର ସ୍ମରଣାର୍ଥ ଏହି ସମାଧି ନିର୍ମିତ ହୋଇଅଛି । ବନକରେ ଗର୍ଭବତୀ ମହିଷୀ ଶୟନାବସ୍ଥାରେ ଉଦରସ୍ଥ ଶିଶୁର କ୍ରନ୍ଦନ ଧ୍ୱନି ଶୁଣିପାଇଲେ ପରେ ତଜ୍ଜନିତ ପଣ୍ଡିତ ଓ ହାକିମମାନଙ୍କୁ ଏହାର କାରଣ ପଚାରିଲେ

ସେମାନେ ଏକମତ ହୋଇ କହିଲେ ଯେ, ଏହା ମୃତ୍ୟୁର ପୂର୍ବଲକ୍ଷଣ ଅଟେ । ବେଗମ ଏହା ଶୁଣି ଅତ୍ୟନ୍ତ ଦୁଃଖିତ ହେଲେ ଓ ସମ୍ରାଟଙ୍କୁ ଅହ୍ୱାନ କରି କହିଲେ ଯେ ମୋହର ପରଲୋକ ଗମନାନ୍ତେ ଏପରି ଏକ କାର୍ଯ୍ୟ କରିବ ଯେମନ୍ତ ତଦ୍ୱାରା ମୁଁ ଚିରଦିନ ସ୍ମରଣୀୟ ହୋଇ ରହିପାରେଁ । ତଦନୁସାରେ ତାଜମହଲ ନିର୍ମିତ ହୁଏ । ଏହା ନିର୍ମାଣରେ ୮ କୋଟି ଟଙ୍କା ବ୍ୟୟିତ ହୋଇଥିଲା । କନଷ୍ଟାଣ୍ଟି-ନୋପଲଦେଶୀୟ ଜଣେ ମିସ୍ତ୍ରୀ ଏହାର ନିର୍ମାତା ଅଟନ୍ତି । ସେ ୫୦୦ଟଙ୍କା ବେତନ-ରେ ୮ ବରଷ ନିଯୁକ୍ତ ଥିଲେ । ଏହିସମସ୍ତ କାର୍ଯ୍ୟକଳାପ ସମ୍ପାଦିତ ହୋଇ ୬ କୋଟି ଟଙ୍କା ରାଜକୋଷରେ ଉଦ୍‌ବୃତ ଥିଲା, ଅଥଚ ସାହାହାନ ନୂତନ ଶୁଳ୍କ ସୃଷ୍ଟି ବା ଅନ୍ୟାୟ ପୂର୍ବକ ପ୍ରଜାମାନଙ୍କ ନିକଟରୁ ଏକ କପର୍ଦ୍ଦକ ମଧ୍ୟ ଗ୍ରହଣ କରିଥିଲେ ନାହିଁ ।

—※—

## ଅଷ୍ଟାଦଶ ଅଧ୍ୟାୟ ।

### ଅରଙ୍ଗଜେବ ।

୧୬୫୮ ସାଲେ ଅରଙ୍ଗଜେବ ଦିଲ୍ଲୀସିଂହାସନ ଅଧିକାର କଲେ ମାତ୍ର ଏକ ବରଷ ପର୍ଯ୍ୟନ୍ତ ଭୋଗକଲେ ନାହିଁ କିମ୍ବା ଆପଣା ନାମରେ ମୁଦ୍ରା ମଧ୍ୟ ଚଲା-ଇଲେ ନାହିଁ । ସେ ରାଜ୍ୟଲାଭ ପାଁଇ ଯେରୂପ ଗର୍ହିତ ଉପାୟ ଅବଲମ୍ବନ କରିଥିଲେ କୌଣସି ସମ୍ରାଟ୍ ଏପରି ଗର୍ହିତାଚରଣ କରି ନାହାନ୍ତି । ଫଳତଃ ସେ, ରାଜ୍ୟଲାଭ ଲାଳସାରେ ପିତାଙ୍କୁ ବନ୍ଦୀ କରିଥିଲେ ବୋଲି ଚିରକାଳ ତାହାଙ୍କ ନାମରେ କଳଙ୍କ ରେଖା ଅଙ୍କିତ ଥିବ ।

ଅରଙ୍ଗଜେବ ସିଂହାସନାରୋହଣ କରି ଦାରାଙ୍କୁ ବନ୍ଦୀ କରିବାର୍ଥ ପ୍ରସ୍ତୁତ ହେଲେ ମାତ୍ର ଦାରା ଅରଙ୍ଗଜେବଙ୍କ ମନୋଗତ ଭାବ ଜାଣିବାକୁ ପାଇ ଲାହୋରକୁ ପଳାଇଲେ ।

୧୬୫୯ ସାଲେ ବଙ୍ଗଦେଶ ଶାସନକର୍ତ୍ତା ସୁଜା ସହିତ ଅରଙ୍ଗଜେବଙ୍କର ଯୁଦ୍ଧ ହେଲା । ସେହି ଯୁଦ୍ଧରେ ଅରଙ୍ଗଜେବ ଜୟ ଲାଭ କଲେ । କିଛିଦିନ ଉତ୍ତାରେ ଦାରା କାନାହାର ଠାରେ ପରାସ୍ତ ଓ ଗୋଟାଏ ସାମାନ୍ୟ ହସ୍ତୀ ସ୍କନ୍ଧରେ ଅବରୋହିତ ହୋଇ ଦିଲ୍ଲୀକୁ ଆନୀତ ହେଲେ । ଅରଙ୍ଗଜେବ ମନରେ ଭାବିଥିଲେ ଯେ ନଗରବାସିମାନେ ଦାରାଙ୍କର ଏପରି ଅବସ୍ଥା ଦେଖି ତାହାଙ୍କୁ ଘୃଣା କରିବେ, ମାତ୍ର ତାହାର ବିପରୀତ ଫଳ ଘଟିଲା । ନାଗରିକମାନେ ଦାରାର ଓ ତତ୍‌ପାର୍ଶ୍ୱ-ବର୍ତ୍ତୀ ତଦୀୟ ପୁତ୍ରର ଈଦୃଶ ଦଶା ଦର୍ଶନ କରି ଅତ୍ୟନ୍ତ ବିଳାପ କଲେ ଏବଂ ନଗର ମଧ୍ୟରେ ବିଦ୍ରୋହର ପୂର୍ବଲକ୍ଷଣ ମଧ୍ୟ ଦେଖା ଗଲା । ଅରଙ୍ଗଜେବ

ତାହା ଦେଖି ସତ୍ୟ ଶତରେ ଦାରାର ବିନାଶନ ଚେଷ୍ଟାରେ ରହିଲେ । ପରଦିନ ଦାରା ନାସ୍ତିକ ବୋଲି ବିଚାରିତ ହେଲା ! ଥୋଡ଼ାଏ କପଟୀ ବିଚାରକ ଅରଙ୍ଗଜେବଙ୍କ ନିର୍ଦ୍ଦେଶାନୁସାରେ ଦାରାର ପ୍ରାଣଦଣ୍ଡ ବିଧାନ କଲେ, କେତେକ ଦଣ୍ଡ ଉତ୍ତାରେ ସେହି ଆଦେଶ ସାଧିତ ହେଲା । ଦାରାର ପୁତ୍ର ଗୋ-ୟାଲିୟର ଦୁର୍ଗ କାରାଗାରରେ ନିକ୍ଷିପ୍ତ ହେଲେ ।

ଅନନ୍ତର ସମ୍ରାଟଙ୍କ ପ୍ରଧାନ ମନ୍ତ୍ରୀ ମୀରଜୁମଲା ବହୁଳ ସେନା ସମଭିବ୍ୟା-ହାରେ ଯାଇ ସମସ୍ତ ବଙ୍ଗଦେଶ ଅଧିକାର କଲେ । ଆଶାମ ଓ ଚୀନଦେଶକୁ ଯୁଦ୍ଧ ଯାତ୍ରା କରିବାପାଇଁ ମଧ୍ୟ ସେ ଆଦିଷ୍ଟ ହୋଇଥିଲେ । ସେ ପ୍ରଥମରେ ଆଶାମକୁ ଯାଇ ତଦ୍ଦେଶ ଆକ୍ରମଣ ଓ ଅଧିକାର କଲେ କିନ୍ତୁ ଦୁର୍ଭାଗ୍ୟ ପ୍ରଯୁକ୍ତ ସେ ସ୍ଥାନରୁ ଫେରି ଆସି ଢାକାଠାରେ ପଞ୍ଚତ୍ୱ ପ୍ରାପ୍ତ ହେଲେ ।

ରାଜ୍ୟାଭିଷେକର ୫ବରଷ ଉତ୍ତାରେ ସମ୍ରାଟ୍ ଏକଦା ସାଂଘାତିକ ରୋଗଦ୍ୱାରା ଅକ୍ରାନ୍ତ ହୁଅନ୍ତେ ତାହାଙ୍କର ପ୍ରାଣରକ୍ଷାର ସନ୍ଦେହ ହୋଇଥିଲା । ରୋଗର ପଞ୍ଚମ ଦିନରେ ହଠାତ୍ ମୂର୍ଚ୍ଛା ହୁଏ । ମୂର୍ଚ୍ଛାବସାନେ ସମ୍ରାଟ୍ ସ୍ୱାଭାବିକ ଧୈର୍ଯ୍ୟ ଓ ସାହସ ଅବଲମ୍ବନ ପୂର୍ବକ ପ୍ରଧାନ୨ ଅମାତ୍ୟମାନଙ୍କୁ ଡକାଇ କହିଲେ "ଆମ୍ଭର ଭଗିଣୀ ରୋଷିନାରା ନିକଟରେ ଯେ ମୋହର ରଖିଅଛୁଁ ତାହା ଆମ୍ଭ ପାଖକୁ ଆଣ, ଏ ସମୟରେ ଅନ୍ୟ ନିକଟରେ ରଖିବା ଉଚିତ ନୁହଇ; କେ ଜାଣେ ତଦ୍ଦ୍ୱାରା କେହି କୌଣସି ଅନର୍ଥ ଘଟନା ଘଟାଇପାରେ" । ପରେ ସେ ସମ୍ପୂର୍ଣ୍ଣରୂପେ ସ୍ୱାସ୍ଥ୍ୟଲାଭ ବାସନାରେ କାଶ୍ମୀରକୁ ଯାତ୍ରା କଲେ । ତାହାଙ୍କ ବାସନା ମଧ୍ୟ ଶୀଘ୍ର ସଫଳ ହେଲା ଏହିସମୟରେ ତାହାଙ୍କର ଏକଦଳ ପ୍ରବଳ ପରିପନ୍ଥିଙ୍କୁ ମସ୍ତକୋତ୍ତଳନ କରିବାର ଦେଖାଗଲା । ସେହି ଦଳର ନାମ ମାରହଟ୍ଟା ।

ଗୋୟାନଗରଠାରୁ ବିଦର୍ଭ ନଗର ଦେଇ ବରଦାନଦୀର ଚାନ୍ଦାନଗର ପର୍ଯ୍ୟନ୍ତେ କଳ୍ପିତରେଖା ପଶ୍ଚିମେ ଅରବ୍ୟସାଗର ଏହା ମଧ୍ୟବର୍ତ୍ତୀ ଭୂଭାଗର ନାମ ମହାରାଷ୍ଟ୍ର ଦେଶ ଏଦେଶର ନିବାସିମାନଙ୍କୁ ମାରହଟ୍ଟା ବୋଲାଯାଏ । ମାରହଟ୍ଟା ମାନେ ଖର୍ବ, ଦୃଢ଼ଶରୀର ପରିଶ୍ରମୀ, କଷ୍ଟସହ ଓ ଅତ୍ୟନ୍ତ ଅଧ୍ୟବସାୟୀ । ସ୍ୱାଭିଲ-ଷିତ ସାଧନପାଇଁ ସେମାନେ ପ୍ରାଣପର୍ଯ୍ୟନ୍ତ ପଣ କରିବାକୁ କୁଣ୍ଠା କରନ୍ତି ନାହିଁ । ଚାତୁର୍ଯ୍ୟ ଓ ଧୂର୍ତ୍ତତା ଏମାନଙ୍କ ନିଯୁକ୍ତ ଆଜ୍ଞାକାରୀ । ମହାରାଷ୍ଟ୍ରୀୟମାନଙ୍କର ଆଦିମ ବୃତ୍ତାନ୍ତ ଅତି ଅପରିଜ୍ଞେୟ; ଅଥଚ ତାହା ଅନୁସନ୍ଧାନ କରିବା ମଧ୍ୟ ଆମ୍ଭମାନ-ଙ୍କର ଆବଶ୍ୟକ ନାହିଁ ।

ମାଲଜୀଭୋସଲା ଓ ଯଦୁରାୟ ନାମକ ୨ ଜଣ ଯୋଗ୍ୟ ମହାରାଷ୍ଟ୍ରୀୟ ଦାକ୍ଷିଣାତ୍ୟର କୌଣସି ରାଜା ନିକଟରେ ପ୍ରଧାନ କର୍ମଚାରୀ ଥିଲେ । ଏକଦା

ମାଲଜୀ କୌଣସି କାର୍ଯ୍ୟୋପଲକ୍ଷରେ ଯଦୁରାଓ ଗୃହକୁ ଆହୂତ ହୋଇଥିଲେ । ସେ ସ୍ଥାନରେ ଯଦୁ ଆପଣା ଦୁଗ୍ଧପୋଷ୍ୟା କନ୍ୟା ଓ ମାଲଜୀଙ୍କ ପଞ୍ଚମବର୍ଷୀୟ ପୁତ୍ର ସାହଜୀକୁ କୋଳରେ ଘେନି କହିଲେ "ବାଃ ବେଶ ସାଜ ଅଛି, ଏଦୁହେଁ ସ୍ତ୍ରୀ ପୁରୁଷ ପରି ଦିଶୁଅଛନ୍ତି" । ଯଦୁ କଣ୍ଠରୁ ଏହି ବାକ୍ୟ ନିଃସୃତ ହେବା ମାତ୍ର ମାଲଜୀ ସହସା ଗାତ୍ରୋତ୍ଥାନ କରି ସମସ୍ତ ଲୋକମାନଙ୍କୁ ସମ୍ବୋଧନପୂର୍ବକ କହିଲେ "ଯଦୁଙ୍କ କନ୍ୟା ସହିତ ଆମ୍ଭ ପୁତ୍ରର ବିବାହ ସମ୍ବନ୍ଧ ନିର୍ଣ୍ଣିତ ହେଲା; ଆପଣମାନେ ଏଥିରେ ସାକ୍ଷୀ ରହିଲେ" । ଯଦୁ ଥଟ୍ଟାକରି ଉଲ୍ଲିଖିତ କଥା କହିଲେ ସୁତରାଂ ମାଲଜୀଙ୍କ ଏପରି କଥା ଶୁଣି ଅତ୍ୟନ୍ତ ବିରକ୍ତ ହେଲେ । ମାଲଜୀଙ୍କ ପୁତ୍ରକୁ କନ୍ୟାଦାନ କରିବା ପକ୍ଷରେ ଯଦୁଙ୍କର ବିଶେଷ ଆପତ୍ତି ଥିଲା; କାରଣ ପଦମର୍ଯ୍ୟାଦାରେ ମାଲଜୀ ଅନେକାଂଶରେ ଯଦୁଙ୍କଠାରୁ ନ୍ୟୁନ ଥିଲେ । ଯାହା ହେଉ ଅନୁକୂଳ ଦୈବ ବଶରୁ ଅଳ୍ପକାଳ ମଧ୍ୟରେ ମାଲଜୀ ଉଚ୍ଚପଦ ଓ ପୁନା ନଗର ସମୀପରେ କେତେ-କ ଭୂମି ଜାଗୀର ସ୍ୱରୂପ ପ୍ରାପ୍ତ ହୁଅନ୍ତି । ଯଦୁ ତେତେବେଳେ କୌଣସି ଆପତ୍ତି ନ କରି ତାଙ୍କୁ କନ୍ୟାଦାନ କଲେ । ସେହି ବିବାହରେ ସାହଜୀଙ୍କର ୨ ପୁତ୍ର ହୁଏ; ୨ୟ ପୁତ୍ରଙ୍କ ନାମ ଶିବଜୀ ୧୬୨୭ ଖୃଃ ଅବ୍ଦ ।

ଏହି ଶିବଜୀ ମହାରାଷ୍ଟ୍ରୀୟ ବଂଶର ଉନ୍ନତିର ମୂଳାଧାର ବୋଲି ମଣିବାକୁ ହେବ । ଶିବଜୀ ଦୀର୍ଘାକାର, ଆଜାନୁଲମ୍ବିତ ବାହୁ, ବ୍ୟୁଢ଼ୋରସ୍କୋ, ଉନ୍ନତ ଶରୀର ତେଜୀୟାନ୍, ମେଧାବୀ, ସୁଚତୁର, କର୍ମଠ ଓ ଧୂର୍ତ୍ତ ଥିଲେ । ଶିବଜୀଙ୍କର ଚରିତ୍ର ଲେଖକମାନେ ବୋଲନ୍ତି ଆଧିପତ୍ୟ ବିସ୍ତାର କରିବାର କ୍ଷମତା ତାହାଙ୍କର ବାଲ୍ୟ କାଳରେ ଲକ୍ଷିତ ହୋଇଥିଲା ।

ଶିବଜୀଙ୍କ ପିତା ସାହଜୀ ବିଜୟପୁର ପତିଙ୍କ ସରକାରରେ ନିଯୁକ୍ତ ହୋଇ ମହୀସୁର ଦେଶରେ ଏକ ବିସ୍ତୃତ ଜାଗୀର ପ୍ରାପ୍ତ ହୋଇଥିଲେ । ମାଲଜୀ ଉପାର୍ଜିତ ଜାଗୀର ମଧ୍ୟ ତାହାଙ୍କର ଅଧିକାରଭୁକ୍ତ ହେଲା । ସାହଜୀ ମହୀସୁର ଜାଗୀର ଯାଇ ସେ ସ୍ଥାନକୁ ଯିବା ସମୟରେ ଜ୍ୟେଷ୍ଠ ପୁତ୍ରକୁ ସଙ୍ଗରେ ଘେନି ଯାଆନ୍ତି ଓ କନିଷ୍ଠ ପୁତ୍ର ଶିବଜୀ ଉପରେ ପୈତୃକ ଜାଗୀର ଭାର ଅର୍ପଣ କରି ପୁନାରେ ରଖି ଯାଆନ୍ତି । ପୁନାସ୍ଥିତ ସାହଜୀଙ୍କର ଅଶ୍ୱ ସେନାମାନେ ଏବଂ ସନ୍ନିହିତ ସହ୍ୟାଦ୍ରିର ଅଧି-ବାସୀମାନେ ଶିବଜୀଙ୍କର ପ୍ରଧାନ ସହଚର ଥିଲେ । ସେ ସମୀପବର୍ତ୍ତୀ ପର୍ବତକୁ ବା-ରମ୍ବାର ମୃଗୟା ଯାତ୍ରା କରିବାରୁ ଯାବତୀୟ ଗିରିବର୍ତ୍ମ ତାହାଙ୍କୁ ବିଶେଷରୂପେ ଜ୍ଞାତ ହୋଇଥିଲା । ଆଧିପତ୍ୟ ବିସ୍ତାର କରିବାର ଓ ବୀରଶ୍ରେଣୀରେ ଗଣ୍ୟ ହେବାର ଇଚ୍ଛା ଶିବଜୀଙ୍କର ବାଲ୍ୟକାଳରେ ଜନ୍ମେ । ସେ ମୁସଲମାନମାନଙ୍କୁ ଅତ୍ୟନ୍ତ ଘୃଣା କରି ସର୍ବଦା କହୁଥିଲେ "ଆମ୍ଭେ ସେମାନଙ୍କୁ ପରାଜୟ କରି ସ୍ୱାଧୀନ ହେବୁଁ" ।

ପ୍ରଥମେ ସେ ବିଜୟପୁରପତିର କେତେଗୋଟି ଗିରିଦୁର୍ଗ ଅଧିକାର କଲେ । ୧୬୪୮ ସାଲରେ କଙ୍କଣର ସମଗ୍ର ଉତ୍ତରଖଣ୍ଡ ମଧ୍ୟ ତାହାଙ୍କର ଅଧିକାରଭୁକ୍ତ ହେଲା । ବିଜୟପୁରପତି ଏହି ସମ୍ବାଦ ପାଇ ଅତ୍ୟନ୍ତ ଚିନ୍ତାନ୍ୱିତ ହେଲେ ଏବଂ ଶିବଜୀଙ୍କୁ ଦମନ କରିବାର ଅନ୍ୟ କୌଣସି ଉପାୟ ନ ପାଇ କୌଶଳପୂର୍ବକ ସାହାଜୀଙ୍କୁ ହସ୍ତଗତ କରି କାରାଗାରରେ ନିକ୍ଷେପ କଲେ ଏବଂ ପ୍ରଚାର କରି ଦେଲେ ଅମୁକ ଦିନ ମଧ୍ୟରେ ଶିବଜୀ ହସ୍ତଗତ ନ ହେଲେ ସାହାଜୀଙ୍କୁ ଜୀଅନ୍ତା କବର ଦିଆଯିବ । ପିତାର ବିପଦ ସମ୍ବାଦ ଶୁଣି ଶିବଜୀ ଅତ୍ୟନ୍ତ ବ୍ୟାକୁଳିତ ହେଲେ । କିନ୍ତୁ ବଶତା ସ୍ୱୀକାର ନ କରି ପ୍ରଚୁର ଅଧିକତର ଭୟ ପ୍ରଦର୍ଶନ କଲେ । ଏହି ଉପାୟଦ୍ୱାରା ସାହାଜୀ ମୁକ୍ତ ହେଲେ ସତ୍ୟ; ମାତ୍ର ସମ୍ପୂର୍ଣ୍ଣରୂପେ ସ୍ୱାଧୀନ ହୋଇ ପାରିଲେ ନାହିଁ । ତାହାଙ୍କୁ ୪ବର୍ଷ ପାଇଁ ବିଜୟପୁର ନଗରରେ ନଜରବନ୍ଦୀରେ ରହିବାକୁ ହେଲା । ୧୬୫୩ ସାଲରେ ସାହାଜୀ ମୁକ୍ତି ଲାଭ କଲେ ଶିବଜୀ ଦଳବଳ ସଜାଡି ପୁନର୍ବାର ଆଧିପତ୍ୟ ବିସ୍ତାର ଚେଷ୍ଟାରେ ରହିଲେ । ଅଳ୍ପକାଳ ମଧ୍ୟରେ ପୁନାନଗରର ଦକ୍ଷିଣବର୍ତ୍ତୀ କେତେଗୋଟି ଦୁର୍ଗ ଆତ୍ମସାତ୍ କରି ନେଲେ । ସେହି ସଙ୍ଗେ ଦିଲ୍ଲୀଶ୍ୱରଙ୍କ ଅଧିକୃତ ଦାକ୍ଷିଣାତ୍ୟର କେତେକ ଅଂଶରେ ମଧ୍ୟ ଲୁଟପାଟ କଲେ । ମାତ୍ର ସେହି ସମୟରେ ଆରଙ୍ଗଜେବ ଗୋଲକୁଣ୍ଡାରେ ଅବସ୍ଥିତ ଥିଲେ; ତାହାଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତ ହେବାକୁ ସାହସ ନ ଥିବାରୁ ଶିବଜୀଙ୍କୁ କ୍ଷମା ପ୍ରାର୍ଥନା କରିବାକୁ ହେଲା । ଆରଙ୍ଗଜେବ ମଧ୍ୟ କ୍ଷମା ଦାନ କଲେ ।

ଯେତେବେଳେ ଯୁବରାଜ ଦିଲ୍ଲୀ ଯାତ୍ରା କରନ୍ତି ସେତେବେଳେ ଶିବଜୀ ବିଜୟପୁରପତି ସହିତ ଯୁଦ୍ଧରେ ଲିପ୍ତ ଥିଲେ । ସେହି ଯୁଦ୍ଧରେ ବିଜୟପୁରପତି ପରାସ୍ତ ହୋଇ ସନ୍ଧି କଲେ । ସେହି ସନ୍ଧିର ନିୟମାନୁସାରେ କଙ୍କଣଦେଶ ତାହାଙ୍କର ସମ୍ପୂର୍ଣ୍ଣରୂପେ ହସ୍ତଗତ ହେଲା ସେତେବେଳେ ଶିବଜୀଙ୍କର ୭୦୦୦ ଅଶ୍ୱାରୋହୀ ଓ ୫୦୦୦୦ ପଦାତି ସେନା ସଂଗୃହୀତ ହୋଇଥିଲେ ।

ଏ ଉତ୍ତାରେ ଅପ୍ରକାଶିତ ଘଟନାସୂତ୍ରେ ସମ୍ରାଟ ସହିତ ଶିବଜୀର ବିଦ୍ରୋହ ଉପସ୍ଥିତ ହେବାରୁ ୧୬୬୨ ସାଲେ ସେ ଦିଲ୍ଲୀଶ୍ୱରଙ୍କ ଅଧିକାର ଲୁଣ୍ଠନ ଆରମ୍ଭ କଲେ । ତହୁଁ ଦିଲ୍ଲୀଶ୍ୱରଙ୍କର ଦାକ୍ଷିଣାତ୍ୟ ଶାସନକର୍ତ୍ତା ସେସ୍ତାଖାଁ ସହିତ ଯୁଦ୍ଧ ଘଟିଲା । ସେହି ସମୟରେ ସେସ୍ତା ଜୟୀ ହୋଇ ପୁନାନଗର ଅଧିକାର କଲେ । ଶିବଜୀ ବାଲ୍ୟକାଳରେ ଯେ ଗୃହରେ ବାସ କରୁଥିଲେ, ସେସ୍ତା ସେହି ଘରରେ ବାସ କରି ରହିଲେ । ମହାରାଷ୍ଟ୍ରପତି ପୁନା ସମୀପବର୍ତ୍ତୀ ସିଂହଗଡ ନାମକ ସ୍ଥାନରେ ଆଶ୍ରୟ ଗ୍ରହଣ କଲେ । ଅନନ୍ତର ଏକଦା ଅନ୍ଧକାରମୟୀ ରଜନୀରେ ଶିବଜୀ ଅପାର ସୈନ୍ୟ ଗୁପ୍ତସ୍ଥାନରେ ରଖି ୧୫ ଜଣ ମାତ୍ର ସହଚର ଘେନି ଏକ ବିବାହ

ଯାତ୍ରିଦଳ ସହିତ ଯାଇ ଅପଣା ଗୃହରେ ଅବତୀର୍ଣ୍ଣ ହେଲେ । ଜେତେବେଳେ ସେସ୍ତା ଅଗତ୍ୟା ଆତ୍ମରକ୍ଷାର ଉପାୟାନ୍ତର ନ ଦେଖି ଝିଉକୀ ବାଟେ ପଳାୟନ କଲେ । ସେହି ସମୟରେ କୌଣସି ବିପକ୍ଷଦଳର ସୈନିକପୁରୁଷର ତରବାର ଅଘାତଦ୍ୱାରା ତାହାଙ୍କର ଦୁଇଗୋଟି ଅଙ୍ଗୁଳୀ ଛିନ୍ନ ହୋଇଯାଏ । ସେହି ଗଡ଼ିରେ ପୁନା ସମ୍ପୂର୍ଣ୍ଣରୂପେ ଶତ୍ରୁ ହସ୍ତରୁ ମୁକ୍ତି ଲଭିଲା ।

ଏତତ୍‌ପରେ ଶିବଜୀ ବହୁଲ ଅଶ୍ୱସେନା ସହିତ ଯାଇ ବହୁ ସମ୍ପତ୍ତିର ଅଗାର ସୁରାଟ ବନ୍ଦର ଲୁଣ୍ଠନ କରି ବିପୁଲସମ୍ପତ୍ତି ଲଭ କଲେ ଏବଂ ତାହାଙ୍କର ରଣତରୀ ସକଳ ସୁରାଟ ଏବଂ ଅନ୍ୟାନ୍ୟ ବନ୍ଦରର ମୋଗଲମାନଙ୍କର ରଣତରୀ ଅଧିକାର କଲେ ।

ମକ୍କାତୀର୍ଥଦର୍ଶନାର୍ଥି ଯାତ୍ରିମାନେ ସୁରାଟ ନଗରରେ ବୋଇତ ଆରୋହଣ କରନ୍ତି, ଏଥିପାଇଁ ମୁସଲମାନମାନଙ୍କ ମତରେ ତାହା ପବିତ୍ରସ୍ଥାନ ଅଟେ । ଶିବଜୀ ସେହି ପବିତ୍ରସ୍ଥାନ ଲୁଣ୍ଠନ କରିବାରୁ ଅରଙ୍ଗଜେବଙ୍କର କ୍ରୋଧର ଅବଧି ରହିଲା ନାହିଁ । ଏହି ସମୟରେ ସାଜୀ ପରଲୋକ ଯାତ୍ରା କରିବାରୁ ଶିବଜୀ ସ୍ୱାଧୀନ ରାଜା ବୋଲି ପ୍ରଚାର କରି ଦେଲେ, ଏବଂ ଅପଣା ନାମରେ ମୁଦ୍ରା ଅଙ୍କିତ କରାଇଲେ । ଏହି ସମ୍ବାଦ ଅରଙ୍ଗଜେବଙ୍କ ଜ୍ୱଳନ୍ତ କ୍ରୋଧାଗ୍ନିରେ ଆହୁତିସ୍ୱରୂପ ହେଲା । ସେ ଅବଲମ୍ବେ ରାଜା ଜୟସିଂହ ଓ ଦଲିରଖାଁ ସହିତ ଅପାର ସୈନ୍ୟ ଦେଇ ଶିବଜୀଙ୍କୁ ଶାସନ କରିବାପାଇଁ ପଠାଇଲେ । ସେନାପତିମାନେ ଉପସ୍ଥିତ ହେଲେ ଶିବଜୀ ଯୁଦ୍ଧ ନ କରି ବଶତା ସ୍ୱୀକାର କଲେ । ଉଭୟ ମଧ୍ୟରେ ମିତ୍ରତା ସଂସ୍ଥାପିତ ହେଲେ ଶିବଜୀ ପ୍ରାଗୁକ୍ତ ସେନାନୀମାନଙ୍କ ସହିତ ଦିଲ୍ଲୀକୁ ଆଗମନ କରନ୍ତି । ସମ୍ରାଟ୍ ସେହି ସମୟରେ ଶିବଜୀଙ୍କୁ ସମାଦର ଓ ସମ୍ମାନ କରିଥିଲେ ଅନାୟାସରେ ଜଣେ ପ୍ରବଳଶତ୍ରୁ ବଶୀଭୂତ ହୋଇଥାନ୍ତା; କିନ୍ତୁ ସେ ତାହା ନ କରି ଅନାଦର ପ୍ରଦର୍ଶନଦ୍ୱାରା ଶିବଜୀଙ୍କ ଗର୍ବ ଚୂର୍ଣ୍ଣ କରିବାର ଚେଷ୍ଟାରେ ରହିଲେ ।

ଏତତ୍ପରେ ଶିବଜୀ ସମ୍ରାଟଙ୍କ ସିଂହାସନ ସମ୍ମୁଖରେ ଉପସ୍ଥିତ ହୋଇ ଅଭିବାଦନ ଓ ଉପଢୌକନ ପ୍ରଦାନ କଲେ; ମାତ୍ର ସମ୍ରାଟ୍ ସେଥିରେ ଦୃଷ୍ଟିପାତ ସୁଦ୍ଧା କଲେ ନାହିଁ ଏବଂ ତାହାଙ୍କୁ ସାମାନ୍ୟ କର୍ମଚାରୀମାନଙ୍କ ସହିତ ବସିବାକୁ ହେଲା । ତେଜସ୍ୱୀନ ମହାରାଷ୍ଟ୍ରପତି ଏହି ସକଳ ଦେଖି ଅତ୍ୟନ୍ତ କ୍ଷୋଭ ଓ ମୂର୍ଚ୍ଛାପ୍ରାପ୍ତ ହେଲେ । ପରେ ପ୍ରକୃତିସ୍ଥ ହୋଇ ସମ୍ରାଟଙ୍କ ସଦସ୍ୟମାନଙ୍କୁ ସମ୍ବୋଧନ କରି କହିଲେ "ତୁମ୍ଭେମାନେ ମୋହର ମାନ ଛେଦନ କଲ, ଶିରଚ୍ଛେଦ ମଧ୍ୟ କର" ।

ସମ୍ରାଟଙ୍କ ଅନୁମତି ବା କୌଶଳ ଗ୍ରହଣ ବିନା ଶିବଜୀ ତତ୍କ୍ଷଣାତ୍ ସଭାରୁ ବାହାରିଲେ । ଶିବଜୀ ଯେ ଏପରି ତେଜୋବତ୍ତା ପ୍ରକାଶ କରିବେ ସମ୍ରାଟ୍ ଏମନ୍ତ

ପ୍ରତ୍ୟାଗ କରି ନ ଥିଲେ ସୁତରାଂ କିଂକର୍ତ୍ତବ୍ୟବିମୂଢ ହୋଇ କିଛିକ୍ଷଣ ତାହାଙ୍କ ସ୍ୱଭବରେ ରହିବାକୁ ହେଲା । ଶିବଜୀ କିପରି ଦିଲ୍ଲୀରୁ ମୁକ୍ତି ଲାଭ ଉପାୟ ଅନ୍ୱେଷଣ କରି ବସିଲେ । ପରଦିନ ସମ୍ରାଟଙ୍କ ନିକଟକୁ କହି ପଠାଇଲେ "ଦିଲ୍ଲୀ ଜଳବାୟୁ ଦୋଷରୁ ଆମ୍ଭର ସେନାମାନେ ପୀଡ଼ିତ ହେଉଅଛନ୍ତି ପ୍ରାର୍ଥନା କରେଁ ଆପଣ ସେମାନଙ୍କୁ ସ୍ୱଦେଶକୁ ଯିବାର ଆଜ୍ଞା ପ୍ରଦାନ କରନ୍ତୁ" । ସମ୍ରାଟ୍ ବୁଝିଲେ ସୈନ୍ୟମାନେ ଚାଲିଗଲେ ନିଃସହାୟ ଶିବଜୀଙ୍କୁ ଆୟତ୍ତ କରିବା ବଡ଼ କଠିନ ହେବ ନାହିଁ; ତେଣୁ ଅବିଳମ୍ବରେ ଯେ ଶିବଜୀଙ୍କ ପ୍ରାର୍ଥନା ସଫଳ ହୋଇଥିଲା ଏକଥା ବୋଲିବା ବାହୁଲ୍ୟ ମାତ୍ର ।

ପୁଣି ଶଠଚୂଡ଼ାମଣି ମହାରାଷ୍ଟ୍ରପତି ପୀଡ଼ା ବାହାନା କରି ଶଯ୍ୟାଶାୟୀ ହେ-ଲେ । ପୀଡ଼ାଶାନ୍ତି ଉଦ୍ଦେଶ୍ୟରେ ଦୈବୀ କର୍ମର ଅନୁଷ୍ଠାନ ହେଲା । ପ୍ରତିଦିନ ବୃହତ୍ ପାଛିଆ ପୂର୍ଣ୍ଣ ମିଷ୍ଟାନ୍ନ ବିତରିତ ହୁଏ । ସେହି ମିଷ୍ଟାନ୍ନ ପୂର୍ଣ୍ଣ ବୃହତ୍ ପାଛିଆ ସବୁ ଦୁଇ ଲୋକ ସାଙ୍ଗି କରି ହିନ୍ଦୁ ସନ୍ନ୍ୟାସୀ ଓ ମୁସଲମାନ ଫକୀରମା-ନଙ୍କ ନିକଟକୁ ନେଇ ଯାନ୍ତି । ଏହିରୂପେ ସହସ୍ର ସାଙ୍ଗି ତାହାଙ୍କ ବସାରୁ ପ୍ରତିଦିନ ବାହାରେ । ସାଙ୍ଗି ଦେଖିଲେ ଲୋକମାନେ ମିଷ୍ଟାନ୍ନ ଭରା ବୋଲି ମନରେ କରନ୍ତି; ଏହି ରୂପେ ସମ୍ରାଟଙ୍କ ପ୍ରହରୀ ଏବଂ ଚରମାନଙ୍କର ସଂସ୍କାର ବଦ୍ଧମୂଳ ହୋଇ ଗଲେ ଏକଦିନ ଶିବଜୀ ଆପେ ଏକ ବଡ଼ ପାଛିଆରେ ବସିଲେ ଏଂ ପୁତ୍ରକୁ ଅନ ଏକ ପାଛିଆରେ ଚଢ଼ାଇ ଘରୁ ବାହାରିଲେ । ଅଦୂରେ ଏକ ଘୋଟକ ପ୍ରସ୍ତୁତ ଥିଲା ସେ ସାଙ୍ଗିରୁ ଓହ୍ଲାଇ ଘୋଟକରେ ଆରୋହଣ କଲେ ଏବଂ ପୁତ୍ରକୁ ଆପଣା ନିକଟରେ ବସାଇ ମଥୁରାନଗରକୁ ପଳାଇଲେ । ସେସ୍ଥାନରେ ଆପଣା ପୁତ୍ରକୁ ରଖି ସନ୍ନ୍ୟାସୀ ବେଶ ଧାରଣ ପୂର୍ବକ, ଭ୍ରମଣ କରୁ' ମା ୬ ସ ଉତ୍ତାରେ ଦକ୍ଷିଣାତ୍ୟରେ ଉପସ୍ଥିତ ହେଲେ । ୧୬୬୭ ।

ଯେତେବେଳେ ଶିବଜୀ ଦାକ୍ଷିଣାତ୍ୟରେ ଉପସ୍ଥିତ ହୁଅନ୍ତି, ତେତେବେଳେ ସମ୍ରାଟଙ୍କ ସେନାମାନେ ବିଜୟପୁର ପତିଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତ ଥିଲେ, କାଳେ ଶିବଜୀ ବିପକ୍ଷ ପକ୍ଷର ସାହାଯ୍ୟ କରନ୍ତି, ଏହି ଆଶଙ୍କା କରି ସମ୍ରାଟ ତାହାଙ୍କୁ ଆତ୍ମ ପକ୍ଷ କରିବା ପାଇଁ ଏକ ନୂତନ ଜାଗିର ପ୍ରଦାନ କଲେ, ଏବଂ ଶିବଜୀଙ୍କ ଉପାଧି ମଧ୍ୟ ବୃଦ୍ଧିଭୁକ୍ତ ହେଲା ।

ଶିବଜୀ ଆରଙ୍ଗଜେବଙ୍କ ହସ୍ତରୁ ମୁକ୍ତି ଲାଭ କରି ଗୋଲକୁଣ୍ଡା ଓ ବିଜୟ-ପୁର ରାଜାମାନଙ୍କ ବିରୁଦ୍ଧରେ ଯୁଦ୍ଧଯାତ୍ରା କଲେ ଏବ ସେମାନଙ୍କୁ ଯୁଦ୍ଧରେ ଏମନ୍ତ ଅସ୍ଥିର କଲେ ଯେ ବରଷକୁ ବରଷ ନିୟମିତ କର ଦେବା ପଣରେ ଶିବଜୀ ସହିତ ସେମାନଙ୍କୁ ଅଗତ୍ୟା ସନ୍ଧି କରିବାକୁ ହେଲା ।

ଏ ଉତାରେ କିଛିଦିନ ପାଇଁ ଦାକ୍ଷିଣାତ୍ୟରେ ଶାନ୍ତି ବିରାଜମାନ ହେଲା । ସେହି ସମୟରେ ଶିବଜୀ ରାଜ୍ୟ ସୁଶାସନ ପାଇଁ ବ୍ୟବସ୍ଥା ପ୍ରଣୟନରେ ବ୍ୟାପୃତ ହୁଅନ୍ତି । ଶିବଜୀ ଲୁଣ୍ଠନ ଏବଂ ସମରରେ ଯେ କେବଳ ନିପୁଣ ଥିଲେ ଏମନ୍ତ ନୁହଇ ସେ ବ୍ୟବସ୍ଥା ପ୍ରଣୟନରେ ମଧ୍ୟ ଅଧିକ ନିପୁଣତା ପ୍ରକାଶ କରି ଯାଇଅଛନ୍ତି ।

ମହାରାଷ୍ଟ୍ରୀୟମାନଙ୍କ ମଧ୍ୟରେ କେବଳ ବ୍ରାହ୍ମଣଜାତି ବିଦ୍ୟାଶିକ୍ଷା କରନ୍ତି । ସେ ସେମାନଙ୍କୁ ବିବିଧ ରାଜକାର୍ଯ୍ୟରେ ନିଯୁକ୍ତ କରିବାର ଆରମ୍ଭ କଲେ ଏବଂ କୃଷକମାନଙ୍କ ଉପରେ ଦୌରାତ୍ମ୍ୟ ଏବଂ ସରକାରପ୍ରତି ପ୍ରତାରଣା ନିବାରଣ ପାଇଁ କେତେକ ଦଣ୍ଡ ଆଇନ ପ୍ରଚଳିତ ହେଲା । ସୈନ୍ୟସଂଗ୍ରହ ଓ ସେମାନଙ୍କୁ ବେତନ ଦେବାର ଭାର ରାଜାଙ୍କ ହସ୍ତରେ ରହିଲା । ନୂତନ ନିୟମ ଅନୁସାରେ ସେନାମାନେ ଅଧିକ ପରିମାଣେ ବେତନ ପାଇଲେ ଏବଂ ସୈନିକ କର୍ମଚାରୀମାନଙ୍କ ମଧ୍ୟରେ ଦଶ ସେନାପତି ବିଂଶତି, ସେନାପତି, ଏବଂ ଶତ ସେନାପତି ପ୍ରଭୃତି ପ୍ରଧାନ୨ ସୈନିକ କର୍ମଚାରୀମାନେ ନିଯୁକ୍ତ ହେଲେ । ସେମାନେ ମୁସଲମାନ ପ୍ରଧାନ ସୈନିକ କର୍ମଚାରିମାନଙ୍କ ପରି ଜାୟଗିର ନ ପାଇ ସାମାନ୍ୟ ସୈନିକମାନଙ୍କ ପରି ରାଜକୋଷରୁ ବେତନ ପାଇବାର ନିୟମ ହେଲା ।

ଦିଲ୍ଲୀରୁ ଶିବଜୀ ପଳାୟନ ଉତାରେ ଆଉରଙ୍ଗଜେବ ଯେ ଉଦ୍ଦେଶ୍ୟରେ ତାହାଙ୍କ ସହିତ ମୌଖିକ ପ୍ରଣୟ ପ୍ରକାଶ କରି ଥିଲେ; ତାହା ପୂର୍ବେ ଥରେ ଉଲ୍ଲେଖ ହୋଇ ଅଛି । ଆଉ ଏକ ଉଦ୍ଦେଶ୍ୟ ଏହି ଯେ, ଆଉ ଥରେ ତାହାଙ୍କୁ ହସ୍ତଗତ କରିବେ । କିନ୍ତୁ ଶିବଜୀ ୨ୟ ଥର ଭୁଲିବାର ପାତ୍ର ଥିଲେ ନାହିଁ । ତେଣୁ ସମ୍ରାଟଙ୍କୁ ଛଦ୍ମବେଶ ପରିତ୍ୟାଗ ପୂର୍ବକ ପ୍ରକାଶ୍ୟ ସମରରେ ପ୍ରବୃତ୍ତ ହେବାକୁ ହେଲା; କିନ୍ତୁ ଅବିଳମ୍ବରେ ମହାରାଷ୍ଟ୍ରପତିଙ୍କର କ୍ଷମତା ତାହାଙ୍କଠାରେ ଅବଦ୍ଧ ରହିଲା ନାହିଁ । ଶିବଜୀ ମୋଗଲ ପତିଙ୍କ କେତେକ ଦୁର୍ଗ ହସ୍ତଗତ କରି, ଆଉ ଥରେ ସୁରଟ ନଗର ଲୁଣ୍ଠନ ଓ ଖାନ୍ଦେଶ ନଗରରେ ମହା ଉତ୍ପାତ କଲେ । ଏହି ସମୟରେ ଅର୍ଥାତ୍ ୧୬୭୦ ସାଲରେ ସୁପ୍ରସିଦ୍ଧ ଚୌଥର ନାମ ଶୁଣାଗଲା । ଚୌଥ ଅର୍ଥାତ୍ ଯେ ଦେଶରେ ଯେତେ ରାଜସ୍ୱ ଆଦାୟ ହୁଏ, ତାହାର ଏକ ଚତୁର୍ଥ ଭାଗ ପାଇଲେ ଯୁଦ୍ଧରୁ କ୍ଷାନ୍ତ ହେବେ; ମହାରାଷ୍ଟ୍ରୀୟମାନେ ଏପରି ନିୟମ କଲେ ।

୧୬୭୨ ସାଲରେ ଶିବଜୀଙ୍କ ଦମନ ପାଇଁ ସମ୍ରାଟ ଦାକ୍ଷିଣାତ୍ୟକୁ ଅଧିକତର ସୈନ୍ୟ ପ୍ରେରଣ କଲେ । ଏଣେ ଶିବଜୀ ମଧ୍ୟ ତୁନି ହୋଇ ରହିଲେ ନାହିଁ ଉଭୟ ପକ୍ଷର ଅପାର ଯୁଦ୍ଧ ହେଲା । ଯୁଦ୍ଧରେ ମୋଗଲ ସେନାମାନେ ପରାସ୍ତ ହେଲେ । ମହାରାଷ୍ଟ୍ରୀୟ ଓ ମୋଗଲମାନଙ୍କ ମଧ୍ୟରେ ଏହା ପ୍ରଥମ ସମ୍ମୁଖ ଯୁଦ୍ଧ ଅଟେ । ପ-

ସ୍ଥିତ ହୋଇ ମୋଗଲମାନେ ଯେପରି ହତାଶ୍ୱାସ ଓ ହୀନବଳ ହୋଇ ପଡ଼ିଲେ, ସେତିମାନଙ୍କର ସେହିରୂପ ଉତ୍ସାହର ପ୍ରାଦୁର୍ଭାବ ଦ୍ୱିଗୁଣରୂପେ ବୃଦ୍ଧି ହୋଇ ଉଠିଲା । ପରବର୍ତ୍ତୀ କେତେକ ବରଷ ଅନ୍ୟତ୍ର ଯୁଦ୍ଧ ଉପସ୍ଥିତ ହେବାରୁ ସମ୍ରାଟ୍ ଦାକ୍ଷିଣାତ୍ୟକୁ ଅଧିକ ପରିମାଣରେ ସେନା ପ୍ରେରଣ କରିବାକୁ ପାରିଲେ ନାହିଁ କି-ନ୍ତୁ ଯୁଦ୍ଧ କାର୍ଯ୍ୟ ଏକାବେଳକେ ନିବୃତ୍ତ ଥିଲା ନାହିଁ । କେତେ ଥର ସାନ ସାନ ଯୁଦ୍ଧ ଘଟି ଥିଲା ।

ସମ୍ରାଟଙ୍କ ଅନ୍ୟାନ୍ୟ ଯେ ସକଳ ବିଗ୍ରହ ଉପସ୍ଥିତ ଥିଲା, ତନ୍ମଧ୍ୟରୁ ଅଫଗାନି ସ୍ଥାନ ଉତ୍ତରପୂର୍ବକୋଣ ନିବାସିମାନଙ୍କ ସହିତ ଯୁଦ୍ଧ ସର୍ବ ପ୍ରଧାନ ଅଟେ । ଯାହା ହେଉ ତାହା ଏପ୍ରକାର ନିଷ୍ପତ୍ତି ହୋଇ ଗଲେ ଦିଲ୍ଲୀ ନିକଟରେ ଏକ ବିଦ୍ରୋହ ଉପସ୍ଥିତ ହେଲା । ସେଠାରେ ସତ୍ନାମୀ ନାମକ ଏକଦଳ ହିନ୍ଦୁଲୋକ ଥିଲେ । ସେମାନେ ଏକ ମାତ୍ର ପରମେଶ୍ୱରଙ୍କ ଉପାସନା କରନ୍ତି । ସତ୍ୟବ୍ରତ, ମିତାଚାର, ଇନ୍ଦ୍ରିୟସଂଯମ ସେ-ମାନଙ୍କର ପ୍ରଧାନ ଅନୁଷ୍ଠାନ । ମାଦକଦ୍ରବ୍ୟ ଏମାନଙ୍କ ପକ୍ଷରେ ଅତ୍ୟନ୍ତ ଘୃଣ୍ୟ ଅଟେ ।

ଏକଦା ଜଣେ ସତ୍ନାମୀ କୃଷକ ଦିଲ୍ଲୀ ଅଦୂରରେ ହଳ କରୁଥିଲା । ଏମନ୍ତ ସମ-ୟରେ ଅକସ୍ମାତ୍ ଜଣେ ସିଆହୀ ସହିତ ତାହାର ବିରୋଧ ଉପସ୍ଥିତ ହେଲା । କ୍ରମେ ଉଭୟ ପକ୍ଷର ମିତ୍ରଗଣ ଆସି ମିଳିଲେ; ଏହି ଦଙ୍ଗାରେ ରାଜ କର୍ମଚାରୀମାନଙ୍କର ବିଶେଷ ଅନିଷ୍ଟ ଘଟିଲା । ପରେ ସନ୍ନିହିତ ପ୍ରଦେଶର ପ୍ରଜାମାନେ ଆସି ସତ୍ନାମୀ-ଙ୍କ ପକ୍ଷ ଅବଲମ୍ବନ କଲେ, ଏଣେ ରାଜ କର୍ମଚାରୀମାନଙ୍କ ସାହାଯ୍ୟ ନିମନ୍ତେ ମଧ୍ୟ ଥୋକାଏ ସେନା ଆସିଲେ ମାତ୍ର ସୈନ୍ୟସଂଖ୍ୟା ଅଳ୍ପତା ନିବନ୍ଧନ ସହଜରେ ପରାସ୍ତ ମାନ ପଳାୟନ କଲେ । ଅନନ୍ତର ଅନ୍ୟ ଏକଦଳ ସୈନ୍ୟ ଆସିଲେ, ସେମାନେ ମଧ୍ୟ ପରାସ୍ତ ହୋଇ ପିଠ ଦେଖାଇଲେ । ଏଥିରୁ ଲୋକମାନଙ୍କ ମନରେ ମହା ବିସ୍ମୟ ଉପସ୍ଥିତ ହେଲା । କେହି ମନରେ କଲେ ସତ୍ନାମିମାନେ ଯାଦୁବିଦ୍ୟା ପ୍ରଭାବରୁ ଅଭେଦ୍ୟ କଳେବର ହୋଇ ଅଛନ୍ତି, ଏଣୁ କୌଣସି ଅସ୍ତ୍ର ସେମାନଙ୍କର କିଛିହିଁ କରି ପାରୁ ନାହିଁ । ଏଥିପାଇଁ କୌଣସି ରାଜସେନା ସେମାନଙ୍କର ସମ୍ମୁଖୀନ ହେବାକୁ ସାହସ କରି ପାରିଲେ ନାହିଁ । ଆରଙ୍ଗଜେବ ଏହି ସମ୍ବାଦ ପାଇ ଅତ୍ୟନ୍ତ ବିରକ୍ତ ହେଲେ ଓ ସତ୍ନାମିମାନଙ୍କ ଦମନ ପାଇଁ ଅପାର ସୈନ୍ୟ ପଠାଇ ଦେଲେ । ଶେଷ ଥର ସତ୍ନାମିମାନେ ନିତାନ୍ତ ପରାସ୍ତ ଓ ଛିନ୍ନଭିନ୍ନ ହୋଇ ପଳା-ୟନ ପର ହେଲେ ।

ପୂର୍ବେ ମୋଗଲ ବଂଶୀୟ ଯେ ସକଳ ସମ୍ରାଟ ଦିଲ୍ଲୀ ସିଂହାସନରେ ସମାସୀନ ଥିଲେ ସେମାନଙ୍କ ମଧ୍ୟରୁ କେହି ଭିନ୍ନ ଧର୍ମାବଲମ୍ବୀ ବୋଲି ହିନ୍ଦୁଜାତି ଉପରେ

କୌଣସି ପ୍ରକାର ଅତ୍ୟାଚାର କରି ନାହାନ୍ତି । ପ୍ରତ୍ୟୁତ ସେମାନଙ୍କ ମଧ୍ୟରୁ କେହି କେହି ହିନ୍ଦୁ ରାଜାମାନଙ୍କ ସହିତ ବୈବାହିକ ସୂତ୍ରରେ ସମ୍ବଦ୍ଧ ହେବା ପାଇଁ ଏକାନ୍ତ ଉତ୍ସୁକ ଥିଲେ । ଏବଂ ହିନ୍ଦୁମତାବଲମ୍ବୀମାନେ ସେମାନଙ୍କ ଅଧୀନରେ ଅତି ଉଚ୍ଚ କର୍ମ ପ୍ରାପ୍ତ ହେଉ ଥିଲେ । ପୂର୍ବେ ଉଲ୍ଲେଖ ହୋଇ ଅଛି ମହାତ୍ମା ଅକବର ହିନ୍ଦୁ ଓ ମୁସଲମାନମାନଙ୍କୁ ଏକମେଳ କରି ରାଜତ୍ୱ କରିବା ପାଇଁ ଅନେକ ଯତ୍ନ କରି ଥିଲେ । ଜାହାଙ୍ଗୀର ଓ ସାହାଜାହାନ ସେତେ ଚେଷ୍ଟାକରି ନ ଥିଲେ ସତ୍ୟ ଅଟେ; ତଥାପି ହିନ୍ଦୁ ବୋଲି କାହାରି ଉପରେ ଅତ୍ୟାଚାର କରି ନାହାନ୍ତି । କିନ୍ତୁ ଅରଙ୍ଗଜେବ ସେହି ସୁପନ୍ଥା ଏକାବେଳକେ ପରିତ୍ୟାଗ କରି ଥିଲେ । ସେ ସିଂହାସନ ଆରୋହଣର କିଛି କାଳ ଉତ୍ତାରେ ବର୍ଷ ଗଣନାର ସୌର ପ୍ରଥା ତ୍ୟାଗ କରି ଚାନ୍ଦ୍ର ପ୍ରଥା ଅବଲମ୍ବନ କଲେ । ଚାନ୍ଦ୍ର ପ୍ରଥାଠାରୁ ସୌର ପ୍ରଥା ଅତି ସହଜ କିନ୍ତୁ ତାହା କୋରାନ ବହିର୍ଭୂତ ଓ ହିନ୍ଦୁ ଉଦ୍ଭାବିତ । ଏହା ଭିନ୍ନ ସେ ଆହୁରି ଅନେକ ନିୟମ ପ୍ରଚାର କଲେ ତହିଁରୁ ହିନ୍ଦୁମାନଙ୍କ ପ୍ରତି ପ୍ରଗାଢ ବିଦ୍ୱେଷର ଯଥେଷ୍ଟ ପ୍ରମାଣ ମିଳେ । ଏହା ଭିନ୍ନ ପୂର୍ବେ ଜିଜିୟା ନାମକ କର ଯାହାକି କେବଳ ହିନ୍ଦୁ ପ୍ରଜାମାନଙ୍କୁ ଦେବାକୁ ପଡୁଥିଲା ଅକବର ତାହା ରହିତ କରିଥିଲେ । ଅରଙ୍ଗଜେବ ତାହା ପୁନର୍ବାର ପ୍ରଚଳନ କରିବାରୁ ଦିଲ୍ଲୀବାସୀ ହିନ୍ଦୁମାନେ ଅତ୍ୟନ୍ତ ବିରକ୍ତ ହେଲେ । ଏପର୍ଯ୍ୟନ୍ତ ରାଜପୁତମାନେ ଦିଲ୍ଲୀ ସମ୍ରାଟଙ୍କ ପ୍ରଧାନ ଅବଲମ୍ବନ ଥିଲେ; ସେମାନଙ୍କ ବାହୁବଳରେ ସେ ଅନେକ ସଂଗ୍ରାମରେ ଜୟ ଲଭିଥିଲେ; କିନ୍ତୁ ଜିଜିୟା-କର ସ୍ଥାପିତ ହେବାରୁ ସେମାନେ ନିତାନ୍ତ ବିରକ୍ତ ହୋଇ ବସିଲେ ଏବଂ ଦାକ୍ଷିଣାତ୍ୟବାସୀ ହିନ୍ଦୁମାନେ ମଧ୍ୟ ମନେ ମନେ ଶିବଜୀଙ୍କ ପକ୍ଷ ଅବଲମ୍ବନ କଲେ ୧୬୭୭ । ରାଜା ଧର୍ମବିଷୟରେ ହସ୍ତକ୍ଷେପ କଲେ ରାଜ୍ୟରେ ମଙ୍ଗଳ ଘଟେ ନାହିଁ । ଅଦୂରଦର୍ଶୀ ଅରଙ୍ଗଜେବ ତାହା କରି ଭାରତବର୍ଷରେ ମୋଗଲ ପ୍ରଭୁତା ବିନାଶୋନ୍ମୁଖ କରି ଯାଇଅଛନ୍ତି ।

ଜିଜିୟା ପୁନଃ ସ୍ଥାପନର ଅଳ୍ପକାଳ ଉତ୍ତାରେ କାବୁଲରେ ରାଜା ଯଶୋବନ୍ତ ସିଂହ ପ୍ରାଣ ତ୍ୟାଗ କରନ୍ତି । ତହିଁ ତାହାଙ୍କର ଦୁଇପୁତ୍ର ସହିତ ବିଧବା ଭାର୍ଯ୍ୟା ସମ୍ରାଟଙ୍କର ଅନୁମତିବିନା ଦୁର୍ଗାଦାସ ନାମକ ଜଣେ ସମ୍ଭ୍ରାନ୍ତ ରାଜପୁତ ସହିତ ସ୍ୱଦେଶକୁ ପ୍ରତ୍ୟାଗମନ କଲେ । ଅଟକନଗରଠାରେ ସମ୍ରାଟ୍ ଲୋକମାନେ ତାହାଙ୍କର ଗତି ରୁଦ୍ଧ କରନ୍ତି; କିନ୍ତୁ ବିଧବା ତାହା ନ ମାନି ସିନ୍ଧୁନଦୀ ପାରି ହୋଇ ଆସିଲେ । ସାମ୍ରାଟ୍ ସେନାମାନେ ପୁନର୍ବାର ତାହାଙ୍କ ଶିବିର ବେଷ୍ଟନ କଲେ; କିନ୍ତୁ ସମ୍ରାଟଙ୍କ ନିର୍ଦ୍ଦେଶାନୁସାରେ ଦୁର୍ଗାଦାସ ସମଭିବ୍ୟାହାରିଣୀ ଅନ୍ୟାନ୍ୟ ରମଣୀମାନଙ୍କୁ ସ୍ୱଦେଶକୁ ପ୍ରେରଣ କରିବାପାଇଁ ଅନୁମତ ହେଲେ । ତହିଁ ଦୁର୍ଗାଦାସ ଏକ

ପରଚାରିକାକୁ ରାଣୀ ସହିତ ଶିବିରରେ ରଖି ପ୍ରକୃତ ରାଣୀ ଓ ତତ୍ପୁତ୍ରମାନଙ୍କୁ ସ୍ୱଦେଶକୁ ପଠାଇଦେଲେ । ଏଥିରୁ ସମ୍ରାଟଙ୍କ ମନରେ ସନ୍ଦେହ ଜାତ ହେବାରୁ ରାଣୀକୁ ଦୁର୍ଗମଧ୍ୟକୁ ଘେନିଯିବାପାଇଁ ଡଗର ପେଷିଲେ । ମାତ୍ର ରାଣୀର ସୈନ୍ୟ-ମାନେ ସମ୍ରାଟଙ୍କ ଆଦେଶ ପାଳନ କରିବାକୁ ଅସ୍ୱୀକୃତ ହେବାରୁ ଉଭୟ ପକ୍ଷର ଘୋର ସଂଗ୍ରାମ ଘଟିଲା । ପରିଶେଷେ ରାଜପୁତ ସେନାମାନେ ପରାସ୍ତ ଓ ହତ ହେଲେ ଏବଂ ରାଣୀ ବନ୍ଦୀକୃତ ହେଲେ କିନ୍ତୁ ପ୍ରକୃତ ରାଣୀ ତେତେବେଳେ ଯୋଧପୁରରେ ଉପସ୍ଥିତ ହୋଇଥିଲେ ।

ଯଶୋବନ୍ତସିଂହ ପତ୍ନୀପ୍ରତି ଅତ୍ୟାଚାର ଓ ଜିଜିୟା ପ୍ରଚଳନଦ୍ୱାରା ରାଜପୁ-ତମାନେ ଅତ୍ୟନ୍ତ ବିରକ୍ତ ହେଲେ ଏବ ଉଦୟପୁରପତିକୁ ଆପଣାମାନଙ୍କର ସେନାନୀ କରି ଯୁଦ୍ଧରେ ପ୍ରବୃତ୍ତ ହେଲେ କିନ୍ତୁ ଶୀଘ୍ର ସମ୍ରାଟ୍ ସେନାମାନଙ୍କଦ୍ୱାରା ଛିନ୍ନ ଭିନ୍ନ ହୋଇଗଲେ ।

ଏହିସକଳ ଉତ୍ପାତରେ ରାଜପୁତ ଓ ମୁସଲମାନ ଉଭୟ ଜାତିର ଅପ-ର୍ଯ୍ୟାପ୍ତ କ୍ଷତି ହେଲା । ଏଥିରୁ ସମ୍ରାଟ୍ ଜିଜିୟାର କୌଣସି ପ୍ରସଙ୍ଗ ନ କରି ଉଦୟ-ପୁର ପତିର ଅନୁକୂଳପଣେ ସନ୍ଧିପତ୍ରରେ ସ୍ୱାକ୍ଷର କଲେ ।

ଯେତେବେଳେ ଅରଙ୍ଗଜେବ ଆର୍ଯ୍ୟାବର୍ତ୍ତର ଗୋଳମାଳରେ ବ୍ୟାପୃତ ଥିଲେ, ତେତେବେଳେ ଦାକ୍ଷିଣାତ୍ୟ ସ୍ନିଗ୍ଧ ଭାବରେ ଥିଲା ନାହିଁ । ବିଜୟପୁରପତି ପରଲୋକ ଯାତ୍ରା କରିବାରୁ ମହା ଗୋଳଯୋଗ ଉପସ୍ଥିତ ହୋଇ ଥିଲା । ଶିବଜୀ ଏହି ସୁଯୋଗରେ ସମସ୍ତ କଙ୍କଣଦେଶ ଓ ସହ୍ୟାଦ୍ରିର ପଶ୍ଚିମସ୍ଥ ଅନେକ ଭୂଭାଗ ଆତ୍ମସାତ୍ କରନେଲେ ଅନନ୍ତର ୧୬୭୫ ସାଲରେ ଶିବଜୀ ସେନାମାନେ ନର୍ମଦା ନଦୀ ପାର ହୋଇ ମୋଗଲ ଅଧିକାର ଗୁଜରାଟର କେତେକ ଅଂଶରେ ଲୁଟପାଟ କଲେ । ଶିବଜୀ ସ୍ୱୟଂ ମହୀସୁରକୁ ଯାଇ ଆପଣାର ପୈତୃକ ଜାଗିର ଆକ୍ରମଣ କଲେ । ତେତେବେଳେ ମହୀସୁର ତାହାଙ୍କର କନିଷ୍ଠଭ୍ରାତା ବଙ୍କୁଜିଙ୍କ ଅଧୀନରେ ଥିଲା । ବଙ୍କୁଜୀ ସମସ୍ତ ରାଜସ୍ୱର ଅର୍ଦ୍ଧଭାଗ ଦେବାପାଇଁ ସ୍ୱୀକୃତ ହେବାରୁ ଶିବଜୀ ତାହାଙ୍କ ସହିତ ସନ୍ଧିସ୍ଥାପନ କଲେ । ଅନନ୍ତର ଶିବଜୀ ଅଠରମାସ ସେସ୍ଥାନରେ ବାସକରି ରାୟଗଡକୁ ଫେରି ଆସିଲେ । ୧୬୭୮ । ରାୟଗଡ ପୁନାର ସନ୍ନିହିତ; ଶିବଜୀ ସଚରାଚର ସେ ସ୍ଥାନରେ ବାସ କରନ୍ତି ।

ପର ବରଷ ମୋଗଲ ସମ୍ରାଟଙ୍କ ସର୍ବଠାରୁ ଦକ୍ଷ ସେନାନୀ ଦିଲୀର ବିଜୟ-ପୁର ପତିଙ୍କୁ ଆକ୍ରମଣ କରନ୍ତି । ବିଜୟପୁର ପତି ଶିବଜୀଙ୍କ ସାହାଯ୍ୟ ପ୍ରାର୍ଥନା କରିବାରୁ ସେ ଯାଇ ଦିଲୀରକୁ ଭଡ ଦଅନ୍ତି ।

ପର ବରଷ ଅର୍ଥାତ୍ ୧୬୮୦ସାଲରେ ଶିବଜୀ ତେପନ ବରଷ ବୟସରେ ପ୍ରାଣତ୍ୟାଗ କଲେ ।

ଶିବଜୀ ପରଲୋକ ଗମନ ସମୟରେ ତାହାଙ୍କର ଜ୍ୟେଷ୍ଠପୁତ୍ର ଶମ୍ଭୁଜୀ ଅପଣାର ଦୁଷ୍ଟଭକ୍ତା ଦୋଷରେ ପିତାଙ୍କ ଆଦେଶ ଅନୁସାରେ କାରାରୁଦ୍ଧ ଥିଲେ । ପୁଣି ଶମ୍ଭୁ ସ୍ୱଭାବ ଅତି ପ୍ରଚଣ୍ଡ ଥିଲା, ଏଥିକୁ ତାହାଙ୍କୁ ସିଂହାସନରେ ବସାଇବା ପାଇଁ କାହାର ଇଚ୍ଛା ଥିଲା ନାହିଁ ଏବଂ ଏହାମଧ୍ୟ ଜନରବ ଉଠିଥିଲା ଯେ, ଶିବଜୀ ମରଣ ସମୟରେ ତାହାଙ୍କର ୨ୟ ପୁତ୍ର ରାଜାରାମ ସିଂହାସନର ଉତ୍ତରାଧିକାରୀ ହେବେ ବୋଲି ନିର୍ଦ୍ଦେଶ କରିଯାଇ ଥିଲେ; କିନ୍ତୁ ସେତେବେଳେ ରାଜାରାମଙ୍କର ବୟସ ୧୦ ବରଷ ମାତ୍ର ।

ଶମ୍ଭୁଜୀ ସେନାମାନଙ୍କ ସାହାଯ୍ୟରେ ଗୃହଛିଦ୍ର ଉଡାଇ ରାୟଗଡ଼ରେ ଉପସ୍ଥିତ ହେଲେ ଏବଂ ଉପସ୍ଥିତ ହେବାମାତ୍ର ରାଜାରାମଙ୍କ ଜନନୀ ଏବଂ ବ୍ରାହ୍ମଣ ଜାତିଙ୍କୁ ଶୁଦ୍ଧ, ଆଉ ପିତୃ ମନ୍ତ୍ରୀମାନଙ୍କୁ ନିଦାରୁଣ ଯନ୍ତ୍ରଣା ଦେଇ ସଂହାର କଲେ । ଏବଂ ରାଜାରାମ ଓ ବ୍ରାହ୍ମଣ ସଚିବମାନଙ୍କୁ କାରାରୁଦ୍ଧ କଲେ । ଶମ୍ଭୁ ରାଜ୍ୟଶାସନ ଉପେକ୍ଷା କରି ମଦ୍ୟ ସେବନରେ ଓ ବେଶ୍ୟାଠାରେ ରତଥିବାରୁ ତାହାଙ୍କର ରାଜ୍ୟଶାସନ ଭାର ଗ୍ରହଣକରିବା ଅଳ୍ପକାଳ ଉତ୍ତାରେ ମହାରାଷ୍ଟ୍ର ରାଜ୍ୟ ନିତାନ୍ତ ହତଶ୍ରୀ ହୋଇଗଲା । ପ୍ରବାଦ ଅଛି, ଶମ୍ଭୁଙ୍କର କଲୁଷନାମକ ଜଣେ ହିନ୍ଦୁସ୍ଥାନୀ ବ୍ରାହ୍ମଣ ଅତି ବିଶ୍ୱାସ ପାତ୍ର ଓ ତାହାଙ୍କର ଯାବତୀୟ କୁପ୍ରବୃତ୍ତିର ଉତ୍ତେଜକ ଥିଲା ମଦ୍ୟ ଆଉ ବେଶ୍ୟାରେ ସମସ୍ତ ପିତୃଅର୍ଜ୍ଜିତ ସମ୍ପତ୍ତି ନଷ୍ଟ ହେବାରୁ ଶମ୍ଭୁ ନାନା ଅସନ୍ତୋଷଜନକ କର ସ୍ଥାପନ କଲେ ତହିଁ ପ୍ରଜାମାନେ ଅତ୍ୟନ୍ତ ବିରକ୍ତ ହେଲେ ଏବଂ ରାଜକୋଷରେ ଅର୍ଥର ଅସଙ୍ଗତି ନିବନ୍ଧନ ସେନାମାନେ ନିୟମିତ ସମୟରେ ବେତନ ନ ପାଇବାରୁ ଅତ୍ୟନ୍ତ ଅକୁଳିତ ହେଲେ ।

ଦାକ୍ଷିଣାତ୍ୟର ଏହିପ୍ରକାର ଗୋଲମାଲ ଶୁଣିବାମାତ୍ର ଅରଙ୍ଗଜେବ ଅପଣାର କର୍ତ୍ତୃତ୍ୱ ସ୍ଥାପନ ମାନସରେ ସେହି ଦେଶକୁ ଯାତ୍ରାକଲେ । ସେ ପ୍ରଥମରେ ବୁରହାନପୁରରେ ଉପସ୍ଥିତ ହୁଅନ୍ତି । ସେ ସ୍ଥାନରେ ରାଜସ୍ୱ ଓ ଛତ୍ରଅଙ୍କର ଅଦାୟର ନିୟମ ସ୍ଥାପନ କରି ଅପଣାର ପୁତ୍ର ମୋଜାଇମଙ୍କୁ କନକାନ ଲୁଣ୍ଠନ ଓ ଜନଶୂନ୍ୟ କରିବା ନିର୍ଦ୍ଦେଶ କରି ପଠାଇଦେଲେ । ମାତ୍ର ରାଜପୁତ୍ର ଉପସ୍ଥିତ ହେବାମାତ୍ର ଉଦେଶର ଜଳ ବାୟୁ ଦୋଷରୁ ତାହାଙ୍କ ସମଭିବ୍ୟାହାରୀ ଅଶ୍ୱ ଓ କୃଷକଗଣ ମରିଯାନ୍ତି ଏବଂ ଅନେକ ସେନାମଧ୍ୟ ପଞ୍ଚତ୍ୱ ପ୍ରାପ୍ତ ହୁଅନ୍ତି । ତେଣୁ ରାଜକୁମାରଙ୍କୁ ବାଧ୍ୟ ହୋଇ ଫେରି ଅସିବାକୁ ହେଲା ।

ଏତାବତ୍ ଆଳ ଶମ୍ଭୁ ମଧ୍ୟ ଭୃକ ହୋଇ ନ ଥିଲେ । ସେ ବର୍ହାନପୁର ଆକ୍ରମଣ କରି ଭସ୍ମସାତ୍ କରି ପକାଇଲେ ।

ଏଣେ ଅରଙ୍ଗଜେବ ହଇଦ୍ରାବାଦ, ଗୋଲକୁଣ୍ଡା ଓ ବିଜୟପୁର ଏହି କେତେଗୋଟି ନଗର ଲୁଣ୍ଠନଦ୍ୱାରା ଲଣ୍ଡଭଣ୍ଡ କରିଦେଇ ମହୀସୁରରେ ସାହାଜିଙ୍କର ଯେ ଜାଗିର ଥିଲା ତାହା ସମ୍ପୂର୍ଣ୍ଣରୂପେ ଦିଲ୍ଲୀ ସାମ୍ରାଜ୍ୟ ଭୁକ୍ତ କଲେ ।

ଅନନ୍ତର ସମ୍ରାଟଙ୍କ ସେନାମାନେ ଶମ୍ଭୁଜୀଙ୍କୁ କନକାନଠାରେ ବନ୍ଦୀ କଲେ ଶମ୍ଭୁ କେତେକଜଣ ବନ୍ଧୁ ବାନ୍ଧବଙ୍କ ସଙ୍ଗେ ମଦ୍ୟପାନଦ୍ୱାରା ଆମୋଦ କରୁଥିଲେ ଏମନ୍ତ ସମୟରେ ସମ୍ରାଟ୍‌ସେନାମାନେ ତାହାଙ୍କୁ ବେଷ୍ଟନ କଲେ । ଶମ୍ଭୁ ମଦିରା ପାନରେ ଅଚେତନ ପ୍ରାୟ ଥିଲେ ସୁତରାଂ ପଳାଇ ନ ପାରିବାରୁ ଅବରୁଦ୍ଧ ହୋଇ ଦିଲ୍ଲୀକୁ ପ୍ରେରିତ ହେଲେ । ସମ୍ରାଟ ତାହାଙ୍କୁ ପ୍ରଥମେ ମୁସଲମାନ ଧର୍ମ ଅବଲମ୍ବନ କରିବାକୁ ଆଜ୍ଞା ଦେଇଥିଲେ ; ମାତ୍ର ଶମ୍ଭୁ ତାହା ନ ମାନି କଟୂତ୍ତର କରିବାରୁ ସେ (ସମ୍ରାଟ୍) ତାହାଙ୍କର ପ୍ରାଣଦଣ୍ଡ ପାଇଁ ଆଜ୍ଞା ଦେଲେ । ପୂର୍ବଲିଖିତ କଳୁଷଙ୍କୁ ମଧ୍ୟ ସେହି ଦଣ୍ଡର ଭାଗୀ ହେବାକୁ ହୋଇଥିଲା ।

ଶମ୍ଭୁଜୀଙ୍କ ମୃତ୍ୟୁ ଉତ୍ତାରେ ପ୍ରଧାନ ମହାରାଷ୍ଟ୍ରୀୟମାନେ ରାଜାରାମଙ୍କୁ ଅଭିଭାବକ କରି ଶମ୍ଭୁଙ୍କ ଶିଶୁସନ୍ତାନ ସାହୁଙ୍କୁ ସିଂହାସନରେ ବସାଇଲେ । ମାତ୍ର ଅଳ୍ପକାଳ ଉତ୍ତାରେ ସମ୍ରାଟ୍ ସେନାମାନେ ଯାଇ ଶିଶୁ ରାଜାକୁ ବନ୍ଦୀକୃତ ଓ ରାଇଗଡ଼ ଅଧିକାର କଲେ । ପୁଣି ବିଶ୍ୱାସଘାତକତା ପୂର୍ବକ ତାହା ସମ୍ରାଟଙ୍କୁ ନ ଦେଇ ସେ ସ୍ଥାନରେ ଆପଣାମାନଙ୍କ ନାମରେ ରାଜସ୍ୱ ସ୍ଥାପନ କଲେ । ରାଜାରାମ ଛଦ୍ମବେଶରେ ସେ ସ୍ଥାନରୁ କର୍ଣ୍ଣାଟର ଅନ୍ତର୍ଗତ ଜିଞ୍ଜି ଦୁର୍ଗକୁ ପଳାୟନ କଲେ ଓ ସେ ସ୍ଥାନରେ ଆପଣା ନାମରେ ରାଜତ୍ୱ କରି ବସିଲେ ।

ସମ୍ରାଟ୍ ରାଇଗଡ଼ସ୍ଥ ସୈନ୍ୟମାନଙ୍କର ଈଦୃଶ ଗର୍ହିତ ବ୍ୟାପାର ଦେଖି ଅତ୍ୟନ୍ତ ରାଗାନ୍ୱିତ ହେଲେ ଏବଂ ସେମାନଙ୍କ ଦମନ ପାଇଁ ଜୁଲଫିକାର ନାମକ ଏକ ଦକ୍ଷ ସେନାନୀକୁ ପ୍ରେରଣ କଲେ । ଏହି ସମୟରେ ରାଜାରାମ ସର୍ବତ୍ର ଲୁଣ୍ଠନ ଓ ଚୌଥ ଗ୍ରହଣ ପାଇଁ ଶନ୍ତାଜୀ ଓ ଧାନାଜୀ ନାମକ ଦୁଇ ସେନାନୀଙ୍କୁ ପ୍ରେରଣ କରନ୍ତି । ସେନାନୀମାନେ ଯାଇ ରାଜ୍ୟ ମଧ୍ୟରେ ନରହତ୍ୟା, ଲୁଣ୍ଠନ ଓ ନଗରଦାହଦ୍ୱାରା ଦେଶ ସକଳ ଲଣ୍ଡଭଣ୍ଡ କରି ପକାଇଲେ ! ସେହିସକଳ ଅତ୍ୟାଚାର ନିବାରଣ କରିବା ମୋଗଲ ସେନାମାନଙ୍କର କ୍ଷମତା ସାଧ୍ୟ ଥିଲା ନାହିଁ । ଆକବରଙ୍କ ସମୟରେ ମୋଗଲ ସେନାନୀମାନେ ଯେପରି ଶିକ୍ଷିତ, ଦକ୍ଷ ଏବଂ ସାହସୀ ଥିଲେ ବର୍ତ୍ତମାନ ସେନାନୀମାନେ ସେପରି ଥିଲେ ନାହିଁ । ପୁଣି ପୂର୍ବଠାରୁ ଏମାନଙ୍କର ଅଧିକ ବାବୁଗିରି ବଢିଥିଲା । ଏହା ଭିନ୍ନ ଆଉ କେତେକ ମହଦୋଷ ଏହି

ଯେ, ମୋଗଲ ସେନାପତିମାନେ ଅତି ପୀନଗଣ୍ଡିର ଘୋଡ଼ାକରେ ଆରୋହଣ କରୁଥିଲେ ଏବ ଘୋଡାଉପରେ ଏତେ ଦ୍ରବ୍ୟାଦି ବୋଝାଇ କରୁଥିଲେ ଯେ, ସେହି ସକଳ ବୋଝ ଯେନ ଘୋଡା ଅଧିକଦୂର ଚାଲି ପାରୁ ନ ଥିଲେ ବିଶେଷରେ ତମ୍ବୁ ଓ ଅହାଗ୍ରିପୃ ଦ୍ରବ୍ୟାଦି ସଙ୍ଗରେ ଥିବାରୁ ସେନାମାନେ ଶୀଘ୍ର ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଇ ପାରୁ ନ ଥିଲେ ।

ମହାରାଷ୍ଟ୍ରୀୟ ସେନାମାନେ ଏପରି ନୁହନ୍ତି; ସେମାନଙ୍କ ସହିତ ଗୋଟିଏ୨ ଘୋଡା ଥାଏ, ସେହି ସକଳ ଘୋଡା ଦୃଢଗଣ୍ଡିର ଓ ଶିକ୍ଷିତ । ଗ୍ରଡିବେଳେ ପଛଯୋଡରେ ଗୁଲି ଖାଆନ୍ତି ଏବ ଆରୋହଣ କଲେ ପବନ ବେ ଦୌଡନ୍ତି । ଆଉ ସେମାନଙ୍କ ପୃଷ୍ଠରେ ସ୍ୱତନ୍ତ୍ର ଆସନ ଥାଏ ନାହିଁ । ଆରୋହର ପାଗୁଡି ଓ ତିଵଆ ଆସନ ଅଟେ । ଅହାଗ୍ରିପୃଁାଇ ମହାରାଷ୍ଟ୍ରୀୟ ସେନାମାନଙ୍କର ସେପରି ଚିନ୍ତା ଥାଏ ନାହିଁ, ଜଠରାନଳ ପ୍ରଜ୍ଜ୍ୱଳିତ ହେଲେ ମୁଠିଏ୨ ଚଣା ଖାଇ ତାହା ନିବାରଣ କରନ୍ତି । ସେମାନଙ୍କର ଅସ୍ତ୍ର ଖଣ୍ଡେ ତରବାରି ଓ ଗୋଟାଏ ବନ୍ଧୁକ ବା ୮।୧୦ ହାତ ଲମ୍ବା ଗୋଟାଏ ବର୍ଚ୍ଛି । ରାତ୍ରରେ ଘୋଡାଲଗାମ ଅଣ୍ଟାରେ ବାନ୍ଧି ମାଟିରେ ଶୋଇଥାଆନ୍ତି । ପ୍ରୟୋଜନ ହେଲେ ତତ୍‌କ୍ଷଣାତ୍ ପ୍ରସ୍ତୁତ ହୋଇ ଯାଆନ୍ତି । ତିଳାର୍ଦ୍ଧ ବିଳମ୍ବ ହୁଅଇ ନାହିଁ ।

ମୋଗଲ ସେନାମାନେ ଆକ୍ରମଣ କଲେ ସେମାନେ ସ୍ଥିରରୂପେ ଠିଆହୋଇ ଯୁଦ୍ଧ ନ କରି ପଳାଇ ଯାଆନ୍ତି ଏବ ଶତ୍ରୁମାନେ ଥକ୍କାହୋଇ ପଡିବାମାତ୍ର ସେମାନେ ମହାବିକ୍ରମ ପ୍ରକାଶପୂର୍ବକ ସେମାନଙ୍କୁ ଲଣ୍ଡଭଣ୍ଡ କରି ପକାନ୍ତି । ଶତ୍ରୁସେନାମାନଙ୍କର ଅହାଗ୍ରିପୃ ବା ତଦର୍ଥେ ଅର୍ଥ ଯିବାର ଶୁଣିଲେ ତତ୍‌କ୍ଷଣାତ୍ ଉପସ୍ଥିତ ହୋଇ ତାହା ଛଡାଇ ନିଅନ୍ତି ।

ଦାକ୍ଷିଣାତ୍ୟର ଅତ୍ୟାଚାର ନିବାରଣପାଁଇ ସମ୍ରାଟ୍ ଜଲଫକାରଙ୍କ ପ୍ରତି ଆଦେଶ ପ୍ରେରଣ କଲେ ଆଉ ଜିଞ୍ଜିଦୁର୍ଗ ଆକ୍ରମଣପାଁଇ ତତ୍‌ପୃଷ୍ଠାତ୍ କାମବକସ ନାମକ ଆପଣା ପୁତ୍ରଙ୍କୁ ପ୍ରେରଣ କଲେ । ଦୁଇ ମୋଗଲସେନାନୀ ମହାବିକ୍ରମ ପ୍ରକାଶ କରି ଏକ ଉଦ୍ୟମରେ ଜିଞ୍ଜିଦୁର୍ଗ ଆକ୍ରମଣ ଓ ଅଧିକାର କଲେ; ମାତ୍ର ରାଜାରାମ ଧରି ପାରିଲେ ନାହିଁ । ସେ ସିତାରାକୁ ପଳାୟନ କଲେ ।

ଏହି ସମୟରେ ଦାନଜୀ ଓ ସନ୍ତାଜୀ ଉଭୟ ସେନାନୀଙ୍କର ପରସ୍ପର ବିବାଦ ହେଲା । ରାଜାରାମ ସନ୍ତାଜୀଙ୍କ ପକ୍ଷ ଅବଲମ୍ବନ କଲେ; କିନ୍ତୁ ସନ୍ତାଜୀଙ୍କ ସେନାମାନେ ତାହାଙ୍କପ୍ରତି ବିରକ୍ତ ହୋଇ ତାହାଙ୍କୁ ବଧ କଲେ । ବର୍ତ୍ତମାନ ରାଜାରାମ ଅପାର ସୈନ୍ୟ ଘେନି ଦକ୍ଷିଣରାଜ୍ୟର ଉତ୍ତରଭାଗ ଲୁଣ୍ଠନ ଓ ଏକାବେଳକେ ଭସ୍ମସାତ୍ କରି ପକାଇଲେ । ଆରଙ୍ଗଜେବ ଏତାବତ୍କାଳ ବ୍ରହ୍ମପୁରୀରେ ବାସ କରୁଥିଲେ

ସେ ସ୍ୱୟଂ, ଦାକ୍ଷିଣାତ୍ୟ ଯୁଦ୍ଧରେ ପ୍ରବୃତ୍ତ ହୋଇଥିଲେ ନାହିଁ; ଅବଶ୍ୟକମତେ ସେନାପତି ପ୍ରେରଣ କରୁଥିଲେ । ବର୍ତ୍ତମାନ ଦଳବଳ ସେନ ଯୁଦ୍ଧ କରିବାକୁ ବାହାର ସିତାର ଆକ୍ରମଣ କଲେ । ଆକ୍ରମଣର କେତେମାସ ଉତ୍ତାରେ ସିତାର ସମ୍ପୂର୍ଣ୍ଣରୂପେ ଅଧିକୃତ ହେଲା ।

ଏହି ସମୟରେ ରାଜାରାମ ପରଲୋକ ଗମନ କଲେ; କିନ୍ତୁ ଯୁଦ୍ଧନିବୃତ୍ତ ହେଲା ନାହିଁ ରାଜାରାମ ଉପରତ ହେଲେ ତାହାଙ୍କର ଭାର୍ଯ୍ୟା ତାରାବାଈ ଆପଣା ଶିଶୁ ସନ୍ତାନ ଶିବଜୀଙ୍କ ନାମରେ ରାଜତ୍ୱ କରିବାରେ ପ୍ରବୃତ୍ତ ହେଲେ ।

ଆରଙ୍ଗଜେବ ୫ବର୍ଷକାଳ ଦାକ୍ଷିଣାତ୍ୟରେ ମହାପରିଶ୍ରମ୍ ଅନେକ ମହାରାଷ୍ଟ୍ରୀୟ ଦୁର୍ଗ ହସ୍ତଗତ କରିଥିଲେ; ମାତ୍ର ସମ୍ପ୍ରତି ତାହାଙ୍କର ଅନେକ ସେନା ଯୁଦ୍ଧରେ ହତ ଓ ଅନେକ ପୀଡ଼ିତ ହୋଇ ପଳାୟନ କଲେ । ପୁଣି ଆଗ୍ରାର ସମୀପବର୍ତ୍ତୀ ଜାଠନାମକ ଏକ ଜାତିଙ୍କ ସହିତ ଯୁଦ୍ଧ କରିବାର ଆବଶ୍ୟକ ହେଲା । ଏଣୁ ମହାରାଷ୍ଟ୍ରୀମାନଙ୍କ ସହିତ ସନ୍ଧି କରିବାକୁ ମନସ୍ଥ କଲେ; ମାତ୍ର ମହାରାଷ୍ଟ୍ରୀମାନେ ଅଧିକ ପଣ ମାଗିବାରୁ ସେ ଚେଷ୍ଟା ବିଫଳ ହେଲା । ସମ୍ରାଟ୍ ଅନ୍ୟ ଉପାୟ ନ ଦେଖି ସସୈନ୍ୟେ ଆହମ୍ମଦ ନଗରକୁ ଯାତ୍ରାକଲେ; ମାତ୍ର ସେହି ଗମନ ସୁଶୃଙ୍ଖଳରୂପରେ ସମ୍ପନ୍ନ ହେଲା ନାହିଁ । ମହାରାଷ୍ଟ୍ରୀମାନେ ପଶ୍ଚାଦ୍ଭାଗରୁ ସମ୍ରାଟଙ୍କୁ ନାନାପ୍ରକାର ବିରକ୍ତ କଲେ । ସମ୍ରାଟ୍ କୌଣସିପ୍ରକାରେ ସେମାନଙ୍କୁ ନିବାରଣ କରି ପାରିଲେ ନାହିଁ । ଏହି ସକଳ ଚିନ୍ତା ଓ ଶାରୀରିକ ପୀଡାପ୍ରଯୁକ୍ତ ଅତ୍ୟନ୍ତ ଦୁର୍ବଳ ହୋଇ ପଡ଼ିଲେ । ପରେ ୧୭୦୭ସାଲ୍ ଫେବୃୟାରିମାସ ତା ୧ ଖରେ ପ୍ରାଣ ତ୍ୟାଗ କଲେ । ଅରଙ୍ଗଜେବ ୫୦ବର୍ଷ ରାଜତ୍ୱ କରିଥିଲେ ।

ଆରଙ୍ଗଜେବ ଅଧିକ ବୁଦ୍ଧିମାନ୍ ଓ ତେଜସ୍ୱୀ ଥିଲେ ସତ୍ୟ, ମାତ୍ର ତାହା ବୋଲି ତାହାଙ୍କର ପ୍ରଶଂସା କରାଯାଇ ନ ପାରେ । ସେ ଅତି କ୍ରୂର, କପଟୀ ଓ ଅବିଶ୍ୱାସୀ ଥିଲେ । ପରକଥା ଅବା କି କହିବା, ତାହାଙ୍କର ପୁତ୍ରମାନେସୁଦ୍ଧା ତାହାଙ୍କୁ ବିଶ୍ୱାସ କରୁଥିଲେ ନାହିଁ । ଅରଙ୍ଗଜେବଙ୍କର ଚରିତ୍ର ବିଷୟରେ ଗୋଟିଏମାତ୍ର କଥା କହିଲେ ପର୍ଯ୍ୟାପ୍ତ ହେବ ଯେ, ସେ ରାଜ୍ୟଲୋଭରେ ଆପଣାର ଜନ୍ମଦାତା ପିତାଙ୍କୁ କାରାରୁଦ୍ଧ କରିଥିଲେ । ଏପର ଅରଙ୍ଗଜେବଙ୍କୁ ମୋଗଲ ରାଜ୍ୟ ବିନାଶର ମୂଳ ବୋଲି ମଣିବାକୁ ହେବ । ସେ ଯଦି ଜିଜିୟାକର ସ୍ଥାପନ ଓ ହିନ୍ଦୁମାନଙ୍କ ପ୍ରତି ଅନ୍ୟବିଧ ଅତ୍ୟାଚାର କରି ନ ଥାନ୍ତେ ତେବେ ବୋଧ ହୁଅଇ ଏତେ ଶୀଘ୍ର ଉନ୍ନତଶୀଳ ମୋଗଲ୍‌ସାମ୍ରାଜ୍ୟ ବିଲୋପ ହୋଇ ନ ଥାନ୍ତା । ଏଦେଶୀ ପଠାଣମାନେ ଅରଙ୍ଗଜେବଙ୍କର ଅନେକ ପ୍ରଶଂସା କରନ୍ତି । ବୋଧ କରୁଁ ତାହାଙ୍କର ମୁସଲ୍‌ମାନଧର୍ମ ପ୍ରତି ଦୃଢ଼ବିଶ୍ୱାସ ଏହାର କାରଣ ହେବ ।

## ଊନବିଂଶ ଅଧ୍ୟାୟ ।

### ବାହାଦୁରସାହ ।

ଆରଙ୍ଗଜେବଙ୍କର ତିନିପୁତ୍ର ଥିଲେ । ପ୍ରଥମ ମୋଜାଇମ, ଦ୍ୱିତୀୟ ଆଜାମ, ତୃତୀୟ କାମବକସ । ଆରଙ୍ଗଜେବ ମୃତ୍ୟୁ ସମୟରେ ରାଜ୍ୟ ସମାନ ୩ ଅଂଶରେ ବିଭାଗ କରି ୩ ଜଣଙ୍କୁ ଦେଇ ଯାଇଥିଲେ ଏବଂ ଦିଲ୍ଲୀ, ଆଗ୍ରା ଏବ ଗୋଲକୁଣ୍ଡା ବା ବିଜୟପୁର ଏହି ସକଳ ସ୍ଥାନରେ ରାଜଧାନୀ ସ୍ଥାପନ କରିବାପାଇଁ ମଧ୍ୟ ନିର୍ଦ୍ଦେଶ କରି ଯାଇଥିଲେ; କିନ୍ତୁ ତାହାଙ୍କର ୨ୟ ପୁତ୍ର ଆଜାମ ସେ ଆଜ୍ଞା ଅବହେଳା କରି ଆପେ ରାଜପଦ ଗ୍ରହଣ କଲେ । ମୋଜାଇମ ସେତେବେଳେ କାବୁଲରେ ଥିଲେ, ମଧ୍ୟମଭ୍ରାତାର ଏପରି ବ୍ୟବହାର ଦେଖି ସେ ମଧ୍ୟ ରାଜ୍ୟାଭିଷିକ୍ତ ହେଲେ । ତେଣୁ ଆଗ୍ରାଠାରେ ଉଭୟଭ୍ରାତାର ଘୋରଯୁଦ୍ଧ ହେଲା । ସେହି ଯୁଦ୍ଧରେ ଦୁଇପୁତ୍ର ସହିତ ଆଜାମ ହତ ହେଲେ । ମୋଜାଇମ ରଣଜୟୀ ହୋଇ ବାହାଦୁରସାହ ନାମ ଧାରଣପୂର୍ବକ ସିଂହାସନ ଆରୋହଣ କଲେ ।

ତୃତୀୟ କାମବକସ ପିତାଙ୍କ ନିଦେଶାନୁସାରେ ଆପଣାକୁ ରାଜ୍ୟର ତୃତୀୟାଂଶର ଅଧିକାରୀ ଜାଣି ଦକ୍ଷିଣରାଜ୍ୟରେ ରାଜତ୍ୱ ସ୍ଥାପନ କରିଥିଲେ । ବାହାଦୁର ରାଜ୍ୟେଶ୍ୱର ହୋଇ ତଦ୍‌ବିରୁଦ୍ଧରେ ଯୁଦ୍ଧଯାତ୍ରା କଲେ । ହାୟଦ୍ରାବାଦଠାରେ ଉଭୟଭ୍ରାତାର ଯୁଦ୍ଧ ହେଲା । ଏହି ଯୁଦ୍ଧରେ କାମବକସ ପରାସ୍ତ ଓ ହତ ହୁଅନ୍ତି । ସେତେବେଳଯାଏ ମରହଟ୍ଟାମାନଙ୍କର ଉପଦ୍ରବ ନିରତ ହୋଇ ଥିଲା ନାହିଁ । ବାହାଦୁର ସ୍ୱୟଂ ସେମାନଙ୍କ ବିରୁଦ୍ଧରେ ଯୁଦ୍ଧଯାତ୍ରା ନ କରି ସେମାନଙ୍କ ଗୃହବିବାଦ ଜନ୍ମାଇ ଦେବା କାରଣ କାରାବଦ୍ଧ ସାହୁଙ୍କୁ ମୁକ୍ତ କରି ଦେଲେ । ସେହି ଦିନଠାରୁ ମରହଟ୍ଟାମାନେ ଦୁଇଦଳରେ ବିଭକ୍ତ ହୋଇଥିଲେ ।

ରାଜପୁତମାନଙ୍କ ସହିତ ପୂର୍ବରୁ ଯୁଦ୍ଧ ଚଳୁଥିଲା ବର୍ତ୍ତମାନ ପଞ୍ଜାବବାସୀ ଶିଖମାନଙ୍କ ସହିତ ଯୁଦ୍ଧ ଉପସ୍ଥିତ ହେବାରୁ ଏକାବେଳକେ ଦୁଇଆଡେ ଯୁଦ୍ଧ କରିବା ଅସାଧ୍ୟ ଜାଣି ସମ୍ରାଟ ରାଜପୁତମାନଙ୍କ ସହିତ ସନ୍ଧି କଲେ; କିନ୍ତୁ ଶିଖମାନଙ୍କ ସହିତ ଯୁଦ୍ଧ ଚଳିଲା ।

ଶିଖ ଏକ ନବ୍ୟଜାତି, ସେମାନଙ୍କ ବିବରଣ ସଂକ୍ଷେପରେ ବର୍ଣ୍ଣିତ ହେଉଅଛି ।

ଏହି ଧର୍ମପ୍ରବର୍ତ୍ତକର ନାମ ନାନକ । ଇଂରାଜୀ ପଞ୍ଚଦଶଶତାବ୍ଦୀ ଶେଷଭାଗରେ ବିପାଶାନଦୀ ତୀରବର୍ତ୍ତୀ ରାଇପୁର ଗ୍ରାମରେ ସେ ଜନ୍ମଗ୍ରହଣ କରନ୍ତି । ସେ ଜାତିରେ କ୍ଷତ୍ରିୟ ତାହାଙ୍କ ପିତାର ନାମ କାଲୁବେଦୀ । ନାନକ ପ୍ରଥମେ ଶସ୍ୟ ବିକ୍ରୟ ବ୍ୟବସାୟ କରୁଥିଲେ, ପରେ କିଞ୍ଚିତ୍ ବୟୋବୃଦ୍ଧ ହେଲେ ଶସ୍ୟ ବିକ୍ରୟ ବ୍ୟବସାୟ

ତ୍ୟାଗ କରି ଧର୍ମ ପ୍ରଚାର କଲେ । ମାତ୍ର ନାନକ ଜୀବନଚରିତ ଲେଖକମାନେ ବୋଲନ୍ତି ବାଲ୍ୟକାଳରୁ ଏହାଙ୍କଠାରେ ଧାର୍ମିକତ୍ୱ ଲକ୍ଷିତ ହୋଇଥିଲା ।

ନାନକ ଭାରତବର୍ଷର ସର୍ବତ୍ର ଭ୍ରମଣ କରି ମକ୍କା, ମଦିନା ପର୍ଯ୍ୟନ୍ତ ଯାଇ-ଥିଲେ । ସେହି ସକଳ ସ୍ଥାନରେ ନାନା ଉପଦେଶ ଓ ଐଶୀଶକ୍ତି ପ୍ରକାଶଦ୍ୱାରା ଅନେକ ଲୋକଙ୍କୁ ଶିଷ୍ୟ କରନ୍ତି । ଶିଷ୍ୟମାନଙ୍କର ନାମ ଶିଖ । ନାନକଙ୍କ ମତରେ ପରମେଶ୍ୱର ଏକମାତ୍ର ଅଦ୍ୱିତୀୟ, ନିର୍ଲିପ୍ତ, ନିର୍ବିକାର, ନିରଞ୍ଜନ, ନିତ୍ୟ, ସତ୍ୟ, ସ୍ୱୟଂଭୂ, ସର୍ବପୂର ଓ ବାକ୍ୟ ମନର ଅଗୋଚର ଏବଂ ସେ ପରମେଶ୍ୱରଙ୍କୁ ଅନାଦି ଅନନ୍ତ ସନାତନ ବୋଲି ଉଲ୍ଲେଖ କରିଅଛନ୍ତି । ନାନକଙ୍କ ଧର୍ମଗ୍ରନ୍ଥ ପାଠ କଲେ ବୋଧ ହୁଏ ହିନ୍ଦୁ ବୈଦାନ୍ତିକ ଓ ମୁସଲମାନ ସୁଫିମତର ସାରାଂଶ ସଙ୍କଳିତ ହୋଇଅଛି ।

ସେ ଜୀବ ଓ ଯୋନି ଭ୍ରମଣ ଏବଂ ଶୁଭାଶୁଭ କର୍ମାନୁରୂପ ଉତ୍ତମାଧମ ଜନ୍ମ ଗ୍ରହଣ ଅସ୍ୱୀକାର କରନ୍ତି । ଆଉ ସେ ବ୍ରହ୍ମା ବିଷ୍ଣୁ ମହେଶ୍ୱରାଦିର ଅସ୍ତିତ୍ୱ ଓ ଦେବତ୍ୱ ସ୍ୱୀକାର କରନ୍ତି, ମାତ୍ର ସେମାନଙ୍କ ଉପାସନା କରିବାକୁ ବିଧି ଦିଅନ୍ତି ନାହିଁ । ସେ ଲେଖନ୍ତି "ଅନ୍ୟର ଉପାସନା କର ନାହିଁ, ଶବ ସମୀପରେ ନତ ହୁଅ ନାହିଁ, ପ୍ରତିମାପୂଜା ତୀର୍ଥଯାତ୍ରା ଏବଂ ଅଶୁଦ୍ଧମନରେ ବିଜନସ୍ଥାନରେ ବସିବା ବ୍ୟର୍ଥ" ସେ ଜାତିଭେଦ ସ୍ୱୀକାର କରନ୍ତି ନାହିଁ । ତାହାଙ୍କ ମତରେ ସର୍ବଜାତୀୟ ଲୋକଙ୍କର ପରମେଶ୍ୱର ଉପାସନା କରିବାର କ୍ଷମତା ଅଛି । ଖାଦ୍ୟବିଷୟରେ ଗୋମାଂସ ଓ ବରାହମାଂସ ଅତି ଅପବିତ୍ର ଅଟେ । ସେ ନିଜେ ମଧ୍ୟ କୌଣସି ମାଂସ ଖାଉ ନ ଥିଲେ ।

ନାନକଙ୍କ ମତରେ ହିନ୍ଦୁମାନଙ୍କର କୌଣସି ଆପତ୍ତି ଥିଲା ନାହିଁ । କିନ୍ତୁ ଧର୍ମୋନ୍ମତ୍ତ ମୁସଲମାନମାନେ ତାହାଙ୍କ ମତ ଅତ୍ୟନ୍ତ ଅଗ୍ରାହ୍ୟ କରିଥିଲେ ଓ ତାହାଙ୍କ ପ୍ରତି ନାନା ଅତ୍ୟାଚାର କରିବାକୁ ମଧ୍ୟ ତ୍ରୁଟି କରି ନ ଥିଲେ । ନାନକ ସେମାନଙ୍କର ଅନେକ ଅତ୍ୟାଚାର ସହ୍ୟ କରିଥିଲେ, ପରିଶେଷେ ସେ ସେମା-ନଙ୍କ କୋପାନଳରେ ପଡି ୭୦ବରଷ ବୟସ ସମୟରେ ୧୬୦୬ସାଲେ ସୁଲତାନ ଅନ୍ତଃପାତୀ ଇରାବତୀ ନଦୀ ତୀରସ୍ଥ କୀର୍ତ୍ତିପୁରରେ ପ୍ରାଣତ୍ୟାଗ କଲେ । ମୁସଲମାନ-ମାନେ ନାନକଙ୍କୁ ବଧକଲା ଉତ୍ତାରେ ଶିଖଶିଷ୍ୟମାନେ ତାହାଙ୍କପୁତ୍ର ହରିଗୋବିନ୍ଦଙ୍କୁ ଆପଣାମାନଙ୍କର ଅଧ୍ୟକ୍ଷ କଲେ । ହରିଗୋବିନ୍ଦ ମୁସଲମାନମାନଙ୍କର ଅତ୍ୟାଚାର ସହିବାକୁ ଅସମର୍ଥ ହୋଇ ପଞ୍ଜାବ ପରିତ୍ୟାଗ ପୂର୍ବକ ଉତ୍ତରାଞ୍ଚଳେ ପାର୍ବତ୍ୟ ଦେଶକୁ ପଳାୟନ କଲେ । ଦୁରାଚାର ମୁସଲମାନମାନେ ଏହିଁରେ ମଧ୍ୟ କ୍ଷାନ୍ତ ହେଲେ ନାହିଁ; ସେହି ପାର୍ବତ୍ୟ ଦେଶରେ ମଧ୍ୟ ଶିଖମାନଙ୍କୁ ଅତ୍ୟାଚାର ଫଳ ଭୋଗିବାକୁ

ହୋଇଥିଲା । ପରେ ୧୬୭୫ ସାଲରେ ହରଗୋବିନ୍ଦଙ୍କ ପୌତ୍ର ଗଙ୍ଗାଗୋବିନ୍ଦ ଶିଖମାନଙ୍କୁ ଅସ୍ତ୍ରଧାରଣ କରିବା ପାଇଁ ଉପଦେଶ ଦେଲେ । ଏଥି ପୂର୍ବରେ ଶିଖ-ଜାତି କେବଳ କୃଷିକର୍ମ କରୁଥିଲେ । ଆଉ ଦେଖିଲେ ସହଜରେ ଚିହ୍ନାଯିବେ ବୋଲି ସମସ୍ତଙ୍କୁ ସଭାବାଳ ଧାରଣ ଓ ନୀଳାମ୍ବର ପରିଧାନ ପାଇଁ ଆଦେଶ କଲେ । କିନ୍ତୁ ରାଜା ସହିତ ଯୁଦ୍ଧ କରିବା ପାଇଁ ସେତେବେଳ ଯାଏ ସେମାନେ ସକ୍ଷମ ହୋଇଥିଲେ ନାହିଁ । ରାଜ ସୈନ୍ୟମାନେ ସେମାନଙ୍କୁ ମୂଷାପରି ଘଉଡ଼ି ଦେଉଥାନ୍ତି ଏବଂ ଶିଖ ସେନାମାନେ ସମ୍ମୁଖରେ ପଡ଼ିଲେ ତତ୍‌କ୍ଷଣାତ୍ ବଧ କରନ୍ତି; ଆବାଳ ବୃଦ୍ଧ ବନିତା କାହାକୁ ଛାଡ଼ନ୍ତି ନାହିଁ । ଶିଖମାନେ ଏହି ସକଳ ଅତ୍ୟାଚାର ସହିବାକୁ ନ ପାରି ସ୍ୱାଧୀନ ହେବା ପାଇଁ ମନସ୍ଥ କଲେ । ଗୁରୁଗୋ-ବିନ୍ଦ ସେପରି ତେଜସ୍ୱୀ ପୁରୁଷ ଥିଲେ ନାହିଁ; ମାତ୍ର ତାହାଙ୍କର ସ୍ୱପକ୍ଷ ବନ୍ଦୁ ନାମକ ଜଣେ ଲୋକ ଅତି ପ୍ରଚଣ୍ଡ ଓ ନିଷ୍ଠୁର ଥିଲେ । ଏହି ସମୟରେ ଶିଖମାନେ ପର୍ବତରୁ ଓହ୍ଲାଇ ପଞ୍ଜାବର ପୂର୍ବାଂଶ ଭାବଦେଶ ଛିନ୍ନଭିନ୍ନ କରି ପକାନ୍ତି । ସେମାନଙ୍କ ଦୌରାତ୍ମ୍ୟରେ ସେଦେଶରେ ଲୋକଶୂନ୍ୟ ହୋଇଥିଲା । ଅନନ୍ତର ଶିଖମାନେ ଯମୁନାତୀରବର୍ତ୍ତୀ ସାହାରାନପୁର ପର୍ଯ୍ୟନ୍ତ ଆସି ଦିଲ୍ଲୀ ଆକ୍ରମଣ ପାଇଁ ମନସ୍ଥ କଲେ । ଏହି ସମ୍ବାଦ ପାଇ ବାହାଦୁର ସେମାନଙ୍କ ଦମନ ପାଇଁ ଏକଦଳ ତୁରଗ-ସେନା ପେଷିଲେ । ତହୁଁ ଶିଖମାନେ ଯୁଦ୍ଧରେ ପ୍ରବୃତ୍ତ ନ ହୋଇ ଶୈଳଶିଖରକୁ ପଳାୟନ କଲେ । ସେସ୍ଥାନରେ ଗୋଟିଏ ଦୁର୍ଗଥିଲା ବନ୍ଦୁ ତହିଁରେ ଆଶ୍ରୟ ଗ୍ରହଣ କରନ୍ତି । ବିପକ୍ଷମାନେ ତାହାଙ୍କୁ ଧରିବା ପାଇଁ ଅନେକ ଯତ୍ନ କଲେ କିନ୍ତୁ ପାରିଲେ ନାହିଁ । ଅନନ୍ତର ସେ ଲାହୋରକୁ ଫେରି ଆସି କିଛି କାଳ ଉତ୍ତାରେ ପ୍ରାଣତ୍ୟାଗ କଲେ । ବାହାଦୁରସାହ ମଧ୍ୟ ଏହି ସମୟରେ ଲୋକାନ୍ତରିତ ହୁଅନ୍ତି । ବାହାଦୁର ବ ୫ ରଷ ମାତ୍ର ରାଜତ୍ୱ କରିଥିଲେ । ୧୭୧୨ ।

ବାହାଦୁରସାହଙ୍କର ଦୁଇ ପୁତ୍ର ଥିଲେ । ଜ୍ୟେଷ୍ଠର ନାମ ଜାହାନ୍ଦରସାହ ଓ କନିଷ୍ଠର ନାମ ଆଜୀମ । ପିତା ଅପାୟେ ସିଂହାସନ ଅଧିକାର ପାଇଁ ଦୁଇ ଭାଇ ମଧ୍ୟରେ ମହା ବିବାଦ ଉପସ୍ଥିତ ହେଲା । ପ୍ରଧାନ ୨ ଅମାତ୍ୟମାନେ ଓ ପ୍ରଧାନ ସେନାପତି ଜଲଫକାର ଜ୍ୟେଷ୍ଠ ଜାହାନ୍ଦରସାହଙ୍କ ସପକ୍ଷ ହେବାରୁ ସେ ସିଂହାସନ ପ୍ରାପ୍ତ ହେଲେ । ଆଜୀମ ସେହି ବିବାଦରେ ପ୍ରାଣତ୍ୟାଗ କଲେ । ଜାହାନ୍ଦର ସିଂହାସ-ନାରୋହଣ କଲେ; ଜଲଫକାର ପ୍ରଧାନମନ୍ତ୍ରୀ ହୋଇ ଏକାଧିପତ୍ୟ କରିବାର ପନ୍ଥା କଲେ । ଜାହାନ୍ଦରଙ୍କର ଗୋଟିଏ ଉପପତ୍ନୀ ଥିଲା; ସେ ଜଣେ ସାମାନ୍ୟ ନର୍ତ୍ତକୀ ଜାହାନ୍ଦର ସିଂହାସନରେ ଆରୋହଣ କରି ସେହି ଉପପତ୍ନୀ ଜ୍ଞାତିମାନଙ୍କୁ ପ୍ରଧାନ ୨ କର୍ମରେ ନିଯୁକ୍ତ କଲେ । ଏଥିରେ ସମସ୍ତେ ତାହାଙ୍କ ପ୍ରତି ଅସନ୍ତୁଷ୍ଟ ହୁଅନ୍ତି ।

ସେ ଯାହା ହେଉ ନିଷ୍କଣ୍ଟକରେ ରାଜ୍ୟ ଭୋଗ କରିବା ପାଇଁ ଜାହାନ୍ଦର ରାଜ-
ପରିବାର ମଧ୍ୟରେ ଯେଉଁମାନେ ରାଜ୍ୟାଭିଳାଷୀ ହୋଇ ପାରନ୍ତି ଏକ ଏକ କରି
ସେମାନଙ୍କୁ ବଧ କଲେ । କିନ୍ତୁ ଫେରକ ସାହ ନାମରେ ଅଜିମଙ୍କର ଏକ ପୁତ୍ର
ବଙ୍ଗଦେଶରେ ଥିଲେ, ସମ୍ରାଟ୍ ତାହାଙ୍କୁ ବିନାଶ କରି ନ ପାରି ତଦ୍ବିରୁଦ୍ଧରେ
ସେନା ପ୍ରେରଣ କଲେ । ଫରୋକ ପିତୃବ୍ୟ ଅତ୍ୟାଚାରରୁ ରକ୍ଷା ପାଇବା ପାଇଁ
ଆବଦୁଲ୍ଲା ଓ ହୁସେନଆଲି ନାମକ ସାୟଦଗୋଷ୍ଠି ଦୁଇଭାଇଙ୍କଠାରେ ଶରଣ ପଶିଲେ।
ଏମାନେ ଅତ୍ୟନ୍ତ ପରାକ୍ରମଶାଳୀ ଓ ଜଣେ ଏଲାହାବାଦରେ ଅନ୍ୟ ଜଣେ ବେହା-
ରରେ ସୁବାଦାର ଥିଲେ । ଏମାନଙ୍କ ସାହାଯ୍ୟରେ ଫରୋଖ ସମ୍ରାଟ୍ ପ୍ରେରିତ
ସେନାମାନଙ୍କୁ ତଡିଦେଇ ଆଗ୍ରାକୁ ଯାତ୍ରାକଲେ । ଏଣେ ଜାହାନ୍ଦର ଏହି ସମ୍ବାଦ
ପାଇ ୭୦ ହଜାର ସୈନ୍ୟ ଘେନି ଯୁଦ୍ଧାର୍ଥ ତାହାଙ୍କର ସମ୍ମୁଖୀନ୍ ହେଲେ । ଜଲଫ-
କାର ସମ୍ରାଟ୍ ସେନାମାନଙ୍କର ନେତା ଥିଲେ । ପ୍ରବଳ ସଂଗ୍ରାମ ହେଲା । ଅବଶେଷେ
ଜାହାନ୍ଦର ପରାସ୍ତ ହୋଇ ଦିଲ୍ଲୀକୁ ପଳାୟନ କଲେ । ପଳାୟନ ସମୟରେ ଜଲ-
ଫକାର ବାପ ଅସଦଖାଁ ତାହାଙ୍କୁ ଧରି ରଖିଲେ । ଫରୋଖ ଆଗ୍ରାଠାରେ ଉପସ୍ଥିତ
ହେଲେ । ଅସଦଖାଁ ଓ ଜଲଫକାର ମନରେ ବଡ଼ ଆଶା କରି ଜାହାନ୍ଦରଙ୍କୁ
ଫରୋଖ ହସ୍ତରେ ଅର୍ପଣ କଲେ । ମାତ୍ର ଫରୋଖ ସେମାନଙ୍କ ମନୋବାଞ୍ଛା ପୂର୍ଣ୍ଣ ନ
କରି ଜାହାନ୍ଦର ଓ ଜଲଫକାର ଦୁହିଙ୍କୁ ବଧ କଲେ ।

ଫରୋଖସାହ ସିଂହାସନାରୋହଣ କରି ଅବଦୁଲ୍ଲାକୁ ମନ୍ତ୍ରୀତ୍ୱରେ ଓ ହୁସେନ
ଅଲିକୁ ପ୍ରଧାନ ସୈନାପତ୍ୟେ ନିଯୁକ୍ତ କଲେ । ଏଥିରେ ଦୁଇ ଭାଇ ମନେ୨ ଭାବି-
ଲେ ରାଜା ରାଜ୍ୟଭୋଗେ ଭୋଳହୋଇ ରହିଲେ, ଅମ୍ଭେମାନେ ସର୍ବପ୍ରଧାନ ହୋଇ
କର୍ତ୍ତୃତ୍ୱ କରିବୁଁ । ମାତ୍ର ଫରୋଖ ଏହା ବୁଝିପାରି ଆପଣାର ଜଣେ ଅନୁଗତଙ୍କୁ
ମିରଜୁମଲା ଉପାଧି ଦେଇ ସେମାନଙ୍କୁ ବଧ କରିବାକୁ ଆଦେଶ ଦିଅନ୍ତି । ଏହି
ଅଭିପ୍ରାୟ ସାଧନ ନିମନ୍ତେ ଉକ୍ତ ଦୁଇ ଭାଇଙ୍କୁ ପୃଥକ୍୨ ସ୍ଥାନରେ ରଖିବାକୁ
ମନସ୍ଥ କଲେ । ହୁସେନଅଲିଙ୍କ ପ୍ରତି ମାଡୋୟାର ରାଜା ଅଜିତ ସିଂହ ସହିତ
ଯୁଦ୍ଧ କରିବା ପାଇଁ ଆଦେଶ ପ୍ରେରିତ ହେଲା ଏବଂ ସମ୍ରାଟ୍ ଗୋପନ ଭାବରେ
ଅଜିତ ସିଂହଙ୍କୁ ଲେଖି ପଠାଇଲେ ଯେ ତୁମ୍ଭେ ଶୀଘ୍ର ଯୁଦ୍ଧ ଶେଷ କରିବ ନାହିଁ ।
ମାତ୍ର ଅଜିତ ସିଂହ ଆପଣାର ମଙ୍ଗଳ କାମନାରେ ଯୁଦ୍ଧରେ ପ୍ରବୃତ୍ତ ନ ହୋଇ
ସମ୍ରାଟଙ୍କୁ କନ୍ୟାଦାନ କରିବେ ବୋଲି ଲେଖି ପଠାଇଲେ । ତହୁଁ ହୁସେନ
ରାଜଧାନୀକୁ ଫେରି ଆସିଲେ । ଅତି ଆଡ଼ମ୍ବରରେ ଅଜିତ କନ୍ୟା ସହିତ ସମ୍ରାଟ-
ଙ୍କର ବିବାହ ହେଲା । ଏ ଉତ୍ତାରେ ଆଉ କୌଣସି ହିନ୍ଦୁରାଜା ମୁସଲମାନମାନଙ୍କୁ
କନ୍ୟାଦାନ କରି ନାହାନ୍ତି ।

ଅନନ୍ତର ହୁସେନଅଲି ଦାକ୍ଷିଣାତ୍ୟକୁ ଯୁଦ୍ଧ ଯାତ୍ରା କରନ୍ତି । ସେ ସ୍ଥାନରେ ମହାରାଷ୍ଟ୍ରୀୟମାନଙ୍କ ସହିତ ଯୁଦ୍ଧ ହେଲା । ମରହଟ୍ଟାମାନେ ଆପଣାମାନଙ୍କ ନିୟମାନୁସାରେ ଯୁଦ୍ଧ କରିବାରୁ ହୁସେନ ସେମାନଙ୍କୁ ପରାଭୂତ କରି ପାରିଲେ ନାହିଁ । ଏହି ସମୟରେ ହୁସେନଙ୍କୁ ଦିଲ୍ଲୀରେ ଉପସ୍ଥିତ ହେବାପାଇଁ ସମ୍ରାଟଙ୍କଠାରୁ ଆଜ୍ଞା ଉପସ୍ଥିତ ହେଲା ମାତ୍ର ତେତେବେଳେ ଯୁଦ୍ଧ ଶେଷ ହୋଇ ନ ଥିବାରୁ ହୁସେନ, ସାହୁ ସହିତ ସନ୍ଧି ସ୍ଥାପନ କଲେ । ସନ୍ଧି ପତ୍ରରେ ଯେ ସକଳ କଥା ଲେଖା ଥିଲା ତନ୍ମଧ୍ୟରେ ପ୍ରଧାନ କଥା ଏହି ଯେ ସାହୁ ଦିଲ୍ଲୀଶ୍ୱରଙ୍କୁ ୧୦ ଲକ୍ଷ ଟଙ୍କା କର ଦେବେ । ଯୁଦ୍ଧ ସମୟରେ ସମ୍ରାଟଙ୍କୁ ୧୫ ସହସ୍ର ସୈନ୍ୟ ସାହାଯ୍ୟ କରିବେ ଓ ଦକ୍ଷିଣ ଦେଶରେ ଯେପରି ଯୁଦ୍ଧ ନ ହୁଏ, ସେ ବିଷୟ ଚେଷ୍ଟା କରିବେ ତାହା ହେଲେ ସେ ଦକ୍ଷିଣ ରାଜ୍ୟରେ ସମସ୍ତ ଦେଶରୁ ଚୌଥ ଓ ରାଜସ୍ୱର ଦଶମାଂଶ ପାଇବେ । ସମ୍ରାଟ୍ ଏହି ସନ୍ଧି ଗ୍ରାହ୍ୟ କଲେ ନାହିଁ, ତହୁଁ ହୁସେନ ସହିତ ତାହାଙ୍କର ମନୋମାଳିନ୍ୟ ଉପସ୍ଥିତ ହେଲା ।

ଏହି ସମୟରେ ଶିଖମାନେ ପୁନର୍ବାର ଦେଶ ଲୁଣ୍ଠନ ଆରମ୍ଭ କରିବାରୁ ସମ୍ରାଟ୍ ସେମାନଙ୍କ ଶାସନ ପାଇଁ ଜଣେ ଦକ୍ଷ ସେନାପତିଙ୍କୁ ପଠାଇ ଦେଲେ । ସେନାପତି ଯାଇ ଅନେକ ଶିଖଙ୍କୁ ବିନାଶ ପୂର୍ବକ ୭ ଶତ ଶିଖ ସହିତ ସେମାନଙ୍କ ପ୍ରଧାନ ବନ୍ଦୁଙ୍କୁ ବନ୍ଦୀ କରି ଦିଲ୍ଲୀକୁ ପଠାଇ ଦେଲେ । ଶିଖମାନେ ଉପସ୍ଥିତ ହେବା ମାତ୍ର ସମ୍ରାଟ୍ ମୁସଲମାନ ଧର୍ମ ଅବଲମ୍ବନ କରିବାକୁ ଆଦେଶ ପ୍ରଦାନ କଲେ । ମାତ୍ର ସେମାନେ ତାହା ସ୍ୱୀକାର ନ କରିବାରୁ ପ୍ରତିଦିନ ୧୦୦ ଜଣର ପ୍ରାଣଦଣ୍ଡ ହେଲା । ବନ୍ଦୁଙ୍କୁ ଶୁକ୍ଳ ବସ୍ତ୍ର ପିନ୍ଧାଇ ମସ୍ତକରେ ଏକ ଲାଲପାଗ ଦେଇ ଲୌହ ପିଞ୍ଜରରେ ରଖା ଗଲା । ଅଉ ତାହାଙ୍କର ଚୋଟିଏ ଅତି ସାନପୁଅ ଥିଲା, ରାଜପୁରୁଷମାନେ ତାହାଙ୍କୁ ସମ୍ମୁଖକୁ ଆଣି ବନ୍ଦୁଙ୍କ ହସ୍ତରେ ଖଣ୍ଡେ ତୀକ୍ଷ୍ଣ ଅସ୍ତ୍ର ଦେଇ ଆଜ୍ଞା ଦେଲେ ତୁମ୍ଭେ ଏହାକୁ ବଧ କର । ବନ୍ଦୁ ପୁଅଙ୍କୁ ବଧକରି ପାରିଲେ ନାହିଁ; ତହିଁରେ ନରପିଶାଚ ମୁସଲମାନମାନେ ସେହି ପିଲାଟିକୁ ବଧକରି ତାହାର ଅସ୍ଥି ଓ ରକ୍ତ ତାହାଙ୍କ ଦେହରେ ଲେପିଲେ । ପରେ ଲୌହଶଲାକା ଅଗ୍ନିରେ ସିନ୍ଦୁର ରଙ୍ଗ କରି ଚତୁର୍ଦ୍ଦିଗରୁ ବିନ୍ଧି ତାହାଙ୍କୁ ବଧକଲେ । ବନ୍ଦୁ ପରମେଶ୍ୱରଙ୍କ ଧନ୍ୟବାଦ କରୁ୨ ପ୍ରାଣତ୍ୟାଗ କଲେ । ପ୍ରାଣଭୟରେ ଧର୍ମତ୍ୟାଗ କଲେ ନାହିଁ ।

ରାଜମନ୍ତ୍ରୀ ଅବଦୁଲ୍ଲା ଅତି ଅଳସ ସୁଖାଭିଳାଷୀ ଥିଲେ । ଏଥିପାଇଁ ସମ୍ରାଟ୍ ସହିତ ତାହାଙ୍କର ମନୋମିଳନ ନ ଥିବାରୁ ସମ୍ରାଟ୍ ସର୍ବଦା ତାହାଙ୍କର ବଧୋପାୟ ଚିନ୍ତା କରୁଥିଲେ । ରାଜାଜୟସିଂହ ଓ ଆଉ କେତେ ଜଣ ପ୍ରଧାନ ପ୍ରତି ସ୍ୱାଭିଳାଷ ପୂର୍ଣ୍ଣ ପାଇଁ ଆଦେଶ ଦେଲେ; କିନ୍ତୁସେମାନେ ତାହା କରି ପାରିଲେ ନାହିଁ । ଏହି

ସମୟରେ ହୁସେନ ଦଶ ସହସ୍ର ମହାରାଷ୍ଟ୍ର ସେନା ସହିତ ଦିଲ୍ଲୀରେ ଉପସ୍ଥିତ ହୋଇ ସମ୍ରାଟଙ୍କୁ ବଧ କରିଲେ । ଫରୋଖ ୭ ବରଷ ରାଜତ୍ୱ କରିଥିଲେ ।

ଫରୋଖଙ୍କ ସଂହାର କରି ସୈୟଦମାନେ* ଆଉ ୨ ଜଣଙ୍କୁ ସମ୍ରାଟାସନରେ ବସାଇଲେ ମାତ୍ର ସେମାନେ ଅଳ୍ପକାଳ ମଧ୍ୟରେ ପଞ୍ଚତ୍ୱ ପ୍ରାପ୍ତ ହେବାରୁ ମହମ୍ମଦ-ସାହା ଉପାଧିଧାରୀ ୩ ୟ ଜଣଙ୍କୁ ରାଜ୍ୟାଭିଷିକ୍ତ କରାଇବାକୁ ହେଲା ; ସୈୟଦମାନଙ୍କର ଅସୀମ କ୍ଷମତା ଦେଖି ଅମାତ୍ୟମାନେ ଓ କାଳକ୍ରମେ ସମ୍ରାଟ୍ ମଧ୍ୟ ଅତ୍ୟନ୍ତ ଅସୂୟା ପରବଶ ହେଲେ । କିନ୍ତୁ ସେମାନେ କୌଣସି ଅନିଷ୍ଟ ସାଧନ କରି ପାରିଲେ ନାହିଁ ; ଅବଶେଷେ ସୟଦମାନଙ୍କ ପତନର ଏକ ଘଟନା ଆସି ଉପସ୍ଥିତ ହେଲା ।

ଅରଙ୍ଗଜେବଙ୍କର ଗାଜୀଉଦ୍ଦୀନ ନାମଧେୟ ଏକ ସଚିବର ପୁତ୍ର ନିଜାମୂଲକ‡ ଦାକ୍ଷିଣାତ୍ୟରେ ଶାସନ କର୍ତ୍ତୃତ୍ୱ ପଦରେ ନିଯୁକ୍ତ ଥିଲେ । ହୁସେନ ତାହାଙ୍କୁ ପଦଚ୍ୟୁତ କରନ୍ତି । ତହିଁରେ ନିଜାମୂଲକ ଅତ୍ୟନ୍ତ ଅସନ୍ତୁଷ୍ଟ ହୋଇ ବିଦ୍ରୋହୀ ହେଲେ ପୁଣି ୧୭୨୦ ସାଲରେ ଦାକ୍ଷିଣାତ୍ୟରେ ଉପସ୍ଥିତ ହୋଇ ପ୍ରଭୁତା ବିସ୍ତାର କରି ବସିଲେ । ସୈୟଦମାନେ ନିଜାମୂଲଙ୍କ ବିରୁଦ୍ଧରେ ସୈନ୍ୟ ପ୍ରେରଣ କଲେ ମାତ୍ର ସେମାନେ ପରାସ୍ତ ହୋଇ ଫେରି ଆସିଲେ । ଏହି ସମ୍ବାଦ ପାଇ ସୈୟଦମାନେ ଅତ୍ୟନ୍ତ ଭୀତ ହେଲେ ଏବଂ ନିଜାମୂଲଙ୍କ ଦମନ ପାଇଁ ସ୍ୱୟଂ ହୁସେନ ସସୈନ୍ୟ ଦାକ୍ଷିଣାତ୍ୟକୁ ଯାତ୍ରା କଲେ । ସମ୍ରାଟ୍ ରାଜଧାନୀରେ ରହିଲେ, ଆପଣାର ଅଥବା ଆପଣା ଭ୍ରାତା ଅବଦୁଲ୍ଲାର କୌଣସି ଅନିଷ୍ଟ ଘଟନା ହେବାର ସମ୍ଭାବନା ଭାବି ତାହାଙ୍କୁ ସଙ୍ଗରେ ଘେନି ଚଳିଲେ । ମାତ୍ର ଆଗରା ଛାଡ଼ି ଅଳ୍ପଦୂର ଯାଇଅଛନ୍ତି ଏମନ୍ତ ସମୟରେ ଜଣେ ଭୀଷଣଲୋକ ଅବେଦନପତ୍ର ଦେବାର ଛଳ କରି ହୁସେନଙ୍କ ପାଲକୀ ନିକଟରେ ଉପସ୍ଥିତ ହୋଇ ଏମନ୍ତ ଅଘାତ କଲା ଯେ ସେହି ଅଘାତରେ ହୁସେନ ଉପରତ ହେଲେ । ଏହି ହତ୍ୟାକାରୀ ଯେ ସମ୍ରାଟଙ୍କ ପ୍ରେରିତ ଲୋକ ଏକଥା ବୋଲିବା ବାହୁଲ୍ୟ ମାତ୍ର ।

ଅନନ୍ତର ସମ୍ରାଟ୍ ସେସ୍ଥାନରୁ ଦିଲ୍ଲୀକୁ ବାହୁଡିଲେ । ସମ୍ରାଟଙ୍କ ଉପସ୍ଥିତ ହେବା ପୂର୍ବରେ ହୁସେନଙ୍କ ମୃତ୍ୟୁ ସମ୍ବାଦ ଅବଦୁଲ୍ଲାର କର୍ଣ୍ଣଗୋଚର ହୋଇ ଥିଲା । ତେଣୁ ସେ ଆତ୍ମରକ୍ଷା ପାଇଁ ଏକଦଳ ସୈନ୍ୟ ସଂଗ୍ରହ କରିଥିଲେ । କିନ୍ତୁ ମହମ୍ମଦ ଶୀଘ୍ର ତାହାଙ୍କୁ ପରାସ୍ତ ଓ କାରାରୁଦ୍ଧ କଲେ । ୧୭୨୦ ।

---

* ସୈୟଦ କହିଲେ ହୁସେନଅଲ୍ଲୀ ଏବଂ ଅବଦୁଲ୍ଲାଙ୍କୁ ଅଥବା ତଦ୍‌ବଂଶଜମାନଙ୍କୁ ବୁଝାଇବ ।

‡ ଏହାଙ୍କର ଦୁଇ ନାମ ଅଟେ । ଆଜଫଜା ଓ ନିଜାମୂଲକ ।

ମହମ୍ମଦ ଏହିରୂପେ ନିଷ୍କଣ୍ଟକ ହୋଇ ରାଜ୍ୟଭାର ଗ୍ରହଣ କଲେ କିନ୍ତୁ ଶୀଘ୍ର ବ୍ୟସନାସକ୍ତ ଓ ଉପପତ୍ନୀପରାୟଣ ହୋଇ ପଡ଼ିଲେ । ମହମ୍ମଦ ଉଜୀର ପଦ ପ୍ରଦାନ ପାଇଁ ଦାକ୍ଷିଣାତ୍ୟରୁ ଆଜଫଜାଙ୍କୁ ଆହ୍ୱାନ କରିଥିଲେ । ଆଜଫଜା ରାଜଧାନୀରେ ଉପସ୍ଥିତ ହୋଇ ଦେଖିଲେ ଯେ, ସମ୍ରାଟ୍ ଥୋକାଏ କାପୁରୁଷ ପ୍ରିୟପାତ୍ରର ନିତାନ୍ତ ବଶୀଭୂତ ଅଟନ୍ତି; ଏପରି ପ୍ରଭୁଠାରେ କର୍ମ କରିବା ଅମଙ୍ଗଳର ମୂଳ ଜାଣି ଆଜଫଜା ଉଜୀରିର ପଦତ୍ୟାଗ ପୂର୍ବକ ଦାକ୍ଷିଣାତ୍ୟକୁ ଫେରିଗଲେ । ସାଦାଦଖାଁ ନାମକ ମହମ୍ମଦଙ୍କର ଜଣେ ଦକ୍ଷ ଓ ଅନୁରକ୍ତ ସଚିବ ଥିଲେ । ସେ ମଧ୍ୟ ସମ୍ରାଟଙ୍କୁ ଅସାର ଦେଖି ବିରକ୍ତ ହୋଇ ଅଯୋଧ୍ୟାକୁ ଚାଲିଗଲେ । କାଳକ୍ରମେ ଉଲ୍ଲିଖିତ ଦୁଇ ସଚିବଙ୍କଠାରୁ ଦୁଇ ସ୍ୱାଧୀନ ରାଜବଂଶ ଉତ୍ପନ୍ନ ହୋଇଥିଲେ । ଆଜଫଜା ଉତ୍ତରାଧିକାରମାନେ ନିଜାମ ଏହି ନାମ ଧାରଣପୂର୍ବକ ଆଜିଯାଏ ହାଇଦ୍ରାବାଦରେ ରାଜତ୍ୱ କରୁଅଛନ୍ତି । ସାଦାଦଖାଁ ଉତ୍ତରାଧିକାରମାନେ ବହୁକାଳରୁ ଅଯୋଧ୍ୟାରେ ରାଜପଣ କରି ଆସୁଥିଲେ; ଅଳ୍ପଦିନ ହେଲା ସେହି ବଂଶର ଶେଷ ରାଜା ଓୟାଜିଦ ଅଲିକୁ ଇଂରେଜବାହାଦୁର ପଦଚ୍ୟୁତ କରି ଅଛନ୍ତି ।

ଆଜଫଜା ମହମ୍ମଦଙ୍କ ସଭାରୁ ବାହାରି ହାଇଦ୍ରାବାଦରେ ବାସସ୍ଥାନ ନିରୂପଣ କଲେ । ସେସ୍ଥାନରେ ମହାରାଷ୍ଟ୍ରୀ ଛଡ଼ା ତାହାଙ୍କର ଆଉ କେହି ଶତ୍ରୁ ଥିଲେ ନାହିଁ । ରାଜାସାହାଙ୍କର ପେଶୋୱା ଅର୍ଥାତ୍ ପ୍ରାଡ୍‌ବିବାକ ବାଲାଜୀ ବିଶ୍ୱନାଥ ମହାରାଷ୍ଟ୍ରୀମାନଙ୍କର ବଳୋଦୟର ପ୍ରଧାନ ହେତୁ ଥିଲେ । ମହାରାଷ୍ଟ୍ରୀମାନଙ୍କ ମଧ୍ୟରେ ପେଶୋୱା ପଦ ଯେପରି ପ୍ରଧାନ, ବୃଜପ୍ରତିନିଧି ପଦ ପ୍ରାୟ ସେହିରୂପ ଅଟେ । ପ୍ରଥମୋକ୍ତ ପଦ ପୁରୁଷାନୁକ୍ରମିକ ବାଲାଜୀ ବଂଶରେ ଥିଲା ।

୧୭୨୦ ସାଲରେ ବାଲାଜୀ ପରଲୋକ ଗମନ କରିବାରୁ ତାହାଙ୍କ ପୁତ୍ର ବାଜୀରାଓ ପେଶୋୱା ପଦରେ ଅଭିଷିକ୍ତ ହେଲେ । ଶିବଜୀଙ୍କୁ ଛାଡ଼ି ବାଜୀ ତୁଲ୍ୟ ଦକ୍ଷ ପୁରୁଷ ମହାରାଷ୍ଟ୍ରୀୟମାନଙ୍କ ମଧ୍ୟରେ ଆଉ ଦେଖାଯାଏ ନାହିଁ । ସେ ପେଶୋୱାପଦରେ ଅଧିରୋହଣ କରି ଦିଲ୍ଲୀଶ୍ୱରଙ୍କୁ ଆକ୍ରମଣ କରିବାପାଇଁ ଆପଣା ପ୍ରଭୁଙ୍କୁ ପରାମର୍ଶ ଦେଲେ । ସେ କହିଲେ "ଆମ୍ଭେମାନେ ଆଗେ ସେହି ଶୁଷ୍କ ତରୁକୁ ଛେଦନ କରୁଁ, ପରେ ତାହାର ଶାଖା ପ୍ରଶାଖା ସକଳ ଆପେ ଆପେ ପଡ଼ିବ ।" ସାହୁ ସେହି ପରାମର୍ଶରେ ସମ୍ମତ ହେଲେ । ତହୁଁ ବାଜୀରାଓ ମାଲବଦେଶ ଲୁଣ୍ଠନ କରି ଗୁଜରାଟର ଶାସନକର୍ତ୍ତାଠାରୁ ଚୌଥ ଆଦାୟ କରି ବସିଲେ । ଏ ଉତ୍ତାରେ ଆଜଫଜା ଦାକ୍ଷିଣାତ୍ୟରେ ଆପଣାକୁ ବିପନ୍ନ ଜ୍ଞାନ କରି ସାହୁଙ୍କୁ ଯେ ଚୌଥ ଏବଂ ସରଦେଶମୁଖୀ ※ ଦେବାକୁ ହେଉଥିଲା, ତହିଁରୁ ମୁକ୍ତି

※ ଚୌଥ ବାଦେ ଅବଶିଷ୍ଟ ରାଜସ୍ୱର ଦଶମାଂଶ ।

ଲାଭ କରିବାର ଉପାୟ ଅନ୍ୱେଷଣ କରିବାକୁ ଲାଗିଲେ । ପ୍ରଥମେ ସେ ପ୍ରସ୍ତାବ କଲେ ସାହୁ ଓ ଶମ୍ଭୁ‡ ଏହି ଦୁଇଜଣ ମହାରାଷ୍ଟ୍ର ଅଧୀଶ୍ୱର ଅଟନ୍ତି । ଅତଏବ ଚୌଥ କାହାର ନ୍ୟାଯ୍ୟାନୁଗତ ପ୍ରାପ୍ୟ ତାହା ସ୍ଥିର ନ ହେଲେ କେହି ପାଇ ପାରିବେ ନାହିଁ ।

ଏତାଦୃଶ ଶ୍ରବଣକରି ସାହୁ ଏବଂ ତାହାଙ୍କ ପେଶୋୟା ଅତି କ୍ରୋଧାନ୍ୱିତ ହେଲେ ଏବଂ ବୃଷ୍ଟିକାଳ ଶେଷହେବା ମାତ୍ର ବାଜି ଅଜଫଜାର ଅଧିକାର ଆକ୍ରମଣ ଏବ ବୁର୍ହାନପୁର ଅବରୋଧ କଲେ । ତହିଁ ଆଜଫଜା ପ୍ରକାଶ୍ୟରୂପରେ ଶମ୍ଭୁପକ୍ଷ ଅବଲମ୍ବନ କଲେ; ମାତ୍ର ବାଜିଦ୍ୱାରା ଏମନ୍ତ ଉତ୍ତ୍ୟକ୍ତ ହେଲେ ଯେ ଶୀଘ୍ର ତାହାଙ୍କୁ ଶମ୍ଭୁପକ୍ଷ ତ୍ୟାଗ କରିବାକୁ ହେଲା ।

ଅନନ୍ତର ବାଜିରାଓ ମାଳବଦେଶକୁ ଯୁଦ୍ଧଯାତ୍ରା କରନ୍ତି । ଏହି ସମୟରେ ଏକଦା ରାଜପ୍ରତିନିଧି ଅତର୍କିତରୂପେ ଶମ୍ଭୁଙ୍କୁ ଆକ୍ରମଣକରି ପରାସ୍ତ କଲେ । ତେଣୁ ଶମ୍ଭୁଙ୍କୁ ଅଗତ୍ୟା ସନ୍ଧି ସ୍ଥାପନ କରିବାକୁ ହେଲା । ସେହି ସନ୍ଧି ପତ୍ରରେ ଏହି କଥା ଲିଖିତ ଥିଲା ଯେ "ଶମ୍ଭୁ କେବଳ କୋଲ୍ହାପୁର ସମୀପବର୍ତ୍ତୀ ଅତି ସଂକୀର୍ଣ୍ଣ ଭୂଭାଗରେ ଅଧିସ୍ୱାମୀ ହୋଇ ରହିବେ । କିନ୍ତୁ ସାହୁଙ୍କପରି ସକଳୋପାଧି ଧାରଣ ଏବଂ ଅନ୍ୟ ରାଜସମ୍ମାନ ଭୋଗ କରିବେ । ସାହୁ ସମସ୍ତ ମହାରାଷ୍ଟ୍ରରେ ଅଧିପତି ହେବେ ।"

ଆଜଫଜାଙ୍କ ଏକ ଉଦ୍ୟମ ବିଫଳ ହେବାରୁ ସାହୁଙ୍କୁ ବିରକ୍ତ କରିବାର ଆଉ ଏକ ବିବାଦ ବାଗୁରା ବିସ୍ତାର କଲେ । ମହାରାଷ୍ଟ୍ର ରାଜ୍ୟରେ ପେଶୋୟା ଅର୍ଥାତ୍ ରାଜ ପ୍ରତିନିଧି ପଦ ଯେପରି ପୁରୁଷାନୁକ୍ରମିକ ପ୍ରଧାନ ସେନାପତି ପଦ ମଧ୍ୟ ସେହି ପରି ପୁରୁଷାନୁକ୍ରମିକ ଅଟେ । ସେହି ସମୟରେ ପ୍ରଧାନ ସେନାପତି ଦବଶ୍ରୀ ଅତିଦକ୍ଷ ଥିଲେ । ତାହାଙ୍କ ବାହୁବଳରୁ ମରହଟ୍ଟାମାନେ ଗୁଜରାଟ ଦେଶରେ ଆଧିପତ୍ୟ ସ୍ଥାପନ କରନ୍ତି । ଅଧୁନା ଦବଶ୍ରୀ ସମସ୍ତ ବିଷୟରେ ବାଜୀଙ୍କ ପ୍ରଭୁତା ଦେଖି ଅତ୍ୟନ୍ତ ଅସନ୍ତୁଷ୍ଟ ହୋଇଥିଲେ । ଆଜଫଜା ତାହାଙ୍କ ସହିତ ଷଡ଼ଯନ୍ତ୍ର କରନ୍ତି । ଦବଶ୍ରୀ ଆଜଫଜାଠାରୁ ବହୁ ସାହାଯ୍ୟ ଅଙ୍ଗୀକାର ପାଇ ୩୫,୦୦୦ ସୈନ୍ୟ ସଂଗ୍ରହକରି ବାଜୀ ବିରୁଦ୍ଧରେ ଯୁଦ୍ଧଯାତ୍ରା କଲେ ।

ବାଜୀ ଓ ଦବଶ୍ରୀର ଯୁଦ୍ଧ ଘଟିଲା, ଏହି ଯୁଦ୍ଧରେ ବାଜୀ ଜୟୀ ଓ ଦବଶ୍ରୀ ଭୂତଳଶାୟୀ ହେଲେ । ଦବଶ୍ରୀର ଗୋଟିଏ ଶିଶୁପୁତ୍ର ଥିଲା । ଯୁଦ୍ଧ ଉତ୍ତାରେ ବାଜୀ ସେହି ଶିଶୁ ଜନନୀ ସହିତ ଏହି ନିୟମ କଲେ ଯେ ସେ ବରଷକୁ ବରଷ ମହାରାଷ୍ଟ୍ର

‡ ୧୭୧୨ ସାଲେ ଦ୍ୱିତୀୟ ଶିବଜୀ ପରଲୋକ ଗମନ କଲେ ତାହାଙ୍କର ବୈମାତ୍ରେୟ ଭାଇ ଶମ୍ଭୁ ତତ୍ପଦରେ ଅଭିଷିକ୍ତ ହୁଅନ୍ତି ।

ପତିଙ୍କୁ ଗୁର୍ଜରର ଅର୍ଦ୍ଧଭାଗ ରାଜସ୍ୱ ପ୍ରଦାନ ଏବଂ ଅପରାର୍ଦ୍ଧ ସ୍ୱୟଂ ଭୋଗ କରିବେ ।
ଶିଶୁ ପକ୍ଷ ହୋଇ ପିଲଜି ଗୁଇକୋୟାଡ଼ ନାମକ ଅମାତ୍ୟ ପ୍ରଧାନ ସେନାପତି କାର୍ଯ୍ୟ
ନିର୍ବାହ କରିବାରେ ରହିଲେ । ୧୭୩୧ ।

ବଦଶିର ମୃତ୍ୟୁର କିଞ୍ଚିତ୍ ପୂର୍ବରେ ଉଦଜିପୋୟାର ମହ୍ଲାରରାଓ ହୁଲକାର ଏବଂ ରଣଜୀ ସିନ୍ଧିୟା ନାମକ ଜ ୨ ଣ ଲୋକଙ୍କୁ ବାଜୀରାଓ ଉନ୍ନତ ପଦରେ ଅଭିଷିକ୍ତ କରାଇ ଥିଲେ । ଅଲ୍ପକାଳ ଉତ୍ତାରେ ଉଦଜିପୋୟାର ଧାରାବାରର ଆଧିପତ୍ୟ ପ୍ରାପ୍ତ ହୁଅନ୍ତି । ପ୍ରଥମେ ମହ୍ଲାରରାଓ ହୁଲକାର ଏବଂ ରଣଜୀ ସିନ୍ଧିୟା ଅତି ସାମାନ୍ୟ ବସ୍ଥାର ଲୋକ ଥିଲେ । ସେ ଯାହା ହେଉ ଏହି ଦୁଇଲୋକ ପ୍ରସିଦ୍ଧ ସିନ୍ଧିୟା ଓ ହୁଲକାର ଦୁଇ ରାଜବଂଶର ଆଦିପୁରୁଷ ଅଟନ୍ତି ।

ବଦଶିର ଏହିରୂପ ପରିଣାମ ଦେଖି ଆଜଫଜା ଯୁଦ୍ଧରେ ପ୍ରବୃତ୍ତ ନ ହୋଇ ବାଜୀରାଓ ସହିତ ସନ୍ଧି ସ୍ଥାପନ ପାଇଁ ପ୍ରାର୍ଥୀ ହେଲେ । ବାଜୀ ମଧ୍ୟ ତହିଁରେ ଦ୍ୱିରୁକ୍ତି ନ କରି ସମ୍ମତ ହୋଇଥିଲେ ।

ଅନନ୍ତର ୧୭୩୨ ସାଲରେ ବୁନ୍ଦେଲଖଣ୍ଡର ଜଣେ ରାଜା ମାଳବ ଦେଶର ତଦାନୀନ୍ତନ ଶାସନକର୍ତ୍ତା ମହମ୍ମଦଖାଁଦ୍ୱାରା ଉତ୍ପୀଡ଼ିତ ହୋଇ ବାଜୀରାଓ ଶରଣାଗତ ହେଲେ । ତଦନୁସାରେ ବାଜୀରାଓ ଉପସ୍ଥିତ ହୋଇ ମହମ୍ମଦଖାଁକୁ ଏମନ୍ତ ବ୍ୟତିବ୍ୟସ୍ତ କରାଇଲେ ଯେ, ଅବଶେଷେ ତାହାଙ୍କୁ ମାଳବ ପରିତ୍ୟାଗ କରି ପଳାଇବାକୁ ହେଲା । ବୁନ୍ଦେଲଖଣ୍ଡର ରାଜା କୃତଜ୍ଞତାର ଚିହ୍ନ ସ୍ୱରୂପ ଝାନ୍‌ସି ପ୍ରଦେଶ ବାଜୀଙ୍କୁ ପ୍ରଦାନ କଲେ ଏବଂ ମୃତ୍ୟୁ ସମୟରେ ତାହାଙ୍କୁ ଉତ୍ତରାଧିକାରୀ କରି ଯିବାରୁ ସମସ୍ତ ବୁନ୍ଦେଲଖଣ୍ଡ ମହାରାଷ୍ଟ୍ର ରାଜ୍ୟଭୁକ୍ତ ହେଲା ।

ମହମ୍ମଦଖାଁ ପଳାୟନ କରିବାରୁ ଜୟପୁରର ରାଜା ଜୟସିଂହ ମାଳବ ଶାସନ କର୍ତ୍ତୃତ୍ୱ ପଦରେ ନିଯୁକ୍ତ ହେଲେ । ଜୟସିଂହ ବିଜ୍ଞାନ ଶାସ୍ତ୍ର ଅନୁଶୀଳନ ପାଇଁ ଅତି ପ୍ରସିଦ୍ଧ ଥିଲେ ସତ୍ୟ; ମାତ୍ର ରଣଚାତୁର୍ଯ୍ୟରେ ସେପରି ଦକ୍ଷ ନ ଥିଲେ । ସେ ପେଶୋୟାକୁ ଦମନ କରିବା ଅସାଧ୍ୟ ମଣି ମାଳବ ଦେଶ ତାହାଙ୍କ ହସ୍ତରେ ଅର୍ପଣ କଲେ । ଏଥିରେ ଦିଲ୍ଲୀପତି କୌଣସି ଆପତ୍ତି କଲେ ନାହିଁ । ସମ୍ରାଟ୍ ମନରେ କରିଥିଲେ ମାଳବଦେଶ ପାଇ ବାଜୀ ତୁନି ହୋଇ ରହିବେ, ଆଉ କୌଣସି ଉତ୍ପାତ କରିବେ ନାହିଁ । ମାଂସ ବାଜୀ ତାହା ନ କରିବାରୁ ସମ୍ରାଟଙ୍କୁ ସନ୍ଧି ପ୍ରାର୍ଥନା କରିବାକୁ ହେଲା । ଏଣେ ବାଜୀ ସମ୍ରାଟଙ୍କୁ ପୁନଃପୁନଃ ସନ୍ଧି ପ୍ରାର୍ଥନା କରିବାକୁ ଦେଖି ପ୍ରସ୍ତାବ କଲେ "ଯଦି ସମସ୍ତ ମାଳବଦେଶ ଓ ଚର୍ମଣ୍ୱତୀ ନଦୀର ଦକ୍ଷିଣବର୍ତ୍ତୀ ତାବତ୍ ଭୂଭାଗ ଏବଂ ମଥୁରା, ପ୍ରୟାଗ ଏବଂ ବାରାଣସୀ ଏହି ତିନନଗର ଜାୟଗୀର ସ୍ୱରୂପ ପ୍ରାପ୍ତ ହୋଇଁ ତେବେ ସନ୍ଧି କରି ପାରୁଁ" କିନ୍ତୁ ସମ୍ରାଟ୍ ଏପରି ଅସଙ୍ଗତ ପ୍ରସ୍ତାବରେ ଅସମ୍ମତ ହେବାରୁ ସନ୍ଧି ପ୍ରସଙ୍ଗ ଏକାବେଳକେ ଅନ୍ତର୍ହିତ ହେଲା ।

ଦିନକୁ ଦିନ ଦିଲ୍ଲୀପତିଙ୍କ କ୍ଷମତାର ହ୍ରାସ ଓ ମହାରାଷ୍ଟ୍ରମାନଙ୍କ ଉପଚୟ ଦେଖି ଅଛଫଜା ଅତି ଶଙ୍କିତ ହେଲେ । ଶଙ୍କିତ ହେବାର କାରଣ ମଧ୍ୟ ଥିଲା ମହାରାଷ୍ଟ୍ରମାନେ ପ୍ରବଳ ହେଲେ, ତାହାଙ୍କର ସର୍ବନାଶ ଘଟିବା କିଛି ଆଶ୍ଚର୍ଯ୍ୟ ନ ଥିଲା । ଏଥିକୁ ଅଛଫଜା ଦିଲ୍ଲୀପତି ସହିତ ମିଳିତ ହୋଇ ମହାରାଷ୍ଟ୍ରମାନଙ୍କୁ ଦମନ କରିବାର ଉପାୟ ଅନ୍ୱେଷଣରେ ରହିଲେ । ଦିଲ୍ଲୀଶ୍ୱର ମଧ୍ୟ ଅଛଫଙ୍କୁ ଆଉ ବିଦ୍ରୋହୀପ୍ରଜା ବୋଲି ଜ୍ଞାନ ନ କରି ସୁହୃଦ ଓ ସ୍ୱାଧୀନ ରାଜା ବୋଲି ସମ୍ଭାଷଣ କଲେ ଏବଂ ମରହଟ୍ଟାମାନଙ୍କ ଦମନ ପାଇ ରାଜଧାନୀକୁ ଆହ୍ୱାନ କଲେ । ତହୁଁ ଅଛଫ ଦିଲ୍ଲୀରେ ଉପସ୍ଥିତ ହୋଇ ସେନାପତିପଦ ଗ୍ରହଣପୂର୍ବକ ମରହଟ୍ଟାମାନଙ୍କୁ ଦମନ କରିବାପାଇଁ ପ୍ରତିଜ୍ଞା କଲେ । ତେତେବେଳେ ଦିଲ୍ଲୀଶ୍ୱର ଏମନ୍ତ ହୀନଦଶାରେ ପଡିଥିଲେ ଯେ, ଚୌତିରିଶହଜାର ମାତ୍ର ସୈନ୍ୟ ସଂଗ୍ରହ ନିମିତ୍ତ ଅନେକ ଯତ୍ନ କରିବାକୁ ହୋଇଥିଲା ।

କିଛିଦିନ ଉତ୍ତାରେ ବାଜୀରାଓ ୮୦,୦୦୦ ଅଶ୍ୱାରୋହୀ ସୈନ୍ୟ ସହିତ ନର୍ମଦା ଉତ୍ତରକୂଳରେ ଉପସ୍ଥିତ ହେଲେ । ଅଛଫଜା ତାହାଙ୍କ ବିରୁଦ୍ଧରେ ଯୁଦ୍ଧଯାତ୍ରା କଲେ । ମରହଟ୍ଟାମାନେ କେବେ ସମ୍ମୁଖଯୁଦ୍ଧରେ ଅସାମାନ୍ୟ ବୀରତା ପ୍ରକାଶ କରନ୍ତି ନାହିଁ । ସେମାନେ ଯେ ପ୍ରଣାଳୀରେ ଯୁଦ୍ଧ କରନ୍ତି, ତହିଁରେ ଯୁଦ୍ଧ ପ୍ରାରମ୍ଭରେ ସମସ୍ତବଳ ପ୍ରକାଶ କରି ସେମାନଙ୍କୁ ଆକ୍ରମଣ କଲେ ଅଛଫଜା ଅବଧାରିତ ଜୟଲାଭ କରନ୍ତେ ସନ୍ଦେହ ନାହିଁ । କିନ୍ତୁ ଅଛଫଜା ତାହା ନ କରି ଭୂପାଲର ସମୀପବର୍ତ୍ତୀ ଗୋଟିଏ ଦୁର୍ଗମ୍ୟ ଦୁର୍ଗ ଆକ୍ରମଣ କଲେ । ଏଣେ ବାଜୀରାଓ ତାହାର ଚତୁଃପାର୍ଶ୍ୱବର୍ତ୍ତୀ ଭୂଭାଗରେ ଏମନ୍ତ ଉତ୍ପାତ କଲେ ଯେ ତାହା ଅଛଫଜା କୌଣସିରୂପେ ନିବାରଣ କରି ପାରିଲେ ନାହିଁ । ତହୁଁ ଅଗତ୍ୟା ଯେଗୋଯ୍ୟା ସହିତ ଅଛଫଜାଙ୍କୁ ସନ୍ଧି ସ୍ଥାପନ କରିବାକୁ ହେଲା । ୫୦ ଲକ୍ଷ ଟଙ୍କା ଓ ନର୍ମଦ୍ୱୀପନଦୀର ସମସ୍ତ ଦକ୍ଷିଣସ୍ଥ ଭୂଭାଗ ମହାରାଷ୍ଟ୍ରମାନେ ପାଇବେ ବୋଲି ସନ୍ଧିରେ ନିୟମ ହେଲା ୧୭୩୮, କିନ୍ତୁ ଏହି ସନ୍ଧିପତ୍ର ସମ୍ରାଟଙ୍କ ସ୍ୱାକ୍ଷର ହେବା ପୂର୍ବେ ଭାରତବର୍ଷରେ ଏକ ଅସାମାନ୍ୟ ଶତ୍ରୁ ଉପସ୍ଥିତ ହୋଇ ଅକଥନୀୟ ଅତ୍ୟାଚାର ଆରମ୍ଭ କଲେ ।

---

## ବିଂଶ ଅଧ୍ୟାୟ ।

### ନାଦିରସାହ ଏବଂ ମୋଗଲସାମ୍ରାଜ୍ୟର ବିନାଶ ।

ସଫାକୀବଂଶୀୟ ରାଜାମାନେ ପାରସ୍ୟ ରାଜସିଂହାସନରେ ଅଧୀନ ଥିଲେ । କାନ୍ଦାହାର ନଗରନିବାସୀ ଖିଲଜୀ ନାମଧାରୀ ପଠାଣମାନେ ସେମାନଙ୍କ ବଂଶ ବିନାଶ କରି ପାରସ୍ୟ ଅଧିକାର କଲେ । ଖିଲଜୀମାନେ ଯେତେବେଳେ ପାରସ୍ୟ

ଅକ୍ରମଣ କରନ୍ତି ତେତେବେଳେ ତାମାସ୍ପ ନାମକ ସଫାଭି ବଂଶୀୟ ଗୋଟିଏ ପିଲ୍ଲା କାସ୍ପିୟାନହ୍ରଦ କୂଳରେ କାନ୍ଧାର ନାମକ ଏକନଗରର ଶରଣାଗତ ହୋଇ ଥିଲେ । ସେହି ସମୟରେ ଖୋରାସାନ ଦେଶବାସୀ ଜଣେ ବୀରପୁରୁଷ ତାମାସ୍ପ ସହିତ ମିଳିତ ହୁଅନ୍ତି । ସେହି ବୀରପୁରୁଷଙ୍କ ନାମ ନାଦରସାହ । ନାଦର ଅତି ହୀନ ବଂଶୋ- ଦ୍ଭବ, ତାହାଙ୍କ ବାପ ଜଣେ ମେଷପାଳକ ଥିଲେ । ତାମାସ୍ପ ନାଦରସାହଙ୍କ ସହାୟ- ରେ ଖିଲ୍‌ଜୀମାନଙ୍କୁ ଦୂର କରି ଦେଇ ପାରସ୍ୟ ପୁନରଧିକାର କଲେ କିନ୍ତୁ ତା- ହାଙ୍କୁ ଦୀର୍ଘକାଳ ରାଜପଣ ଭୋଗ କରିବାକୁ ହେଲା ନାହିଁ । ନାଦର ତାମାସ୍ପଙ୍କୁ ରାଜ୍ୟଚ୍ୟୁତ କରି ଆପେ ରାଜମୁକୁଟ ଧାରଣ କଲେ ।

ଖିଲ୍‌ଜୀ ପଠାଣମାନେ ପାରସ୍ୟ ଦେଶର ଅତ୍ୟନ୍ତ ଦୁରବସ୍ଥା କରି ଥିଲେ । ନାଦର ତାହାର ପ୍ରତିଫଳ ଦେବାପାଇଁ ଓ କାନ୍ଦାହାର ସେମାନଙ୍କ ହସ୍ତରୁ ନେଇ ପାରସ୍ୟ ଦେଶରେ ପୁନର୍ମିଳନ କରିବା ପାଇଁ ପ୍ରତିଜ୍ଞା କରି ଉକ୍ତ ନଗର ବେଷ୍ଟନ କଲେ । ଖିଲ୍‌ଜୀମାନେ ବହୁଦିନ ପର୍ଯ୍ୟନ୍ତ ଶତ୍ରୁଜାଲରେ ବେଷ୍ଟିତ ହୋଇ ଅବ- ଶେଷେ ପରାଭବ ସ୍ୱୀକାର କଲେ । ବିଷୟଲାଳସାର ଏକ ଚମତ୍କାର ମୋହିନୀଶକ୍ତି ଏହି ଯେ ତାହାକୁ ଚରିତାର୍ଥ କରିବାପାଇଁ ଯେତେ ଚେଷ୍ଟା ହୁଏଇ ଆହୂତି ପ୍ରାପ୍ତ ହୁତାଶନବତ୍ ସେତେ ପ୍ରଜ୍ୱଳିତ ହେଉଥାଏ । ଇତିହାସ ମଧ୍ୟରେ ସେବିଷୟର ଉଦାହରଣ ଦେବା ପ୍ରୟୋଜନାଭାବ । କାରଣ ଅନ୍ୟ ଗ୍ରନ୍ଥପାଇଁ ଇତିହାସରୁ ସେ ବିଷୟର ଶତ ଶତ ଉଦାହରଣ ସଂଗୃହୀତ ହୋଇପାରେ । ସେ ଯାହା ହେଉ ନାଦର ଖିଲ୍‌ଜୀମାନଙ୍କ ରାଜ୍ୟ ଅଧିକାର କରି ମୋଗଲରାଜ୍ୟ ଭାରତବର୍ଷ ହସ୍ତଗତ କରିବାକୁ ମନସ୍ଥ କଲେ । ସେତେବେଳେ ମୋଗଲ ସାମ୍ରାଜ୍ୟ ମଧ୍ୟ ପରାକ୍ରମୀ ନାଦରଙ୍କ ପକ୍ଷରେ ଦୁଷ୍ପ୍ରାପ୍ୟ ଥିଲା ନାହିଁ କାରଣ ସେତେବେଳେ ଦିଲ୍ଲୀଶ୍ୱର ଅତ୍ୟନ୍ତ ନିସ୍ତେଜ ହୋଇ ପଡିଥିଲେ । ନାଦର ପ୍ରଥମେ ଦିଲ୍ଲୀଶ୍ୱରଙ୍କୁ କହି ପଠାଇଲେ " ତୁମ୍ଭେ ଆମ୍ଭର ଅଧୀନତା ସ୍ୱୀକାର କର, ନ ହେଲେ ଆମ୍ଭେ ତୁମ୍ଭର ରାଜ୍ୟ ବଳ ପୂର୍ବକ ଗ୍ରହଣ କରିବୁଁ " । ସମ୍ରାଟ୍ ତହିଁରେ କୌଣସି ଉତ୍ତର ନ ଦେବାରୁ ନାଦର ଦିଲ୍ଲୀ ଅଭିମୁଖେ ଅଗ୍ରସର ହେଲେ । ମାର୍ଗରେ ଦିଲ୍ଲୀଶ୍ୱରଙ୍କ ସେନା ସହିତ ଭେଟ ହେଲା, ମାତ୍ର ପ୍ରବଳନଦୀବେଗରେ ବାଲିବନ୍ଧପରି ସମ୍ରାଟଙ୍କ ସେନାମାନେ ନାଦରଙ୍କ ଗତିରୋଧ କରିପାରିଲେ ନାହିଁ । ନାଦର କ୍ରମଶଃ ଆସି ଦିଲ୍ଲୀରେ ଉପସ୍ଥିତ ହେଲେ । ପାରସିକ ସେନାମାନେ ଅତ୍ୟନ୍ତ ସୁଶିକ୍ଷିତ । ନଗରରେ ଉପସ୍ଥିତ ହୋଇ କୌଣସି ଅତ୍ୟାଚାର କଲେ ନାହିଁ ।

ତୃତୀୟ ଦିବସରେ ଦୁର୍ଭାଗ୍ୟପ୍ରଯୁକ୍ତ ଏକ ଜନରବ ଉଠିଲା ଯେ, ନାଦରସାହ ପ୍ରାଣତ୍ୟାଗ କରିଅଛନ୍ତି । ତହିଁରେ ମୋଗଲମାନେ ଉତ୍ତେଜିତ ହୋଇ ୭୦୦ ଜଣ

ପାରସୀ ସେନାକୁ ବଧ କଲେ । ନାଦର ଏହି ଗୋଳମାଳ ଶାନ୍ତ କରିବାକୁ ଅନେକ ଯତ୍ନ କଲେ ମାତ୍ର କାହିଁରେ କୃତକାର୍ଯ୍ୟ ହେଲେ ନାହିଁ । ବିଶେଷରେ ନାଦର ଅଶ୍ୱାରୋହଣ କରି ତନ୍ନିବାରଣ ପାଇଁ ଯେତେବେଳେ ନଗରକୁ ବାହାରିଲେ ସେତେବେଳେ ଚତୁର୍ଦ୍ଦିଗରୁ ତାହାଙ୍କ ଉପରେ ଶରବୃଷ୍ଟି ହେଲା । ତହିଁ ନାଦର ଅତ୍ୟନ୍ତ କ୍ରୋଧାନ୍ଧ ହୋଇ ନଗରସ୍ଥ ଆବାଳ ବନିତା ବୃଦ୍ଧ ସମସ୍ତଙ୍କୁ ବଧ କରିବା ପାଇଁ ଆଦେଶ ଦେଲେ, ପାରସିକ ସୈନ୍ୟମାନେ ଯାହାକୁ ସମ୍ମୁଖରେ ଦେଖିଲେ ତାହାକୁ ବଧ କଲେ । ନରହତ୍ୟା ବଳାତ୍କାର ଲୁଣ୍ଠନ ପ୍ରଭୃତି ଭୀଷଣ ଦୈବଦୁର୍ଘଟନା ପ୍ରଭୃତି ଯେ ଅସୁର ତୁଲ୍ୟ ଯୋଦ୍ଧାମାନଙ୍କଦ୍ୱାରା ଯାହା କିଛି ସାଧିତ ହୋଇପାରେ ତାହାର ତ୍ରୁଟି ହେଲା ନାହିଁ । କଥିତ ଅଛି ସେଦିନ ଦିଲ୍ଲୀରେ ଏକଲକ୍ଷ ଲୋକ ମରି ପଡ଼ିଥିଲେ ।

ନାଦର ସ୍ୱରାଜ୍ୟ ସ୍ଥାପନ କରିବାପାଇଁ ଭାରତବର୍ଷକୁ ଆସିଥିଲେ ନାହିଁ । ଅର୍ଥସଂଗ୍ରହପାଇଁ ଆସିଥିଲେ । ସୁତରାଂ ସେ ରାଜତ୍ୱ ପ୍ରାପ୍ତି ବିଷୟରେ କୌଣସି ଚେଷ୍ଟା ନ କରି ରାଜକୋଷ ଲୁଣ୍ଠନପୂର୍ବକ ଭାରତବର୍ଷରୁ ନିଷ୍କ୍ରାନ୍ତ ହେଲେ । କଥିତ ଅଛି ନାଦର ଅନ୍ୟୂନ ତିରିଶକୋଟି ଟଙ୍କା ପାଇଥିଲେ ।

ଏହିସମୟରେ ମୋଗଲ ସାମ୍ରାଜ୍ୟରେ ଯେପରି ଦୁରବସ୍ଥା ଘଟିଥିଲା ପାଠକମାନେ ତାହା ସହଜରେ ଅନୁଭବ କରିପାରିବେ । ଏହିସମୟରେ ମରହଟ୍ଟାମାନେ ଆକ୍ରମଣ କରିଥିଲେ ଦିଲ୍ଲୀ ସିଂହାସନ ଅବଧାରିତ ସେମାନେ ପ୍ରାପ୍ତ ହୋଇ ଥାଆନ୍ତେ ସନ୍ଦେହ ନାହିଁ । ମାତ୍ର ବାଜୀରାଓ ତାହା ନ କରି ଦକ୍ଷିଣରାଜ୍ୟରେ ଆଜଫଜା ପୁତ୍ର ନାସରଜଙ୍ଗ ସହିତ ଯୁଦ୍ଧ କରିବାକୁ ଗଲେ । ଉଭୟପକ୍ଷର ଘୋର ଯୁଦ୍ଧ ହେଲା । ନାସର ଏପରି ଯୁଦ୍ଧ କରିବେ ବୋଲି ବାଜୀରାଓ ଭାବିଥିଲେ ନାହିଁ । ସୁତରାଂ ସେ ଆଉ ଯୁଦ୍ଧରେ ପ୍ରବୃତ୍ତ ନ ହୋଇ ନାସର ସହିତ ସନ୍ଧି ସ୍ଥାପନ ପୂର୍ବକ ମୋଗଲ ସାମ୍ରାଜ୍ୟାଭିମୁଖେ ଯାତ୍ରା କଲେ । କିନ୍ତୁ ନର୍ମଦା ପାର ନ ହେଉଣୁ କାଳ ଗ୍ରାସରେ ପତିତ ହେଲେ ।

ବାଜୀରାଓ ମୃତ୍ୟୁ ଉତ୍ତାରେ ତତ୍ପୁତ୍ର ବାଲାଜୀରାଓ ତତ୍ପଦରେ ଅରୂଢ଼ ହେଲେ । ବାଲାଜୀ ଅତି କ୍ଷମତାବାନ୍ ଲୋକ ଥିଲେ, କିନ୍ତୁ ତାହାଙ୍କର ପ୍ରବଳଶତ୍ରୁ ମଧ୍ୟ ଅଭାବ ନ ଥିଲା । ଶତ୍ରୁମାନଙ୍କ ମଧ୍ୟରେ ରଘୁଜୀଭୋସଲା ଅତି ଭୟଙ୍କର ଥିଲେ । ସେ ବେରାର ଓ ତତ୍ପୂର୍ବ ଜଙ୍ଗଲ ରାଜ୍ୟରେ ଚୌଥ ସଂଗ୍ରହ କରୁଥିଲେ ତହିଁରେ ସେ ପ୍ରଦେଶରେ ତାହାଙ୍କର ରାଜାପରି ଆଧିପତ୍ୟ ଥିଲା ।

ଅଧୁନା ରଘୁଜୀଭୋସଲା ବଙ୍ଗଦେଶ ଆକ୍ରମଣ କରିବାରୁ ସମ୍ରାଟ୍ ଅତ୍ୟନ୍ତ ଭୀତ ହେଲେ ଓ ସେତେବେଳେ ସେହି ଆକ୍ରମଣ ନିବାରଣ କରିବା ଆପଣାକୁ ଅକ୍ଷମ ଜାଣି ବାଲାଜୀକୁ ଲେଖି ପଠାଇଲେ ତୁମ୍ଭେ ଯଦି ରଘୁଜୀକୁ ଅମ୍ଭ ରାଜ୍ୟରେ

ଉପ୍ଦ୍ରାତ କରିବାକୁ ନ ଦେବ ତେବେ ଆମ୍ଭେ ତୁମ୍ଭଙ୍କୁ ମାଳବଦେଶ ଛାଡ଼ି ଦେବୁଁ । କାଲକୀ ଏହି ସମ୍ବାଦ ପାଇ ଅତ୍ୟନ୍ତ ଆନନ୍ଦିତ ହେଲେ; ଓ ବଙ୍ଗଦେଶର ରାଜଧାନୀ ମୁର୍ଶିଦାବାଦକୁ ଯାଇ ସେ ସ୍ଥାନରୁ ରଘୁଜୀଙ୍କୁ ତଡ଼ି ଦେଲେ । କିନ୍ତୁ ଅବିଳମ୍ବେ ଅନେକ ଲୋକ ରଘୁଜୀ ପକ୍ଷରେ ମିଶିବାରୁ ତାହାଙ୍କୁ ଦମନ କରିବା ଅତ୍ୟନ୍ତ କଠିନ ହେଲା । ସୁତରାଂ ବଙ୍ଗଦେଶ କର ପରିବର୍ତ୍ତରେ ତାହାଙ୍କୁ ୧୨ ଲକ୍ଷ ଟଙ୍କା ଏବଂ ଉତ୍କଳପ୍ରଦେଶର ଆଧିପତ୍ୟ ଦେଇ ତାହାଙ୍କ ସହିତ ସନ୍ଧି ସ୍ଥାପନ କରିବାକୁ ହେଲା । ୧୭୫୧ ।

ଏହି ସମୟରେ ଅଜଫଜା ଓ ରାଜା ସାହୁ ଜୀବବ୍ୟୂହର ଚରମେ ଅଗ୍ରସ୍ତ ସ୍ଥାନ ପରଲୋକ ପ୍ରାପ୍ତ ହେଲେ । ରାଜା ସାହୁ ମୃତ୍ୟୁ ଉତ୍ତାରେ ତାହାଙ୍କ ଉତ୍ତରାଧି-କାରିତ୍ୱ ବିଷୟରେ ଅନେକ ଗୋଳମାଳ ଉପସ୍ଥିତ ହେଲା । ଅବଶେଷେ ବାଲକୀ ରାଜାରାମ ନାମକ ଏକ ଲୋକଙ୍କୁ ସିଂହାସନରେ ବସାଇବାରୁ ସମସ୍ତ ଗୋଳମାଳ ନିବୃତ୍ତ ହେଲା । କିନ୍ତୁ ତହିଁ ଉତ୍ତାରେ ବାଲକୀ ସ୍ୱୟଂ ରାଜାରାମ ସହିତ ଯୁଦ୍ଧରେ ପ୍ରବୃତ୍ତ ହେଲେ; ଏହି ଯୁଦ୍ଧରେ ଫରାସିମାନେ ରାଜାରାମ ପକ୍ଷ ଅବଲମ୍ବନ କରି ଥିଲେ । ଅମ୍ଭେମାନେ କେତେକ ପୃଷ୍ଠା ନାଦରସାହ ବିବରଣ ଓ ମରହଟ୍ଟା ବୃତ୍ତାନ୍ତ ସଂକ୍ଷେପରେ ଲେଖିଲୁଁ; ବର୍ତ୍ତମାନ ଇତିହାସରେ ଉଲ୍ଲେଖ ଯୋଗ୍ୟ ଅନ୍ୟ ବିଷୟ ଲେଖା ଯାଉଅଛି ।

ନାଦରସାହ ଭାରତବର୍ଷ ତ୍ୟାଗକଲା ଉତ୍ତାରେ ରୋହିଲାମାନେ ମସ୍ତକୋ-ତ୍ତଳନ କରନ୍ତି ।

ବହୁକାଳରୁ ରୋହିଲା ନାମଧାରୀ ଅନେକ ପଠାଣ ଦିଲ୍ଲୀପତି ସରକାରରେ ନିଯୁକ୍ତ ଥିଲେ । ତନ୍ମଧ୍ୟରେ ବର୍ତ୍ତମାନ ଅଲିମହମ୍ମଦ ନାମକ ଜଣେ ସାମାନ୍ୟ ସୈନିକ ପୁରୁଷ ଆପଣାର ପ୍ରଜ୍ଞା ଓ ବାହୁବଳରେ କ୍ରମଶଃ ଉନ୍ନତ ହୋଇ ଗଙ୍ଗାନଦୀ ଓ ଅଯୋଧ୍ୟାର ମଧ୍ୟସ୍ଥଳ ଭୂଭାଗରେ ଆଧିପତ୍ୟ ପ୍ରାପ୍ତ ହୁଅନ୍ତି ସେହିଦିନଠାରୁ ଉଲ୍ଲିଖିତ ସ୍ଥାନ ରୋହିଲଖଣ୍ଡ ନାମରେ ବିଖ୍ୟାତ ହୋଇଅଛି । ଯାହା ହେଉ ଅଲି ଆଧିପତ୍ୟ ପ୍ରାପ୍ତ ହେଲେ ଦିଲ୍ଲୀଶ୍ୱର ସ୍ୱୟଂ ତାହାଙ୍କ ବିରୁଦ୍ଧରେ ଯାଇ ତାହାଙ୍କୁ ଅପଦସ୍ଥ କଲେ । ଅର୍ଯ୍ୟାବର୍ତ୍ତସ୍ଥ ପଠାଣମାନେ ଏହିରୂପେ ପରାସ୍ତ ହେଲେ ସତ୍ୟ ଅଟେ ମାତ୍ର ପଶ୍ଚିମଦିଗରୁ ଏକଦଳ ପଠାଣ ଆସି ଦିଲ୍ଲୀଶ୍ୱରଙ୍କୁ ମହାବ୍ୟାକୁଳିତ କରି ପକାଇଲେ ।

ଭାରତବର୍ଷରୁ ଫେରି ଯାଇ ନାଦର ଅତ୍ୟନ୍ତ ପ୍ରଜାପୀଡ଼କ ହେବାରୁ ପାର-ସ୍ୟସ୍ଥ ସମ୍ଭ୍ରାନ୍ତ ଲୋକମାନେ ଚକ୍ରାନ୍ତ କରି ତାହାଙ୍କୁ ବଧ କଲେ ଓ ତାହାଙ୍କ ସେନାନୀ ଅମେଦଶା ଅଳ୍ପ ଅଧ୍ୟବରେ ପାରସ୍ୟର ସିଂହାସନ ପ୍ରାପ୍ତ ହେଲେ ।

ଅଳ୍ପକାଳ ଉତ୍ତାରେ ସେ ଲୁଣ୍ଠନ ଉଦ୍ଦେଶ୍ୟରେ ଭାରତବର୍ଷକୁ ଆଗମନ କରି ଥିଲେ କିନ୍ତୁ ସମ୍ରାଟ୍ ସେନାମାନେ ସର୍ହିନ୍ଦ ପ୍ରଦେଶରେ ତାହାଙ୍କୁ ପରାସ୍ତ କରିବାରୁ ତେଣୁ ତାହାଙ୍କୁ ବାହୁଡ଼ି ଯିବାକୁ ହେଲା । ୧୭୪୮ ।

ଅମେଦଙ୍କ ପ୍ରସ୍ଥାନ ଅଳ୍ପକାଳ ଉତ୍ତାରେ ସମ୍ରାଟ୍ ମହମଦସାହା ଲୋକାନ୍ତର ଗମନ କରିବାରୁ ତାଙ୍କର ପୁତ୍ର ଅମେଦସାହା ଦିଲ୍ଲୀସିଂହାସନରେ ଆରୋହଣ କଲେ ଅଧୁନା ଉଜୀରର ପଦଶୂନ୍ୟ ଥିଲା; ନୂଆ ସମ୍ରାଟ୍ ଅଯୋଧ୍ୟାର ଶାସନକର୍ତ୍ତା ସଫଦ-ରଜଙ୍ଗଙ୍କୁ ତାହା ଅର୍ପଣ କଲେ । ସଫଦର ଉଜୀରତ୍ୱ ପାଇ ପ୍ରଥମରେ ରୋହିଲାମାନଙ୍କ ଉଚ୍ଛେଦ ସାଧନ ପାଇଁ ସଂକଳ୍ପ କଲେ । ଅଭୀଷ୍ଟ ସାଧନ ପାଇଁ ସେ ଫରୋକ୍କାବାଦ ପଠାଣ ସରଦାରକୁ ସ୍ୱ ପକ୍ଷ କଲେ । କିନ୍ତୁ ରୋହିଲାମାନଙ୍କ ସହିତ ସଂଗ୍ରାମ ହେଲେ ସେହି ସରଦାର ଗତାସୁ ହୁଅନ୍ତି । ଉଜୀର ଅନ୍ୟ କୌଣସି ଉପାୟ ନ ଦେଖି ମହାରାଷ୍ଟ୍ରୀୟମାନଙ୍କ ସାହାଯ୍ୟ ପ୍ରାର୍ଥନା କଲେ । ମରହଟ୍ଟାମାନେ ଅସି ରୋହିଲା-ମାନଙ୍କୁ ପରାସ୍ତ ଓ ଲୁଣ୍ଠପାଟଦ୍ୱାରା ରୋହିଲାଖଣ୍ଡକୁ ନିତାନ୍ତ ଲଣ୍ଡଭଣ୍ଡ କରି ପକାଇଲେ । ୧୭୫୧ ।

ଏ ଉତ୍ତାରେ ସଫଦର ଦିଲ୍ଲୀକୁ ଫେରିଗଲେ । ସେ ସ୍ଥାନରେ ଉପସ୍ଥିତ ହୋଇଅଛନ୍ତି, ଏମନ୍ତ ସମୟରେ ଅମେଦଖାଁ ପୁନର୍ବାର ଆସି ପଞ୍ଜାବ ଆକ୍ରମଣ କଲେ ଓ କହି ପଠାଇଲେ ଯେ "ଆମ୍ଭେ ଯଦି ଏହି ପ୍ରଦେଶର ଆଧିପତ୍ୟ ପାଉଁ ତେବେ ଦିଲ୍ଲୀସାମ୍ରାଜ୍ୟରେ କୌଣସି ଉତ୍ପାତ କରିବୁଁ ନାହିଁ ।" ତଦନୁସାରେ ସମ୍ରାଟ୍ ତାହାଙ୍କୁ ସେହି ପ୍ରଦେଶ ପ୍ରଦାନ କଲେ । ମାତ୍ର ଏଥିରେ ଉଜୀର ଅତ୍ୟନ୍ତ ଅସନ୍ତୁଷ୍ଟ ହୋଇଥିଲେ । ଏହି ସୂତ୍ରରେ ସମ୍ରାଟ୍ ଓ ଉଜୀର ଉଭୟଙ୍କର ପରସ୍ପର ମନାନ୍ତର ଉପ-ସ୍ଥିତ ହେଲା । ଅଧୁନା ଦିଲ୍ଲୀଶ୍ୱର ରାଜପ୍ରଭାବ କୀଟ ନିଷ୍କୁଷିତ ପ୍ରାଚୀନ ବୃକ୍ଷପରି ନିତାନ୍ତ ଅନ୍ତଃସାର ବିହୀନ ହୋଇଥିଲା, ଏବଂ ପତନ କାଳ କ୍ରମଶଃ ନିକଟବର୍ତ୍ତୀ ହୋଇ ଆସୁଥିଲା । ସମ୍ରାଟ୍ ସ୍ୱୟଂ ଉଜୀରଙ୍କୁ ଦମନ କରିବା ଅସାଧ୍ୟ ମଣି ଆଜଫଜା ପୌତ୍ର ଗାଜୀଉଦ୍ଦୀନଙ୍କୁ ତଦ୍‌ବିଷୟରେ ନିଯୁକ୍ତ କଲେ । ଗାଜୀଙ୍କ ବଳ ଓ କୌଶଳ-ରେ ସଫଦରଙ୍କୁ ଉଜୀରତ୍ୱ ତ୍ୟାଗ କରିବାକୁ ହେଲା । ଗାଜୀ ସ୍ୱୟଂ ଉଜୀର ହେଲେ । ମାତ୍ର ଅନତିଦୀର୍ଘକାଳ ମଧ୍ୟରେ ଗାଜୀଙ୍କ ଗର୍ବିତ ବ୍ୟବହାର ଦେଖି ସମ୍ରାଟ୍ ଅତ୍ୟନ୍ତ ଅସନ୍ତୁଷ୍ଟ ହେଲେ ଏବଂ ତାହାଙ୍କ ନିପାତନ ଚେଷ୍ଟାରେ ରହିଲେ । କିନ୍ତୁ ଗାଜୀଙ୍କଠାରେ ଏହା ଦୀର୍ଘକାଳ ପର୍ଯ୍ୟନ୍ତେ ଗୁପ୍ତ ରହିଲା ନାହିଁ । ସେ ମହାରାଷ୍ଟ୍ରମାନଙ୍କ ପ୍ରବଳ ସାହାଯ୍ୟରେ ସମ୍ରାଟଙ୍କ ସମସ୍ତ ମନୋରଥ ବିଫଳ କରି ପକାଇଲେ ଓ ଅମେଦସାହାଙ୍କୁ ରୁଦ୍ଧ କରି ତାହାଙ୍କୁ ଅନ୍ଧ କରିଦେଲେ ଏବଂ ଦ୍ୱିତୀୟ ଆଲମଗିର ଏହି ନାମ ଦେଇ ରାଜକୁଳୋଦ୍ଭବ ଏକ କୁମାରଙ୍କୁ ଦିଲ୍ଲୀ

ସିଂହାସନରେ ବସାଇଲେ । ଅଧୁନା ଦିଲ୍ଲୀପତି ଅତ୍ୟନ୍ତ ଉତ୍ତେଜିତ ହୋଇ ପଡ଼ିଥିଲେ । ପଶ୍ଚିମେ ପଠାଣ ଓ ଶିଖ ଏବଂ ପୂର୍ବେ ଜାଠ ଏବଂ ରୋହିଲା ଏବ ଦକ୍ଷିଣେ ମରହଟ୍ଟା ଏହି ସକଳ ଶତ୍ରୁ ପରିବେଷ୍ଟିତ ଗୃଧିନୀବତ୍ ତାହାଙ୍କୁ ଚଉଅଡୁ ଘେରିଥିଲେ ।

ପୂର୍ବେ ଉଲ୍ଲେଖ ହୋଇଅଛି ଯେ ପଞ୍ଜାବ ଅମେଦଖାଁଙ୍କ ଅଧୀନରେ ଥିଲା । ସେସ୍ଥାନରେ ତାହାଙ୍କର ନିଯୁକ୍ତ ଶାସନ କର୍ତ୍ତା ପରଲୋକ ଯାତ୍ରା କରିବାରୁ ତାହାଙ୍କର ବିଧବା ରମଣୀ ତଦୀୟ କାର୍ଯ୍ୟ ନିର୍ବାହ କରି ଆସୁଥିଲେ । ଶାସନ-କର୍ତ୍ତ୍ରୀର ଦୁହିତା ସହିତ ଗାଜୀଉଦ୍ଦୀନର ବିବାହ ସମ୍ବନ୍ଧ ହୋଇଥିଲା । ଗାଜୀ ବିବାହ କରିବାକୁ ଯାଇ ବିଶ୍ୱାସଘାତକତା ପୂର୍ବକ ଶାସନକର୍ତ୍ତ୍ରୀଙ୍କୁ ରୁଦ୍ଧ ଓ ପଞ୍ଜାବ ଅଧିକାର କଲେ ।

ଅମେଦ ଏହି ସମ୍ବାଦ ପାଇ ଅତ୍ୟନ୍ତ ରାଗାନ୍ୱିତ ହେଲେ ଏବଂ ନାଦରଶାହ ଦିଲ୍ଲୀରେ ଯେପରି ଅତ୍ୟାଚାର କରିଥିଲେ ସେ ଆସି ଠିକ ସେହିରୂପ କରିଗଲେ । ଗମନ ସମୟରେ ସେ ଏକ ମୋଗଲ ରାଜକୁମାରୀର ପାଣିଗ୍ରହଣ କରି ଯାଆନ୍ତି । ତାହାଙ୍କ ଗମନ ସମୟରେ ଦିଲ୍ଲୀପତି ବିନୟକରି କହିଲେ "ଆମ୍ଭେ ଉଜୀରଙ୍କ ଗର୍ବ ଓ କର୍ତ୍ତୃତ୍ୱ ଦେଖି ଅତ୍ୟନ୍ତ ବିରକ୍ତ ଥାଉଁ; ଆପଣ ଏମନ୍ତ ଏକ ବନ୍ଦୋବସ୍ତ କରି ଯାଉନ୍ତୁ ଯେମନ୍ତ ଉଜୀର ଆମ୍ଭ ଉପରେ କୌଣସି ପ୍ରାଧାନ୍ୟ କରିବାକୁ ନ ପାରେ" ସେହିଅନୁସାରେ ଅମେଦ ନାଜୀରଉଦ୍ଦୌଲା ନାମକ ଜଣେ ଦକ୍ଷ ରୋହିଲାକୁ ସେନାପତି ପଦରେ ନିଯୁକ୍ତ କରିଗଲେ । ଅମେଦ ଭାବିଥିଲେ ନାଜୀର ପ୍ରଭାବରେ ଗାଜୀଙ୍କୁ ସଂଯତ ରହିବାକୁ ହେବ, ମାତ୍ର ସେ ଆଶା ନିଷ୍ଫଳ ହେଲା । ମରହଟ୍ଟା-ମାନଙ୍କ ସାହାଯ୍ୟରେ ଗାଜୀ ଦିଲ୍ଲୀପତିଙ୍କୁ ସମ୍ପୂର୍ଣ୍ଣରୂପେ ଆୟତ୍ତ କଲେ । ଏହି ବ୍ୟାପାର ସମ୍ପନ୍ନ ହେଲେ ମରହଟ୍ଟାମାନେ ପଞ୍ଜାବ ସମ୍ପୂର୍ଣ୍ଣରୂପେ ଅଧିକାରପୂର୍ବକ ସେସ୍ଥାନରେ ଜଣେ ଶାସନକର୍ତ୍ତା ନିଯୁକ୍ତ କରି ଦାକ୍ଷିଣାତ୍ୟକୁ ବାହୁଡ଼ିଲେ । ୧୭୫୭ ।

ପଞ୍ଜାବ ଅଧିକୃତ ହେଲେ ମରହଟ୍ଟାମାନେ ଅଯୋଧ୍ୟା ଆକ୍ରମଣ ଓ ସମସ୍ତ ଭାରତବର୍ଷରେ ଏକାଧିପତ୍ୟ ବିସ୍ତାର କରିବାକୁ ମନସ୍ଥ କଲେ । ଫଳେ ତେତେବେଳେ ସେମାନେ ଏପରି ପ୍ରବଳ ଥିଲେ ଯେ ଭାରତବର୍ଷସ୍ଥ କୌଣସି ଭୂପତି ସେମାନଙ୍କୁ ଦମନ କରିବାକୁ ସକ୍ଷମ ଥିଲେ ନାହିଁ । ସେ ଯାହା ହେଉ ମରହଟ୍ଟା-ମାନଙ୍କର ମନସ୍ଥ ବୁଝି ଅଯୋଧ୍ୟାର ତଦାନୀନ୍ତନ ଶାସନକର୍ତ୍ତା ସୁଜାଉଦ୍ଦୌଲା ଓ ଅନ୍ୟାନ୍ୟ ଭୂପତି ଆତ୍ମରକ୍ଷା ପାଇଁ ମିଳିତ ହେବାକୁ ଆରମ୍ଭ କଲେ । ଏଣେ ଅମେଦଖାଁ ମଧ୍ୟ ଆସି ଉପସ୍ଥିତ ହେଲେ । ପ୍ରଥମଯୁଦ୍ଧରେ ସେନ୍ଧିୟା ଓ ହୁଲକାର ଅଧୀନ ୨ ଦଳ ମହାରାଷ୍ଟ୍ରୀୟ ସେନା ପରାସ୍ତ ହେଲେ । ଏତେବେଳେ ଗାଜୀ

ଘଟିଲେ, ଅମେଦଖାଁ ଜୟୀ ହେଲେ ଅଲମଗୀର ପୂର୍ବକ୍ରୋଧ ହେତୁ ତାହାଙ୍କର ସର୍ବନାଶ କରିବେ । ଏଣୁ ସେ ଅଲମଗୀରଙ୍କୁ ସଂହାରପୂର୍ବକ ଆଉ ଏକ ଲୋକଙ୍କୁ ସିଂହାସନରେ ବସାଇଲେ । ମାତ୍ର ଲୋକେ ତାହାଙ୍କୁ ସମ୍ରାଟ୍ ବୋଲି ମାନ୍ୟ କଲେ ନାହିଁ । ଆଲମଗୀର ପୁତ୍ର ସାହାଅଲମ ଦିଲ୍ଲୀ ସିଂହାସନର ଯଥାର୍ଥ ଉତ୍ତରାଧିକାରୀ ଅଟନ୍ତି । କିନ୍ତୁ ପିତାର ମୃତ୍ୟୁର ସମୟରେ ସେ ବଙ୍ଗଦେଶରେ ବାସ କରୁଥିଲେ ।

ଅମେଦଖାଁ ୨ଦଳ ମହାରାଷ୍ଟ୍ର ସେନା ବିନାଶ କଲେ ସତ୍ୟ କିନ୍ତୁ ତହିଁରେ ସେମାନେ ଶଙ୍କିତ ହେଲେ ନାହିଁ । କିପାଁ ହେବେ? ତେତେବେଳେ ସେମାନଙ୍କର ପ୍ରଚଣ୍ଡ ପ୍ରଭାବ, ଆଉ ହିମାଳୟଠାରୁ କୁମାରିକା ପର୍ଯ୍ୟନ୍ତ କୌଣସି ପ୍ରକାରରେ ହେଲେ ସେମାନଙ୍କର ହସ୍ତଗତ ଥିଲା । ସେ ଯାହା ହେଉ ପେଶୋଯ୍ୱା ବଲଜୀ ଭ୍ରାତୃପୁତ୍ର ସଦାଶିବ ଏବଂ ପେଶୋଯ୍ୱା ପୁତ୍ର ବିଶ୍ୱନାଥ ୧,୪୦,୦୦୦ ସୈନ୍ୟ ଘେନି ସ୍ୱଦେଶରୁ ବାହାରିଲେ । ପ୍ରଥମେ ସେମାନେ ଦିଲ୍ଲୀରେ ଉପସ୍ଥିତ ହୋଇ ତତ୍ରତ୍ୟ ସମସ୍ତ ସମ୍ପତ୍ତି ଅମ୍ରସାତ୍ କରିଥିଲେ । ୧୭୬୦ ।

ଏପର୍ଯ୍ୟନ୍ତ ଅମେଦଖାଁ ଅଯୋଧ୍ୟାରେ ରହି ସୁଜାଉଦ୍ଦୌଲା ପ୍ରଭୃତି ମିଳିତ ଭୂପତିମାନଙ୍କ ସହିତ ପରାମର୍ଶ କରି କର୍ତ୍ତବ୍ୟତା ଅବଧାରଣ କରୁଥିଲେ । ଏ- ତେତେବେଳେ ସେ ଧାବିତ ହୋଇ ଏମନ୍ତ ଶୀଘ୍ର ଓ ସାହସରେ ଯମୁନାନଦୀ ଅତିକ୍ରମ କଲେ ଯେ, ତତ୍କ୍ଷଣରେ ସମ୍ମୁଖଯୁଦ୍ଧରେ ପ୍ରବୃତ୍ତ ହେବାକୁ ମହାରାଷ୍ଟ୍ରମାନଙ୍କର ସାହସ ଅଣ୍ଟିଲା ନାହିଁ । ଏଣୁ ମରହଟ୍ଟାମାନେ ପାଣିପଥ ନଗରକୁ ଯାଇ ସେଠା- ରେ ଶିବିର ସନ୍ନିବେଶ କଲେ । ଆଉ ଶିବିର ରକ୍ଷା ପାଁଇ ଚତୁର୍ଦ୍ଦିଗରେ ପରିଖା ଖନନ ଓ କମାଣବିନ୍ୟାସ କରି ରଖିଲେ । ଅମେଦ ଆସି ମହାରାଷ୍ଟ୍ରୀୟମାନଙ୍କ ଶିବିର ଅଦୂରରେ ଶିବିର ସ୍ଥାପନ କରି ରହିଲେ । ତାହାଙ୍କ ସହିତ ୪୦,୦୦୦ ପଠାଣ ଓ ୧୩,୦୦୦ ଅଶ୍ୱାରୋହୀ ଓ ୩୮,୦୦୦ ପଦାତିକ ସେନା ଓ ତ୍ରିଶଟା କମାଣ ଥିଲା । ବିପକ୍ଷ ଦଳରେ ୭୦,୦୦୦ ଅଶ୍ୱାରୋହୀ ୧୫,୦୦୦ ପଦାତିକ ଏବଂ ୨୦୦ କମାଣ ଥି- ଲା । ଅମେଦ ପ୍ରଥମରେ ଆକ୍ରମଣ ନ କରି ଆକ୍ରମଣ ପ୍ରତୀକ୍ଷା କରି ରହିଲେ । ଏ- ମନ୍ତ ସମୟରେ ଅନ୍ତର୍ଯାମୁନ ପ୍ରଦେଶରୁ ୧୨,୦୦୦ ଅଶ୍ୱସେନା ଆସି ଅମେଦଙ୍କୁ ଆକ୍ର- ମଣ କଲେ କିନ୍ତୁ ଶୀଘ୍ର ସେମାନେ ବିପକ୍ଷ ପ୍ରଭାବରେ ଛିନ୍ନଭିନ୍ନ ହୋଇ ଗଲେ ।

ପରେ ୧୭୬୧ ସାଲ ଜାନୁୟାରୀ ମାସ ୬ ତାରିଖରେ ଉଭୟପକ୍ଷର ପ୍ରବଳ ଯୁଦ୍ଧ ଉପସ୍ଥିତ ହେଲା । କିନ୍ତୁ ଅବିଲମ୍ବେ ମରହଟ୍ଟା ସେନାମାନେ ରଣଭଙ୍ଗ ହୋଇ ପଳାୟନ କଲେ । ସଦାଶିବ ଓ ବିଶ୍ୱନାଥ ନିହତ ହେଲେ । ଅନ୍ୟାନ୍ୟ ମରହଟ୍ଟା ପ୍ରଧାନ୨ ସେନାନୀମାନେ ମଧ୍ୟ ଅକ୍ଷୁନ୍ନ ଶରୀରରେ ରହିଲେ ନାହିଁ । ପଠାଣମାନେ ବହୁଦୂର ଅନୁସରଣ କରି ପଳାୟମାନ ମହାରାଷ୍ଟ୍ର ସେନାମାନଙ୍କୁ ବଧ

କରିବାରେ ପ୍ରବୃତ୍ତ ହେଲେ । ପଠାଣମାନଙ୍କ ଗର୍ଭରୁ ଯେଉଁମାନେ ଉଦ୍ଧାର ପାଇଲେ ସେମାନଙ୍କ ଶୋଣିତରେ କୃଷକମାନଙ୍କର ଅସ୍ତ୍ର ଧୌତ ହେଲା । ପୂର୍ବେ ମରହଟ୍ଟାମାନେ ସେହି କୃଷକମାନଙ୍କ ଉପରେ ଅନେକ ଅତ୍ୟାଚାର କରିଥିଲେ ବର୍ତ୍ତମାନ ସମୟ ପାଇଁ ତାହାର ପ୍ରତିଫଳ ଦେଲେ । ଏହି ଯୁଦ୍ଧରୁ ଯେ ଭଗ୍ନଦୂତ ମହାରାଷ୍ଟ୍ରକୁ ବାହୁଡ଼ିଥିଲା ଏମନ୍ତ ବୋଧ ହୁଅଇ ନାହିଁ । ଏ ଅସାମାନ୍ୟ ପରାଭବର ସମ୍ବାଦ ପାଇ ଅନତିବିଲମ୍ବରେ ଶୋକ ଓ ମନସ୍ତାପରେ ପେଶୋୟା ବଲଜୀ ପ୍ରାଣ ତ୍ୟାଗ କଲେ । ଏ ଉତ୍ତାରେ ପ୍ରବଳ ମହାରାଷ୍ଟ୍ରୀୟମାନେ ବିଷଶୂନ୍ୟ ବିଷଧର ପରି ଦୀର୍ଘକାଳ ପର୍ଯ୍ୟନ୍ତେ ପଡ଼ି ରହନ୍ତି ।

ଜୟଲାଭ ଉତ୍ତାରେ ଅମେଦ ଦିଲ୍ଲୀରେ ଉପସ୍ଥିତ ହେଲେ । ତେତେବେଳେ ଦିଲ୍ଲୀସାମ୍ରାଜ୍ୟ ତାହାଙ୍କର ପଦାନତ ଥିଲା; ଇଚ୍ଛା କଲେ ସେ ନିରୁଦ୍ବେଗରେ ଆରୋହଣ କରି ଥାଅନ୍ତେ କିନ୍ତୁ ସେ ତାହା ନ କରି ସ୍ୱଦେଶକୁ ଯାତ୍ରା କଲେ; ଏହିରୂପେ ଦିଲ୍ଲୀସାମ୍ରାଜ୍ୟ ଓ ମହାରାଷ୍ଟ୍ର ପ୍ରଭୁତା ଉଚ୍ଛିନ୍ନ ହୁଅଇ । ଏ ଉତ୍ତାରେ ଅମ୍ଭେମାନେ ଆଉ ଏକ କାହାଣି କହିବୁଁ । ଯେପରି ବିନ୍ଦୁ୨ ବାଷ୍ପ ସଂଗୃହୀତ ହୋଇ ମେଘର ସଞ୍ଚାର ହୁଏ ଓ ସେହି ମେଘ ସଞ୍ଚାର ସମୟରେ କେହି ଜାଣି ପାରନ୍ତି ନାହିଁ ତେଣୁ କେହି ସେ ବିଷୟରେ ମନୋଯୋଗ ମଧ୍ୟ କରନ୍ତି ନାହିଁ କିନ୍ତୁ ସେହି ମେଘ କାଳକ୍ରମେ ମୂଷଳଧାରେ ବୃଷ୍ଟି ଓ ବଜ୍ରପାତଦ୍ୱାରା ସମସ୍ତଙ୍କୁ ଅସ୍ଥିର କରଏ, ସେହିପରି କେତେକ ଜଣ ମାତ୍ର ବଣିୟା ଏ ଦେଶକୁ ଆସି କ୍ରମଶଃ ବଲପୁଷ୍ଟ ହେଉଥିଲେ । ଅବଶେଷେ ଭାରତଭୂମିକୁ ଏକଚ୍ଛତ୍ରା କଲେ ।



# HISTORY OF INDIA.

BY

PHUKHIR MOHUN SENAPUTY.

## PART II.

SECOND EDITION.

# ଭାରତବର୍ଷର ଇତିହାସ ।

ଶ୍ରୀ ଫକୀର ମୋହନ ସେନାପତିଦ୍ୱାରା

ସଂକ୍ଷେପରେ ସଂଗୃହୀତ ।

ଦ୍ୱିତୀୟ ଭାଗ ।

ଦ୍ୱିତୀୟ ସଂସ୍କରଣ ।



CUTTACK,
Printed by the Cuttack Printing Company.
1890.

# ଭାରତବର୍ଷର ଇତିହାସ ।

—୦୦୦—

ଦ୍ୱିତୀୟଭାଗ ।

## ପର୍ତ୍ତୁଗୀଜ ଜାତି ।

ଅତିପୂର୍ବକାଳରୁ ଭାରତବର୍ଷ ଏବଂ ତହିଁ ନିକଟବର୍ତ୍ତୀ ଦ୍ୱୀପମାନଙ୍କର ବାଣିଜ୍ୟଦ୍ରବ୍ୟମାନ ଇଉରୋପକୁ ନୀତ ଓ ବହୁମୂଲ୍ୟରେ ବିକ୍ରୀତ ହୋଇ ଆସୁଥିଲା । ପ୍ରଥମରେ ଫିନିସୀୟମାନେ ବାଣିଜ୍ୟର ସୂତ୍ରପାତ କଲେ । ତହିଁ ଉତ୍ତାରେ ରୋମକ ଓ ଭିନିସନଗରୀୟ ବଣିକମାନେ ବାଣିଜ୍ୟର ଅନୁଶୀଳନ କରୁଥିଲେ । ପ୍ରଥମରେ ପଣ୍ୟଦ୍ରବ୍ୟସକଳ ଆରବ ଓ ଲୋହିତସାଗର ଦେଇ ମିସର ଓ ସେସ୍ଥାନରୁ ନୀଳନଦଦ୍ୱାରା ଭୂମଧ୍ୟସାଗର ବାଟେ ଇଉରୋପର ବିପଣି ସମୂହକୁ ନୀତ ହେଉଥିଲା । ଭିନିସନଗରୀୟ ବଣିକମାନେ ମିସରଠାରୁ ଇଉରୋପକୁ ନେଇ ଯାଉଥିଲେ । ତହିଁରୁ ସେମାନଙ୍କର ଯଥେଷ୍ଟ ଲାଭ ହେଉଥିଲା । ପରେ ପର୍ତ୍ତୁଗୀଜ ବଣିକମାନେ ଭିନିସନଗରୀୟ ବଣିକମାନଙ୍କଠାରୁ ପଣ୍ୟଦ୍ରବ୍ୟ ନେଇଯାଇ ଇଉରୋପର ପଶ୍ଚିମଖଣ୍ଡରେ ବିକ୍ରୟ କରିବାରୁ ସେମାନଙ୍କର ଯଥେଷ୍ଟ ଲାଭ ହୋଇଥିଲା । ତହୁଁ ସେମାନେ ଉତ୍ସାହୀ ହୋଇ ମୂଳଭାରତବର୍ଷକୁ ଆସିବାପାଇଁ ଚେଷ୍ଟା କରିବାକୁ ଲାଗିଲେ । ପଞ୍ଚଦଶ ଶତାବ୍ଦୀର ଶେଷାର୍ଦ୍ଧରେ ସେମାନଙ୍କର ଏହି କଳ୍ପନା ହୋଇଥିଲା । ଇଉରୋପର ଅନ୍ୟାନ୍ୟଦେଶସ୍ଥ ଲୋକମାନଙ୍କଠାରୁ ପର୍ତ୍ତୁଗୀଜମାନେ ନାବିକ ବିଦ୍ୟାରେ ଅଧିକ ନିପୁଣଥିଲେ । ସେମାନଙ୍କର ସ୍ଥିରସିଦ୍ଧାନ୍ତ ଥିଲା, ଆଟଲାଣ୍ଟିକମହାସାଗର ବାଟେ ଆଫ୍ରିକାର ଦକ୍ଷିଣଭାଗ ବେଷ୍ଟନକରି ପୂର୍ବମୁଖରେ ଗମନ କଲେ ଭାରତବର୍ଷରେ ପହଞ୍ଚାଯାଇ ପାରେ; ମାତ୍ର କେଉଁଠାରେ ଅଫ୍ରିକାର ଦକ୍ଷିଣଭାଗ ତାହା ସେମାନଙ୍କୁ ଜଣା ନ ଥିଲା । ଏଥକୁ ସେମାନଙ୍କର କାମନା ପୂର୍ଣ୍ଣ ହେବାକୁ ଅନେକ ବିଳମ୍ବ ହୋଇଥିଲା । ବହୁକାଳ ଉତ୍ତାରେ ବାର୍ଥଲେମିଉ-ଡାଇଜ ନାମକ ଜଣେ ନାବିକ ଅଫ୍ରିକାର ଦକ୍ଷିଣଭାଗସ୍ଥ ଅନ୍ତରୀପ ପ୍ରକାଶ କଲେ । ଉକ୍ତ ନାବିକ ସେସ୍ଥାନରେ ଉପସ୍ଥିତ ହେବାମାତ୍ରକେ ଭୟଙ୍କର ତୁଫାନ ଉପସ୍ଥିତ ହୋଇଥିଲା ଏଥିପାଇଁ ଉକ୍ତ ନାବିକ ସେହି ଅନ୍ତରୀପର ନାମ ତୁଫାନ ଅନ୍ତରୀପ ଏହି ନାମ ଦେଇ ନିଜ ଦେଶକୁ ବାହୁଡି ଗଲେ, ମାତ୍ର ତାହାଙ୍କର

ଜାଯୋକ୍ସା ଭୂପତି ଏତେଦିନେ ଭାରତବର୍ଷ ପ୍ରାପ୍ତିର ଚିରକାଳ ଆଶା ସଫଳ ହେବାର ସମ୍ଭାବନା ଜାଣି ସେହି ଅନ୍ତରୀପର ନାମ ଉତ୍ତମାଶା ଅନ୍ତରୀପ ଥୋଇଲେ ।

ଉତ୍ତମାଶା ଅବିଷ୍କାରର ଦ ୭ ବର୍ଷ ଉତ୍ତାରେ ଅର୍ଥାତ୍ ୧୪୯୭ ସାଲରେ ଭାସ୍କୋ ଗାମା ନାମକ ଜଣେ ପର୍ତ୍ତୁଗୀଜ ରାଜକୁଳୋଦ୍ଭବପୁରୁଷ ଆଫ୍ରିକାର ଦକ୍ଷିଣଭାଗ ବେଷ୍ଟନ କରି ଆସି ୧୪୯୭ ସାଲରେ ଭାରତବର୍ଷର ଦକ୍ଷିଣ ମଲବାର ଉପକୂଳରେ ଏକ ହିନ୍ଦୁରାଜ ଅଧିକାରରେ ପହୁଞ୍ଚିଲେ । ସେହି ରାଜାଙ୍କର ଉପାଧି ଜାମୁରୀ । ରାଜଧାନୀ କାଲିକଟ । ସେସ୍ଥାନରେ ଆରବ ଓ ମିସରଦେଶୀୟ ବଣିକମାନେ ବହୁକାଳପୂର୍ବରୁ ପଣ୍ୟଦ୍ରବ୍ୟର ଆମଦାନୀ ରପ୍ତାନୀ କରି ଆସୁଥିଲେ । ତହିଁରୁ ସେମାନଙ୍କର ଯଥେଷ୍ଟ ଲାଭ ହେଉଥିଲା । ପର୍ତ୍ତୁଗୀଜମାନେ ବାଣିଜ୍ୟ କରିବାପାଇଁ ରାଜାଙ୍କ ଅନୁମତି ପ୍ରାର୍ଥନା କଲେ । ରାଜା ମଧ୍ୟ ତହିଁରେ ସମ୍ମତ ହେଲେ; ମାତ୍ର ମୁସଲମାନ ବଣିକମାନେ ବିବେଚନା କଲେ ଯେ ବିଧର୍ମୀ ଖ୍ରୀଷ୍ଟାନମାନେ ବାଣିଜ୍ୟ କଲେ ନିଜର ସ୍ୱାର୍ଥହାନିର ସମ୍ଭାବନା; ଏଥିକୁ "ନବାଗତ ବଣିକମାନେ ଜଳଦସ୍ୟୁ ଓ ଗୁରୁତର ଅପରାଧ ହେତୁରୁ ସ୍ୱଦେଶରୁ ନିର୍ବାସିତ ହୋଇଅଛନ୍ତି" ଏହିପରି ମିଥ୍ୟାପବାଦ ରଟାଇ ଦେଲେ ଏବଂ ରାଜକର୍ମଚାରୀମାନଙ୍କୁ ବିପୁଳ ଉତ୍କୋଚ ପ୍ରଦାନପୂର୍ବକ ଏକଥା ରାଜାଙ୍କୁ ଗୋଚର କରାଇଲେ । ଗାମା ଏହା ବୁଝିପାରି ସ୍ୱଦେଶକୁ ବାହୁଡିଲେ ଏବଂ ଯିବାସମୟରେ କେତେଜଣ ଭାରତବର୍ଷୀୟ ଲୋକଙ୍କୁ ଘେନି ପଳାଇଲେ । ତେଣୁ ତାହାଙ୍କର ଦସ୍ୟୁତାପବାଦ ଦୃଢ଼ୀଭୂତ ହୋଇଥିଲା, କିନ୍ତୁ ଭାରତବର୍ଷୀୟମାନେ ପର୍ତ୍ତୁଗାଲ ଦେଖି ଆସି ତାହାର ଗୌରବ ସ୍ୱଦେଶରେ ପ୍ରଚାର କରିବେ ଏହି ଉଦ୍ଦେଶ୍ୟରେ ଗାମା ଏପରି କର୍ମ କରିଥିଲେ ।

କିଛିଦିନ ଉତ୍ତାରେ କେତେକଖଣ୍ଡ ପର୍ତ୍ତୁଗୀଜ ସୁଲୁପ ଅପହୃତ ହିନ୍ଦୁମାନଙ୍କୁ ଘେନି କାଲିକଟରେ ଉପସ୍ଥିତ ହେଲା, ବାହୁଡି ଆସିଥିବା ହିନ୍ଦୁମାନେ ସ୍ୱଦେଶରେ ପର୍ତ୍ତୁଗୀଜମାନଙ୍କ ମହିମା ଓ ବଳ ବିକ୍ରମ କୀର୍ତ୍ତନ କରିବାକୁ ଲାଗିଲେ । ତାହା ଶୁଣି କାଲିକଟ ରାଜା, ପର୍ତ୍ତୁଗୀଜମାନଙ୍କ ପ୍ରତି ଯେ କ୍ରୋଧଥିଲା ତାହା ପାଶୋରି ବାଣିଜ୍ୟ କରିବାପାଇଁ ସେମାନଙ୍କୁ ଅନୁମତିପ୍ରଦାନ କଲେ । ତହିଁ ସେମାନେ ଏକ କୋଠି ନିର୍ମାଣ କରି ବାଣିଜ୍ୟ କରିବାକୁ ଲାଗିଲେ; କିନ୍ତୁ ମୁସଲମାନ ବଣିକ-ମାନଙ୍କର ଷଡ଼ଯନ୍ତ୍ର ହେତୁରୁ କୌଣସି ବାଣିଜ୍ୟଦ୍ରବ୍ୟ ସଂଗ୍ରହ କରିପାରିଲେ ନାହିଁ ।

ତହିଁରେ ପର୍ତ୍ତୁଗୀଜମାନେ ସଶାନ୍ଵିତ ହୋଇ ମୁସଲମାନମାନଙ୍କର ଏକ ବାଣିଜ୍ୟ ଜାହାଜ ଆକ୍ରମଣ କଲେ, ମୁସଲମାନମାନେ ଏହିବିଷୟ ରାଜ ଗୋଚରରେ କରିବାରୁ ସେମାନଙ୍କର ସାହାଯ୍ୟପାଇଁ ଏକଦଳ ସୈନ୍ୟ ପ୍ରେରିତ ହୋଇଥିଲା । ପର୍ତ୍ତୁଗୀଜମାନେ କଲିକଟ ଉପରେ ଗୋଲାବୃଷ୍ଟି କରି ଓ କେତେକ ଘର ପୋଡି ଦେଇ କୋଚ୍ଚୀନଗରକୁ ଚାଲିଗଲେ । କୋଚ୍ଚୀରାଜ ଆନନ୍ଦିତ ହୋଇ ଆଗନ୍ତୁକ-ମାନଙ୍କୁ ବାଣିଜ୍ୟ କରିବାପାଇଁ ଅନୁମତିପ୍ରଦାନ କଲେ । ଗୋୟାନଗରରେ ଆଶ୍ରୟ ପାଇ ପର୍ତ୍ତୁଗୀଜମାନେ ଭାରତବର୍ଷକୁ ଗତାୟାତ କରିବାକୁ ଲାଗିଲେ । ପରେ ୧୫୧୦ସାଲରେ ଆଲବୁକାର୍କ ନାମକ ଜଣେ ପର୍ତ୍ତୁଗୀଜ ସେନାପତି ଭାରତବର୍ଷରେ ଆଧିପତ୍ୟ ସ୍ଥାପନ ମାନସରେ ଆସି ଗୋୟାନଗର ଅଧିକାର କଲେ । ସେନାମାନ-ଙ୍କର ଯେ ସକଳ ଗୁଣଥିବା ଉଚିତ ଆଲବୁକାର୍କ ତହିଁରୁ ବଞ୍ଚିତ ଥିଲେ ନାହିଁ ।

ଆଲବୁକାର୍କଙ୍କ ସମୟଠାରୁ ୧୫୮୦ ସାଲପର୍ଯ୍ୟନ୍ତେ ପର୍ତ୍ତୁଗୀଜମାନଙ୍କର ପୂର୍ବଦେଶୀୟ ରାଜ୍ୟ କ୍ରମଶଃ ବୃଦ୍ଧି ହୋଇ ଆସୁଥିଲା । ଏହି ସମୟ ମଧ୍ୟରେ ସେମାନଙ୍କର ଯେସକଳ ସ୍ଥାନ ହସ୍ତଗତ ହୋଇଥିଲା ତାହାର ତାଲିକା ଏହି ।—

ଆଫ୍ରିକାର ପୂର୍ବ ଉପକୂଳରେ ବହୁସଂଖ୍ୟକ ନଗର ଅର୍ମଜଦ୍ୱୀପ, ବୋମ୍ବାଇ, ଗୋୟା ନଗର, ଲଙ୍କା ଦ୍ୱୀପ, ବହୁସଂଖ୍ୟକ କୁଠି ଓ ବାଣିଜ୍ୟ ସ୍ଥାନ, ବଙ୍ଗଳରେ ଚେ-ଟେଗୋଙ୍ଗ କୋଠି, ମଲକା ନଗର, ଭାରତବର୍ଷୀୟ ଦ୍ୱୀପପୁଞ୍ଜରେ ଅନେକ ନଗର ଓ ବାଣିଜ୍ୟ ସ୍ଥାନ ଓ କାଞ୍ଚନ ଦ୍ୱୀପ । ବର୍ତ୍ତମାନ କେବଳ ମୋଜାମ୍ବିକ, ଗୋୟା ଓ ମାକେୟା ସେମାନଙ୍କର ହସ୍ତଗତ ଅଛି ଅବଶିଷ୍ଟ ସକଳ ହସ୍ତଚ୍ୟୁତ ହୋଇ ଅଛି ।

## ଓଲନ୍ଦାଜ ଜାତିଙ୍କର ଆଗମନ ।

ପର୍ତ୍ତୁଗୀଜମାନଙ୍କର ଭାରତୀୟ ବାଣିଜ୍ୟଦ୍ୱାରା ବହୁଲଲାଭ ହେଉଥିବାର ଦେଖି ଓଲନ୍ଦାଜମାନେ ଭାରତବର୍ଷକୁ ଆସିବାପାଇଁ ଇଚ୍ଛୁକ ହେଲେ । ଉତ୍ତମାଶା-ନ୍ତରୀପ ମାର୍ଗରେ ଭାରତବର୍ଷକୁ ଆସିବାକୁ ଚେଷ୍ଟା କରିବାକୁ ଲାଗିଲେ । ଉତ୍ତର ମହାସାଗରକୁ କେତେଖଣ୍ଡ ବାଣିଜ୍ୟବୋଇତ ପ୍ରେରିତ ହେଲା ; ଉତ୍ତମାଶା ଅନ୍ତରୀପମାର୍ଗରେ ମାତ୍ର କଷ୍ଟ ଫଳଲାଭହେଲା ନାହିଁ । ଅବଶେଷେ ଭାରତବର୍ଷରେ ଉପସ୍ଥିତ ହେଲେ । ପର୍ତ୍ତୁଗୀଜମାନେ ଭାରତବର୍ଷରେ ଅତ୍ୟନ୍ତ ଉପଦ୍ରବ କର-

ଥିଲେ ; ଏଣୁ ଓଲନ୍ଦାଜମାନେ ସ୍ଥାନୀୟ ଲୋକମାନଙ୍କ ସହିତ ମିଳି ପର୍ତ୍ତୁଗୀଜମାନଙ୍କୁ ଭାରତବର୍ଷୀୟ ଦ୍ୱୀପଶ୍ରେଣୀରୁ ଦୂରୀଭୂତ କରଦେଇ ଅପେ ପ୍ରବଳହୋଇ ଉଠିଲେ । ଏମାନଙ୍କର ପ୍ରଧାନ ବାଣିଜ୍ୟ କୋଠି ଚୂଁଚୁଡ଼ାରେ ଥିଲା ।

## ଇଂରେଜମାନଙ୍କର ଭାରତବର୍ଷକୁ ଆଗମନ ।

୧୫୯୯ ସାଲେ ମହାରାଣୀ ଏଲିଯେବେଥଙ୍କ ଶାସନ ସମୟରେ ଇଂଲଣ୍ଡରେ ଗୋଟିଏ ଟ୍ରେଡିଂ କୋମ୍ପାନୀ ଅର୍ଥାତ୍ ବଣିକଦଳ ମିଳିତ ହୋଇଥିଲେ ସେମାନଙ୍କର ମୂଳଧନ ୬୮୦୦୦୦ ଛଅଲକ୍ଷ ଅଶିହଜାର ଟଙ୍କା । ସେମାନେ ଷୋଡ଼ଶ ଶତାବ୍ଦୀର ଶେଷ ଦିବସରେ ମହାରାଣୀଙ୍କଠାରୁ ୧୫ବରଷ ମିଆଦରେ ସନନ୍ଦ ପାଇ ଭାରତବର୍ଷକୁ ଆଗମନ କରିଥିଲେ । ଇଂଲଣ୍ଡର ଅନ୍ୟ ଅନ୍ୟ ବଣିକଦଳ ଏମାନଙ୍କର ବିରୋଧୀ ହୋଇଥିଲେ ; କିନ୍ତୁ "ଅର୍ଥବଶାଃ ମାନବାଃ" ନୂତନ କୋମ୍ପାନୀର ସ୍ୱର୍ଣ୍ଣ-ରୌପ୍ୟ-ଗୁଣରେ ଇଂଲଣ୍ଡସ୍ଥ ଅନେକ ଭଦ୍ରଲୋକ ଏମାନଙ୍କର ସପକ୍ଷ ହେବାରୁ ଅନ୍ୟମାନେ ଘୁଞ୍ଚିଗଲେ । ୧୬୦୯ ସାଲରେ ଏହି କୋମ୍ପାନୀ ପୁନର୍ବାର ଏକ ବେମିଆଦି ସନନ୍ଦ ପାଇଥିଲେ ସେଥିରେ ଏହି ନିୟମ ଥିଲା ଯେ କୌଣସି କାରଣରୁ ଏହି ସନନ୍ଦ ରହିତ କରିବାର ଆବଶ୍ୟକ ହେଲେ ୩ବରଷ ପୂର୍ବରୁ ସମ୍ବାଦ ଦିଆଯିବ ।

୧୬୪୨ ସାଲରେ ଇଂଲଣ୍ଡରେ ଅନ୍ତର୍ବିବାଦ ଉପସ୍ଥିତ ହେବାରୁ କିଛିଦିନ-ନିମନ୍ତେ ବାଣିଜ୍ୟ କାର୍ଯ୍ୟ ମନ୍ଦୀଭୂତ ହୋଇଥିଲା । ଏଉତ୍ତାରେ ୧୬୬୧ ସାଲରେ ଭୂପତି ୨ୟ ଚାର୍ଲସଙ୍କଠାରୁ କୋମ୍ପାନୀ ଯେଉଁ ସନନ୍ଦ ପାଇଥିଲେ ତହିଁରେ ପୂର୍ବ କ୍ଷମତା ଦୃଢ଼ୀଭୂତ ହୋଇଥିଲା ମାତ୍ର ଶୀଘ୍ର ସେମାନଙ୍କର ଦଳେ ପ୍ରତିଯୋଗୀ ଦେଖା ଦେଇଥିଲେ । ୧୬୯୦ ସାଲରେ କମନ୍ସ ହାଉସ, ପୂର୍ବଦେଶ ବାଣିଜ୍ୟ-ନିମନ୍ତେ ଏକ ନୂତନ କୋମ୍ପାନୀ ସୃଜନ ପାଇଁ ଅନୁରୋଧ କରନ୍ତେ ପୁରାତନ କୋମ୍ପାନୀ ତହିଁରେ ଭୀତ ହୋଇ ପ୍ରସ୍ତାବ କଲେ ଯେ, ଯେବେ ନୂତନ କୋମ୍ପାନୀକୁ ସନନ୍ଦ ନ ଦିଆଯାଏ ତେବେ ଅମ୍ଭେମାନେ ୪ଟଙ୍କା ସୁଧରେ ୭୦ ଲକ୍ଷ ଟଙ୍କା ରାଜକୋଷରେ ଜମା କରିବୁଁ, ଯେଣୁ କି ତେତେବେଳେ ରାଜକୋଷରେ ଅର୍ଥର ଅତ୍ୟନ୍ତ ଅସଙ୍ଗତିଥିଲା; ମାତ୍ର ନୂତନ କୋମ୍ପାନୀ ୮ ଟଙ୍କା ସୁଧରେ ୨କୋଟି ଟଙ୍କା ଧାର ଦେବାକୁ ସ୍ୱୀକୃତ ହେବାରୁ ସେମାନେ ସନନ୍ଦ ପ୍ରାପ୍ତ ହେଲେ । ପୂର୍ବ ନିୟମାନୁସାରେ ୩ ବରଷଉତ୍ତାରେ ସେମାନଙ୍କର କାର୍ଯ୍ୟ ରହିତକରିବା କାରଣ ପ୍ରାଚୀନ କୋମ୍ପାନୀକୁ ସମ୍ବାଦ ଦିଆଗଲା ନୂତନ କୋମ୍ପାନୀ ଆସି ଭାରତବର୍ଷରେ ଉପସ୍ଥିତ ହେଲେ କିନ୍ତୁ ସେମାନେ ରାଜକୋଷରେ ଟଙ୍କା ଗଚ୍ଛିତ କରିଥିବାରୁ ବହୁତଟଙ୍କା ସେମାନଙ୍କ ହାତରେ ନ ଥିଲା ତେଣୁ ବାଣିଜ୍ୟ ବିସ୍ତାର କରିପାରିଲେ

ନାହିଁ । ଏହି ଦୁଇ କୁମ୍ପାନିଙ୍କ ମଧ୍ୟରେ ପରସ୍ପର କଚ୍ଛାଦନ ବିବାଦ ଚଳିଥିଲା । ପରେ ୧୭୦୨ ସାଲେ ଦୁଇକୋମ୍ପାନୀ ମିଳିତ ହୋଇ "ଇଉନାଇଟେଡ ଇଷ୍ଟ-ଇଣ୍ଡିୟା କୋମ୍ପନୀ" ନାମଧାରଣ କରିଥିଲେ । ୧୭୦୮ ସାଲେ ଇଂଲଣ୍ଡୀୟ ଗବର୍ଣ୍ଣ-ମେଣ୍ଟ ଇଷ୍ଟଇଣ୍ଡିୟା କୋମ୍ପାନୀଙ୍କଠାରୁ ୧,୨୦,୦୦,୦୦୦ ଟଙ୍କା ଧାର ନେଇ-ଥିଲେ ; କୋମ୍ପାନୀଙ୍କ ପୂର୍ବଦତ୍ତ ୨କୋଟି ଓ ଏହିଟଙ୍କା ଏକତ୍ରିତ କରି ଶତକଡ଼ା ୫ ଟଙ୍କା ସୁଧର କଥାହେଲା । କୋମ୍ପାନୀ ୧୭୨୬ ସାଲପର୍ଯ୍ୟନ୍ତ ମିୟାଦ ପ୍ରାପ୍ତ ହେଲେ । ୧୭୩୦ ସାଲେ କେତେକ ଲୋକ ଇଷ୍ଟଇଣ୍ଡିୟା କୋମ୍ପାନୀଙ୍କ ଏକ-ହାତିଆ ବାଣିଜ୍ୟ ରହିତ କରିବାନିମନ୍ତେ ପାର୍ଲିଆମେଣ୍ଟରେ ଆବେଦନ କଲେ ; କିନ୍ତୁ ତାହାର କାରଣ ଦର୍ଶାଇପାରିଲେ ନାହିଁ । ତହୁଁ କୋମ୍ପାନୀଙ୍କ ଏକହାତିଆ ବାଣିଜ୍ୟ ରହିତ ନ ହୋଇ ବରଞ୍ଚ ୧୭୬୬ ସାଲ ପର୍ଯ୍ୟନ୍ତେ ସନନ୍ଦର ମିୟାଦ ବଢ଼ିଗଲା । ୧୭୪୪ ସାଲରେ ଇଂଲଣ୍ଡୀୟ ଗବର୍ଣ୍ଣମେଣ୍ଟଙ୍କ ପୁନର୍ବାର ଟଙ୍କାର ଆବଶ୍ୟକ ହେଲା, କୋମ୍ପାନୀ ଏକକୋଟି ଟଙ୍କା ଧାରଦେଲେ । ଗବର୍ଣ୍ଣମେଣ୍ଟ ପ୍ରତ୍ୟୁପକାରସ୍ୱରୂପ ୧୭୮୦ ସାଲପର୍ଯ୍ୟନ୍ତ ମିୟାଦ ବଢାଇଦେଲେ ।

କୋମ୍ପାନୀ ସମ୍ବନ୍ଧରେ ଇଂଲଣ୍ଡରେ ଯେଉଁ ଘଟନାମାନ ହୋଇଥିଲା ତାହା ସଂକ୍ଷେପରେ ଲେଖାଗଲା, ବର୍ତ୍ତମାନ ସେମାନଙ୍କର ବାଣିଜ୍ୟର ଅବସ୍ଥା ସଂକ୍ଷେପରେ ଲେଖାଯାଉଅଛି ।

ମହାରାଣୀ ଏଲିଜେବେଥଙ୍କ ନିକଟରୁ ସନନ୍ଦ ପାଇ କୋମ୍ପାନୀ ୪ ଖଣ୍ଡ ଜାହାଜ ଓ ଖଣ୍ଡେ ପାନ୍‌ସ ଭାରତବର୍ଷକୁ ପ୍ରେରଣ କରିଥିଲେ । ପ୍ରଥମେ ସେ-ମାନେ ଭାରତବର୍ଷରୁ ଯେ ଦ୍ରବ୍ୟମାନ ନେଇ ଯାଇଥିଲେ ତହିଁରୁ ସେମାନଙ୍କର ଶତକଡ଼ା ଏକଶତ ଏକସ୍ତରି ଟଙ୍କା ଲେଖାଏଁ ଲାଭ ହୋଇଥିଲା; କିନ୍ତୁ ତାହା-ବାଦ ଆଉ ଏତେଲାଭ ହୋଇ ନ ଥିଲା; ମଧ୍ୟ କୌଣସି୨ ସମୟରେ ବରଞ୍ଚ ଏକଶତ ଟଙ୍କାରୁ ଅଳ୍ପ ଲାଭ ହୋଇଥିଲା । ପ୍ରଥମେ ସେମାନଙ୍କର ଯାବାର ଅନ୍ତର୍ଗତ ବାଣ୍ଟାନ ନଗରରେ ପ୍ରଧାନ ଖଟି ଥିଲା । ପରେ ଜାହାଙ୍ଗୀର ବାଦସାହାଙ୍କ ଅନୁଗ୍ର-ହରୁ ୧୬୧୩ ସାଲେ ତାପ୍ତୀ କୁଳବର୍ତ୍ତୀ ସୁରଟ ନଗରରେ ବାଣିଜ୍ୟକୋଠି ନିର୍ମିତ ହୋଇଥିଲା । ମାତ୍ର କୌଣସି ସ୍ଥାନରେ ସେମାନେ ନିରୁପଦ୍ରବରେ ନ ଥିଲେ । ବାଣ୍ଟାନ ନଗରରେ ପର୍ତ୍ତୁଗୀଜ ଓ ସୁରଟରେ ଓଲନ୍ଦାଜ ସେମାନଙ୍କର ପ୍ରବଳ ପ୍ରତିଦ୍ୱନ୍ଦ୍ୱୀ ଥିଲେ । ଏହି ହେତୁରୁ ଅନେକଥର ବିବାଦ ବିସମ୍ବାଦ ଘଟିଥିଲା । ୧୬୨୨ ସାଲେ ଇଂରେଜ ବଣିକମାନେ ପାରସିକ ବଣିକମାନଙ୍କ ସାହାଯ୍ୟରେ ଅର୍ମଜ ଦ୍ୱୀପରୁ ପର୍ତ୍ତୁଗୀଜ ମାନଙ୍କୁ ତଡ଼ିଦେଲେ । ଆଉ ଆଉ ସ୍ଥାନରେ ମଧ୍ୟ ପର୍ତ୍ତୁ-ଗୀଜମାନେ ଇଂରେଜମାନଙ୍କଠାରୁ ଉତ୍ତମ ଶିକ୍ଷା ପ୍ରାପ୍ତ ହୋଇଥିଲେ । ୧୬୪୦

ସାଲେ ଇଷ୍ଟଇଣ୍ଡିଆ କୋମ୍ପାନୀ ମାନ୍ଦ୍ରାଜରେ ସ୍ଥାୟୀ ହୋଇ ବାଣିଜ୍ୟ କରିବାପାଇଁ ସେ ସ୍ଥାନର ରଜାଙ୍କଠାରୁ ପଟ୍ଟା ପ୍ରାପ୍ତ ହୋଇ ଫୋର୍ଟ ସେଣ୍ଟଜର୍ଜନାମଦେଇ ଗୋଟିଏ ଦୁର୍ଗ ନିର୍ମାଣ କଲେ । ତେତେବେଳେ ଜଣେ ଫରାସୀ ପାଦ୍ରି ୧୦ ଘର କେଥଲିକ ଖ୍ରୀଷ୍ଟିୟାନ ଧର୍ମାବଲମ୍ବୀ ଲୋକ ସେସ୍ଥାନରେ ବାସ କରୁଥିଲେ ।

ଇଂଲଣ୍ଡର ଭୂପତି ୨ୟ ଚାର୍ଲସ ପର୍ତ୍ତୁଗାଲ ରାଜକୁମାରୀଙ୍କର ପାଣିଗ୍ରହଣ କରି ବୋମ୍ବେ ନଗରକୁ ଯୌତୁକ ସ୍ୱରୂପ ପ୍ରାପ୍ତ ହୋଇଥିଲେ ମାତ୍ର ତହିଁରୁ ଏପରି ରାଜସ୍ୱ ଉତ୍ପନ୍ନ ହେଉ ନ ଥିଲା ଯେ ସେଥିରେ ସେ ସ୍ଥାନର ଶାସନକାର୍ଯ୍ୟ ନିର୍ବାହ ହେବାକୁ ପାରେ । ତେଣୁ ସେ ଏକଶତ ଟଙ୍କା ରାଜସ୍ୱରେ କୋମ୍ପାନୀକୁ ଇଜାରା ଦେଲେ । କୋମ୍ପାନୀ ମହାରାଷ୍ଟ୍ରୀୟ ଓ ମୁସଲମାନମାନଙ୍କ ଉପଦ୍ରବ ହେତୁରୁ ସୁରାଟ ପରିତ୍ୟାଗ କରି ବୋମ୍ବେକୁ ପ୍ରଧାନ ମୋକାମ କରିଥିଲେ । ସମ୍ରାଟ ସାଜାହାନଙ୍କ ଅଧିକାର ସମୟରେ କୋମ୍ପାନୀ ବଙ୍ଗଳା ଦେଶରେ ପ୍ରଥମେ ପହୁଞ୍ଚିଲେ । ସମ୍ରାଟ୍ ଦାକ୍ଷିଣାତ୍ୟରେ ଥିବା କାଳରେ ତାହାଙ୍କ କନ୍ୟାର ପରିଧେୟ ବସ୍ତ୍ରରେ ଅଗ୍ନି ଲାଗି ଶରୀର ଦଗ୍ଧ ହୋଇଥିଲା । ତେତେବେଳେ ଇଂରାଜ ଡାକ୍ତରମାନେ ଭାରତବର୍ଷରେ ବିଖ୍ୟାତ ଥିଲେ । ସମ୍ରାଟ୍ ସୁରାଟ ନଗରର ଏକ ଡାକ୍ତର ଆଣାଇଲେ । ସେହି ଡାକ୍ତରଙ୍କ ନାମ ବୌଟନ । ଭାଗ୍ୟ ଗୁଣରେ ବୌଟନ କୃତକାର୍ଯ୍ୟ ହେଲେ । ତହୁଁ କୃତଜ୍ଞ ସମ୍ରାଟ୍ ତାହାଙ୍କ ଇଚ୍ଛାନୁସାରେ ପୁରସ୍କାର ପ୍ରାର୍ଥନା କରିବାକୁ କହନ୍ତେ ସେ ଆପଣାପାଇଁ କିଛି ପ୍ରାର୍ଥନା ନ କରି "ଇଷ୍ଟଇଣ୍ଡିଆ କୋମ୍ପାନୀ ବିନାଶୁଳ୍କରେ ବଙ୍ଗଦେଶରେ ବାଣିଜ୍ୟ କରି ପାରିବେ" ଏତିକ ପ୍ରାର୍ଥନା କଲେ । ପ୍ରାର୍ଥନା ମଞ୍ଜୁର ହେଲା ସମ୍ରାଟ୍ ସନନ୍ଦ ଦେଲେ । ସେହି ସନନ୍ଦ ବଳରେ କୋମ୍ପାନୀ ପ୍ରଥମେ ୧୬୪୬ ସାଲେ ବାଲେଶ୍ୱର ବନ୍ଦରରେ ପରେ ହୁଗଳୀ ଓ ଅନ୍ୟାନ୍ୟ ସ୍ଥାନରେ କୋଠି ନିର୍ମାଣ କଲେ କିନ୍ତୁ କୋମ୍ପାନୀ କର୍ମଚାରିମାନଙ୍କର ଦାମ୍ଭିକତା ଓ ମୂର୍ଖତା ହେତୁରୁ ୧୬୮୬ ସାଲରେ ବଙ୍ଗଳାର ଶୁବାଦାର ଶାଏସ୍ତଖାଁ ସେମାନଙ୍କୁ ବଙ୍ଗଳା ଦେଶରୁ ତଡ଼ିଦେଲେ । ଇଂରେଜମାନେ ରାଗାନ୍ୱିତ ହୋଇ ବାଲେଶ୍ୱର ନଗର ପୋଡ଼ିଦେଇ ଇଞ୍ଜିଲି ଦ୍ୱୀପରେ ଆଶ୍ରୟ ନେଲେ । ତହିଁ ଅରବର୍ଷ ମିଳନ ହେବାର ପ୍ରସ୍ତାବ ହେଉଅଛି ଏମନ୍ତ ସମୟରେ ହଠାତ୍ ମାନଙ୍କ ଜଣେ ଇଂରେଜସେନାନୀ ଆସି ବୃଥାରେ ଚଟ୍ଟଗ୍ରାମ ଆକ୍ରମଣ କରି ବାଲେଶ୍ୱର ନଗର ପୋଡିଦେଇ ମାନ୍ଦ୍ରାଜକୁ ଚାଲି ଗଲେ ।

ସମ୍ରାଟ୍ ଆରଙ୍ଗଜେବ ଏହି ସମ୍ବାଦ ପାଇ ଅତ୍ୟନ୍ତ ରାଗାନ୍ୱିତ ହେଲେ ଓ ସୁରାଟ ନଗର ଅଧିକାର କଲେ କିନ୍ତୁ ଇଂରାଜମାନେ ଦୀନଭାବରେ କ୍ଷମାପ୍ରାର୍ଥନା

କରିବାକୁ ସୁରଟ ଫେରାଇ ଦେଲେ ଏବଂ ସୁତାନୁଟୀରେ ବାଣିଜ୍ୟ କୋଠିନିର୍ମାଣ ପାଇଁ ଆଜ୍ଞା ପ୍ରଦାନ କଲେ ।

ଯେମନ୍ତ କଣିକାମାତ୍ର ବଟବୀଜରୁ ବିଶାଳବୃକ୍ଷ ଉତ୍ପନ୍ନ ହୁଏ ତେମନ୍ତ ଇଂରାଜମାନେ ଅଳ୍ପ୨ ବୃଦ୍ଧି ପାଇବାକୁ ଲାଗିଲେ । ୧୬୮୯ ସାଲେ କୋମ୍ପାନୀ ମାନ୍ଦ୍ରାଜର ପ୍ରାୟ ୫୦ କ୍ରୋଶ ଦକ୍ଷିଣେ ଟେଗ୍ନାପାଟନ ନାମକ ଏକଗ୍ରାମ କ୍ରୟକରି ସେଥିରେ ଏକ ଦୁର୍ଗ ନିର୍ମାଣ କଲେ ତାହାର ନାମ ଫୋର୍ଟସେଣ୍ଟ ଡେବିଟ । ତାହାର ନଅବରଷ ଉତ୍ତାରେ ସେମାନେ ଆରଙ୍ଗଜେବଙ୍କ ପୁତ୍ର ଅଜିମଉସାନଙ୍କ ନିକଟରୁ କଲିକତା, ଗୋବିନ୍ଦପୁର ଓ ସୁତାନୁଟୀ ଏହି ତିନି ସ୍ଥାନ କ୍ରୟ କଲେ ଓ କଲିକତାରେ ଏକ ଦୁର୍ଗ ନିର୍ମାଣ କଲେ, ତାହାର ନାମ ଫୋର୍ଟଉଇଲିୟମ । ଏହି ନାମାନୁସାରେ କୌଣସି୨ ଇଂରାଜୀ କାଗଜରେ ସମସ୍ତ କଲିକତାକୁ ଫୋର୍ଟ ଉଇଲିୟମ ବୋଲା ଯାଏ ।

ଇଷ୍ଟଇଣ୍ଡିୟା କୋମ୍ପାନୀ ଇୟୁରୋପରୁ ସୋନା, ରୂପା, ସୀସା, ପାରା, ପସମୀଲୁଗା, ଲୋହା ଏବଂ ବାସନ ଏହି ସକଳ ଦ୍ରବ୍ୟ ଆଣନ୍ତି ଏବଂ ଭାରତବର୍ଷର ଛିଟ ଓ ଅନ୍ୟାନ୍ୟ ଲୁଗା, ରେସମ, ହୀରା, ଗୁଡ଼, ଚିନାବାସନ, ମରିଚ, ଔଷଧର ଗଛ ଓ ସୋରା ନେଇ ଯାଆନ୍ତି । କୋମ୍ପାନୀ ଯେ ସକଳ ଦ୍ରବ୍ୟ ନିଅନ୍ତି ତନ୍ମଧ୍ୟରେ ବସ୍ତ୍ର ପ୍ରଧାନ । ଏକାବେଳକେ ବହୁତ ଟଙ୍କାର ଲୁଗା ଦେଇ ପାରିବେ ତେତେବେଳେ ଏମନ୍ତ କେହି ବଡ଼ ମହାଜନ ଭାରତବର୍ଷରେ ନ ଥିଲା ତେଣୁ ତନ୍ତୀମାନଙ୍କୁ ଦାଦନ ଦେଇ ଲୁଗା ବୁଣାଇ ନେବାକୁ ହେଉଥିଲା । ମାତ୍ର ସେଥିରେ ତନ୍ତୀମାନଙ୍କର ବିଶେଷ ଲାଭ ହେଉ ନ ଥିଲା । କାରଣ କୋମ୍ପାନୀ ତନ୍ତୀମାନଙ୍କର ହାତରୁ ମାଲ ନେଉ ନ ଥିଲେ । ଦାଦନ ମଧ୍ୟ ସେମାନଙ୍କୁ ଦିଆ ଯାଉ ନ ଥିଲା । କୋମ୍ପାନୀଙ୍କ କୋଠିରେ ମୁତସଦ୍ଦି ନିଯୁକ୍ତ ଥାଆନ୍ତି । ମୁତସଦ୍ଦିଠାରେ ପଇକାରୀ ଓ ପଇକାରୀଠାରେ ଗୋମାସ୍ତା ନିଯୁକ୍ତ ଥାଆନ୍ତି । ଗୋମାସ୍ତାମାନେ ଲୁଗାର ଅଡ଼ଙ୍ଗାକୁ ଯାଇ ତନ୍ତୀମାନଙ୍କୁ ଦାଦନ ଦେଇ ଲୁଗା ବୁଣାଇ ନେଉଥିଲେ । କୋମ୍ପାନୀ ଯେ ଦାଦନ ଦିଅନ୍ତି ତାହା ଉଲ୍ଲିଖିତରୂପେ ଚତୁର୍ ପାଞ୍ଚହାତ ହୋଇ ତନ୍ତୀମାନଙ୍କ ନିକଟକୁ ଆସେ ମାଲ ମଧ୍ୟ ତଦ୍ରୂପ ହୋଇ ଯାଏ । ଏଣୁ କୋମ୍ପାନୀ ଯେ ଦାଦନ ଦିଅନ୍ତି ତହିଁରୁ ଟଙ୍କାରେ ଛଅଅଣା ସେମାନଙ୍କ ହସ୍ତରେ ଲାଗିଯାଏ, ଅବଶିଷ୍ଟ ଦଶଅଣା ଦରିଦ୍ର ତନ୍ତୀମାନଙ୍କଠାରେ ପହୁଞ୍ଚେ । ତଥାପି ସେମାନେ କୋମ୍ପାନୀର ଦାଦନ ଏଡ଼ିପାରୁ ନ ଥିଲେ ।

ଇଷ୍ଟଇଣ୍ଡିୟା କୋମ୍ପାନୀଙ୍କ ଭାରତବର୍ଷରେ କଲିକତା ମାନ୍ଦ୍ରାଜ ଓ ବୋମ୍ବେ, ଏହି ତିନି ପ୍ରଧାନ କୁଠିର ଅଧୀନରେ କୋମ୍ପାନୀଙ୍କ ସମସ୍ତ କାରବାର ଚଳୁ

ଥିଲା । ଏହି ତିନସ୍ଥାନକୁ ପ୍ରେସିଡେନ୍‌ସି ବୋଲିଯାଏ । ପ୍ରତ୍ୟେକ ପ୍ରେସିଡେନ୍‌ସିରେ ଗୋଟିଏ ଏ ସଭାଥିଲା, ସେହି ସଭାର ନାମ କୌନସିଲ । କୌନସିଲର ଅଧ୍ୟକ୍ଷଙ୍କ ନାମ ପ୍ରେସିଡେଣ୍ଟ ବା ଗବର୍ଣ୍ଣର । କୋମ୍ପାନୀ କର୍ମଚାରୀମାନଙ୍କ ମଧ୍ୟରେ କୌଣସି ଲୋକ ଦୋଷ କଲେ ତାହା କୌନସିଲ ବୁଝୁଥିଲେ । ୧୬୬୧ ସାଲେ ଇଂଲଣ୍ଡର ଅଧିପତି ୨ୟ ଚାର୍ଲସ ଦେଓ୍ୱାନୀ ଓ ଫୌଜଦାରୀ ମକଦମା ବିଚାର କରିବା କୋମ୍ପାନୀକୁ କ୍ଷମତା ଦେଇଥିଲେ । ସେହିଦିନଠାରୁ ୧୭୨୬ ସାଲପର୍ଯ୍ୟନ୍ତ ସେହି କ୍ଷମତା ସେମାନଙ୍କ ହସ୍ତରେ ନ୍ୟସ୍ତ ଥିଲା । ପରବରଷ ସେମାନେ ତିନ ପ୍ରେସିଡେନ୍‌ସିରେ ତିନୋଟି ବିଚାରାଳୟ ସ୍ଥାପନ କରିବାର ଅନୁମତି ପାଇଥିଲେ ସେହି ବିଚାରାଳୟର ନାମ ମେୟର୍ସକୋର୍ଟ । ତହିଁରେ ସମସ୍ତପ୍ରକାର ଦେଓ୍ୱାନୀ ମକଦମାର ବିଚାର ହେଉଥିଲା । ଏ ଉତ୍ତାରେ କୋମ୍ପାନୀ ବିନା ଶୁଳ୍କରେ ବଙ୍ଗଦେଶରେ ବାଣିଜ୍ୟ କରିବାପାଇଁ ବିଶେଷ ଚେଷ୍ଟା କରିବାକୁ ଲାଗିଲେ । ୧୭୧୩ ସାଲରେ ଫେରକ ସେର ସମ୍ରାଟଙ୍କ ସମୟରେ ଇଂଲଣ୍ଡୀୟ କର୍ତ୍ତୃପକ୍ଷୀୟମାନଙ୍କ ଆଦେଶାନୁସାରେ କଲିକତାର କୁଠିରକର୍ତ୍ତା ସାହେବ ବହୁମୂଲ୍ୟ ଭେଟଦ୍ରବ୍ୟସହିତ କେତେଜଣ ଦୂତଙ୍କୁ ଦିଲ୍ଲୀ ପଠାଇ ଥିଲେ । ସେମାନଙ୍କସହିତ ଜଣେ ଡାକ୍ତର ଥିଲେ ନାମ ହାମିଲ୍‌ଟନ । ଦୂତମାନଙ୍କ ଉପସ୍ଥିତ ହେବାର କିଛି ପୂର୍ବରୁ ସମ୍ରାଟ୍ ପୀଡ଼ିତ ଥିଲେ । ବୈଦ୍ୟ ଓ ହାକମମାନଙ୍କଦ୍ୱାରା ଶୀଘ୍ର ଆରୋଗ୍ୟ ଲାଭ ନ କରିବାରୁ ସେ ଅତ୍ୟନ୍ତ ଉଦ୍‌ବିଗ୍ନ ଥିଲେ, ଉଦ୍‌ବିଗ୍ନ ହେବାର କାରଣ ମଧ୍ୟ ଥିଲା; ଯୋଧପୁରର ଏକ ରାଜକୁମାରୀ ସହିତ ତାହାଙ୍କର ବିବାହସମ୍ବନ୍ଧ ସ୍ଥିରୀକୃତ ହୋଇଥିଲା ସେହି କୁମାରୀ ମଧ୍ୟ ଦିଲ୍ଲୀରେ ଉପସ୍ଥିତ ଥିଲେ । ହାମିଲଟନଙ୍କ ଚିକିତ୍ସାଦ୍ୱାରା ସମ୍ରାଟ୍ ଶୀଘ୍ର ଆରୋଗ୍ୟଲାଭ କଲେ । ସମ୍ରାଟ୍ ଆରୋଗ୍ୟଲାଭ କରି ହାମିଲଟନଙ୍କୁ ପାରିତୋଷିକ ପ୍ରାର୍ଥନା କରିବାକୁ ଆଦେଶ କରନ୍ତେ ସେ ଆପଣାପାଇଁ କିଛି ନ ମାଗି ଡାକ୍ତର ବାଉଟନ ସାହେବଙ୍କ ପରି "ଇଷ୍ଟଇଣ୍ଡିଆ କୋମ୍ପାନୀ ବିନା ଶୁଳ୍କରେ ବାଣିଜ୍ୟ କରିବେ ଓ ସୁତାନୁଟୀ, କଲିକତା ଓ ଗୋବିନ୍ଦପୁର କଲିକତା ସମୀପ ପଞ୍ଚତ୍ରିଂଶଖଣ୍ଡଗ୍ରାମ କିଣିବାକୁ ପାଇବେ" ଏହିପରି ପ୍ରାର୍ଥନା କଲେ । ସମ୍ରାଟ୍ ତହିଁରେ ସମ୍ମତ ହେଲେ ।

ଏହି ଆଦେଶ କୋମ୍ପାନୀଙ୍କ ପକ୍ଷରେ ମଙ୍ଗଳଦାୟକ ଅଟେ । ମାତ୍ର ବଙ୍ଗଳା ଶୁବାଦାରଙ୍କ ପକ୍ଷରେ ବିଶେଷ ଅନିଷ୍ଟକର ଥିଲା, କାରଣ ଇଂରାଜମାନେ ଶୁଳ୍କ ନ ଦେଲେ ଶୁବାର ଅନେକ ଆୟ ହ୍ରାସ ହେବାର ସମ୍ଭାବନା ଓ ଜମିଦାରୀ କ୍ରୟ କଲେ ଏକପ୍ରକାର ସ୍ୱାଧୀନ ହୋଇ ପଡିବେ । ଏଣୁ ସେ ସମ୍ରାଟଙ୍କ ଆଦେଶ ରହିତ କରିବା କାରଣ ବିଶେଷ ଚେଷ୍ଟା କରିବାକୁ ଲାଗିଲେ; ମାତ୍ର କିଛି କରି

ପାରିଲେ ନାହିଁ । ସେ କଲିକତା ସମୀପବର୍ତ୍ତୀ ଜମିଦାରମାନଙ୍କୁ କୋମ୍ପାନୀଙ୍କୁ ଜମିଦାରୀ ବିକ୍ରୟ କରିବାପାଇଁ ବିଶେଷରୂପେ ନିଷେଧ କରି ପଠାଇଲେ । କିନ୍ତୁ ଶ୍ରୀଲ୍ପ ବିଷୟରେ କଣ୍ଟ କରି ପାରିଲେ ନାହିଁ ।

ଫରାସି ଜାତିମାନଙ୍କର ଭାରତବର୍ଷକୁ ଆଗମନ ।

ଇଂଲଣ୍ଡର ଦକ୍ଷିଣ ପୂର୍ବପାର୍ଶ୍ୱେ ଫ୍ରାନସ୍ ନାମକ ଏକଦେଶ ଅଛି, ସେସ୍ଥାନ ନିବାସିମାନଙ୍କୁ ଫରାସି ବୋଲାଯାଏ । ଫ୍ରାନ୍ସ ଇଂଲଣ୍ଡର ଅତି ନିକଟବର୍ତ୍ତୀ, ମଧ୍ୟରେ ଏକ ପ୍ରଣାଳୀ ବ୍ୟବଧାନ ମାତ୍ର । ଫରାସିମାନେ ବଳ, ବୀର୍ଯ୍ୟ, ବୁଦ୍ଧି, ବିଭବ, ସଭ୍ୟତା ଓ ପାଣ୍ଡିତ୍ୟ ସକଳ ବିଷୟରେ ଇଂରେଜମାନଙ୍କର ତୁଲ୍ୟ । ତେଣୁ ସେମାନେ ଇଂରେଜମାନଙ୍କର ପ୍ରତିଯୋଗୀ ହୋଇ ଉଠିବେ ଏଥିରେ ବିଚିତ୍ର କି ଅଛି ?

୧୬୬୪ ସାଲରେ ଫ୍ରାନ୍ସର ପ୍ରଧାନମନ୍ତ୍ରୀ କଲବର୍ଟଙ୍କର ଚେଷ୍ଟାଦ୍ୱାରା ଫରାସି ଇଷ୍ଟଇଣ୍ଡିଆ କୋମ୍ପାନୀର ସୃଷ୍ଟି ହେଲା । ସେହିଦିନଠାରୁ ସେମାନେ ଭାରତ-ବାଣିଜ୍ୟରେ ପ୍ରବୃତ୍ତ ହେଲେ । ମାନ୍ଦ୍ରାଜର ପ୍ରାୟ ଶହେକୋଶ ଦକ୍ଷିଣରେ ପଣ୍ଡିଚେରୀ, ମଲବାର ଉପକୂଳରେ ମାହି, କରମଣ୍ଡଳ ଉପକୂଳରେ କାରିକୋଲ ଓ ବଙ୍ଗଳାଅନ୍ତର୍ଗତ ଚନ୍ଦନନଗରରେ ସେମାନଙ୍କର କୁଠି ନିର୍ମିତ ହେଲା । ପଣ୍ଡିଚେରୀରେ ଫରାସି କୋମ୍ପାନୀଙ୍କର ଗୋଟିଏ କୌନସିଲ ଥିଲା । ସେହି କୌନ୍ସିଲର ଅଧ୍ୟକ୍ଷଙ୍କର ନାମ ଗବର୍ଣ୍ଣର, ଏହା ଛଡା ମରିସସ୍ ଓ ବୋର୍ବୋଁ ଏହି୨ ଦ୍ୱୀପ ଫରାସିମାନଙ୍କର ଅଧିକାରଭୁକ୍ତ ଥିଲା ସେହି୨ ସ୍ଥାନର ରାଜକାର୍ଯ୍ୟଶାସନ ପାଇଁ ସ୍ୱତନ୍ତ୍ର ଶାସନକର୍ତ୍ତା ନିଯୁକ୍ତ ଥିଲେ ।

୧୭୪୪ ସାଲରେ ଇଂଲଣ୍ଡ ଓ ଫ୍ରାନ୍ସ ଏହି ଦୁଇଦେଶରେ ଯୁଦ୍ଧ ଉପସ୍ଥିତ ହେଲା ; ସେତେବେଳେ ମରିସସରେ ଲାବର୍ଡ଼ନେ ଓ ପଣ୍ଡିଚେରୀରେ ଡୁପ୍ଲେ ଗବର୍ଣ୍ଣରୀପଦରେ ନିଯୁକ୍ତ ଥିଲେ । ଏ ଦୁଇଜଣ ଅତି ଅସାଧାରଣ ମନୁଷ୍ୟଥିଲେ । ସମସ୍ତବିଷୟରେ ଏମାନଙ୍କର ଚତୁରତା ଥିଲା, ଦୋଷମଧ୍ୟରେ ଡୁପ୍ଲେ ପରଶ୍ରୀ ଦେଖିପାରନ୍ତି ନାହିଁ ।

ଇଉରୋପରେ ଇଂରେଜ ଓ ଫରାସି ଉଭୟ ଜାତିଙ୍କର ଯୁଦ୍ଧ ଉପସ୍ଥିତ ହୁଅନ୍ତେ ଭାରତବର୍ଷରେ ଯୁଦ୍ଧ ଘଟିବାର ସମ୍ପୂର୍ଣ୍ଣ ସମ୍ଭାବନା ହେଲା । ତେଣୁ ଇଂରେଜ କୋମ୍ପାନୀଙ୍କର ବାଣିଜ୍ୟସ୍ଥାନ ରକ୍ଷା ନିମନ୍ତେ ଇଉରୋପରୁ କିଛି ସୈନ୍ୟ ଆଣିବାର ଆବଶ୍ୟକ ହେଲା, ସୈନ୍ୟ ଆସିବାବେଳେ ନାଗପଟ୍ଟନ ନଗର ନିକଟରେ ଲାବର୍ଡ଼ନେ ସେହି ସକଳ ରଣତରୀ ଭେଟିଲେ । ଅତିଦୂରରୁ ଉଭୟେ ଉଭୟଙ୍କପ୍ରତି ଗୋଳାବର୍ଷଣ କରିବାକୁ ଲାଗିଲେ । ପରେ ସନ୍ଧି ହେବାକୁ ପୁଣ

ରହିତ ହେଲା । ସେହି ଅବସରେ ଇଂରେଜମାନେ ପଲାୟନ କଲେ । ପରଦିନ ଲାବର୍ଡୁନେ ଇଂରେଜମାନଙ୍କର ଭେଟ ନ ପାଇ ପଣ୍ଡିଚେରୀକୁ ଗୁଲିଗଲେ ।

ଲାବର୍ଡୁନେଙ୍କ ଆଗମନରେ ଡୁପ୍ଲେଙ୍କର ଦାରୁଣ ଈର୍ଷ୍ୟା ଜନ୍ମିଲା ସେ ଦେଖିଲେ ଲାବର୍ଡୁନେଙ୍କ ବାସନା ସଫଳ ହେଲେ ସ୍ୱଦେଶରେ ଅତ୍ୟନ୍ତ ଯଶସ୍ୱୀ ହେବେ, ଏଥିକୁ ଡୁପ୍ଲେ ତାହାଙ୍କର ବାସନା ବ୍ୟାଘାତ ପାଇଁ ବିଶେଷ ଚେଷ୍ଟା କରିବାକୁ ଲାଗିଲେ । ଲାବର୍ଡୁନେ ମାନ୍ଦ୍ରାଜ ଆକ୍ରମଣ କରିବାକୁ ଇଚ୍ଛା କରି ଡୁପ୍ଲେଙ୍କ ନିକଟକୁ ଷାଠିଏଗୋଟା କମାଣ ଓ ଅନ୍ୟାନ୍ୟ ପ୍ରୟୋଜନୀୟ ଦ୍ରବ୍ୟ ମାଗି ପଠାଇଲେ; କିନ୍ତୁ ଡୁପ୍ଲେ କେବଳ ତିରିଶଗୋଟା ପୁରୁଣା ଭଙ୍ଗା କମାଣ ପଠାଇଲେ, ଆଉ କିଛି ପଠାଇଲେ ନାହିଁ । ଆଉ ଏମନ୍ତ ଜଳ ପଠାଇଲେ ଯେ ତାହା ପାନ କରି ସୈନ୍ୟମାନଙ୍କର ଉଦରାମୟ ରୋଗ ଜନ୍ମିବାକୁ ଲାଗିଲା ।

ଲାବର୍ଡୁନେ ଯାଇ ମାନ୍ଦ୍ରାଜ ଆକ୍ରମଣ କଲେ । ସେତେବେଳେ ସେସ୍ଥାନରେ ୩୦୦ ଶତ ମାତ୍ର ଇଂରେଜ ବାସ କରୁଥିଲେ । ତିନଦିନ ଅବରୋଧ ସହି ଇଂରେଜମାନେ " କିଛି ମୂଲ୍ୟ ପାଇ ମାନ୍ଦ୍ରାଜ ଛାଡ଼ ଦେବେ " ଏହିକଥା ସ୍ୱୀକାର କରାଇ ନେଇ ଲାବର୍ଡୁନେଙ୍କ ହସ୍ତରେ ଆତ୍ମସମର୍ପଣ କଲେ । ସେଣ୍ଟଜର୍ଜ ଦୁର୍ଗରେ ଫରାସୀଙ୍କର ଜୟପତାକା ଉଡ଼ିଲା ।

ମାନ୍ଦ୍ରାଜ କର୍ଣ୍ଣାଟ ନବାବଙ୍କ ଅଧିକାରର ଅନ୍ତର୍ଗତ, ଇଂରେଜମାନେ ଜମିଦାରସ୍ୱରୂପ ଥିଲେ । ମାନ୍ଦ୍ରାଜ ଆକ୍ରମଣ ସମ୍ବାଦ ପାଇ କର୍ଣ୍ଣାଟର ନବାବ ବିରକ୍ତି ପ୍ରକାଶ କରି ଫରାସୀମାନଙ୍କୁ ପତ୍ର ଲେଖିଲେ, ତହିଁରେ ଡୁପ୍ଲେ ଉତ୍ତର ଦେଲେ " ଆମ୍ଭେମାନେ ମାନ୍ଦ୍ରାଜ ଆକ୍ରମଣ କରିଅଛୁଁ ସତ୍ୟ କିନ୍ତୁ ତାହା ଅଧିକାର କଲେ ଆପଣଙ୍କୁ ସମର୍ପଣ କରିବୁଁ । " ନବାବ ଏହିକଥାରେ ଭୁଲିଗଲେ ।

ଏଣେ ଲାବର୍ଡୁନେ ଇଂରେଜମାନଙ୍କୁ ମାନ୍ଦ୍ରାଜ ଫେରାଇ ଦେବାର ପ୍ରତିଶ୍ରୁତ ଶୁଣି ଡୁପ୍ଲେ ଅତ୍ୟନ୍ତ ବିରକ୍ତ ହେଲେ ଏହି ଉପଲକ୍ଷେ ଉଭୟ ମଧ୍ୟରେ ଅନେକ ବାଦାନୁବାଦ ଚଳିବାକୁ ଲାଗିଲା । ଲାବର୍ଡୁନେ କହିଲେ ମାନ୍ଦ୍ରାଜ ଆମ୍ଭେ ଜିଣିଅଛୁଁ ଆମ୍ଭର ଯାହା ଇଚ୍ଛା ତାହା କରିବୁଁ । ଡୁପ୍ଲେ କହିଲେ ଭାରତବର୍ଷ ମଧ୍ୟରେ ଆମ୍ଭେ ଫରାସୀଙ୍କର ସର୍ବପ୍ରଧାନ କର୍ମଚାରୀ । ଜିତ ହେବାମାତ୍ର ମାନ୍ଦ୍ରାଜ ଆମ୍ଭର ଏଲାକାଭୁକ୍ତ ହୋଇଅଛି; ତାହା ରଖିବା ଅବା ଛାଡ଼ିଦେବା ଆମ୍ଭର ଇଚ୍ଛା । ଉଭୟପକ୍ଷର ଏହିପରି ବିବାଦ ବିସମ୍ବାଦ ଚଳିବାରୁ ଲାବର୍ଡୁନେ ବିରକ୍ତ ହୋଇ ସ୍ୱସ୍ଥାନକୁ ପ୍ରସ୍ଥାନ କଲେ । ପୂର୍ବପ୍ରତିଜ୍ଞାନୁସାରେ ମାନ୍ଦ୍ରାଜ ସମର୍ପଣ ନ କରିବାରୁ କର୍ଣ୍ଣାଟ ନବାବ ଫରାସୀମାନଙ୍କ ବିରୁଦ୍ଧରେ କେତେ ସୈନ୍ୟ ପଠାଇଲେ କିନ୍ତୁ

ଅଳ୍ପକାଳ ମଧ୍ୟରେ ସେହି ପ୍ରେରିତ ସେନାମାନେ ମାଡ୍ରାଜ ସମୀପରେ ଫରାସିମାନଙ୍କ-ଦ୍ୱାରା ପରାଜିତ ହୋଇ ପଳାୟନ କଲେ । ତତ୍ପରେ, ମାଡ୍ରାଜ ଇଂରେଜମାନଙ୍କୁ ମଧ୍ୟ ନ ଦେଇ ଆପଣାର ଅଧିକାରଭୁକ୍ତ କଲେ ଓ ତତ୍ରତ୍ୟ ଇଂରେଜ ବନ୍ଦୀମାନଙ୍କୁ ଘେନି ପଣ୍ଡିଚେରୀକୁ ଗମନ କଲେ ।

ଫରାସିଙ୍କପକ୍ଷରୁ ପଣଭଙ୍ଗ ହେବାରୁ ବନ୍ଦୀ ଇଂରେଜମାନେ ଆପଣାମାନଙ୍କୁ ଧର୍ମଦ୍ୱାରରେ ପ୍ରତିଜ୍ଞା ପାଶରୁ ମୁକ୍ତ ଜାଣି ଫୋର୍ଟସେଣ୍ଟଡେଭିଡ୍‌କୁ ପଳାୟନ କଲେ । ଫରାସିମାନେ ପୁନର୍ବାର ସେଣ୍ଟଡେଭିଡ୍ ଆକ୍ରମଣ କଲେ କିନ୍ତୁ କର୍ଣ୍ଣାଟର ନବାବ ଇଂରେଜଙ୍କ ପକ୍ଷ ଅବଲମ୍ବନ କରିବାରୁ କିଛି କରି ପାରିଲେ ନାହିଁ । ପୁନର୍ବାର ତତ୍ପରେ ସେଣ୍ଟଡେଭିଡ୍ ଆକ୍ରମଣ ପାଇଁ ସେନା ପ୍ରେରଣ କଲେ; କିନ୍ତୁ ପ୍ରେରିତ ସେନାମାନେ ସେଣ୍ଟଡେଭିଡ୍‌କୁ ଯାଇଁ ଦେଖିବାକୁ ପାଇଲେ ଯେ, କେତେକ ଖଣ୍ଡ ଜାହାଜ ନଗରାଭିମୁଖ ହୋଇ ଆସୁଅଛି । ସେହି ସବଳ ଇଂରେଜୀ ଯୁଦ୍ଧ ବୋଇତ ମନରେ କରି ସେନାମାନେ ପଣ୍ଡିଚେରୀକୁ ବାହୁଡ଼ି ଗଲେ ।

ଉକ୍ତ ରଣ ବୋଇତମାନଙ୍କରେ ୧୪ ଶତ ଇଂରେଜୀ ସୈନ୍ୟ ବିଲାତରୁ ଆସିଥିଲେ, ଇଂରେଜ ସେନାପତି ମେଜର ଲରେନ୍‌ସ ପଣ୍ଡିଚେରୀ ଅବରୋଧ କଲେ ; କିନ୍ତୁ ବୃଷ୍ଟି ଓ ବତାସର ପ୍ରତିବନ୍ଧକତା ଓ ଅବରୋଧକାରୀମାନଙ୍କର ଅଜ୍ଞତା ହେତୁରୁ କିଛି କରି ପାରିଲେ ନାହିଁ । ତତ୍ପରେ ଏହାର ବିଶେଷ ବିବରଣ ଲେଖି ଦେଶୀୟ ରାଜାମାନଙ୍କଠାକୁ ପଠାଇଲେ ସେଥିରେ ରାଜାମାନେ ଜାଣିଲେ ଯେ ଫରାସିମାନେ ପ୍ରବଳ ଓ ପରାକ୍ରାନ୍ତ, ଇଂରେଜମାନେ ଅସାର ଓ ଅପଦାର୍ଥ ।

ଏହି ଘଟନା ଅବସାନେ ୧୭୪୯ ସାଲେ ଇୟୁରୋପରୁ ସମ୍ବାଦ ଆସିଲା ଯେ, ଆଯ୍ଲାସାପଲ ନଗରେ ଇଂରେଜ ଓ ଫରାସି ଉଭୟ ଜାତିର ସନ୍ଧି ହୋଇ-ଅଛି ସୁତରାଂ ଭାରତବର୍ଷରେ ସନ୍ଧି ହେଲା ।

—୦୦*୦୦—

## ଦ୍ୱାବିଂଶ ଅଧ୍ୟାୟ ।

ଚିରକାଳ ସମାନ ଯାଏ ନାହିଁ, ସଂସାରର ସମସ୍ତ ବସ୍ତୁ ଅନିତ୍ୟ, ଶୁକ୍ଳ କୃଷ୍ଣ-ପକ୍ଷ ପରି ସୁଖ ଦୁଃଖ ପରିବର୍ତ୍ତନଶୀଳ "ଚକ୍ରବତ୍ ପରିଭ୍ରମନ୍ତି ଦୁଃଖାନି ଚ, ସୁଖାନି ଚ" କାହା ଅଦୃଷ୍ଟରେ କେତେବେଳେ କି ଘଟିବ ତାହା କିଏ କହି ପାରେ । ଯେ ସାହଜାହାନ ଦିଲ୍ଲୀ ସିଂହାସନକୁ ମଣିମାଣିକ୍ୟରେ ବିଭୂଷିତ କରିଥିଲେ, ଯାହାଙ୍କର ନିର୍ମିତ ତାଜମହଲ ପୃଥିବୀର ସର୍ବଶ୍ରେଷ୍ଠ ଶିଳ୍ପକର୍ମ ବୋଲି ବିଖ୍ୟାତ ହୋଇଅଛି ଓ

ଯାହାଙ୍କର ଦୌର୍ଦ୍ଦଣ୍ଡପ୍ରତାପରେ ଭାରତଭୂମି କମ୍ପିତ ହେଉଥିଲା; ସେହି ସାହଜାହାନ ବନ୍ଦୀଦଶାରେ ଦେହ ତ୍ୟାଗ କରିବେ ଏକଥା କାହା ମନରେ ଥିଲା । ସାମାନ୍ୟ ଦସ୍ୟୁଦଳପତି ଶିବଜୀ ଦାକ୍ଷିଣାତ୍ୟରେ ସ୍ୱାଧୀନ ରାଜା ହେବା ମଧ୍ୟ ସେହିପରି କଥା । ଦୁରାତ୍ମା ତୈମୁର ବା ଅରଙ୍ଗଜେବ ଅଥବା ମହାମହିମ ଅକବର କେଉଁଠାରେ ? ସେମାନଙ୍କର କାର୍ଯ୍ୟକଲାପ ଧରାଧାମରେ ଦେଦୀପ୍ୟମାନ ରହିଅଛି । ମନୁଷ୍ୟମାନେ କି ଅପରିଣାମଦର୍ଶୀ, ସଂସାରର ଭାବଗତି ଜାଣି ମଧ୍ୟ କୁକର୍ମରେ ପ୍ରବୃତ୍ତ ହେଉଅଛନ୍ତି । ଏହାଠାରୁ ଆଉ କି ଆଶ୍ଚର୍ଯ୍ୟ ହୋଇ ପାରେ ।

ଆରଙ୍ଗଜେବଙ୍କ ମୃତ୍ୟୁ ଅର୍ଥାତ୍ ୧୭୦୭ ସାଲଠାରୁ ୪୦ ବରଷ କେତେ ଜଣ କାପୁରୁଷ ହୀନବଳ ଲୋକ ଦିଲ୍ଲି ସିଂହାସନରେ ଆରୋହଣ କରିଥିଲେ । ସେମାନେ ନାମେ ମାତ୍ର ଦିଲ୍ଲୀଶ୍ୱର; କାର୍ଯ୍ୟରେ ପୂର୍ବବର୍ତ୍ତୀ ଦିଲ୍ଲୀଶ୍ୱରମାନଙ୍କର ପାଦୁକାବନ୍ଧନୀ ଫିଟାଇବାର ମଧ୍ୟ ଯୋଗ୍ୟ ନ ଥିଲେ । ରାଜଗୁଣ ବା ରାଜପ୍ରତାପ ସେମାନଙ୍କର କିଛିହିଁ ନ ଥିଲା । ବିଳାସ ଉପପତ୍ନୀ ଓ ମାଦକ ସେବନ ସେମାନଙ୍କର ପ୍ରଧାନ କାର୍ଯ୍ୟ । ରାଜ୍ୟ ଶାସନ ବିଷୟରେ ସେମାନେ ମନ୍ତ୍ରୀମାନଙ୍କଠାରେ ମାକଡ଼ିଆ ହାତନାଟମାକଡ଼ ପରି ଥିଲେ । ମନ୍ତ୍ରିମାନେ ଯେପରି ନଚାନ୍ତି ସେମାନେ ସେହିପରି ନାଚୁଥିଲେ । ପୁଣି ଅମାତ୍ୟମାନଙ୍କ ମଧ୍ୟରେ ସୁଦ୍ଧା ପରସ୍ପର ମତଭେଦ, ବିଦ୍ୱେଷ ଓ ବିବାଦ ଚଳୁଥିଲା । ଏହି ବିଶୃଙ୍ଖଳା ସମୟରେ ଭୀମପ୍ରକୃତି ଆକ୍ରମଣକାରୀମାନେ ସିନ୍ଧୁନଦୀ ପାର ହୋଇ ଆସି ଦିଲ୍ଲୀର ଅରକ୍ଷିତ ଭଣ୍ଡାର ଲୁଟି ନେଇ ଗଲେ । ସୁନ୍ଦର ପ୍ରସ୍ଫୁଟିତ ପଦ୍ମବନ ହସ୍ତୀ ପଦରେ ଦଳିତ ହେଲା ପରି ଦିଲ୍ଲୀ ସହର ହୋଇ ଗଲା । ଗୃହଅଡ଼େ ଶତ୍ରୁ, ଗୃହଅଡ଼େ ବିପଦ ଏବଂ ରାଜପୁତ ରାଜାମାନେ, ସିନ୍ଧୁ ତଟରେ ଶିଖ, ଯମୁନାକୂଳରେ ଜାଟ, ଏବଂ ରୋହିଲାମାନେ ଏକାବେଳେ ଦେଖା ଦେଲେ ଏବଂ ମହାରାଷ୍ଟ୍ରୀୟମାନଙ୍କ ଦୌରାତ୍ମ୍ୟରୁ ସମସ୍ତ ଭାରତଭୂମି କମ୍ପିତ ହେବାକୁ ଲାଗିଲା । ପଦମର୍ଦ୍ଦିତ ଭୁଜଙ୍ଗମ ଯେପରି ସୁଯୋଗ ପାଇଲେ ଆକ୍ରମଣକାରୀର ପ୍ରତିହିଂସା କରିଥାଏ ସେହିପରି ସମସ୍ତେ ଦିଲ୍ଲୀଶ୍ୱରଙ୍କ ଉପରେ ବକ୍ର ଦୃଷ୍ଟିପାତ କରିବାକୁ ଲାଗିଲେ । ଏହି ଗୋଳଯୋଗର ଯେ କିପରି ଅବସାନ ହେବ ତାହା ଅନେକଦିନ ପର୍ଯ୍ୟନ୍ତେ ଜଣା ଗଲା ନାହିଁ । ମରହଟ୍ଟା, ରାଜପୁତ, ଶିଖ, ରୋହିଲା ଏହିମାନଙ୍କ ମଧ୍ୟରୁ ଯେ କୌଣସି ଜାତି ଦିଲ୍ଲିର ଭବିଷ୍ୟତ ଅଧିକାରୀ ହେବେ ଏତିକି ମାତ୍ର ଜଣା ଯାଉଥିଲା କିନ୍ତୁ ୭ ସହସ୍ର କୋଶ ଦୂରସ୍ଥିତ ଗୋଟିଏ ସାମାନ୍ୟ ବଣିକଦଳ ଯେ ସମସ୍ତଙ୍କ ଦର୍ପ ଚୂର୍ଣ୍ଣ କରି ହିମାଳୟଠାରୁ କୁମାରିକା ଅନ୍ତରୀପ ପର୍ଯ୍ୟନ୍ତେ ରାଜ୍ୟ ବିସ୍ତାର କରିବେ ଏକଥା କାହାର ମନରେ ଥିଲା ନାହିଁ ।

ଇଂରେଜମାନେ ଯେ ଉପାୟ ଅବଲମ୍ବନ କରି ବିଶାଳ ଭାରତଭୂମିକୁ ଏକଚ୍ଛତ୍ର କରିଅଛନ୍ତି, ବର୍ତ୍ତମାନ କଣ୍ଡିକାରେ ସେ କଥା ଲେଖୁଅଛୁଁ ।

ପୂର୍ବେ କୋହ୍ଲା ଯାଇଅଛି ଶିବଜୀଙ୍କ ପିତା ସାଜୀ ମହୀସୁର ପ୍ରଦେଶରେ ଗୋଟିଏ ଜାଯ୍ଗୀର ପାଇଥିଲେ, ସେହି ଜାଯ୍ଗୀର ମହୀସୂର ପ୍ରଦେଶରେ ବହୁଦୂର ବିସ୍ତୃତ ଥିଲା ତାହାର ନାମ ତଞ୍ଜୋର । ତଞ୍ଜୋର ନାମେ ମାତ୍ର କର୍ଣ୍ଣାଟପତିଙ୍କ ଅଧୀନରେ ଥିଲା, କାର୍ଯ୍ୟରେ ସମ୍ପୂର୍ଣ୍ଣରୂପେ ସ୍ୱାଧୀନ । ସାଜୀଙ୍କ ଉତ୍ତରବର୍ତ୍ତୀ ପୁରୁଷ ନିର୍ବିଘ୍ନରେ ରାଜ୍ୟ ଶାସନ କରିଥିଲେ । ଏ ଉତ୍ତାରେ ସାହୁଜୀ ଓ ପ୍ରତାପସିଂହ ନାମକ ୨ ଜଣ ସେହି ବଂଶରେ ଜନ୍ମ ଗ୍ରହଣ କରିଥିଲେ । ପ୍ରଥମରେ ସାହୁଜୀ ସିଂହାସନରେ ଆରୋହଣ କରିଥିଲେ, ପରେ ୧୭୪୧ ସାଲେ ପ୍ରତାପସିଂହ ତାହାଙ୍କୁ ତଡ଼ି ଦେଇ ସ୍ୱୟଂ ରାଜ୍ୟେଶ୍ୱର ହେଲେ । ତହୁଁ ସାହୁଜୀ ଆସି ଇଂରେଜ କୋମ୍ପାନୀଙ୍କ ଶରଣାଗତ ହୋଇ କହିଲେ; "କୋମ୍ପାନୀ ଯେବେ ଆମ୍ଭ ରାଜ୍ୟ ପ୍ରାପ୍ତି ବିଷୟରେ ସହାୟତା କରିବେ, ତେବେ ଆମ୍ଭେ ରାଜ୍ୟପ୍ରାପ୍ତ ହେଲେ କୋମ୍ପାନୀଙ୍କ ସମସ୍ତ ଯୁଦ୍ଧ-ବ୍ୟୟ ଧରି ଦେବୁଁ ଆଉ ତାହା ଛଡ଼ା ଦେବୀକୁଟ ନଗର ଜାଯ୍ଗୀର ସ୍ୱରୂପ ପ୍ରଦାନ କରିବୁଁ ।

ଇଂରେଜମାନେ ଦେବୀକୁଟର ଗନ୍ଧ ପାଇ, ଖ୍ୟାପି ପଡ଼ିଲେ । ତତ୍‌କ୍ଷଣାତ୍ ସୈନ୍ୟ ସାମନ୍ତ ଘେନି ଦେବୀକୁଟ ଯାତ୍ରା କଲେ ; କିନ୍ତୁ ପ୍ରଥମ ଉଦ୍ୟମରେ କିଛିହିଁ କରି ପାରିଲେ ନାହିଁ । ୨ୟ ଥର ଯାଇ ଦୃଢ଼ରୂପେ ଆକ୍ରମଣ କରିବାରୁ ପ୍ରତାପ-ସିଂହ ଭୀତ ହୋଇ ସନ୍ଧି ପ୍ରାର୍ଥନା କଲେ ଓ ଦେବୀକୁଟ ଓ ତାହାର ସମୀପବର୍ତ୍ତୀ କେତେକ ଭୂଭାଗ ଜାଯ୍ଗୀର ସ୍ୱରୂପ ଇଂରେଜ କୋମ୍ପାନୀଙ୍କୁ ଓ ବାର୍ଷିକ ଚାରି-ହଜାର ଟଙ୍କା ସାହୁଜୀଙ୍କୁ ବୃତ୍ତିସ୍ୱରୂପ ଦେବା ପାଇଁ ପ୍ରତିଶ୍ରୁତ ହେଲେ ; ତହୁଁ ଉଭୟପକ୍ଷରେ ସନ୍ଧି ହେଲା ।

ଏହି ଘଟନା ଅବସାନ ପୂର୍ବେ ଇଂରେଜ କୋମ୍ପାନୀଙ୍କ ପକ୍ଷରେ ଅନୁକୂଳ ଜନକ ଆଉ ଗୋଟିଏ ଘଟନା ଉପସ୍ଥିତ ହେଲା । ତାହା ଏହି :—

ଦିଲ୍ଲି ସାମ୍ରାଜ୍ୟ କେତେକ ଅଂଶରେ ବିଭକ୍ତ ଥିଲା ଓ ଗୋଟିଏ ଗୋଟିଏ ଅଂଶକୁ ସୁବା ଏବଂ ତଦୀୟ ଶାସନକର୍ତ୍ତାଙ୍କୁ ସୁବାଦାର ବୋଲାଯାଏ । କୌଣସି୨ ସ୍ଥାନରେ ସୁବାଦାରଙ୍କ ପ୍ରତିନିଧି ନିଯୁକ୍ତ ଥାଆନ୍ତି; ସେହି ପ୍ରତିନିଧିଙ୍କ ଉପାଧି ନବାବ । ନିଜାମଉଲ୍‌ମୂଲ୍‌କ ଯେତେବେଳେ ଦାକ୍ଷିଣାତ୍ୟର ସୁବାଦାରି ପଦରେ ନିଯୁକ୍ତ ଥିଲେ, ତେତେବେଳେ ସାଦତୁଲ୍ଲା କର୍ଣ୍ଣାଟର ନବାବ ଥିଲେ । ସାଦତୁଲ୍ଲା ଅପୁତ୍ରିକ ଥିବାରୁ ଦୋସ୍ତଅଲି ଓ ବକୀରଅଲି ନାମକ ତାଙ୍କର ଦୁଇ ପୁତୁରାଙ୍କୁ ପୋଷ୍ୟପୁତ୍ର ଗ୍ରହଣ କରିଥିଲେ । ଅନନ୍ତର ବକୀରଅଲିଙ୍କୁ ବେଲୋରର ଶାସନ

କର୍ତ୍ତା ପଦରେ ଏବଂ ୧୭୩୨ ସାଲେ ମରଣ ସମୟରେ ଦୋସ୍ତଅଲିଙ୍କୁ କର୍ଣ୍ଣାଟର ନବାବ ପଦରେ ବସାଇ ଯାଇଥିଲେ । ଏହି ବିଷୟରେ ସୁବାଦାରଙ୍କର ଆଦେଶ ଗ୍ରହଣ କରିବା ଆବଶ୍ୟକ; କିନ୍ତୁ ତାହା ହୋଇ ନ ଥିଲା; ତେଣୁ ନିଜାମ ଏହି ନିଯୁକ୍ତି ବିଷୟରେ ଅତ୍ୟନ୍ତ ବିରକ୍ତ ଥିଲେ । ଦୋସ୍ତଅଲି ନବାବ ପଦରେ ଅଭି-ଷିକ୍ତ ହୋଇ, ଆପଣା ଜ୍ୱାଇଁ ଚନ୍ଦାସାହେବଙ୍କୁ ଦେଓ୍ୱାନୀ ପଦରେ ନିଯୁକ୍ତ କଲେ ।

୧୭୩୬ ସାଲେ ତ୍ରିଚିନାପଲ୍ଲୀର ରାଜାଙ୍କର ମୃତ୍ୟୁ ହୁଅନ୍ତେ ଚନ୍ଦାସାହେବ ବିଶ୍ୱାସଘାତକତା କରି ସେହି ସିଂହାସନ ଅଧିକାର କଲେ ।

ତ୍ରିଚିନାପଲ୍ଲୀ ବିଷୟରେ ଏହି ପରି ନିଷ୍ପତ୍ତି ହେବାରୁ ତଞ୍ଜୋର ପ୍ରଭୃତିର ରାଜାମାନେ ଅତ୍ୟନ୍ତ ଭୀତ ହେଲେ ଓ କର୍ଣ୍ଣାଟ ନବାବଙ୍କୁ ଶାସନ କରିବା ପାଇଁ ମରହଟ୍ଟାମାନଙ୍କୁ ଆହ୍ୱାନ କଲେ । ମରହଟ୍ଟାମାନେ ବିନା ଓଜରରେ ସମସ୍ତ ଦେଶ ଆକ୍ରମଣ କରନ୍ତି, ଏତେବେଳେ ନିମନ୍ତ୍ରଣ ପାଇ ପ୍ରଫୁଲ୍ଲ ମନରେ କର୍ଣ୍ଣାଟରେ ଉପସ୍ଥିତ ହେଲେ ଓ ସଂଗ୍ରାମରେ ପ୍ରବୃତ୍ତ ହୋଇ ଦୋସ୍ତଅଲିଙ୍କୁ ସଂହାର କଲେ । ଦୋସ୍ତଙ୍କର ଜ୍ୟେଷ୍ଠପୁତ୍ର ସଫଦର ଅନେକ ମୁଦ୍ରା ପ୍ରଦାନ କରିବାକୁ ସ୍ୱୀକୃତ ହେବାରୁ ତାହାଙ୍କୁ କର୍ଣ୍ଣାଟର ସିଂହାସନରେ ବସାଇଲେ । ମରହଟ୍ଟାମାନେ ସେ ସ୍ଥାନରୁ ଯାଇ ତ୍ରିଚିନାପଲ୍ଲୀ ଆକ୍ରମଣ ଓ ଗ୍ରହଣ କଲେ । ମୁରାରିରାଓଙ୍କୁ ସେ ସ୍ଥାନର ଶାସନକର୍ତ୍ତା ପଦରେ ନିଯୁକ୍ତ କରି ବନ୍ଦୀ ଚନ୍ଦାସାହେବଙ୍କୁ ଘେନି ସିତାରା ପ୍ରସ୍ଥାନ କଲେ ।

ମହାରାଷ୍ଟ୍ରୀୟମାନେ ଚାଲିଯିବାରୁ ସଫଦରଅଲିଙ୍କ ଖୁଡ଼ୁତାପୁଅ ଭାଇ ମର୍ତ୍ତିଜଅଲି ତାହାଙ୍କର ପ୍ରାଣନାଶ କରି ନିଜେ ସିଂହାସନରେ ବସିଲେ, କିନ୍ତୁ ସୁବାଦାର ନିଜାମଉଲମୁଲୁକ ତାହା କରିବାକୁ ନ ଦେଇ ସଫଦରଙ୍କର ଅଳ୍ପବୟସ୍କ ପୁତ୍ରକୁ ସିଂହାସନରେ ବସାଇଲେ । ଏହି ବାଳକ ଅଳ୍ପକାଳ ମଧ୍ୟରେ ଅକାଳ ମୃତ୍ୟୁରେ ପ୍ରାଣତ୍ୟାଗ କରନ୍ତେ ଅନୋଆରଉଦ୍ଦୀନ ରାଜଦଣ୍ଡ ପ୍ରାପ୍ତ ହେଲେ ; କିନ୍ତୁ କର୍ଣ୍ଣାଟବାସିମାନେ ସାଦତୁଲ୍ଲା ବଂଶୀୟ କୌଣସି ଲୋକଙ୍କୁ ନିଯୁକ୍ତ କରିବା ନିମନ୍ତେ ଉତ୍ସୁକ ହୋଇ ଚନ୍ଦାସାହେବଙ୍କୁ ମନୋନୀତ କଲେ ।

ଭାରତବର୍ଷର ଏରୂପ ଅବସ୍ଥା ଦେଖି ଡୁପ୍ଲେ ପୂର୍ବରୁ ବୁଝିପାରି ଥିଲେ ଯେ ଯେବେ କୌଣସି ରାଜାର ଆଶ୍ରୟ ଧରି ଇଉରୋପୀୟମାନେ ସନ୍ଧି ବିଗ୍ରହା-ଦିରେ ପ୍ରବୃତ୍ତ ହୁଅନ୍ତି, ତେବେ ଭାରତଭୂମିର ରାଜସିଂହାସନ ସେମାନଙ୍କର ଅଦୃ-ଷ୍ଟରେ ଘଟିଲେ ମଧ୍ୟ ଘଟିପାରେ । ଏଣୁ ସେ ଚନ୍ଦାସାହେବଙ୍କ ସହିତ ମିତ୍ରପଣ ସ୍ଥାପନ କରିବାପାଇଁ ବହୁଦିନରୁ ଚେଷ୍ଟା କରୁଥିଲେ; ବର୍ତ୍ତମାନ କର୍ଣ୍ଣାଟ ବାସିମା-ନଙ୍କର ତାହାଙ୍କପ୍ରତି ଅନୁରାଗ ଦେଖି ମହାରାଷ୍ଟ୍ରୀୟମାନଙ୍କୁ ୭୦ ଲକ୍ଷ ଟଙ୍କା ପ୍ରଦାନ

ରର ଚନ୍ଦସାହେବଙ୍କୁ ମୁକ୍ତ କରି ଦେଲେ । ଚନ୍ଦ କାରାଗାରରୁ ମୁକ୍ତ ପାଇ ସେନା ସଂଗ୍ରହ କରୁଁ କରୁଁ କର୍ଣ୍ଣାଟଦଗକୁ ଆସିବାକୁ ଲାଗିଲେ ।

ଏଣେ ନିଜାମଙ୍କ ମୃତ୍ୟୁପରେ ତାହାଙ୍କର ପୁତ୍ର ନାଜରଜଙ୍ଗ ପିତୃପଦ ଗ୍ରହଣ କରିଥିଲେ; କିନ୍ତୁ ମୁଜଫରଜଙ୍ଗ ନାମକ ତାହାଙ୍କର ଜଣେ ଭଣଜା ସିଂହାସନଲୋଭୀ ହୋଇ, ଯୁଦ୍ଧର ଆୟୋଜନ କରୁଥିଲେ । ବର୍ତ୍ତମାନ ଚନ୍ଦ-ସାହେବଙ୍କୁ ପାଇ ତାହାଙ୍କ ସହିତ ମିଳିତ ହେଲେ ଓ ଉଭୟେ ପରସ୍ପରଙ୍କ ସାହାଯ୍ୟ କରିବେ ବୋଲି ପ୍ରତିଜ୍ଞା କଲେ । ଦୁଇଜଣ ପରାମର୍ଶ କରି, ଡୁପ୍-ପ୍ଲେଙ୍କୁ ଅଭୀଷ୍ଟସିଦ୍ଧି ବିଷୟରେ ସାହାଯ୍ୟ କରିବାପାଇଁ ଦୂତ ପ୍ରେରଣ କଲେ, ଡୁପ୍ଲେ ମଧ୍ୟ ସେହି ପ୍ରତୀକ୍ଷାରେ ଥିଲେ; ଏତେବେଳେ ଦୂତ ଉପସ୍ଥିତ ହେବାମାତ୍ର ସେ ୪୦୦ ଫରାସିଗୋରା ଓ ୨୦୦୦ ସିପାହୀ ପ୍ରେରଣ କଲେ । ମୁଜଫରଜଙ୍ଗ ଓ ଚନ୍ଦସାହେବ ଏହି ସୈନ୍ୟମାନଙ୍କୁ ପାଇ ଆନନ୍ଦମନରେ ୧୭୪୯ ସାଲ ଅଗଷ୍ଟମାସରେ କର୍ଣ୍ଣାଟ ଆକ୍ରମଣ କରି, ଅନୋଆର ଉଦୀନଙ୍କୁ ବଧ ଓ ତାହାଙ୍କର ଜ୍ୟେଷ୍ଠପୁତ୍ରଙ୍କୁ ବନ୍ଦୀ କଲେ । କନିଷ୍ଠ ମହମ୍ମଦଅଲ୍ଲି ଅତିକଷ୍ଟରେ ତ୍ରିଚୁଣ୍ଣପଲ୍ଲୀ-ପଲ୍ଲୀକୁ ପଳାୟନ କଲେ । ସେମାନେ ତେତେବେଳେ ତ୍ରିଚୁଣ୍ଣପଲ୍ଲୀ ଆକ୍ରମଣ କରିଥିଲେ ତାହା ସହଜରେ ହସ୍ତଗତ ହୋଇଥାଆନ୍ତା, ମାତ୍ର ସେମାନେ ତାହା କଲେ ନାହିଁ । ଏଉତ୍ତାରେ ନାଜରଜଙ୍ଗ ଓ ମହମ୍ମଦଅଲ୍ଲି ଏକତ୍ରିତ ହୋଇ ଚନ୍ଦ ଓ ମୁଜଫରଙ୍କ ବିରୁଦ୍ଧରେ ଆସୁଥିଲେ ମାର୍ଗମଧ୍ୟରେ ଇଂରେଜ ସେନାନୀ ମେଜର ଲରେନ୍ସ, ୮୦୦ ସିପାହୀ ସହିତ ଭେଟ ହେଲା । ସେ ସମୟରେ ଫରାସି ସେନାମାନେ ଚନ୍ଦସାହେବଙ୍କୁ ପରିତ୍ୟାଗ କରି ନ ଥିଲେ କାହାର ଯେ କପରି ଅବସ୍ଥା ଘଟି ଥାଆନ୍ତା ତାହା ବୋଲିଯାଇ ନ ପାରେ; ମାତ୍ର କୌଣସି କାରଣରୁ ଫରାସି ସେନାମାନେ ଚାଲି ଯିବାରୁ ଚନ୍ଦ ବିନା ଯୁଦ୍ଧରେ ପଣ୍ଡିଚେରି ଓ ମୁଜଫର ମାତୁଳାଳୟକୁ ପଳାୟନ କଲେ ।

ନାଜରଜଙ୍ଗ ଜୟୀ ହେଲେ ସତ୍ୟ, ମାତ୍ର ଇଂରେଜମାନଙ୍କୁ କିଛି ନ ଦେବାରୁ ସେମାନେ ତାହାଙ୍କୁ ପରିତ୍ୟାଗ କରି ଚାଲିଗଲେ । ଡୁପ୍ଲେ ଏକ କଥାରେ ମାତି ହେବାର ଲୋକ ଥିଲେ ନାହିଁ; ଅନେକ ଚାଲ ଦେଖି ଖେଳନ୍ତି । ସେ ଅଭୀଷ୍ଟକାର୍ଯ୍ୟ ହେବା ଦନଠାରୁ ଉପାୟ ଅନ୍ୱେଷଣ କରୁଥିଲେ; ବର୍ତ୍ତମାନ ନାଜରଙ୍କୁ ଅସହାୟ ଓ ବ୍ୟସନାସକ୍ତ ଦେଖି ଜିଞ୍ଜିଦୁର୍ଗରୁ ଫରାସିସେନା ପଠାଇ ନାଜରଙ୍କୁ ବଧ କଲେ ଓ ଅବଲମ୍ବରେ ମୁଜଫରଜଙ୍ଗଙ୍କୁ ସିଂହାସନରେ ବସା-ଇଲେ ।

ଏହି ଘଟନାରେ ଡୁପ୍ଲେ ଅତ୍ୟନ୍ତ ଆନନ୍ଦିତ ହେଲେ । ଯେଉଁସ୍ଥାନରେ

ନାଜରଜଙ୍ଗଙ୍କ ବଧକ୍ରିୟା ସମ୍ପନ୍ନ ହୋଇଥିଲା, ତତ୍ପ୍ଲେ ସେହ ସ୍ଥାନରେ ବାଂ ଙ୍କ ପୁଣ୍ଡି ନାମ ଦେଇ ଏକନଗର ସ୍ଥାପନ କଲେ । ତତ୍ପ୍ଲେଙ୍କର ସୁଖ୍ୟାତିର ପର ସୀମା ରହଲା ନାହିଁ, ଉପାର୍ଜ୍ଜନ ମଧ୍ୟ ବଲକ୍ଷଣ ହୋଇଥିଲା; ଏପର ଶୁଣାଅଛୁ ଯେ ସେ ମୁକ୍ତା ମାଣିକ୍ୟାଦ ଛଡ଼ା ୨ କୋଟି ନଗଦଟଙ୍କା ପାଇଥିଲେ । ମୁଜଫରଜଙ୍ଗ ତତ୍ପ୍ଲେଙ୍କୁ କେବଳ ପୁରସ୍କୃତ କର କ୍ଷାନ୍ତ ହେଲେ ନାହିଁ, ଚନ୍ଦସାହେବଙ୍କୁ ମଧ୍ୟ ଅର୍କାଟ୍ରର ନବାବୀ ପଦ ପ୍ରଦାନ କରଥିଲେ ।

ତତ୍ପ୍ଲେ, ବୁସୀନାମକ ଜଣେ ଦକ୍ଷ ଫରାଶୀସେନାପତିଙ୍କୁ ସଙ୍ଗରେ ଦେନ, ହାଯ୍ଦରାବାଦକୁ ଯାଉଅଛନ୍ତି ଏମନ୍ତ ସମୟରେ ମୁଜଫରଜଙ୍ଗଙ୍କ ମୁସଲମାନ ସେନାମାନେ ମାର୍ଗ ମଧ୍ୟରେ ବଦ୍ରୋହୀ ହେଲେ । ସେହ ଗୋଲମାଲରେ ମୁଜଫର ମର ଗଲେ, ତହୁଁ ବୁସୀ, ସଲାବତଜଙ୍ଗଙ୍କୁ ସୁବାଦାରୀ ପଦରେ ନଯୁକ୍ତ କଲେ ।

ଡ୍ରେଲମଣ୍ଡଳ ଉପକୂଳରେ ଫରାସିମାନଙ୍କ ପରାଭବ ଦେଖି ଦମସ୍ତେ ସିଦ୍ଧାନ୍ତ କରଥିଲେ ଯେ, " ସମୟରେ ଫରାଶିମାନେ ଭାରତବର୍ଷମଧ୍ୟରେ ପ୍ରଧାନ ହୋଇ ଉଠିବେ " । ଇଂରେଜମାନେ ଏତେଦନ ନଦ୍ରିତ କରିଛ ପର ପଡରହ ଥିଲେ ଯେଣୁ ସେମାନଙ୍କର ଏକମାତ୍ର ଦକ୍ଷ ସେନାପତ ମେଜର ଲରେନ୍ସ ସ୍ୱଦେଶକୁ ଯାଇ ଥିଲେ ଏବଂ ସେମାନଙ୍କର ଏପରି ସୈନ୍ୟବଳ ବା ଅର୍ଥବଳ ନ ଥିଲା ଯେ ଫରାଶିମାନଙ୍କ ସହତ ସଂଗ୍ରାମରେ ଅଗ୍ରସର ହୋଇ ପାରନ୍ତ । ଜଣା ଯାଏ, ସେମାନେ ସ୍ୱଚ୍ଛନ୍ଦ ଅବସ୍ଥାରେ ଥିଲେ ଫରାଶିମାନଙ୍କ ଉନ୍ନତ ସମୟରେ ଭୁନ ହୋଇ ନ ଥାଆନ୍ତେ ସେ ଯାହା ହେଉ ଫରାଶି ଓ ଇଂରେଜ ଏହ ଦୁଇ ଜାତଙ୍କର ଯୁଦ୍ଧ ଘଟିବାର ଏକ ସୂତ୍ରପାତ ହେଲା ।

ଇଂରେଜମାନେ ତତ୍ପ୍ଲେଙ୍କୁ ଲେଖିଲେ ଯେ, "ଆମ୍ଭମାନଙ୍କ ବନ୍ଧୁ ମହମ୍ମଦ ଅଲଙ୍କୁ ତ୍ରିଚୁନ୍ନାପଲ୍ଲି ଛଡ଼ିଦେଲେ ଅମ୍ଭେମାନେ ଫରାଶିଙ୍କ ବନ୍ଧୁ ଚାନ୍ଦସାହେବଙ୍କୁ ସମସ୍ତ କର୍ଣ୍ଣାଟର ନବାବ ବୋଲି ସ୍ୱୀକାର କରବୁଁ" ମାତ୍ର ତତ୍ପ୍ଲେ ଏକଥା ଶୁଣିଲେ ନାହିଁ; ତେଣୁ ଉଭୟ ପକ୍ଷରେ ଯୁଦ୍ଧ ଘଟିବାର ସମ୍ପୂର୍ଣ୍ଣ ସମ୍ଭାବନା ହୋଇ ଉଠିଲା । ଚାନ୍ଦସାହେବ ଏକ ଉଦ୍ୟମରେ ତ୍ରିଚୁନ୍ନାପଲ୍ଲି ଆକ୍ରମଣ କରବାକୁ ଯାତ୍ରା କଲେ । ମାର୍ଗ ମଧ୍ୟରେ ଇଂରେଜମାନେ ବାଧା ଦେବାକୁ ଚେଷ୍ଟା କର ଥିଲେ; ମାତ୍ର ସେ-ଥିରେ କେବଳ ସେମାନଙ୍କର ଦୁର୍ବଳତା ପ୍ରକାଶ ପାଇଥିଲା । ଏହ ସମୟରେ ଗୋଟିଏ ଯୁବକ ଆସି ସ୍ୱଜାତିର ଅପବାଦ ମୋଚନ ପୂର୍ବକ ମୁଖ ଉଜ୍ଜ୍ୱଳ କଲେ । ସେହ ଯୁବାପୁରୁଷର ନାମ ରବର୍ଟ କ୍ଲାଇବ ।

କ୍ଲାଇବ ୧୭୨୫ ସାଲେ ଇଂଲଣ୍ଡର ଅନ୍ତଃପାତୀ ସରପସାୟର ପ୍ରଦେଶେ ଜନ୍ମ-ଗ୍ରହଣ କରଥିଲେ ସେ ପିଲାକାଳରେ ଅତ୍ୟନ୍ତ ଦୁରନ୍ତ ଅବାଧ୍ୟ ଥିଲେ, ଲେଖାପଢ଼ା

ଶିକ୍ଷିବା ବିଷୟରେ ତାହାଙ୍କର ମନ ନ ଥିଲା । ପିତା, ବିଦ୍ୟାଶିକ୍ଷା ପାଇଁ ତାହାଙ୍କୁ ଯେଉଁ ବିଦ୍ୟାଳୟକୁ ପଠାଇ ଥିଲେ, ସେ କୌଣସି ସ୍ଥାନରୁ ଅପଯଶ ଛଡ଼ା ଅନ୍ୟ କିଛି ଉପାର୍ଜନ କରି ନ ଥିଲେ । ସେ ବିଦ୍ୟାଳୟକୁ ଯିବାବେଳେ ଗଛ ଓ ଗିର୍ଜାର ଚୂଡ଼ାଉପରେ ଚଢ଼ନ୍ତି । ସେ ଯାହା ହେଉ ଇଷ୍ଟଇଣ୍ଡିଆ କୋମ୍ପାନୀରେ ଗୋଟିଏ କରାଣିଗିରି କର୍ମ ମିଳିବାରୁ ତାହାଙ୍କ ପିତା ତାହାଙ୍କୁ ସେହି କର୍ମରେ ନିଯୁକ୍ତ କରାଇ, ଭାରତବର୍ଷକୁ ପ୍ରେରଣସ୍ୱରୂପ ନିର୍ବାସନ କରି ନିଶ୍ଚିନ୍ତ ହୋଇଥିଲେ ତଦନୁସାରେ କ୍ଲାଇବ ୧୭୪୪ ସାଲେ ଶରତ୍ କାଳରେ ମାନ୍ଦ୍ରାଜରେ ଉପସ୍ଥିତ ହେଲେ । ଏସ୍ଥାନରେ ତାହାଙ୍କର ବନ୍ଧୁ ଅଥବା ସହାୟ କେହି ନ ଥିଲା । ତାହାଙ୍କର ଏପରି ବିଦ୍ୟା ବା ଧନ ଅଥବା ସୁନ୍ଦରପଣ ନ ଥିଲା କି ଯହିଁରେ ବନ୍ଧୁ ଓ ଧନ ଉପାର୍ଜନ ହୋଇ ପାରେ । ବରଞ୍ଚ ତାହାଙ୍କର ସ୍ୱଭାବ ଦାରୁଣ, ଗର୍ବିତ, କର୍କଶ ଓ ଉଦ୍ଧତ ଥିବାରୁ ସମସ୍ତେ ତାହାଙ୍କ ପ୍ରତି ବିରକ୍ତ ହେଉଥିଲେ । ତାହାଙ୍କୁ କେହି ଭଲ ନ ପାଇବାରୁ ସେ ସର୍ବଦା ବିରସ ମନ ଓ ଚିନ୍ତିତ ଥାଆନ୍ତି । ଅବଶେଷରେ ଆପଣା ଜୀବନ ପ୍ରତି ଅତ୍ୟନ୍ତ ବିରକ୍ତ ହୋଇ ଆତ୍ମହତ୍ୟା ପାଇଁ ମର୍ମସ୍ଥାନକୁ ଲକ୍ଷ କରି ଦୁଇଥର ପିସ୍ତଲ ଆୟୋଜନ କଲେ, ଦୁଇଥରରେ ମଧ୍ୟ ପିସ୍ତଲର ଘୋଡ଼ା ରଞ୍ଜକରେ ପଡ଼ି ନିଆଁ ହେଲା ନାହିଁ । ତହୁଁ କ୍ଲାଇବ ସ୍ଥିର କଲେ ଯେ, "ଆମ୍ଭ ଜୀବନ ଯେତେବେଳେ ସହଜରେ ନ ଗଲା ସେତେବେଳେ ଜଣାଯାଏ ସେ ଅବଶ୍ୟ କୌଣସି ମହତ୍କାର୍ଯ୍ୟ କରିବା ପାଇଁ ରହିଲା" । ଗର୍ବିତ ଓ ଉଦ୍ଧତ ସ୍ୱଭାବ ଲୋକମାନେ ଲେଖନୀ ଚାଳନଠାରୁ ଅସ୍ତ୍ର ଚାଳନକୁ ଭଲ ମଣନ୍ତି । କେରାଣୀଗିରି କର୍ମ ଭଲ ନ ଲାଗିବାରୁ ସେ ତାହା ପରିତ୍ୟାଗ କରି ସୈନିକ ଦଳରେ ପ୍ରବେଶ କଲେ; ତ୍ରିଚିନୋପଲ୍ଲି ଅବରୋଧର କିଛିପୂର୍ବେ ସେ କପ୍ତାନ ପଦରେ ନିଯୁକ୍ତ ଥିଲେ । କ୍ଲାଇବ ବିଧିମତ ସୈନିକ ବିଦ୍ୟା ଶିକ୍ଷା କରି ନ ଥିଲେ; କିନ୍ତୁ ତାହାଙ୍କ ପ୍ରକୃତି ତାହାଙ୍କୁ, ଅସାମାନ୍ୟ ଯୋଦ୍ଧୃଗୁଣରେ ଅଲଙ୍କୃତ କରି ଥିଲା; ଯୁଦ୍ଧଭୂମିରେ ତାହାଙ୍କର ଯେପରି ଅପରିସୀମସାହସ ଓ ସେନାପରିଚାଳନର ନିପୁଣତା, ମନ୍ତ୍ରଣାସ୍ଥଳରେ ସେମନ୍ତ ଉଦ୍ଭାବନାଶକ୍ତି, କୌଶଳ ଏବଂ ଚତୁରତା ଥିଲା ।

ତ୍ରିଚିନୋପଲ୍ଲି ଅବରୋଧ ହେଲାରୁ ଇଂରେଜମାନେ ଭୟାନକ ବିପଦରେ ପଡ଼ିଥିଲେ । ଯୁଦ୍ଧ କରିବା କିମ୍ବା ତୁନି ହୋଇ ରହିବା ଉଭୟ ବିଷୟରେ ଇଂରେଜମାନଙ୍କର ପରାସ୍ତ ହେବାର ସମ୍ଭାବନା । କ୍ଲାଇବ ପ୍ରସ୍ତାବ କଲେ ତ୍ରିଚିନୋପଲ୍ଲି ଉଦ୍ଧାର କରିବା ବାସନା ପରିତ୍ୟାଗ କରି, ସହସା ଆର୍କାଟ୍ ନଗର ଆକ୍ରମଣ କରିବା ଉଚିତ । ତାହା ହେଲେ ବିପକ୍ଷମାନେ ତ୍ରିଚିନୋପଲ୍ଲି ପରିତ୍ୟାଗ କରି ଆର୍କାଟ୍ପ୍ରତି ଧାଇଁବେ, ସେହି ଅବକାଶରେ ତ୍ରିଚିନୋପଲ୍ଲି ମଧ୍ୟ ଆମ୍ଭମାନଙ୍କ

ଅଯୁକ୍ତ ହେଲେ ମଧ୍ୟ ହୋଇ ପାରେ । ସେଣ୍ଟଡେଭିଡ଼ ଦୁର୍ଗାଧ୍ୟକ୍ଷ ଏହି ପ୍ରସ୍ତା-ବରେ ସମ୍ମତ ହେଲେ, ଓ କ୍ଲାଇବଙ୍କୁ ସେନାପତି କରି ତାହାଙ୍କ ଅଧୀନରେ ୨୦୦ ଇଯୁରୋପୀୟ ଓ ୩୦୦ ସିପାହି ଦେଇ ଅର୍କାଡ଼ୁକୁ ପ୍ରେରଣ କଲେ । ଇଂରେଜ-ମାନଙ୍କର ସେତେବେଳେ ଏମନ୍ତ ଅବସ୍ଥା ଯେ, ତେତିକ ମାତ୍ର ସୈନ୍ୟ ସଂଗ୍ରହ କରିବାକୁ ସେଣ୍ଟଡେଭିଡ଼ ଦୁର୍ଗ ରକ୍ଷକଶୂନ୍ୟ ହୋଇ ପଡ଼ିଥିଲା ।

୧୭୫୧ ସାଲ ଅଗଷ୍ଟ ମାସରେ କ୍ଲାଇବ ବିନାଯୁଦ୍ଧେ ଅର୍କାଡ଼୍ ଦୁର୍ଗ ଅଧିକାର କରିଥିଲେ । ସେହି ଦୁର୍ଗରେ ନଗରବାସୀ ବଣିକମାନଙ୍କର ୫ ଲକ୍ଷ ଟଙ୍କା ଜମା ଥିଲା, କ୍ଲାଇବ ସେ ସମସ୍ତ ଧନ ଅଧିକାରୀମାନଙ୍କୁ ଫେରାଇ ଦେବାରୁ ନଗରବାସି-ମାନେ ତାହାଙ୍କପ୍ରତି ଅତ୍ୟନ୍ତ ସନ୍ତୁଷ୍ଟ ହୋଇଥିଲେ । କତ୍ଥଦିନ ଅବରୋଧ ଉତ୍ତାରେ କ୍ଲାଇବଙ୍କର ଖାଦ୍ୟଦ୍ରବ୍ୟ ଏକାବେଳକେ ସରି ଆସିଲା । ସେହି ସମୟରେ ତାହାଙ୍କର ଦେଶୀୟ ସିପାହିମାନେ କହିଲେ ଯେ, "ଗୋରାମାନଙ୍କର ତେଜସ୍ୱୀ ଶରୀର, ତେଣୁ ପୁଷ୍ଟିକର ଆହାରୀୟ ଆବଶ୍ୟକ; ସେମାନଙ୍କୁ ଭାତ ଦେଇ, ଆମ୍ଭେମାନେ ପେଜ ପିଇ ରହିବୁଁ" । ଅନ୍ୟ କୌଣସି ଦେଶୀୟ ସାମାନ୍ୟ ଲୋକ ମୁଖରୁ ଏପରି ସ୍ୱାର୍ଥଶୂନ୍ୟ କଥା ଶୁଣା ଯାଏ ନାହିଁ ।

କ୍ଲାଇବ ଅନ୍ୟ ଉପାୟ ନ ଦେଖି ସାହାଯ୍ୟ ପାଇଁ ମାନ୍ଦ୍ରାଜକୁ ପତ୍ର ଲେଖିଲେ ତଦନୁସାରେ ମାନ୍ଦ୍ରାଜରୁ ସୈନ୍ୟ ଆସିଲେ; ମାତ୍ର ବିପକ୍ଷମାନଙ୍କ ପ୍ରତିବନ୍ଧକତା ହେତୁରୁ ତାହାଙ୍କଠାରେ ଉପସ୍ଥିତ ହୋଇ ପାରିଲେ ନାହିଁ । କ୍ଲାଇବ ମାନ୍ଦ୍ରାଜକୁ ପତ୍ର ଲେଖିବାବେଳେ ମୁରାରିରାଓଙ୍କଠାରୁ ମଧ୍ୟ ସାହାଯ୍ୟ ପ୍ରାର୍ଥନା କରିଥିଲେ । ଦେଶୀୟ ରାଜାମାନଙ୍କର ସଂସ୍କାର ଥିଲା ଯେ ଯୁଦ୍ଧ କାର୍ଯ୍ୟରେ ଇଂରାଜମାନେ ନିତାନ୍ତ ଗଣ୍ଡମୂର୍ଖ, ସମ୍ପ୍ରତି ଅର୍କାଡ଼ୁର ଅବରୋଧ ବାର୍ତ୍ତା ଶୁଣି, ମୁରାରି କହିଲେ, "ଇଂରେଜମାନେ ଯେ ଯୁଦ୍ଧ କରି ପାରନ୍ତି, ଆମ୍ଭେ ଏହା ଜାଣି ନ ଥିଲୁଁ, ବର୍ତ୍ତମାନ ଶୁଣିଲୁଁ ସେମାନଙ୍କର କ୍ଷମତା ଅଛି, ଆମ୍ଭେ ଅବଶ୍ୟ ସେମାନଙ୍କର ସାହାଯ୍ୟ କରିବୁଁ" । ଅନନ୍ତର ମୁରାରିଙ୍କ ପ୍ରେରିତ ସେନାମାନେ ଅର୍କାଡ଼ୁ ଦିଗକୁ ଆସିବାକୁ ଲାଗିଲେ ।

ରାଜାସାହେବ ବିବେଚନା କଲେ ଆଉ ଯେତେ ବିଳମ୍ବ କରିବୁଁ ତେତେ ଅନିଷ୍ଟର ସମ୍ଭାବନା, ଅତଏବ କ୍ଲାଇବଙ୍କୁ ଲେଖିଲେ, ଯେବେ ତୁମ୍ଭେ ଦୁର୍ଗ ପରିତ୍ୟାଗ କର, ତେବେ ବିପୁଳ ଅର୍ଥ ପ୍ରଦାନ କରିବୁଁ; ଅନ୍ୟଥା ସଙ୍ଗୀମାନଙ୍କ ସହିତ ତୁମ୍ଭର ନିପାତର ସମ୍ଭାବନା । କ୍ଲାଇବ ପ୍ରଲୋଭନରେ ଭୁଲିବାର ବା ବିଭୀ-ଷିକାରେ ଭୀତ ହେବା ଲୋକ ନୁହନ୍ତି; ସୁତରାଂ ସେ ଉଲ୍ଲିଖିତ ପତ୍ରିକାରେ କର୍ଣ୍ଣପାତ ନ କରି ଅବଜ୍ଞାସୂଚକ ପତ୍ର ଲେଖିଲେ । ତହିଁରେ ନବାବଜାଦା ଅତିବ କ୍ରୋଧା-

ମିତ ହୋଇ, ଏକ ଉଦ୍ୟମରେ ଦୁର୍ଗ ଆକ୍ରମଣ କଲେ; କିନ୍ତୁ କ୍ଲାଇବଙ୍କ ଯୁଦ୍ଧ-କୌଶଳ ଦେଖିବାରୁ ଶୀଘ୍ର ପରାସ୍ତ ହୋଇ ସ୍ୱସ୍ଥାନକୁ ପ୍ରସ୍ଥାନ କଲେ ।

ରାଜା ସାହେବ ଚାଲିଯିବା ଉତ୍ତାରେ କ୍ଲାଇବ ଦୁର୍ଗ ରକ୍ଷାର୍ଥ ଥୋକାଏ ସୈନ୍ୟ ରଖି ବାହାରିଲେ; ସେହି ସମୟରେ ମାନ୍ଦ୍ରାଜ ଓ ମୁର୍ଶିଦାବାଦଙ୍କ ପ୍ରେରିତ ସେନାମାନେ ତାହାଙ୍କ ସହିତ ମିଳିତ ହେଲେ । କ୍ଲାଇବ ସେହି ବିପୁଳ ସେନା ସେନ କାଞ୍ଚିବେରମ ନଗର ଅଧିକାର କରିଥିଲେ । ତେତେବେଳ ଯାଏଁ ସୁବା ତ୍ରିଚିନାପଲ୍ଲି ଅବରୁଦ୍ଧ ଅବସ୍ଥାରେ ଥିଲା, କ୍ଲାଇବ ସାହେବଙ୍କ ବଳ ବିକ୍ରମ କଥା ଶୁଣି ଚନ୍ଦାସାହେବ ଭଗ୍ନୋତ୍ସାହ ହୋଇ ପଡ଼ି ଥିଲେ; ସେହି ସମୟରେ ତତ୍ରତ୍ୟ ଇଂରେଜମାନେ କିଞ୍ଚିତ୍ ସାହସ ପ୍ରକାଶ କରିଥିଲେ, ନିଶ୍ଚୟ ଚନ୍ଦାସାହେବ ପରାସ୍ତ ହୋଇଥାନ୍ତେ; କିନ୍ତୁ ସେମାନେ ନାମରେ ଇଂରେଜ, କାର୍ଯ୍ୟେ କ୍ଲାଇବଙ୍କ ଜୋତା ପୋଛିବାର ଯୋଗ୍ୟ ନୁହନ୍ତି । ସେମାନଙ୍କର ବ୍ୟବହାର ଦେଖି, ମହାରାଷ୍ଟ୍ରୀୟମାନେ କହିଥିଲେ " ଆମ୍ଭେମାନେ ଆର୍କାଡ଼ୁରେ ଯେଉଁ ଇଂରେଜଙ୍କୁ ଦେଖିଅଛୁଁ, ନିଶ୍ଚୟ ଏମାନେ ସେମାନଙ୍କର ଜାତି ନୁହନ୍ତି " ।

କ୍ଲାଇବ ମାନ୍ଦ୍ରାଜରେ ଉପସ୍ଥିତ ହେଲେ । ମେଜର ଲରେନ୍ସ ମଧ୍ୟ ସେହି ସମୟରେ ଇଂଲଣ୍ଡରୁ ଆସି ଉପସ୍ଥିତ ହେଲେ । ଅତଃପର କ୍ଲାଇବ ଓ ଲରେନ୍ସ ମାନ୍ଦ୍ରାଜର କର୍ତ୍ତୃପକ୍ଷୀୟମାନଙ୍କ ଦ୍ୱାରା ତ୍ରିଚିନାପଲ୍ଲିର ଅବରୋଧ ମୋଚନାର୍ଥ ପ୍ରେରିତ ହୋଇ ଅଳ୍ପକାଳ ମଧ୍ୟରେ କାର୍ଯ୍ୟ ସମାଧା କରିଥିଲେ । ଚାଁଦ ସାହେବ ଆତ୍ମରକ୍ଷାର ଉପାୟାନ୍ତର ନ ଦେଖି ତଞ୍ଜୋର ସେନାର ଅଧିନାୟକ ମୋନାକଜୀଙ୍କ ଶରଣାପନ୍ନ ହୋଇଥିଲେ । ମୋନାକଜୀ ମହମ୍ମଦଅଲ୍ଲିଙ୍କ ସାହାଯ୍ୟ ପାଁଇ ଆସିଥିଲେ, ସେ ଭଦ୍ର ବ୍ୟବହାର କରିବେ ବୋଲି ଚନ୍ଦାସାହେବଙ୍କର ବିଶ୍ୱାସ ଥିଲା, କିନ୍ତୁ ଶରଣାଗତ ହେଲେହେଁ ମୋନାକ ଚାଁଦସାହେବଙ୍କର ଜୀବନ ସଂହାର କରି ଥିଲେ । ଚାଁଦସାହେବଙ୍କର ଶତ୍ରୁମାନେ ମଧ୍ୟ ବୋଲନ୍ତି, ସେ ଅତି ଦକ୍ଷ, ଭଦ୍ର ଓ ବଦାନ୍ୟ ଥିଲେ, ତାହାଙ୍କର ଏତାଦୃଶ ପରିଣାମ ଅତ୍ୟନ୍ତ ଦୁଃଖଜନକ ସନ୍ଦେହ ନାହିଁ ।

ଡୁପ୍ଲେ ଏହି ସମୟରେ ପୁନବାର ମସ୍ତକୋତ୍ତୋଳନ କରିଥିଲେ; କିନ୍ତୁ ତାହାଙ୍କର ଅଯୋଗ୍ୟ କୋମ୍ପାନିଙ୍କ ଅଭିମତ ନ ହେବାରୁ ନିବୃତ୍ତ ହୋଇଥିଲେ । କ୍ଲାଇବ ତ୍ରିଚିନାପଲ୍ଲି ଅବରୋଧ ମୋଚନ କରି ଆଉ କେତେକ ସ୍ଥାନରେ ଯୁଦ୍ଧ-ରେ ଜୟୀ ହୋଇଥିଲେ । ତନ୍ମଧ୍ୟରେ କୋବଲଂ ଓ ଚିଙ୍ଗଲପଟ୍ଟନ ନାମକ ଦୁଇ ଦୁର୍ଗର ବଶୀକରଣ ସର୍ବ ପ୍ରଧାନ । ଏ ଉତ୍ତାରେ କ୍ଲାଇବ ପୀଡ଼ିତ ହେବାରୁ ସ୍ୱାସ୍ଥ୍ୟ-ଲାଭ ବାସନାରେ ଇଂଲଣ୍ଡକୁ ଯାତ୍ରା କଲେ । ସେ ଇଂଲଣ୍ଡରେ ଉପସ୍ଥିତ ହୁଅନ୍ତେ

ଡାଇରେକ୍ଟରମାନେ ତାହାଙ୍କୁ ଅତ ସମାଦର କରଥିଲେ ଓ ଆରକଖଚତ ଏକତର-ବାର ପୁରସ୍କାର ଦେବାକୁ ଇଚ୍ଛା କରବାରୁ କ୍ଲାଇବ ତାହା ଅସ୍ୱୀକାର କର କହଲେ “ ଆମ୍ଭର ଉପରସ୍ଥ କର୍ମଚାରୀ ମେଜର ଲରେନ୍‌ସ ଏହପ୍ରକାର ପୁରସ୍କୃତ ନ ହେଲେ ଆମ୍ଭେ ଏହା ଗ୍ରହଣ କରବୁଁ ନାହିଁ ” । ଲରେନ୍‌ସଙ୍କ ନକଟକୁ ମଧ୍ୟ ଅବଳମ୍ବେ ତଦ୍ରୂପ ତରବାର ପ୍ରେରତ ହୋଇଥିଲା ।

ଡପ୍ଲେଙ୍କ ପ୍ରତ ଫରାସି ଡରେକ୍ଟରମାନଙ୍କର ଏପରଭାବ ଉଦୟ ହୋଇ ନ ଥିଲା, ବରଂ ସେ ବାଣିଜ୍ୟକାର୍ଯ୍ୟରେ ଔଦାସିନ୍ୟ ଅବଲମ୍ବନ କର ଯୁଦ୍ଧରେ ଲପ୍ତ ହେବାରୁ ସେମାନଙ୍କର ଚକ୍ଷୁର ବାଲି ହୋଇଥିଲେ । ଡରେକ୍ଟରସମାଜ ତାହାଙ୍କୁ ପଦଚ୍ୟୁତ କର ଗୁଡ୍‌ହୁଡ୍ ନାମକ ଏକ ଲୋକକୁ ତାହାଙ୍କ ପଦରେ ନଯୁକ୍ତ କର ପଠାଇଥିଲେ । ହଉ ୧୭୫୪ ସାଲରେ ଭାରତବର୍ଷକୁ ଆସି ଇଂରେଜମାନଙ୍କ ସହତ ସୌହାର୍ଦ୍ଦ୍ୟ ସ୍ଥାପନ କରବାକୁ ଇଚ୍ଛା କରଥିଲେ । ଡପ୍ଲେ ବହୁ ଆୟାସ ସ୍ୱୀକାର କର ଯେସକଳସ୍ଥାନ ଉପାର୍ଜନ କରଥିଲେ ଇଂରେଜମାନେ ଦାବୀ କରବାରୁ ହଉ ଏକକଥାରେ ସମସ୍ତ ପରତ୍ୟାଗ କର ଦେଲେ ।

ଡପ୍ଲେ ଅତକ୍ଷୁବ୍ଧଚତ୍ତରେ ସ୍ୱଦେଶକୁ ପ୍ରସ୍ଥାନ କର ଥିଲେ । ସେସ୍ଥାନରେ ଉପସ୍ଥିତ ହେବାରୁ କେହ ତାହାଙ୍କର ସମ୍ମାନ ବା ପୁରସ୍କାର କଲେ ନାହିଁ ଓ କୋମ୍ପାନୀଙ୍କ କାର୍ଯ୍ୟ ନମନ୍ତେ ନଜ ତହବଲରୁ ଯେ ସମସ୍ତ ଅର୍ଥ ଦେଇଥିଲେ ସେଥିରୁ ମଧ୍ୟ ଏକ କପର୍ଦ୍ଦକ ପାଇଲେ ନାହିଁ । ଅବଶେଷରେ ହୀନାବସ୍ଥାରେ ଓ ଶୂନ୍ୟହୃଦୟରେ ତାହାଙ୍କୁ ପ୍ରାଣତ୍ୟାଗ କରବାକୁ ହୋଇଥିଲା ।

—•○•—

## କ୍ଲାଇବଙ୍କର ଭାରତବର୍ଷକୁ ଆଗମନ ।

ବରଷେ ଇଂଲଣ୍ଡରେ ରହ କ୍ଲାଇବ ସ୍ୱାସ୍ଥ୍ୟଲାଭ କରନ୍ତେ ସ୍ୱଜମନ୍ତ୍ରୀ ଓ କୋମ୍ପାନୀଙ୍କ ଡାଇରେକ୍ଟରମାନେ ତାହାଙ୍କୁ କର୍ଣ୍ଣେଲପଦ ପ୍ରଦାନ ଓ ସେଣ୍ଟଡେବଡ ଦୁର୍ଗର ଅଧ୍ୟକ୍ଷ କର ଭାରତବର୍ଷକୁ ପ୍ରେରଣ କଲେ । ୧୭୫୫ ସାଲ ନବମ୍ବର ମାସରେ କ୍ଲାଇବ ବୋମ୍ବାଇରେ ଉପସ୍ଥିତ ହେଲେ । ଏଡ୍‌ମିରଲ ଓଅଟସନ ସାହେବ ମଧ୍ୟ ତାହାଙ୍କ ସଙ୍ଗରେ ମିଳ୍‌ଲେ । ଏହ ସମୟରେ ଫରାସିମାନଙ୍କସହତ ଯୁଦ୍ଧ ଘଟିବାର ସମ୍ଭାବନା ଥିଲା ନାହିଁ, ଭାରତବର୍ଷର ଅନ୍ୟତ୍ର ମଧ୍ୟ ଶାନ୍ତିବରାଜତ ହେଉଥିଲା; ଏଥକୁ ଦୁଇସେନାନୀ ଏକଦଳ ଦସ୍ୟୁ ଦମନ କରବାକୁ ଚେଷ୍ଟା କଲେ ।

ରାଜାରାମଙ୍କ ରାଜତ୍ୱ ସମୟରେ ଅଙ୍ଗ୍ରିଅ ନାମରେ ଜଣେ ଲୋକ ମହାରା-

ଷ୍ଟ୍ରୀୟ ନୌସେନାର ଅଧିନାୟକ ଥିଲେ । ରାଜାରାମଙ୍କ ମୃତ୍ୟୁ ଉତ୍ତାରେ ଘଟନାସୂତ୍ରେ ଅଙ୍ଗ୍ରିଆ ଗୋ ୧୦ ଟା ଦୁର୍ଗର ଅଧିକାର ପ୍ରାପ୍ତ ହୋଇଥିଲେ । ତନ୍ମଧ୍ୟେ ସୁବର୍ଣ୍ଣଦୁର୍ଗ ଓ ବିଜୟ ବା ଘେରିଆ ଦୁର୍ଗ ପ୍ରଧାନ । ଅଙ୍ଗ୍ରିଆ ଶେଷୋକ୍ତ ଦୁର୍ଗରେ ଅବସ୍ଥିତ ହୋଇ ବାଣିଜ୍ୟପୋତ ସକଳ ଲୁଣ୍ଠପାଟ କରୁଥିଲେ ।

ଏଥିଉତ୍ତାରେ ଅଙ୍ଗ୍ରିଆ, ମହାରାଷ୍ଟ୍ରୀୟ ପେଶୋୟାଙ୍କ ବଶ୍ୟତା ଅସ୍ୱୀକାର କଲେ, ଏହି ଅପରାଧେ ମହାରାଷ୍ଟ୍ରୀୟମାନେ ଇଂରେଜମାନଙ୍କସହିତ ମିଳି ସୁବର୍ଣ୍ଣ-ଦୁର୍ଗ ଅଧିକାର କଲେ । ୧୭୫୬ ସାଲରେ କ୍ଲାଇବ ଓ ଓ୍ୟାଟସନ ସାହେବ ଏବଂ ମହାରାଷ୍ଟ୍ରୀୟ ପେଶୋୟା ଯାଇ ଅଙ୍ଗ୍ରିଆଙ୍କ ଅବଶିଷ୍ଟ ଦୁର୍ଗ ଅଧିକାର କଲେ ।

ଜୁନ ମାସରେ କ୍ଲାଇବ ସେଣ୍ଟଡେବିଡଦୁର୍ଗର ଅଧ୍ୟକ୍ଷତାପଦ ଗ୍ରହଣ କଲେ । ଏମନ୍ତ ସମୟରେ କ୍ଲାଇବଙ୍କ ବୁଦ୍ଧିଶକ୍ତି ପ୍ରକାଶ କରିବାର ଗୋଟିଏ ଘଟନା ଉପସ୍ଥିତ ହେଲା । ଦିଲ୍ଲୀସାମ୍ରାଜ୍ୟ ମଧ୍ୟରେ ବଙ୍ଗଳାଦେଶପରି ଧନବନ୍ତ ଦେଶ ଆଉ ଥିଲା ନାହିଁ । ଉର୍ବରତା ଗୁଣରେ ଓ ବାଣିଜ୍ୟକାର୍ଯ୍ୟ ନିର୍ବାହ ବିଷୟରେ ବଙ୍ଗଳାଦେଶ ସର୍ବୋତ୍କୃଷ୍ଟ ବୋଲି ସ୍ୱୀକାର କରିବାକୁ ହେବ । ଇଉରୋପର ପ୍ରଧାନ ପ୍ରଧାନ ଜାତିମାନେ ବଙ୍ଗଦେଶରେ ବାଣିଜ୍ୟକୋଠି ନିର୍ମାଣ କରିଥିଲେ । ଚନ୍ଦନନଗରରେ ଫରାସି, ଚୁଚୁଡ଼ାରେ ଓଲନ୍ଦାଜ ଓ କଲିକତାରେ ଇଂରେଜମାନଙ୍କର କୋଠି ଥିଲା । ୧୭୫୬ ସାଲେ କଲିକତାରେ ଇଂରେଜମା-ନଙ୍କର ଗୋଟିଏ ଗିର୍ଜା ଓ କେତେଟା ଗୋଦାମ ଓ ଗଙ୍ଗାତଟରେ କୋଠିଓ୍ୟାଲାମା-ନଙ୍କର କେତେଗୋଟା କୋଠି ନିର୍ମିତ ଥିଲା, ସେହିସ୍ଥାନରେ ଥୋକାଏ ହିନ୍ଦୁ ମଧ୍ୟ ବାସ କରୁଥିଲେ; ଗୋଟିଏ ଦୁର୍ଗ ମଧ୍ୟ ନିର୍ମିତ ହୋଇଥିଲା । କିନ୍ତୁ ଯେଉଁ ଚୌରଙ୍ଗୀ ନାମକ ସ୍ଥାନ ସ୍ୱର୍ଗଭୁବନପରି ଅପୂର୍ବଶୋଭା ଧାରଣ କରିଅଛି ଓ ତାହାର ସମୀପବର୍ତ୍ତୀ ଯେ ମାର୍ଗରେ ଦିବାବସାନେ ଶକଟଚକ୍ରରେ ପେଷିତ ହୋଇ ଯିବା ଭୟରେ ସଶଙ୍କିତ ହୋଇ ଲୋକମାନେ ଗମନ କରନ୍ତି, ସେହି ଚୌରଙ୍ଗୀରେ ତେତେବେଳେ କେବଳ କେତେଟା ଗୂଲଘର ଥିଲା ଓ ଶୃଗାଳ ଭୟରେ ଦିବାବସାନେ ଲୋକମାନେ ସେମାର୍ଗରେ ଗମନାଗମନ କରୁ ନ ଥିଲେ ।

୧୭୩୯ ସାଲରେ ଜଣେ ଯୋଗ୍ୟପୁରୁଷ ବଙ୍ଗ ବେହାର ଓ ଉଡ଼ିଶ୍ୟା ଏହି ତିନି ପ୍ରଦେଶରେ ସୁବାଦାରୀ ଗ୍ରହଣ କଲେ । ତାହାଙ୍କର ନାମ ଅଲିବର୍ଦ୍ଦିଖାଁ, ରାଜଧାନୀ ମୁରଶିଦାବାଦ । ତାହାଙ୍କ ସମୟରେ ମହାରାଷ୍ଟ୍ରୀୟମାନେ ବଙ୍ଗଳା ଦେଶରେ ନାନା ଉପଦ୍ରବ କରିବାରୁ ସେ ସୁବର୍ଣ୍ଣରେଖା ନଦୀର ଦକ୍ଷିଣବର୍ତ୍ତୀ ସମସ୍ତ ଉଡ଼ିଶ୍ୟାଦେଶ ସେମାନଙ୍କୁ ପ୍ରଦାନ କରିଥିଲେ ।

୧୭୫୬ ସାଲ ଏପ୍ରେଲମାସରେ ସେ ପରଲୋକ ଗମନ କରନ୍ତେ ତାହାଙ୍କର ଅଷ୍ଟାଦଶବର୍ଷ ବୟସ୍କ ଦୌହିତ୍ର ସିରାଜଉଦ୍ଦୌଲା ତଦୀୟ ପଦରେ ଆରୁଢ଼ ହେଲେ ।

ସିରାଜଉଦ୍ଦୌଲା ଯାବନ୍ତ ମନ୍ଦ ଗୁଣରେ ଭୂଷିତ ହୋଇ ଧରାଧାମେ ଅବତୀର୍ଣ୍ଣ ହୋଇଥିଲେ । କଥିତ ଅଛୁ, ସେ କୌତୁକ ଦେଖିବା ପାଇଁ ମନୁଷ୍ୟ ପୂର୍ଣ୍ଣ ବୋଇତ ଜଳମଧ୍ୟରେ ଜୁବାଇ ଦଅନ୍ତି ଓ ଗର୍ଭମଧ୍ୟରେ ସନ୍ତାନ କପରି ରହିଥାଏ ତାହା ଦେଖିବା ପାଇଁ ଗୁର୍ବିଣୀର ଗର୍ଭବିଦାରଣ କରନ୍ତି । ଦେବତା ତୁଲ୍ୟ ବାହନ ପ୍ରାୟ ଘଟି ଥାଏ । ସିରାଜଉଦ୍ଦୌଲାଙ୍କ ଯେପରି ସ୍ୱଭାବ, ଠିକ ତଦ୍ରୂପ ଗୁଣଧାରୀ କେତେ-ଗୁଡ଼ଏ ଅନୁଚର ମଧ୍ୟ ତାହାଙ୍କୁ ମିଳିଥିଲେ, ଫଳେ ପ୍ରଭୁ ଓ ଦାସମାନଙ୍କର ଅତ୍ୟା-ଚାରରେ ଦେଶସ୍ଥ ସତୀମାନଙ୍କର ସତୀତ୍ୱ, ମାନୀଙ୍କର ମାନ, ଧନୀଙ୍କର ଧନ ରକ୍ଷା କରିବା ଅତ୍ୟନ୍ତ କଠିନ ହୋଇଥିଲା । ଏଉତ୍ତାରେ ଦେଖାଯିବ, ସେହି ଦୋଷ ହେତୁରୁ ସିରାଜ, ଶୀଘ୍ର ମୃତ୍ୟୁମୁଖ ଅବଲୋକନ କରିଥିଲେ ।

ସିରାଜଉଦ୍ଦୌଲାର ରାଜ୍ୟ ପ୍ରାପ୍ତିର ଅଳ୍ପକାଳ ଉତ୍ତାରେ ଢାକାନିବାସୀ ରାଜା ରାଜବଲ୍ଲଭଙ୍କ ପୁତ୍ର କୃଷ୍ଣଦାସ ନାମକ ଜଣେ ଲୋକ ଉପରେ ତାଙ୍କର ଆକ୍ରୋଶ ଜନ୍ମେ; ତେଣୁ କୃଷ୍ଣଦାସ ପ୍ରାଣରକ୍ଷା ବାସନାରେ ଇଂରେଜମାନଙ୍କ ଆଶ୍ରୟ ଗ୍ରହଣ କରିଥିଲେ । ସିରାଜ, କୃଷ୍ଣଦାସଙ୍କୁ ପଠାଇ ଦେବା ପାଇଁ ଲେଖିଲେ, କିନ୍ତୁ ଇଂରେଜମାନେ ତାହା ଶୁଣିଲେ ନାହିଁ । କିଛିଦିନ ଉତ୍ତାରେ ଇଂରେଜମାନେ କଲିକତାସ୍ଥ ଦୁର୍ଗ ସଂସ୍କାର କରିବାକୁ ଆରମ୍ଭ କରିବାରୁ ସିରାଜ ତାହା କରିବାକୁ ନିଷେଧ କରି ପଠାଇଲେ, ଇଂରେଜମାନେ ତାହା ମଧ୍ୟ ଶୁଣିଲେ ନାହିଁ । ତହୁଁ ସିରାଜଉଦ୍ଦୌଲାଙ୍କ କ୍ରୋଧ ପ୍ରଜ୍ୱଳିତ ହୋଇ ଉଠିଲା ଓ ଇଂରେଜମାନଙ୍କ ସହିତ ଯୁଦ୍ଧ କରିବା ପାଇଁ ପ୍ରସ୍ତୁତ ହେବାକୁ ଲାଗିଲେ । ଏଥିରେ ସିରାଜଉଦ୍ଦୌଲା କେତେ ଦୋଷୀ ଆମ୍ଭେମାନେ ନ ଜାଣୁ । ଯେଣୁ ଇଂରେଜମାନେ ପ୍ରଜା, ସାମାନ୍ୟ ପ୍ରଜା ହୋଇ ରାଜ୍ୟେଶ୍ୱରଙ୍କର ଆଦେଶ ଅବହେଳା କରିବା ଯେ ନିତାନ୍ତ ଅନ୍ୟାୟ ଏହା ସର୍ବଦେଶୀୟ ଲୋକେ ଏକବାକ୍ୟ ହୋଇ ଅବଶ୍ୟ ସ୍ୱୀକାର କରିବେ । ସିରାଜଉଦ୍ଦୌଲା ତ ଜଣେ ଅଶିକ୍ଷିତ ଲୋକ, ସଭ୍ୟତମ ବ୍ରିଟିଶଗବର୍ଣ୍ଣ-ମେଣ୍ଟଙ୍କ ଅଧିକାର ମଧ୍ୟରେ ବିନାନୁମତିରେ ଯଦି କେହି ଦୁର୍ଗନିର୍ମାଣ କରେ ଓ ଗବର୍ଣ୍ଣମେଣ୍ଟଙ୍କ ଆଦେଶପାଳନ ନ କରେ ତେବେ କି ଗବର୍ଣ୍ଣମେଣ୍ଟ ତୁନି ହୋଇ ରହିବେ ?

ସିରାଜଉଦ୍ଦୌଲା ବହୁତ ସେନା ସହିତ କାଶିମବଜାରର କୋଠି ଲୁଣ୍ଠନ-ପୂର୍ବକ କଲିକତାରେ ଉପସ୍ଥିତ ହେଲେ (୧୭୫୬ ଜୁନ) । କଲିକତାରେ ଇଂରେ-

ଜମାନଙ୍କର କାହିଁ ଯୁଦ୍ଧର ଆୟୋଜନ ଥିଲା ନାହିଁ । ଅଳ୍ପକାଳ ଅବରୋଧ ଧାରଣ ଉତ୍ତାରେ କଲିକତାର ସର୍ବାଧକ୍ଷ ଡ୍ରେକସାହେବ ଓ ସେନାଧକ୍ଷ ବାହାଦୂର ପଳାୟନ କଲେ; ସେମାନେ ଭୟରେ ଏପରି ବ୍ୟାକୁଳ ହୋଇଥିଲେ ଯେ, ସମସ୍ତେ ପଳାୟନ କରିବାକୁ ବ୍ୟସ୍ତ; ଯେ, ଯେ ଜାହାଜ ସମ୍ମୁଖରେ ପାଇଲା ସେ ତହିଁରେ ଆରୋହଣ କଲା; ଏହି ବ୍ୟସ୍ତତା ହେତୁରୁ ୧୪୬ ଇଂରେଜ ଓ ଗୋ-ଟିଏ ବଡ଼ ଦୁର୍ଗ ମଧ୍ୟରେ ରହିଗଲେ । ଜାହାଜ ସକଳ ମଧ୍ୟ ଅନେକ ଦୂରରେ ନଙ୍ଗର କରି ରହିଲେ । ଦୁର୍ଗସ୍ଥିତ ସେନାମାନେ ଆପଣାପକ୍ଷରୁ ହଲଓଏଲ ସାହେବଙ୍କୁ ଅଧକ୍ଷ କଲେ । ପରଦିନ ଘୋରତର ଯୁଦ୍ଧ ହେଲା; ହଲଓଏଲ ସାହେବ ମୁକ୍ତିର ଉପାୟାନ୍ତର ନ ଦେଖି ଅଳ୍ପକାଳ ମାତ୍ର ଦୁର୍ଗରକ୍ଷାର ଉପାୟ ଚେଷ୍ଟା କରି ଅଗତ୍ୟା ଶତ୍ରୁ ହସ୍ତରେ ସମର୍ପଣ କରିବାକୁ ଚେଷ୍ଟା କଲେ । ହଲ-ଓଏଲ ସାହେବ କମାଣ ବନ୍ଦକରିବା ମାତ୍ର ସିରାଜଉଦ୍ଦୌଲାଙ୍କ ସେନାମାନେ ପ୍ରାଚୀର ଲଙ୍ଘନକରି ଦୁର୍ଗମଧ୍ୟରେ ପ୍ରବେଶ କଲେ । ତନ୍ମଧ୍ୟସ୍ଥିତ ଇଂରେଜମାନେ ବନ୍ଦୀ ହେଲେ । ସନ୍ଧ୍ୟା ସମୟରେ ସିରାଜ ଦୁର୍ଗ ମଧ୍ୟକୁ ଗମନ କଲେ ଓ ବନ୍ଦୀ-ମାନଙ୍କୁ ଆହ୍ୱାନ କରି କହିଲେ ତୁମ୍ଭମାନଙ୍କର କେଶ ମଧ୍ୟ ସ୍ପର୍ଶ କରା ଯିବ ନାହିଁ । ପରେ ମାଣିକଚାନ୍ଦ ହସ୍ତରେ ଦୁର୍ଗରକ୍ଷାର ଭାର ସମର୍ପଣ କରି ଶିବିରକୁ ଗମନ କଲେ । ରଜନୀ ଉପସ୍ଥିତ ହୁଅନ୍ତେ ମାଣିକଚାଁଦ ଦୀର୍ଘେ ୧୮ ହସ୍ତ ପ୍ରସ୍ଥେ ୮ ହସ୍ତ ଏକ ଘର ମଧ୍ୟରେ ସେହି ୧୪୬ ଜଣ ବନ୍ଦୀଙ୍କୁ ବନ୍ଦ କଲେ । ସେହି ଘର ଇଂରେଜମାନଙ୍କର କାରାଗାର ଥିଲା ସେଥିରେ କେହି୨ ଜଣେ ଦୁଇଜଣ ମାତ୍ର-ଆଲା ଗୋରା କୟେଦୀ ରୁହନ୍ତି, ବର୍ତ୍ତମାନ ଦାରୁଣ ଗ୍ରୀଷ୍ମ ସମୟରେ ସେହି ଗୋରା-ମାନଙ୍କର ଅସହ୍ୟ କ୍ଲେଶ ହେବାକୁ ଲାଗିଲା । ଇଂରେଜମାନେ ଅସହ୍ୟ କ୍ଲେଶ ସହି ନ ପାରି ଅନ୍ୟଘରକୁ ଯିବା ପାଇଁ ରକ୍ଷିମାନଙ୍କୁ ବିପୁଳ ଅର୍ଥ ଦେବାକୁ କହିଲେ । ମାତ୍ର ରକ୍ଷିମାନେ କହିଲେ "ସୁବାଦାରଙ୍କ ଆଦେଶ ନ ହେଲେ ତୁମ୍ଭ-ମାନଙ୍କୁ ସ୍ଥାନାନ୍ତରିତ କରାଯାଇ ନ ପାରେ" । ସୁବାଦାର ବର୍ତ୍ତମାନ ନିଦ୍ରିତ, ତାହାଙ୍କୁ ଉଠାଇବାକୁ କାହାରି କ୍ଷମତା ନାହିଁ । ତହିଁ କୟେଦମାନେ ଅନୁପାୟ ହୋଇ ଘର ମଧ୍ୟରେ ଦୌଡ଼ାଦୌଡ଼ି କରିବାକୁ ଲାଗିଲେ, କେହି୨ ବା ଈଶ୍ବ-ରଙ୍କ ସ୍ତବ କେହି୨ ବା ପାଗଳପରି ଈଶ୍ବର ନିନ୍ଦା କରିବାକୁ ଲାଗିଲେ । ଏହିପରି କିଛି ସମୟ ଉତ୍ତାରେ ସର୍ଦ୍ଦିଗର୍ମି ଉପସ୍ଥିତ ହେବାରୁ ୨୩ ଜଣ ଛଡ଼ା ସମସ୍ତେ ପଞ୍ଚତ୍ୱ ପ୍ରାପ୍ତ ହେଲେ । ଏହି ଘଟନାକୁ ଅନ୍ଧକୂପହତ୍ୟା ବୋଲା ଯାଏ, ଅନ୍ଧକୂପ-ହତ୍ୟା ପାଇଁ ଇୟୁରୋପୀୟମାନେ ସିରାଜଉଦ୍ଦୌଲାଙ୍କୁ ନରରାକ୍ଷସ ବୋଲି ବର୍ଣ୍ଣନ କରନ୍ତି ।

ପରଦିନ ପ୍ରାତଃକାଳେ ସିରାଜ ଧନାଗାରକୁ ଯାଇ ଦେଖିଲେ ସେଥିରେ ପଞ୍ଚାଶହଜାର ମାତ୍ର ଟଙ୍କା ଥିଲା । ଏଥିରେ ସିରାଜ ଅତ୍ୟନ୍ତ ବିରକ୍ତ ହେଲେ ; କାରଣ ଅଧିକ ଟଙ୍କା ପାଇବା ପାଇଁ ତାହାଙ୍କର ଆଶା ଥିଲା । ପରେ ସାମାନ୍ୟ ଇଂରେଜମାନଙ୍କୁ ମୁକ୍ତ କରି ହଲୱେଲଙ୍କୁ ମୁର୍ଶିଦାବାଦକୁ ପ୍ରେରଣ କଲେ, ବନ୍ଦୀ ମଧ୍ୟ ସିରାଜଙ୍କ ଅନ୍ତଃପୁରକୁ ପ୍ରେରିତ ହେଲେ । ସିରାଜଉଦ୍ଦୌଲା କଲିକତାରେ ୯ ଦିନ ବାସ କରି ଗମନ ସମୟରେ ମାର୍ଗ ମଧ୍ୟରେ ଫରାସି ଓ ଓଲନ୍ଦାଜମାନଙ୍କୁ ଭୟ ଦେଖାଇ କରରୂପ ଦକ୍ଷିଣା ନେଇ ଗଲେ ।

ଯେ ବରଷ ଇଂରେଜମାନେ ବଙ୍ଗଦେଶରୁ ତାଡ଼ିତ ହେଲେ ସେହି ବରଷ ଦିନାମାରମାନେ ଶ୍ରୀରାମପୁର ନଗର ସ୍ଥାପନ କରନ୍ତି ।

ଅଗଷ୍ଟ ମାସରେ କଲିକତା ପରାଭବବାର୍ତ୍ତା ମାନ୍ଦ୍ରାଜରେ ଉପସ୍ଥିତ ହୁଅନ୍ତେ ତତ୍ରତ୍ୟ ଇଂରେଜମାନେ କ୍ରୋଧରେ କମ୍ପିତ ହୋଇ ଉଠିଲେ । କଲିକତା ଗ୍ରହଣ ଓ ବୈରନିର୍ଯାତନ ପାଇଁ ଅକ୍ଟୋବର ମାସରେ ଦଶଖଣ୍ଡ ଯୁଦ୍ଧ ବୋଇତରେ ୯୦୦ ଇୟୁରୋପୀୟ ପଦାତିକ ଓ ୧୫୦୦ ସିପାହୀ ସହିତ ଆଡମିରଲ ଓୟାଟସନ ସାହେବ ଓ କର୍ଣ୍ଣେଲ କ୍ଲାଇବଙ୍କୁ ପ୍ରେରଣ କଲେ । କ୍ଲାଇବଙ୍କ ଉପରେ ସମସ୍ତ ଭାର ଅର୍ପିତ ଥିଲା ।

ସିରାଜ କଲିକତାରୁ ଇଂରେଜମାନଙ୍କୁ ଉଚ୍ଛେଦ କରି ଯେପରି ସନ୍ତୁଷ୍ଟ ହୋଇଥିଲେ ସେହିପରି ନିରାନନ୍ଦର କାରଣ ମଧ୍ୟ ଥିଲା; କାରଣ ଯେହେତୁ ସେ-ମାନଙ୍କଠାରୁ ଯେ କର ଆଦାୟ ହେଉଥିଲା ତାହା ଏକାବେଳକେ ରହିତ ହେଲା । ଇଂରେଜମାନେ ଯେ ବଙ୍ଗଦେଶକୁ ପୁନର୍ବାର ଆସିବେ ସେ ଏପରି ଆଶା ଦିନେ-ମଧ୍ୟ କରି ନ ଥିଲେ । (ତାହାଙ୍କର ଭୂଗୋଳ ଶାସ୍ତ୍ରରେ ଏପରି ଘୋର ବ୍ୟୁତ୍ପତ୍ତି ଥିଲା ଯେ ସେ ସର୍ବଦା ବୋଲନ୍ତି ସମସ୍ତ ଇୟୁରୋପ ୧୦ ସହସ୍ରମାତ୍ର ଲୋକର ବାସସ୍ଥାନ ଅଟେ) । ଏଥିକୁ ବଙ୍ଗଦେଶରେ ବାଣିଜ୍ୟ କରିବା କାରଣ ଇଂରେଜ-ମାନଙ୍କୁ ପୁନର୍ବାର ଡାକିବା ପାଇଁ ବିଚାର କରୁ ଅଛନ୍ତି ଏମନ୍ତ ସମୟରେ ସେମାନେ ବିନା ନିମନ୍ତ୍ରଣରେ ଆସି ଦେଖା ଦେଲେ ।

ଡିସେମ୍ବର ମାସରେ ଇଂରେଜମାନଙ୍କର ରଣତରୀ ସକଳ ଆସି କଲିକତାର ୧୦ କ୍ରୋଶ ଦକ୍ଷିଣେ ଫଲତାରେ ଉପସ୍ଥିତ ହେଲେ । କ୍ଲାଇବ ସେ ସ୍ଥାନରେ ଓ-ହ୍ଲାଇ ମାୟାପୁର ପର୍ଯ୍ୟନ୍ତ ଆସିଲେ । ସେ ସ୍ଥାନରେ ସୁବାଦାରଙ୍କ ସେନାପତି ମାଣିକଚାନ୍ଦ ସହିତ ଗୋଟିଏ ଯୁଦ୍ଧ ହେଲା; ନବାବ ସେନାମାନେ ଉତ୍ତମରୂପେ ଯୁଦ୍ଧ କରି ଥିଲେ କ୍ଲାଇବ ନିଶ୍ଚୟ ପରାସ୍ତ ହୋଇ ଥାଆନ୍ତେ ମାତ୍ର ମାଣିକଚାନ୍ଦଙ୍କ ଦାଢ଼ୀ ମଧ୍ୟ ଦେଇ ଗୋଟାଏ ଗୋଳା ଗଳିଯିବାରୁ ସେ ପଳାୟନ କଲେ ।

୧୭୫୭ ସାଲ ତା ୨ ରଖ ଜାନୁଆରିରେ ୱାଟ୍‌ସନ ସାହେବ କଲିକତା ଉପରେ ୨ ଘଣ୍ଟାକାଳ ଗୋଲା ବର୍ଷଣ କରି ନଗର ଅଧିକାର କଲେ । ଅଥଚ ଗୋଟିଏ ପ୍ରାଣିର ମଧ୍ୟ ପ୍ରାଣନାଶ ହେଲା ନାହିଁ ।

କ୍ଲାଇବ କଲିକତା ଉଦ୍ଧାର କରି ନିଶ୍ଚିନ୍ତ ହୋଇ ରହିଲେ ନାହିଁ; କଲିକତା ଅବମାନନାର ପରିଶୋଧ ଦେବା ପାଇଁ ହୁଗଲି ନଗର ଅଧିକାର କଲେ । ସେତେ-ବେଳେ ସେହି ନଗର ବହୁବିଧ ବାଣିଜ୍ୟ ଓ ମହାସମୃଦ୍ଧିଶାଳୀ ଥିଲା । ଇଂରେଜ-ମାନେ ହୁଗଲି ଅଧିକାର କରିଅଛନ୍ତି ଶୁଣି ସିରାଜ ଅତ୍ୟନ୍ତ ରାଗାନ୍ୱିତ ହେଲେ । ଇଂରେଜମାନଙ୍କ ଉପରେ ତାହାଙ୍କର ଯେ କିଛି ପ୍ରସନ୍ନତା ଜନ୍ମି ଥିଲା, ତାହା ଏକାବେଳକେ ଅନ୍ତର୍ହିତ ହେଲା । ସେ ବହୁଳ ସେନାସମଭିବ୍ୟାହାରେ ଫେବୃଆରି ମାସ ଦୁଇ ତାରିଖ କଲିକତା ଠାରେ ଉପସ୍ଥିତ ହେଲେ । ସିରାଜଉଦ୍ଦୌଲା ଉପ-ସ୍ଥିତ ହେବାମାତ୍ର କ୍ଲାଇବ ସନ୍ଧି ପ୍ରାର୍ଥନା କରି ପଠାଇଲେ । ପ୍ରତ୍ୟାଗତ ଦୂତ ଏହି ବାର୍ତ୍ତା ଆଣିଲା ଯେ ସୁବାଦାର ମୌଖିକସନ୍ଧି ପ୍ରସ୍ତାବରେ ସମ୍ମତ ଅଛନ୍ତି, ମାତ୍ର ତାହାଙ୍କ ଅନ୍ତଃକରଣ ସେପରି ନୁହଇ । ତହୁଁ କ୍ଲାଇବ ଏକଉଦ୍ୟମରେ ଶତ୍ରୁପକ୍ଷ ଆକ୍ରମଣ କରିବାକୁ ସ୍ଥିର କଲେ ଓ ଆପଣାର ଅଳ୍ପସଂଖ୍ୟକ ସୈନ୍ୟ ଶତ୍ରୁ ଚକ୍ଷୁରୁ ପ୍ରଚ୍ଛନ୍ନ ରଖିବା ବାସନାରେ ଫେବୃଆରି ଚତୁର୍ଥତାରିଖ ରଜନୀ ଘ ୨ ଣ୍ଟା ସମୟରେ ଶତ୍ରୁ ଶିବିର ଆକ୍ରମଣ କଲେ ପରଦିନ ପ୍ରାତଃକାଳେ ନିବିଡ଼ କୁଜ୍‌ଝଟିକା ହୋଇ କ୍ଲାଇବଙ୍କ ବାସନା ସଫଳ ବିଷୟରେ ପ୍ରତିପୋଷକ ହୋଇ ଥିଲା । ଯାହା ହେଉ ଏହି ଯୁଦ୍ଧରେ କ୍ଲାଇବଙ୍କର ୨୨୦ ଜଣ ସେନା ନିଧନ ପ୍ରାପ୍ତ ହୋଇ ଥିଲେ । ଏହି କ୍ଷତି ମଧ୍ୟ କ୍ଲାଇବଙ୍କ ପକ୍ଷରେ ଯଥେଷ୍ଟ ହୋଇଥିଲା ବୋଲି ସ୍ୱୀକାର କରିବାକୁ ହେବ, କାରଣ ତାହାଙ୍କର ସୈନ୍ୟ ସଂଖ୍ୟା ୨୦୦୦ ମାତ୍ର । ଯାହା ହେଉ ସିରାଜ ଅସାଧାରଣ ଜ୍ଞାନଶକ୍ତି ଦ୍ୱାରା ଅନୁମାନ କରି ଥିଲେ ଇଂରେଜମାନେ ଅସ୍ତ୍ର ଧରିବାକୁ ଜାଣନ୍ତି ନାହିଁ; ବର୍ତ୍ତମାନ କ୍ଲାଇବଙ୍କର ଅଳ୍ପମାତ୍ର ପରାକ୍ରମ ଦେଖି ଭୀତ ହେଲେ, ଆଉ ଯୁଦ୍ଧ କରିବାକୁ ସାହସ ଅଣ୍ଟିଲା ନାହିଁ । ସନ୍ଧିର ଚେଷ୍ଟା ଦେଖିବାକୁ ଲାଗିଲେ, ଇଂରେଜମାନଙ୍କର ମଧ୍ୟ ସେହି ଇଚ୍ଛା । ଫେବୃଆରି ମାସ ୯ ତାରିଖରେ ସନ୍ଧିପତ୍ର ସ୍ୱାକ୍ଷରିତ ହେଲା ।

ଏହି ସନ୍ଧି ଦ୍ୱାରା ଇଂରେଜମାନେ ସମସ୍ତ ପୂର୍ବାଧିକାର ପ୍ରାପ୍ତ ହେଲେ । ଗତ ବରଷ ଯୁଦ୍ଧରେ ସୁବାଦାର ଯେ ସମସ୍ତ ଦ୍ରବ୍ୟ କ୍ଷତି କରି ଥିଲେ ସେ ସମସ୍ତ ଧରି ଦେଲେ । ଏହା ଛଡ଼ା ଇଂରେଜମାନେ ଗୋଟିଏ ଦୁର୍ଗ ଓ ଟଙ୍କଶାଳ ନିର୍ମାଣ କରିବାକୁ ଆଦେଶ ପ୍ରାପ୍ତ ହେଲେ । କ୍ଲାଇବ କାଳବିଳମ୍ବ ଅନୁଚିତ ବିବେଚନା କରି ଦେଶୀୟ ସେନାମାନଙ୍କର ଦୁରାକ୍ରମ୍ୟ ଏକ ଦୁର୍ଗ ନିର୍ମାଣ କରିବାକୁ ଆରମ୍ଭ କଲେ; ଯେତେ-

ବେଳେ ସେ ନକସା ପ୍ରସ୍ତୁତ କରନ୍ତି ତେତେବେଳେ ତହିଁରେ କେତେଟଙ୍କା ବ୍ୟୟ ହେବ ତାହା ଜାଣି ନ ଥିଲେ । ପରେ ସେଥିରେ ଦୁଇକୋଟି ଟଙ୍କା ବ୍ୟୟ ହେଲା । ସମ୍ପ୍ରତି ଯେ ଦୁର୍ଗ ବର୍ତ୍ତମାନ ଅଛି ସେହି କ୍ଲାଇବସାହେବଙ୍କ ନିର୍ମିତ ଦୁର୍ଗ ; ଅଗଷ୍ଟମାସ ୧୯ ତାରିଖରେ ଟଙ୍କାମଧ ମୁଦ୍ରିତ ହୋଇଥିଲା ।

ଏହି ସମୟରେ ଫ୍ରାନସ ଓ ଇଂଲଣ୍ଡମଧ୍ୟରେ ଯୁଦ୍ଧବାର୍ତ୍ତା ବଙ୍ଗଦେଶରେ ଉପସ୍ଥିତ ହେଲା । କ୍ଲାଇବ ସୁବାଦାରଙ୍କ ଅନୁମତି ଗ୍ରହଣ କରି ଚନ୍ଦନନଗର ଆକ୍ରମଣ କରିବାକୁ ବାସନା କଲେ; ମାତ୍ର ଏହି ବିଷୟରେ ସୁବାଦାରଙ୍କୁ ଯେତେଥର ପତ୍ର ଲେଖିଲେ କୌଣସି ଥର ଉଚିତ ଉତ୍ତର ପାଇଲେ ନାହିଁ । ଶିରାଜଉଦ୍ଦୌଲା କେବଳ ଭୟପ୍ରଯୁକ୍ତ ଇଂରେଜମାନଙ୍କ ସହିତ ସନ୍ଧିସ୍ଥାପନ କରିଥିଲେ, ତାହାଙ୍କର ଅନ୍ତଃକରଣ ସେପରି ଥିଲା ନାହିଁ । ଅବଶେଷେ ଏଡ୍‌ମିରଲ ଓୟାଟସନ ସାହେବ ଲେଖିଲେ "ଆମ୍ଭମାନଙ୍କର ଯେତେ ସୈନ୍ୟ ଆସିବାର କଥା ଥିଲା ସମସ୍ତ ଆସିଅଛନ୍ତି, ଆପଣ ଯେବେ ଫରାସିମାନଙ୍କୁ ଆକ୍ରମଣ କରିବାକୁ ଅନୁମତି ନ ଦେବେ, ତେବେ ଆମ୍ଭେମାନେ ଆପଣଙ୍କ ରାଜ୍ୟରେ ଏମନ୍ତ ଯୁଦ୍ଧାନଳ ପ୍ରଜ୍ୱଳିତ କରିବୁଁ ଯେ, ସମସ୍ତ ଗଙ୍ଗାଜଳରେ ତାହା ନିଭିବ ନାହିଁ" । ଶିରାଜଉଦ୍ଦୌଲା ଭୀତ ହୋଇ ଲେଖିଲେ "ଆପଣମାନଙ୍କର ଯାହା ଇଚ୍ଛା କରନ୍ତୁ" କ୍ଲାଇବ ଏହି ଉତ୍ତରକୁ ଫରାସିମାନଙ୍କ ସହିତ ଯୁଦ୍ଧ କରିବାର ଅନୁମତି ଗଣନା କରି ନେଲେ ଏବଂ ସ୍ଥଳ ଓ ଜଳ ସେନାଦ୍ୱାରା ଚନ୍ଦନ ନଗର ଆକ୍ରମଣ ଓ ଅଧିକାର ଓ ତନ୍ମଧ୍ୟ ଫରାସିମାନଙ୍କୁ ବନ୍ଦୀ କଲେ ।

ଚନ୍ଦନନଗରର ପରାଜୟବାର୍ତ୍ତା ଶୁଣି ଶିରାଜଉଦ୍ଦୌଲାଙ୍କର କ୍ରୋଧ ଉତ୍ତେଜିତ ହୋଇ ଉଠିଲା । କିନ୍ତୁ ପ୍ରକାଶ୍ୟ ବିରୁଦ୍ଧାଚରଣ କରିବାକୁ ସାହସ ଅଣ୍ଟିଲା ନାହିଁ । ସେ ଇଂରେଜମାନଙ୍କୁ ଦୁର୍ଦ୍ଧର୍ଷ ଜ୍ଞାନ କରି ଅନ୍ୟ ସାହାଯ୍ୟ ଅନ୍ୱେଷଣ କରିଥିଲେ । ଇଂରେଜମାନଙ୍କୁ ଦୂର କରି ଦେବା ପାଇଁ ଫରାସି ସେନାପତି ବୁସୀଙ୍କୁ ପତ୍ରଲେଖନ୍ତି । ସେହି ସକଳ ପତ୍ର କ୍ଲାଇବଙ୍କ ହସ୍ତରେ ପଡ଼ିଥିଲା । ଅଭୁ ଫରାସିମାନଙ୍କର କାଶିମବଜାର କୋଠିର ଅଧକ୍ଷ ଲାସାହେବଙ୍କୁ ଯେ ପତ୍ରଲେଖନ୍ତି ତାହାମଧ କ୍ଲାଇବଙ୍କ ହସ୍ତରେ ପଡ଼ିଥିଲା; କ୍ଲାଇବ ବୁଝିଥିଲେ ଲାସାହେବ ବଙ୍ଗଳା ଦେଶରେ ଥିଲେ ଆପଣା ପକ୍ଷରେ ଅନିଷ୍ଟ ଘଟିବାର ସମ୍ଭାବନା; ଏଥିକୁ ଲାସାହେବଙ୍କୁ ଦୂର କରି ଦେବା ପାଇଁ ଶିରାଜଉଦ୍ଦୌଲାଙ୍କୁ ଲେଖିଲେ । ଶିରାଜ କ୍ଲାଇବସାହେବଙ୍କ ଅଦେଶ ଅବଜ୍ଞା କରିବାକୁ ସାହସୀ ନ ହୋଇ ଲାସାହେବଙ୍କୁ ଦୂର କରି ଦେଲେ, ମାତ୍ର ଗୋପନେ ଲାସାହେବଙ୍କ ସମୀପକୁ ଅନେକ ଅର୍ଥ ସହିତ ପତ୍ର ପଠାଇଲେ ଯେ "ଆପଣ ବର୍ତ୍ତମାନ ଯାଉନ୍ତୁ ସମୟ ଉପସ୍ଥିତ ହେଲେ ଆପଣଙ୍କୁ

ଡାକ ଯିବ" । ଲ୍‌ସାହେବ ଉତ୍ତର ଦେଲେ "ଆମ୍ଭେ ଯଥାର୍ଥ କହୁ ଅଛୁଁ, ଆମ୍ଭକୁ ଆଉ ଆସିବାକୁ ଦେବ ନାହିଁ ଅପଣଙ୍କ ସହିତ ଅମ୍ଭର ଏହି ଶେଷ ଦେଖା" ।

ସୁବାଦାରଙ୍କର ଅତ୍ୟାଚାର କ୍ରମଶଃ ବୃଦ୍ଧି ହେବାରୁ ରାଜ୍ୟର ପ୍ରଧାନ ୨ ଲୋକମାନେ ସେଥିରୁ ରକ୍ଷା ପାଇବା କାରଣ ଚେଷ୍ଟା କରିବାକୁ ଲାଗିଲେ । ସେହି ଚକ୍ରାନ୍ତକାରମାନଙ୍କ ମଧ୍ୟରେ ବିପୁଳ ଧନପତି ଜଗତ୍‌ଶେଠ, ସୁବାଦାରଙ୍କ ସର୍ବାଧିକାରୀ ରାଜା ରାୟଦୁର୍ଲ୍ଲଭ, ସେନାପତି ମିରଜାଫର, ଉମାଇଚାଁଦ ଓ ଖୋଜାବାଜିଦ ନାମକ ୨ଜଣ ବଣିକ ପ୍ରଧାନ ଅଟନ୍ତି । ଏମାନେ ଶିରାଜଉଦ୍ଦୌଲାଙ୍କୁ ରାଜ୍ୟଭ୍ରଷ୍ଟ କରି ମିରଜାଫରଙ୍କୁ ସୁବାଦାରୀ ପଦରେ ଅଭିଷିକ୍ତ କରିବାକୁ ମନସ୍ଥ କଲେ । ସାହାଯ୍ୟ ପ୍ରାର୍ଥନା କାରଣ ଇଂରେଜମାନଙ୍କ ଠାକୁ ଗୋପନରେ ଦୂତ ପ୍ରେରିତ ହେଲା ।

ଇଂରେଜମାନଙ୍କର ବିଶ୍ୱାସ ଜନ୍ମିଥିଲା ଯାବତ୍ ବାଲକସ୍ୱଭାବ ଅସ୍ଥିରମତି ନବାବ ସିଂହାସନରେ ଆରୂଢ଼ ଥିବେ, ତାବତ୍ ସେମାନେ ନିର୍ଭୟ ହୋଇ ପାରିବେ ନାହିଁ । ବର୍ତ୍ତମାନ କ୍ଲାଇବ ଚକ୍ରାନ୍ତକାରମାନଙ୍କର ପତ୍ର ପରମାହ୍ଲାଦରେ ଗ୍ରହଣ କଲେ । ମୁରଶିଦାବାଦସ୍ଥିତ ଇଂରେଜମାନଙ୍କର ମୁକ୍ତାର ଓ୍ୟାଟ୍‌ସାହେବଙ୍କ ଦ୍ୱାରା ଚକ୍ରାନ୍ତ ଚଳିବାକୁ ଲାଗିଲା । ଚକ୍ରାନ୍ତ ବିଷୟ ସମସ୍ତ ସ୍ଥିର ହୋଇ ଅଛି, ଏମନ୍ତ ସମୟରେ ଉମାଇଚାଁଦ କହିଲେ, ଅମ୍ଭଙ୍କୁ ତିରିଶଲକ୍ଷ ଟଙ୍କା ଦେବାକୁ ହେବ, ନୋହିଲେ ଅମ୍ଭେ ସମସ୍ତ ବିଷୟ ସୁବାଦାରଙ୍କୁ କହିଦେବୁଁ । ଉମାଇଚାଁଦ ଏହି ବିଷୟ ପ୍ରକାଶ କଲେ ଚକ୍ରାନ୍ତକାରମାନଙ୍କର ପ୍ରାଣଦଣ୍ଡ ହେବାର ସମ୍ଭାବନା; ଏଥିକୁ ଓ୍ୟାଟ୍ ସାହେବ ଏକଥା ଶୁଣି ଅତ୍ୟନ୍ତ ବ୍ୟାକୁଳିତ ହେଲେ ଓ ଅବିଲମ୍ବେ କ୍ଲାଇବ ସାହେବଙ୍କୁ ସମସ୍ତ ବିଷୟ ଜଣାଇଲେ । ପରେ କ୍ଲାଇବ ପତ୍ର ପାଇ ପ୍ରଥମତଃ କିଞ୍ଚିତ୍ ବ୍ୟାକୁଳିତ ହେଲେ; ମାତ୍ର ସେ ରାଜନୀତି ଓ ଯୁଦ୍ଧକୌଶଳରେ ଯେମନ୍ତ ନିପୁଣ ଥିଲେ ଶଠତା ବିଷୟରେ ମଧ୍ୟ ତହିଁରୁ ଊଣା ନ ଥିଲେ । ସେ ବିବେଚନା କଲେ, ବର୍ତ୍ତମାନ ଉମିଚାଁଦ ପ୍ରସ୍ତାବରେ ସମ୍ମତହୋଇ ପଶ୍ଚାତ୍ ତାହାକୁ ଫାଙ୍କିଦେବା ବଡ଼ କଠିନ ହେବ ନାହିଁ। ତଦନୁସାରେ ସେ ଶ୍ୱେତ ଓ ଲୋହିତ ଦୁଇଖଣ୍ଡ କରାରନାମା ପ୍ରସ୍ତୁତ କଲେ । ଶ୍ୱେତ ପତ୍ର ଯଥାର୍ଥ ଲୋହିତ ପତ୍ର କେବଳ ଉମାଇଚାଁଦକୁ ଫାଙ୍କି ଦେବାଲାଗି ପ୍ରସ୍ତୁତ ହେଲା । ଲୋହିତ ପତ୍ରରେ ଉମାଇଚାଁଦକୁ ୩୦ ଲକ୍ଷ ଟଙ୍କା ଦେବାର କଥା ଲେଖା ଗଲା, ଶ୍ୱେତ ପତ୍ରରେ ଉମାଇଚାଁଦଙ୍କ ନାମ ମଧ୍ୟ ରହିଲା ନାହିଁ । ସେହି ଦୁଇ ପତ୍ର ସ୍ୱାକ୍ଷରିତ ହେଲା, ମାତ୍ର ଏଡ଼ମିରଲ୍ ଓ୍ୟାଟ୍‌ସନ ସାହେବ କେବଳ ଶ୍ୱେତ ପତ୍ରରେ ସ୍ୱାକ୍ଷର କଲେ ।

ଜ୍ଲୋହିତ ପତ୍ରରେ ସ୍ୱାକ୍ଷର କଲେ ନାହିଁ । ଧୂର୍ତ୍ତଶିରୋମଣି କ୍ଲାଇବଙ୍କର କୌଣସି କର୍ମ ଅସାଧ୍ୟ ଥିଲା ନାହିଁ, ସେ ଲୋହିତ ପତ୍ର ଜାଲ କଲେ ।

ଏ ଉତ୍ତରେ ସମସ୍ତ ଆୟୋଜନ ସ୍ଥିରହୁଅନ୍ତେ ଓୟାଟସନ ସାହେବ ଗୁପ୍ତରେ ମୁରଶିଦାବାଦରୁ ପଳାୟନ କଲେ । କ୍ଲାଇବ ସସୈନ୍ୟେ ଧାବିତ ହେଲେ ଏବଂ ସୁବାଦାର ନିକଟକୁ ଏକପତ୍ର ଲେଖିଲେ । ସୁବାଦାର ପତ୍ରପାଇ ସୈନ୍ୟ ସଜ୍ଜିତ ପୂର୍ବକ ଇଂରେଜମାନଙ୍କ ସମ୍ମୁଖୀନ ହେବାପାଇଁ ଆସିବାକୁ ଲାଗିଲେ । ୧୮୫୭ ସା-ଲର ଜୁନମାସ ତା ୨୧ ଖରେ ସୈନ୍ୟମାନେ ଆସି ପଲାଶିଠାରେ ଛାଉଣୀ କଲେ; ମିରଜାଫରଙ୍କ ସହିତ ବନ୍ଦୋବସ୍ତ ଥିଲା ଯେ, ସେ ସୁବାଦାରଙ୍କପକ୍ଷ ପରିତ୍ୟାଗପୂର୍ବକ ସସୈନ୍ୟେ ଇଂରାଜମାନଙ୍କ ପକ୍ଷରେ ମିଳିତ ହେବେ; ମାତ୍ର ଏପର୍ଯ୍ୟନ୍ତ ତାହାଙ୍କର ଦେଖା ନାହିଁ । କ୍ଲାଇବ ଭାବ ଅସ୍ଥିର ହେଲେ ଓ ମିରଜା-ଫରଙ୍କ ନିକଟକୁ ବାରମ୍ବାର ପତ୍ର ପଠାଇବାକୁ ଲାଗିଲେ ମାତ୍ର ଜାଫର ଆଶ୍ୱାସ ଭିନ୍ନ ଆସିବାର କୌଣସି କଥା ଲେଖିଲେ ନାହିଁ । କ୍ଲାଇବ ବିଷମ ସଙ୍କଟରେ ପଡ଼ିଲେ, ନିଜର ଓ ସୁବାଦାରଙ୍କ ସୈନ୍ୟସଂଖ୍ୟା ବିବେଚନାକରି ଅତ୍ୟନ୍ତ ବ୍ୟାକୁଳ ହେଲେ, ସୁବାଦାରଙ୍କର ସୈନ୍ୟସଂଖ୍ୟା ୬୦ ସହସ୍ର ଥିଲା, କ୍ଲାଇବଙ୍କର ୩ ସହସ୍ର ମାତ୍ର । ଏକ୍ଷେତ୍ରେ କଣ କରିବାକୁ ହେବ ସ୍ଥିର କରି ନ ପାରି ରଣ ସମିତି * ଆହ୍ୱାନ କଲେ । ଅଧିକାଂଶ ସୈନ୍ୟାଧ୍ୟକ୍ଷ ଯୁଦ୍ଧ ନ କରିବାପାଇଁ ପରାମର୍ଶଦେଲେ । ଏମନ୍ତ ସମୟରେ ଅନ୍ୟସେନାପତି ହେଲେ ଅବଶ୍ୟ ପଳାୟନ କରନ୍ତେ; ମାତ୍ର କ୍ଲାଇବ ଅନ୍ୟଧାତୁର ଲୋକଥିଲେ; ଆପଦ ସମୟରେ ତାହାଙ୍କର ସାହସ, ଧୈର୍ଯ୍ୟ ଓ ଜ୍ଞାନ ବୃଦ୍ଧି ହୁଏ । କ୍ଲାଇବ ସମିତିରୁ ବାହାର ସାମୀପବର୍ତ୍ତୀ କେତୋଟି ଆମ୍ରତରୁର ଛାୟାକୁ ଗମନ ଓ ଉପବେଶନପୂର୍ବକ ପ୍ରଗାଢ଼ ଚିନ୍ତାରେ ନିମଗ୍ନ ହେଲେ । ସେଠାରୁ ଶିବିରକୁ ଫେରି ଆସି ଶତ୍ରୁପକ୍ଷ ଆକ୍ରମଣ କରିବାପାଇଁ ସୈନ୍ୟମାନଙ୍କୁ ଆଦେଶ ପ୍ରଦାନ କଲେ । ତହିଁ ଅରଦିନ ଗଙ୍ଗାନଦୀ ପାରହୋଇ ଯାଇ ରଜନୀସମୟରେ କ୍ଲାଇବଙ୍କ ସୈନ୍ୟମାନେ ପଲାଶିର ସମୀପବର୍ତ୍ତୀ ଏକ ଆମ୍ରବଗିଚାରେ ଉପସ୍ଥିତ ହେଲେ । ଉତ୍କଣ୍ଠାରେ ସେ ରାତି କ୍ଲାଇବଙ୍କର ନିଦ୍ରା ହେଲା ନାହିଁ । କିରୂପେ ବିଂଶତିଗୁଣ ଅଧିକ ସୈନ୍ୟମାନଙ୍କସହିତ ଯୁଦ୍ଧ କରିବେ ଏହା ଭାବି ଅସ୍ଥିର ହେଲେ । ପରିଣାମ ଫଳ ସ୍ଥିର କରି ନ ପାରି ତାହାଙ୍କର ଅଟଳ ସାହସ ବିଚଳିତ ହେବାକୁ ଲାଗିଲା ।

---

* ପ୍ରଧାନ ହେନାପତି, ଯୁଦ୍ଧ କରିବା ଉଚିତ କି ନା ବିଚାର କରିବାକୁ ଅସମର୍ଥ ହେଲେ ଅଧୀନସ୍ଥ ସୈନ୍ୟାଧ୍ୟକ୍ଷମାନଙ୍କୁ ଡାକି ଯେ ସଭା କରନ୍ତି ତାହାକୁ ରଣସମିତି ବୋଲାଯାଏ ।

ଏଣେ ଶିରଜଉଦ୍ଦୌଲା ମଧ୍ୟ ସୁଖରେ ନିଦ୍ରା ଯାଇପାରିଲେ ନାହିଁ ଆସନ୍ନ ସଂଗ୍ରାମ ଉଦ୍ଦେଶେ ତାହାଙ୍କର କାମକ୍ରୋଧାଦି ରିପୁସଙ୍କୁଳହୃଦୟ ଆକୁଳିତ ହେବାକୁ ଲାଗିଲା ।

ଏହିରୂପେ ଜୁନମାସ ୨୨ ତାରିଖ ରଜନୀସହିତ ଭାରତଦୁଃଖବିଭାବରୀ ପ୍ରଭାତ ହେଲା । ସୂର୍ଯ୍ୟୋଦୟ ହେବାମାତ୍ରକେ ଅଗ୍ନ୍ୟସ୍ତ୍ରମାନଙ୍କ ନିନାଦଦ୍ୱାରା ପଲାଶୀ କମ୍ପିତ ହୋଇ ଉଠିଲା । ପ୍ରଥମରେ ସୁବାଦାରଙ୍କ ସେନାମାନେ ପ୍ରବଳରୂପେ ଅସ୍ତ୍ରଚାଳନା କରିବାକୁ ଲାଗିଲେ । ଏହିରୂପେ ମଧ୍ୟାହ୍ନପର୍ଯ୍ୟନ୍ତେ ଯୁଦ୍ଧ ହେବାକୁ ଲାଗିଲା । ମଧ୍ୟ-ସ୍ଥରେ ଅସମ୍ଭବ ବରଷା ହେବାରୁ ସୁବାଦାରଙ୍କ ବାରୁଦ ସକଳ ଭିଜିଗଲା ତେଣୁ ତାହାଙ୍କର ସେନାମାନେ ନିସ୍ତେଜ ହୋଇପଡ଼ିଲେ । ଏହି ସମୟରେ ଇଂରେଜଙ୍କ ପକ୍ଷରୁ ଗୋଟିଏ ଗୋଳାଯାଇ ସୁବାଦାରଙ୍କ ସେନାପତି ମୀର ମଦନଙ୍କୁ ସାଂଘାତିକ ଆଘାତ କଲା । ସେ ଅବିଳମ୍ବେ ପଞ୍ଚତ୍ୱ ପ୍ରାପ୍ତ ହେଲେ; ସୁବାଦାର ଅତ୍ୟନ୍ତ ବ୍ୟାକୁ-ଳିତ ହେଲେ ଓ ଇତିକର୍ତ୍ତବ୍ୟ ବୁଝିପାରିଲେ ଏବଂ ମୀରଜାଫରଙ୍କୁ ଡାକି ଆପଣାର ଉଷ୍ଣୀଷ ତାହାଙ୍କ ପଦତଳେ ଦେଇ ବିନୀତଭାବରେ କହିଲେ " ଆପଣ ଆମ୍ଭର ସମସ୍ତ ଦୋଷ କ୍ଷମା କରନ୍ତୁ ଓ ଆମ୍ଭ ମାତାମହଙ୍କୁ ସ୍ମରଣ କରି ଆମ୍ଭପ୍ରତି ସଦୟ ହୁଅନ୍ତୁ " ବିଶ୍ୱାସଘାତକ ମୀରଜାଫର କହିଲେ " ଅଦ୍ୟ ଯୁଦ୍ଧ ବନ୍ଦ କରାଯାଉ ଜଗଦୀଶ୍ୱର କଲେ କଲ୍ୟ ଯୁଦ୍ଧକରାଯାଇ ଶତ୍ରୁମାନଙ୍କୁ ଦୂରକରି ଦିଆଯିବ " । ସୁବାଦାର ତହିଁରେ ସମ୍ମତ ହେଲେ ଓ ଯୁଦ୍ଧ ସ୍ଥଗିତ କରିବାକୁ ଆଦେଶ ଦେବାରୁ ସେନାମାନେ ଅନିଚ୍ଛାପୂର୍ବକ ନିବୃତ୍ତ ହେଲେ ଓ ଛିନ୍ନଭିନ୍ନ ହୋଇ ପଲାୟନ କରିବାକୁ ଲାଗିଲେ, ଏହି ସୁଯୋଗରେ ମୀରଜାଫର ସମସ୍ତ ସୈନ୍ୟସହିତ ସୁବାଦାରଙ୍କ ଶିବିର ଆକ୍ରମଣ କରିବାକୁ ପତ୍ର ଲେଖନ୍ତି, ମାତ୍ର ସେହି ପତ୍ର କ୍ଲାଇବ ପାଇଥିଲେ ନାହିଁ, ସୁବାଦାରଙ୍କ ସୈନ୍ୟମାନଙ୍କର ଅବସ୍ଥା କ୍ଲାଇବଙ୍କ ପକ୍ଷରେ ପତ୍ରସ୍ୱରୂପ ହୋଇଥିଲା । କ୍ଲାଇବ ଧାବିତ ହେଲେ, ମୀରଜାଫର ମଧ୍ୟ ତାହାଙ୍କସହିତ ମିଳିତ ହେଲେ, ଅଳ୍ପସମୟ ମଧ୍ୟରେ ସୁବାଦାରଙ୍କ ସମ୍ପୂର୍ଣ୍ଣରୂପେ ପରାଜୟ ହେଲା ।

ଏହିଯୁଦ୍ଧରେ ଇଂରେଜମାନଙ୍କର ୨୨ ଜଣ ସୈନ୍ୟ ହତ ଓ ୫୦ ଜଣ ଆହତ ଏବଂ ସୁବାଦାରଙ୍କର ୫୦୦ ଜଣ ନିଧନ ପ୍ରାପ୍ତ ହୋଇଥିଲେ । ମୀରଜାଫର ବିଶ୍ୱାସଘାତକତାଚରଣ କରି ନ ଥିଲେ ସୁବାଦାରଙ୍କର ପରାଭବର ସମ୍ଭାବନା ଥିଲା ନାହିଁ ।

ପରଦିବସ ପ୍ରାତଃକାଳେ ମୀରଜାଫର ଇଂରେଜମାନଙ୍କ ଶିବିରରେ ଉପସ୍ଥିତ ହେଲେ । ସେ ପ୍ରକାଶ୍ୟରୂପେ କୌଣସି ସାହାଯ୍ୟ କରିଥିଲେ ନାହିଁ

ବୋଲି ତାହାଙ୍କର କଷ୍ଟ ଶଙ୍କା ଜନ୍ମିଥିଲା ମାତ୍ର କ୍ଲାଇବ ଅଣୁ ସେ ଶଙ୍କା ଭଞ୍ଜନ କଲେ, କ୍ଲାଇବ ପ୍ରଥମେ ସମ୍ବର୍ଦ୍ଧନାକରି ବଙ୍ଗ ବେହାର ଉଡ଼ିଶ୍ୟାର ସୁବାଦାର ବୋଲି ତାହାଙ୍କୁ ଅଭିବାଦନ କଲେ ।

ଏଣେ ସିରାଜଉଦ୍ଦୌଲା ପଲାଶି କ୍ଷେତ୍ରରୁ ପଳାଇ ମୁରଶିଦାବାଦରେ ଉପସ୍ଥିତ ହେଲେ । ଏସ୍ଥଳେ କି କରିବା ଉଚିତ, ତାହାର ବିଚାର କରିବାପାଇଁ ମନ୍ତ୍ରୀମାନଙ୍କ ପରାମର୍ଶ ମାଗିବାରୁ ସେମାନେ ପଳାଇ ଯିବାକୁ ପରାମର୍ଶ ଦେଲେ । ତନ୍ତୁଁ ସୁବାଦାର ରଜନୀଯୋଗେ ଆପଣା ସ୍ତ୍ରୀ ଓ କନ୍ୟା ସହିତ ଗୋଟିଏ କ୍ଷୁଦ୍ର ନୌକାରେ ଆରୋହଣ କରି ପଳାୟନ କଲେ । ତାହାଙ୍କର ଇଚ୍ଛା ଥିଲା ଯେ, ପାଟନାକୁ ଯାଇ ତତ୍ରତ୍ୟ ଫରାସି ସେନାପତି ଲାସାହେବଙ୍କର ଆଶ୍ରୟ ନେବେ । ସେ ନିର୍ବିଘ୍ନେ ରାଜମହଲଠାରେ ଉପସ୍ଥିତ ହେଲେ । ସେ ସ୍ଥାନରେ ଆପଣାର ସ୍ତ୍ରୀ ଓ କନ୍ୟାପାଇଁ ଅନ୍ନପାକ କରିବା କାରଣ ଏକ ଫକୀରଙ୍କ କୁଟୀରରେ ଉପସ୍ଥିତ ହେଲେ । ପୂର୍ବେ ସିରାଜଉଦ୍ଦୌଲା ସେହି ଫକୀର ପ୍ରତି ଅତ୍ୟନ୍ତ ଅତ୍ୟାଚାର କରିଥିଲେ, ସମ୍ପ୍ରତି ସେହି ଫକୀର ତାହାଙ୍କୁ ଚିହ୍ନିପାରି ତାହାଙ୍କ ଅନ୍ୱେଷଣକାରୀମାନଙ୍କୁ ସମ୍ବାଦ ଦେଲେ । ତେଣୁ ସୁବାଦାର ବନ୍ଦୀ ହୋଇ ମୁରଶିଦାବାଦକୁ ଆଣାଗଲେ । ସିରାଜଉଦ୍ଦୌଲା କାପୁରୁଷୋଚିତ ଦୀନବଚନରେ ପ୍ରାଣ ଭିକ୍ଷା କଲେ, ମୀରଜାଫରଙ୍କ ମନରେ ମଧ୍ୟ କରୁଣା ସଞ୍ଚାର ହୋଇଥିଲା, ମାତ୍ର ତାହାଙ୍କର ପାପିଷ୍ଠ ପୁତ୍ର ମିରନ, ଘାତକ ପଠାଇ ତାହାଙ୍କର ପ୍ରାଣ ସଂହାର କରାନ୍ତି । ସେହି ପାପାତ୍ମା ଘାତକର ନାମ ମହମ୍ମଦବେଗ । ଅଲିବର୍ଦ୍ଦିଖାଁ ଏହାକୁ ପ୍ରତିପାଳନ କରିଥିଲେ, ବର୍ତ୍ତମାନ ସେ ତଦୀୟ ଦୌହିତ୍ରଙ୍କ ପ୍ରାଣସଂହାର ଦ୍ୱାରା କୃତଜ୍ଞତା ସ୍ୱୀକାର କଲା ପରେ ସିରାଜଉଦ୍ଦୌଲାଙ୍କ ମୃତ ଦେହ ଖଣ୍ଡ ଖଣ୍ଡ କର୍ତ୍ତିତ ହୋଇ ହସ୍ତୀ ପୃଷ୍ଠରେ କବର ସ୍ଥାନକୁ ନୀତ ହେଲା ।

ମୀରଜାଫରଙ୍କର ସୁବାଦାରୀ ପଦରେ ଅଭିଷେକ ମହାସମାରୋହରେ ସମ୍ପନ୍ନ ହେଲା । କ୍ଲାଇବ ସ୍ୱୟଂ ତାହାଙ୍କର କର ଧାରଣ କରି ତାହାଙ୍କୁ ସିଂହାସନରେ ବସାଇଲେ ଓ ବଙ୍ଗ, ବେହାର ଏବଂ ଉଡ଼ିଷ୍ୟା ଏହି ତିନି ପ୍ରଦେଶର ସୁବାଦାର ବୋଲି ଅଭିବାଦନ କଲେ । ପରେ ସଭାସଦମାନଙ୍କୁ ସମ୍ବୋଧନ କରି କହିଲେ "ଆପଣମାନେ ଦୁଃଶୀଳ ପ୍ରଭୁଠାରୁ ମୁକ୍ତ ହୋଇ ଉତ୍ତମ ପ୍ରଭୁ ପ୍ରାପ୍ତ ହେଲେ; ତେଣୁ ପରମେଶ୍ୱରଙ୍କର ଧନ୍ୟବାଦ କରନ୍ତୁ"* । ଅନନ୍ତର ମୀରଜାଫର, କ୍ଲାଇବ, ଦେୱାନ ରାମଚନ୍ଦ ଓ ମୁନସି ନବକୃଷ୍ଣ ପ୍ରଭୃତି ଏକତ୍ରିତ ହୋଇ ଧନାଗାର

* କ୍ଲାଇବ ଏତେଣି [illegible] କହୁଥିଲେ, [illegible] ।

ଦେଖିବାକୁ ଗଲେ । ମାତ୍ର ସେମାନେ ସେ ସ୍ଥାନରୁ ସ୍ୱର୍ଣ୍ଣ ରୌପ୍ୟ ୨ କୋଟିରୁ ଅଧିକ ଦେଖିଲେ ନାହିଁ । ମୁସଲମାନ ଇତିହାସ ଲେଖକମାନେ ବୋଲନ୍ତି, ଏହା କେବଳ ବାହ୍ୟ ଧନାଗାର; ମାତ୍ର ଏହା ଛଡ଼ା ଗୋଟିଏ ଅନ୍ତଃପୁର ଧନାଗାର ଥିଲା, କ୍ଲାଇବ ତାହାର ସନ୍ଧାନ ପାଇ ନାହାନ୍ତି । ସେ ସ୍ଥାନରେ ୮ କୋଟୀ ମୁଦ୍ରା ସଞ୍ଚିତ ଥିଲା । ଏହି ସମୟରେ ଉମାଇଚାନ୍ଦ ଟଙ୍କାର କଥା ଉତ୍ଥାପନ କଲେ, ତାହାଙ୍କୁ ଜାଲିଆତି ପତ୍ର ଦେଖାଇ ଫାଙ୍କ ଦିଆଗଲା । ଏକଥା ଯେ କେତେଦୂର ନ୍ୟାଯ୍ୟାନୁମୋଦିତ, ତାହା ପାଠକମାନେ ବୁଝନ୍ତୁ ।

ମୀରଜାଫର ରାଜତ୍ୱ ପାଇ ଅତ୍ୟନ୍ତ ଆନନ୍ଦିତ ହେଲେ ସତ୍ୟ, ମାତ୍ର ଅଶୁ ଅସୁଖର କାରଣ ସକଳ ପ୍ରକାଶ ହୋଇ ପଡ଼ିଲା । ଷଡ଼୍‌ଯନ୍ତ୍ର ସମୟରେ ମୀରଜା-ଫର କ୍ଲାଇବଙ୍କ ସମୀପରେ ପ୍ରତିଶ୍ରୁତ ହୋଇଥିଲେ " ଆପଣ ଅମ୍ଭ ରାଜ୍ୟ ପ୍ରାପ୍ତି-ବିଷୟରେ ସହାୟ ହେଲେ ଅମ୍ଭେ ଆପଣଙ୍କୁ ଓ ଇଂରେଜ କୋମ୍ପାନୀଙ୍କୁ ଅନେକ ଟଙ୍କା ଦେବୁଁ " । କ୍ଲାଇବ ବର୍ତ୍ତମାନ ସେହି ଟଙ୍କା ମାଗି ବସିଲେ । ଏଣେ ମୀର-ଜାଫରଙ୍କର ସଂସ୍ଥାନ ଥିଲା ନାହିଁ ଯେ, ସେ ତାହା ଦେଇ ନିଷ୍କୃତି ଲାଭ କରି-ପାରିବେ । ପ୍ରଥମେ ସେ କେତେ ଟଙ୍କା ଦେବାରୁ ତାହା ଇଂରେଜମାନେ ଏହି-ରୂପେ ବିଭାଗ କରି ନେଲେ, ଯଥା; କ୍ଲାଇବ ୨,୮୦,୦୦୦ କଲିକତା ଗବର୍ଣ୍ଣର ପାଇଁ କ୍ଲାଇବ ୨,୮୦,୦୦୦ ଏହା ଛଡ଼ା ମୀରଜାଫର କ୍ଲାଇବଙ୍କୁ ୧,୬୦,୦୦୦ ପାରିତୋଷିକ ସ୍ୱରୂପ ଦିଅନ୍ତି । କଲିକତାର କୌନସିଲର ପ୍ରତ୍ୟେକ ସଦସ୍ୟ ୨,୪୦,୦୦୦ ଟଙ୍କା ଲେଖାଏଁ ପ୍ରାପ୍ତ ହେଲେ । ଏତଦ୍‌ଭିନ୍ନ ଲିଟିପିଟିଠାରୁ ଶାଳ-ଗ୍ରାମ ପର୍ଯ୍ୟନ୍ତ ସମସ୍ତ ଇଂରେଜ ଯଥାଯୋଗ୍ୟ ପ୍ରଣାମୀ ପ୍ରାପ୍ତ ହେଲେ । ଏଥିରେ ଯେ ଇଂରେଜମାନେ ତୁଷ୍ଟ ହେଲେ ଏମନ୍ତ ନୁହଇ, ବିବେଚନା କଲେ ଏହା କେବଳ ଆଚମନ ମାତ୍ର । ପଶ୍ଚାଲ୍ଲିଖିତ ଟଙ୍କା ସକଳ ଦେବା ପାଇଁ କରାରପତ୍ର-ରେ ଲେଖା ଥିଲା । ତାହାର ହିସାବ ଏହି—

ସିରାଜଉଦ୍ଦୌଲା କଲିକତା ଆକ୍ରମଣହେତୁ କଲିକତା କ୍ଷତିପୂରଣ ବାବଦ

| | | |
|---|---|---|
| | | ଟ ୧,୦୦,୦୦୦୦୦ |
| " | " ଇଂରେଜ ଅଧିବାସିମାନଙ୍କର | ଟ ୫୦୦୦୦୦ |
| " | " ଦେଶୀୟ " | ଟ ୨୦୦୦୦୦୦ |
| " | " ଆରମାଣୀମାନଙ୍କର | ଟ ୭୦୦୦୦୦ |
| ମୋଟ | | ଟ ୧୩୨୦୦୦୦୦ |

ଏହି ସମସ୍ତ ନଗଦ ଟଙ୍କା ଛଡ଼ା କରାରପତ୍ରରେ ଆହୁରି ପଣ ଥିଲା ଯେ,

କଲିକତାଠାରୁ କୁଲ୍ପି ପର୍ଯ୍ୟନ୍ତ ସମସ୍ତ ସ୍ଥାନ ଇଂରେଜମାନଙ୍କର ଜମିଦାରୀ ହେବ । ଫରାସିମାନେ କଦାଚ ବଙ୍ଗଳାରେ ପଶି ପାରିବେ ନାହିଁ ।

—୦୦*୦୦—

## ସପ୍ତମ ଅଧ୍ୟାୟ ।

୧୭୫୪ ସାଲେ ଗୁଡହିଉଙ୍କ କୃତ ସନ୍ଧିରେ ଏପରି କଥାର ଥିଲା ଯେ, ଭାରତବର୍ଷୀୟ ରାଜାମାନଙ୍କମଧ୍ୟରେ ପରସ୍ପର ଯୁଦ୍ଧ ହେଲେ ଭାରତବାସୀ ଇଂରେଜ ଓ ଫରାସିଜାତି ତହିଁରେ ହାତ ଦେବେ ନାହିଁ । ମାତ୍ର ଅଧିକକାଳ ଏହି ନିୟମ ପାଳ ପାରିଲେ ନାହିଁ । ଗୁଡହିଉ ସ୍ୱଦେଶକୁ ଯାତ୍ରା କରନ୍ତେ ଇଙ୍ଗ୍ରେଜମାନେ ପୁନର୍ବାର ମହମ୍ମଦଅଲିଙ୍କ ସପକ୍ଷରେ ଅସ୍ତ୍ରଧାରଣ କଲେ । ସେମାନଙ୍କ ଦେଖାଦେଖି ଫରାସିମାନେ ମଧ୍ୟ ରାଜାସାହେବଙ୍କର ସହାୟତା କରିବାକୁ ପ୍ରବୃତ୍ତ ହେଲେ । ଅବଶେଷରେ ଏପରି ହୋଇ ପଡିଲା ଯେ, ମହମ୍ମଦଅଲି ଓ ରାଜାସାହେବ ନିତାନ୍ତ ଉପଲକ୍ଷର ପାତ୍ର ହେଲେ । ପ୍ରକୃତ ଫରାସି ଓ ଇଂରେଜ ଏ ଉଭୟଙ୍କ ମଧ୍ୟରେ ଯୁଦ୍ଧ ହେବାକୁ ଲାଗିଲା ।

୧୭୫୬ ସାଲେ ଯେତେବେଳେ ଇଙ୍ଗଲଣ୍ଡ ଓ ଫରାସୀ ଜାତିର ଇୟୁରୋପର ଯୁଦ୍ଧସମ୍ବାଦ ଭାରତବର୍ଷରେ ଉପସ୍ଥିତ ହୁଏ, ତେତେବେଳେ ଦାକ୍ଷିଣାତ୍ୟବାସୀ ଇଙ୍ଗ୍ରେଜ ଓ ଫରାସି ଉଭୟ ଜାତିର ଅଳ୍ପ ମାତ୍ର ସୈନ୍ୟ ଥିଲେ, ତଥାପି ସେମାନେ ବିପକ୍ଷ ଦମନ ନିମନ୍ତେ ସେହି ଅଳ୍ପସଂଖ୍ୟକ ସେନା ଯେନ ମଧ୍ୟ ଯୁଦ୍ଧକ୍ଷେତ୍ରରେ ଦେଖା ଦେଲେ । ଫରାସିମାନଙ୍କର ପକ୍ଷ ବୋଲି ଇଙ୍ଗ୍ରେଜମାନେ ଓୟାଣ୍ଡିୱାସ ଗ୍ରାମ ଦଗ୍ଧ କରି ଦେଲେ । ଫରାସିମାନେ ମଧ୍ୟ କାଞ୍ଚିବରଣ ଭସ୍ମସାତ୍ କରି ତାହାର ପରିଶୋଧ କଲେ । ମାତ୍ର ଏଥିରେ ସେମାନଙ୍କର କଡ଼ାଏ ମଧ୍ୟ କ୍ଷତି ହେଲା ନାହିଁ, କେବଳ ମଧ୍ୟରେ ପଡ଼ି ଦେଶୀୟଲୋକମାନଙ୍କର ସର୍ବନାଶ ହେଲା । ଏଉତ୍ତାରେ ଫରାସିମାନେ ତ୍ରିଚିନ୍ନପଲ୍ଲି ଆକ୍ରମଣ କରନ୍ତେ ଇଂରେଜଙ୍କ କାପ୍ତାନ କାଲିଅଡ ଯାଇ ତାହାର ଉଦ୍ଧାର ସାଧନ କଲେ ଏହିରୂପେ କତିଦିନ ଗତ ହୁଅନ୍ତେ କାଉଣ୍ଟ ଲାଲି ୧୨୦୦ ଯୋଦ୍ଧା ସହିତ ଫ୍ରାନ୍ସରୁ ଆସି, ୧୭୫୮ ସାଲ ଏପ୍ରେଲ ମାସର ଶେଷ ତାରିଖରେ ଭାରତବର୍ଷରେ ଉପସ୍ଥିତ ହେଲେ । ଲାଲିଙ୍କର ପୂର୍ବପୁରୁଷର ବାସସ୍ଥାନ ଆୟର୍ଲଣ୍ଡ, ସେଠାଏ ରାଷ୍ଟ୍ରବିପ୍ଳବ ସମୟରେ ସ୍ୱଦେଶ ତ୍ୟାଗ କରି ଫ୍ରାନ୍ସରେ ବାସ କରନ୍ତି । ଲାଲି ସାହସ, ଉଦ୍ୟୋଗ ଓ ଆଗ୍ରହ ପ୍ରଭୃତି ଗୁଣରେ ସେନାପତି ପଦର ଉପଯୁକ୍ତ ପାତ୍ର ଥିଲେ । ମାତ୍ର ତାହାଙ୍କର ଧୈର୍ଯ୍ୟ ଓ ବିମୃଷ୍ୟକାରିତା ଗୁଣର ନିତାନ୍ତ ଅସଦ୍ଭାବ ଥିଲା । ଅଧୀନସ୍ଥ ଲୋକମାନଙ୍କ ପ୍ରତି କ ପ୍ରକାର ବ୍ୟବହାର କରିବାକୁ

ହୁଏ ତାହା ସେ ଜାଣି ନ ଥିଲେ । ଫ୍ରାନ୍ସରୁ ତାହାଙ୍କର ଏପରି ସମ୍ବାଦ ଲଗି-ଥିଲା ଯେ, ପଣ୍ଡିଚେରୀର କର୍ମାଧ୍ୟକ୍ଷମାନେ ସମସ୍ତେ ଅଭଦ୍ର ଓ ସେମାନେ କୋମ୍ପାନୀଙ୍କର ସର୍ବନାଶ ସାଧନ କରି ବିପୁଳ ଅର୍ଥ ଗ୍ରାସ କରିଅଛନ୍ତି । ସେ ଯାହା ହେଉ ଲାଲି ଉପସ୍ଥିତ ହେବା ମାତ୍ରକେ ଇଂରେଜଙ୍କ ନୌସେନାନୀ ଆଡମିରଲ ପୋକକ ତାହାଙ୍କୁ ଆକ୍ରମଣ କଲେ । ଉଭୟପକ୍ଷରେ ଘୋରତର ଯୁଦ୍ଧ ହେଲା ମାତ୍ର ଏହି ନୌଯୁଦ୍ଧରେ କାହାରି ବିଶେଷ କ୍ଷତି ହେଲା ନାହିଁ ।

ଲାଲି ବୋଇତରୁ ଓହ୍ଲାଇ ଅଧିଆଗୋଡ଼ରେ ଫୋର୍ଟସେଣ୍ଟଡେବିଡ ଦୁର୍ଗ ଆକ୍ରମଣ କରିବାକୁ ବାହାରିଲେ । ଏପରି ଗୁରୁତର କାର୍ଯ୍ୟ ସାଧନ କରିବାକୁ ଯିବା ସମୟରେ ପୂର୍ବାପର ବିବେଚନା କରିବାର ବିଶେଷ କର୍ତ୍ତବ୍ୟ ଥିଲା; ବିପକ୍ଷ ପକ୍ଷ ସଜାଗ ଥିଲେ ଲାଲି ଅବିମୃଷ୍ୟକାରିତାର ଉପଯୁକ୍ତ ଶିକ୍ଷା ପାଇ ଥାଆନ୍ତେ । ଲାଲି ବ୍ୟସ୍ତତାପ୍ରଯୁକ୍ତ ଗମନକାଳେ ଆହାରୀୟସାମଗ୍ରୀ ନେବାକୁ ବିସ୍ମୃତ ହୋଇ-ଥିଲେ, ତେଣୁ ସେନାମାନଙ୍କୁ ଯଥେଷ୍ଟ ଯନ୍ତ୍ରଣା ଭୋଗ କରିବାକୁ ହୋଇ-ଥିଲା ଏବଂ ମାର୍ଗମଧ୍ୟରେ ମୂଲିଆ ଆବଶ୍ୟକ ହେବାରୁ ଲାଲି ହିତାହିତ ବିବେ-ଚନା ନ କରି କି ପ୍ରଧାନ କି ମଧ୍ୟବିତ୍ତ ସମସ୍ତ ଦେଶୀୟଲୋକଙ୍କୁ ବେଠିଆ ଧରି-ବାକୁ ଲାଗିଲେ । କୌଣସି ଇତିହାସ ଲେଖକ ଲେଖନ୍ତି, ଏହି କର୍ମ ହେତୁରୁ ଦେଶୀୟଲୋକମାନେ ଲାଲିଙ୍କପ୍ରତି ଯେପରି ବିରକ୍ତ ହୋଇଥିଲେ ସମସ୍ତ ନଗର ଦଗ୍ଧ କରିଥିଲେ ମଧ୍ୟ ତେତେ ବିରକ୍ତ ହୁଅନ୍ତେ ନାହିଁ ।

ଫରାସିମାନେ ଯେତେବେଳେ ସେଣ୍ଟଡେବିଡ ଦୁର୍ଗ ସମୀପରେ ଉପସ୍ଥିତ ହୁଅନ୍ତି ସେତେବେଳେ ତାହାର ରକ୍ଷାର୍ଥେ ଉପଯୁକ୍ତସେନା ଉପସ୍ଥିତ ଥିଲେ ନାହିଁ, ଯେଉଁମାନେ ଥିଲେ ସେମାନେ ମଧ୍ୟ ନିତାନ୍ତ ଅକର୍ମଣ୍ୟ, ତେଣୁ ଲାଲିସାହେବଙ୍କୁ ଅତି କ୍ଳେଶଭୋଗ କରିବାକୁ ହେଲା ନାହିଁ, ଅଳ୍ପକାଳ ଅବରୋଧର ଉତ୍ତାରେ ଲାଲି ସେଣ୍ଟଡେବିଡ ଦୁର୍ଗ ଅଧିକାର ଓ ଭୂମିସାତ୍ କରି ଦେଲେ । ସେହିଦିନ ଠାରୁ ସେଣ୍ଟଡେବିଡର ନାମ ବିଲୁପ୍ତ ହୋଇଗଲା । ଫୋର୍ଟସେଣ୍ଟଡେବିଡ ଦୁର୍ଗ ଅଧିକାର ଉତ୍ତାରେ ଲାଲି ମାନ୍ଦ୍ରାଜ ଆକ୍ରମଣ କରିବାକୁ ଇଚ୍ଛା କଲେ, ମାତ୍ର ତାହାଙ୍କର ନିତାନ୍ତ ଅର୍ଥ ଅପ୍ରତୁଳ ହୋଇଥିଲା । ପଣ୍ଡିଚେରୀର ଅଧ୍ୟକ୍ଷମାନେ ଲାଲିଙ୍କର ଔଦ୍ଧତ୍ୟ ହେତୁରୁ ବିରକ୍ତ ହୋଇ ତାହାଙ୍କୁ ପଇସାଏ ମଧ୍ୟ ଦେବାକୁ ରାଜି ହେଲେ ନାହିଁ, ଫଳେ ସେତେବେଳେ ସରକାରୀ ତହବିଲ ମଧ୍ୟ ଶୂନ୍ୟ ଥିଲା । ଲାଲି ପୂର୍ବ ସମ୍ବାଦ ଅନୁସାରେ ଅଧ୍ୟକ୍ଷମାନଙ୍କୁ ସରକାରୀ ତହବିଲ ଅପହରଣ ଓ ଅପବ୍ୟୟର ଅପବାଦ ଦେଲେ । ଅପବାଦୀମାନେ ମଧ୍ୟ ଏକବାକ୍ୟ ହୋଇ ଘୋରତର ବିତଣ୍ଡା କରିବାକୁ ଲାଗିଲେ । ଯାହା ହେଉ ପଣ୍ଡିଚେରୀ କୋଷଶୂନ୍ୟହରେ ତଞ୍ଜୋରର

ରାଜାଙ୍କ ଲିଖିତ ପଞ୍ଚାଶ ଲକ୍ଷ ଟଙ୍କାର ଖଣ୍ଡେ ଟୀପ ଥିଲା । ଲାଲି ଅନ୍ୟ କୌଣସି ଉପାୟ ନ ପାଇ ସେହି ଟୀପ ଲିଖିତ ଟଙ୍କା ଆଦାୟ କାରଣ ବହୁତ ସେନା ଘେନି ତଞ୍ଜୌର ଦିଗକୁ ଯାଇଁଲେ; ମାତ୍ର ସେମାନଙ୍କ ସକାଶ ରସଦ କିଣିବାକୁ ପୁଞ୍ଜି ଥିଲା ନାହିଁ; ତେଣୁ ଗମ୍ୟ ମାର୍ଗର ପାର୍ଶ୍ୱବର୍ତ୍ତୀ ଗ୍ରାମସକଳ ଲୁଣ୍ଠନ ଆବଶ୍ୟକ ହେଲା । ସେନାମାନେ ସମ୍ମୁଖରେ ଯାହା୨ ପାଇଲେ ତାହା ଲୁଣ୍ଠନ ଓ ଲୋକମାନଙ୍କୁ ବେଗାର ଧରିବାକୁ ଲାଗିଲେ । ସେନାମାନଙ୍କର ଦାରୁଣ ଅତ୍ୟାଚାରରେ ବିରକ୍ତ ହୋଇ ପ୍ରଜାମାନେ ଲାଲିଙ୍କଠାରେ ଅଭିଯୋଗ କଲେ ମାତ୍ର ତାହାର କୌଣସି ପ୍ରତୀକାର ହେଲା ନାହିଁ । ଲାଲି ୨ ଗୋଟି ଦେବାଳୟସ୍ଥ ଧନ ସମ୍ପତ୍ତିର କଥା ଶୁଣିଥିଲେ; ମହେମ୍ମଦର ଦୃଷ୍ଟାନ୍ତାନୁସାରେ ସେହି ଦୁଇ ଦେବାଳୟ ଲୁଣ୍ଠନ କଲେ ମାତ୍ର ଆଶାନୁରୂପ ଫଳ ପ୍ରାପ୍ତ ହେଲେ ନାହିଁ । ତହୁଁ ଲାଲି ଅତ୍ୟନ୍ତ ବିରକ୍ତ ହୋଇ ତତ୍ରତ୍ୟ କେତେ ଜଣ ପୁରୋହିତଙ୍କୁ ତୋପରେ ଉଡ଼ାଇ ଦେଲେ । ଭାରତବର୍ଷ କି କାପୁରୁଷଦେଶ ! ବିଦେଶୀୟମାନେ ଆସି ବିବିଧ ଅତ୍ୟାଚାର କରନ୍ତି, ଏମାନେ ବଳଦାନର ପଶୁପରି ଅମ୍ଳାନମୁଖରେ ବେକ ବଢ଼ାଇ ଦିଅନ୍ତି । ଦେଶୀୟ ଲୋକମାନେ ସମବେତ ହୋଇ ଯଦି ଲାଲିଙ୍କର ସମ୍ମୁଖୀନ ହୋଇ ଥାଆନ୍ତେ, ତାହାଙ୍କୁ ପରାସ୍ତ ନ କରନ୍ତୁ ମାତ୍ର ଅନେକ ଅପକାର କରି ଥାଆନ୍ତେ ସନ୍ଦେହ ନାହିଁ ।

ଅବଶେଷେ ଲାଲି ତଞ୍ଜୌରରେ ଉପସ୍ଥିତ ହୋଇ ଟୀପ ଲେଖିତ ଟଙ୍କା ରାଜାଙ୍କୁ ମାଗିପଠାଇଲେ, ରାଜା ଅଂଶିକ ଟଙ୍କା ଦେବାକୁ ସ୍ୱୀକୃତ ହେଲେ; ମାତ୍ର ଲାଲି କହି ପଠାଇଲେ ଯେ, "ଟୀପ ଲେଖିତ ଟଙ୍କାରୁ ପଇସାଏ ସୁଦ୍ଧା ଊଣା ହେବ ନାହିଁ, ସବୁ ଟଙ୍କା ଏକାବେଳକେ ଦେବାକୁ ହେବ । ଅନ୍ୟଥା ଆମ୍ଭେ ରାଜାଙ୍କୁ ସପରିବାରରେ ବନ୍ଦ କରି ମାରିଶସ୍‌କୁ ପଠାଇ ଦେବୁଁ" । ଏଥିରେ ରାଜା ଅତ୍ୟନ୍ତ ବିରକ୍ତ ହୋଇ ଯେ ଯୁଦ୍ଧ ସଜ୍ଜା କରି ଥିଲେ ଏକଥା ଲେଖିବା ଅଧିକ ଅଟେ । ଯୁଦ୍ଧ ଆରମ୍ଭ ହେଲା, ଏହି ସମୟରେ କର୍ଣ୍ଣେଲକାଲିୟଡ ୬୦୦ ସିପାହୀ ସହିତ ରାଜାଙ୍କ ସହିତ ମିଳିତ ହେଲେ । ଏଣେ ଲାଲିଙ୍କର ଗୋଳା ଓ ବାରୁଦ ସମାପ୍ତ ହୋଇ ଯିବାରୁ ସ୍ୱୟଂ ଦୁର୍ବଳ ହୋଇ ଗଲେ ଓ ତାହାଙ୍କର ଭୂରି୨ ଅପଚୟ ହେବାକୁ ଲାଗିଲା, ଏମନ୍ତ କି ଲାଲି ଥରେ ମରୁଁ୨ ବଞ୍ଚିଥିଲେ । ତ୍ରାସଯୁକ୍ତ ଲାଲି ତଞ୍ଜୌର ପରିତ୍ୟାଗ ପୂର୍ବକ ପଳାୟନ କଲେ । ମାତ୍ର ତାହାଙ୍କର ବାହୁଡା ବଡ଼ ସୁଖରେ ସମ୍ପନ୍ନ ହେଲା ନାହିଁ । ଗମନ ସମୟରେ ଲାଲି ଯେ ସକଳ ଦେଶୀୟ ଲୋକ ଉପରେ ଅତ୍ୟାଚାର କରିଥିଲେ, ବର୍ତ୍ତମାନ ସେମାନେ ସୁଯୋଗପାଇ ତାହାଙ୍କ ଉପରେ ବିବିଧ ଅତ୍ୟାଚାର କରିବାକୁ ଲାଗିଲେ । ମନୁଷ୍ୟମାନେ ଯେତେ ଶାନ୍ତ

ହେଉନ୍ତୁ ସୁଯୋଗ ପାଇଲେ ହିଂସାକାରୀର ପ୍ରତିହିଂସା କରିବାକୁ ତ୍ରୁଟି କରନ୍ତି ନାହିଁ । ବହୁକଷ୍ଟରେ ଲାଲି ପଣ୍ଡିଚେରୀରେ ଉପସ୍ଥିତ ହେଲେ ।

ଲାଲୀଙ୍କର ଯେପରି ସାହସ ଥିଲା, ସେହିପରି ଯଦି ବିଚକ୍ଷଣତା ଥାଆନ୍ତା ତେବେ ସେ ଫରାସି ଇଷ୍ଟଇଣ୍ଡିଆ କୋମ୍ପାନୀଙ୍କର ଅନେକ ଉନ୍ନତି କରି ଯାଇ ଥାଆନ୍ତେ ସନ୍ଦେହ ନାହିଁ । କିନ୍ତୁ ତାହାଙ୍କ ଅବିମୃଷ୍ୟକାରିତା ହେତୁରୁ କୋମ୍ପାନୀଙ୍କୁ କ୍ଷତିଗ୍ରସ୍ତ ହେବାକୁ ହୋଇଥିଲା । ବିଶେଷତଃ ନିମ୍ନଲିଖିତ ଘଟନାରେ ସେ ଫରାସି କୋମ୍ପାନୀଙ୍କର ବଡ଼ାଭାରି ବାଳିପକାଇ ଯାଇଅଛନ୍ତି । ସେହି ଘଟଣାଟି ଏହି:—

ଡୁପ୍ଲେଙ୍କ ସମୟଠାରୁ ଏପର୍ଯ୍ୟନ୍ତେ ସଚୀବ ଓ ସୈନିକ କାର୍ଯ୍ୟବିଶାରଦ ବୁସୀ, ସଲାବତଜଙ୍ଗଙ୍କ ସଭାରେ ସର୍ବଦା ଥାଆନ୍ତି, ସେ ସେହି ଅଯୋଗ୍ୟ ସୁବାଦାରଙ୍କୁ ହସ୍ତଗତ କରି ତାହାଙ୍କ ସଭାରେ ସର୍ବପ୍ରଧାନ ହୋଇ ଥିଲେ ଏବଂ ଆପଣା ପ୍ରଭୁ କୋମ୍ପାନୀଙ୍କ ନାମରେ ଉତ୍ତରସରକାର ନାମକ ଭୂଭାଗ ଜାଗିରି ସ୍ୱରୂପ ଲେଖାଇ ନେଇଥିଲେ । ଏହି ଭୂଭାଗ ମଧ୍ୟରେ ବିଶାଖପଟ୍ଟନ ପ୍ରଭୃତି ସ୍ଥାନରେ ଇଂରେଜମାନଙ୍କର ଯେ ସକଳ କୋଠି ଥିଲା ସେ ସକଳ ଉଠାଇ ଦେଇ ଥିଲେ । ଲାଲି ଯେବେ ବିଜ୍ଞ ବୁସୀଙ୍କ ସହିତ ମିଳି ମିଶି କାର୍ଯ୍ୟ କରିଥାଆନ୍ତେ, ତେବେ ଫରାସି କୋମ୍ପାନୀଙ୍କର ବିଶେଷ ମଙ୍ଗଳ ହୋଇ ଥାଆନ୍ତା ସନ୍ଦେହ ନାହିଁ । କିନ୍ତୁ ବୁସୀ ସ୍ୱାର୍ଥସାଧନ ନିମନ୍ତେ ସଲାବତ୍‌ଜଙ୍ଗଙ୍କଠାରେ ଅଛନ୍ତି, ଲାଲିଙ୍କ ଅବିବେକ ହୃଦୟରେ ଏହି କଥା ଉଦୟ ହେବାରୁ ସେ ଅଶ୍ରଦ୍ଧା ପ୍ରକାଶ କରି ତାହାଙ୍କ ନିକଟକୁ ଆସିବା ନିମନ୍ତେ ବୁସୀଙ୍କୁ ପତ୍ର ଲେଖିଲେ । ବୁସୀ, ସ୍ୱଜାପରି ସଜ ହୋଇ ସଲାବତ୍‌ଜଙ୍ଗଙ୍କ ସହିତ ଗୋଲକୁଣ୍ଡାକୁ ଯାଉଥିଲେ; ଏମନ୍ତ ସମୟରେ ଲାଲିଙ୍କର ଆଜ୍ଞାପତ୍ର ପାଇଲେ । ସେହି ପତ୍ର ପାଇ ବୁସୀ ପଣ୍ଡିଚେରୀକୁ ଆସିଲେ । ସେ ଉପସ୍ଥିତ ହୋଇ ଦେଖିଲେ, କୋଷାଗାର ଶୂନ୍ୟ, ସେନାପତି ଉଦ୍ଧତ ଓ କୌନସିଲର ସଦସ୍ୟମାନେ ଭିନ୍ନମତାବଲମ୍ବୀ । ଏହି ସକଳ ଦୁର୍ଲକ୍ଷଣ ଦେଖି ବିଚକ୍ଷଣ ବୁସୀଙ୍କ ମନରେ ତେତେବେଳେ କିପରି ଭାବ ଉଦୟ ହୋଇଥିବ ପାଠକମାନେ ସହଜେ ହୃଦୟଙ୍ଗମ କରି ପାରିବେ । ଦୂରରୁ ବୁସୀଙ୍କ ଉପରେ ଅବିଶ୍ୱାସ ଜନ୍ମି ଥିଲା, ଏତେବେଳେ ସେ ଉପସ୍ଥିତ ହେବାମାତ୍ର ଲାଲି ତାହାଙ୍କ ଉପରେ ନାନା ଅଳୀକ ଦୋଷାରୋପ କରିବାକୁ ଲାଗିଲେ । ମିଥ୍ୟା ଦୋଷାରୋପ କଲେ ସମସ୍ତଙ୍କ ମନ ବିରକ୍ତ ହୋଇ ଥାଏ, ବୁସୀ ମଧ୍ୟ ତଦନୁରୂପ ଉତ୍ତର ପ୍ରଦାନ କଲେ । ସେ ଯାହା ହେଉ ସମସ୍ତେ ସମବେତ ହୋଇ ମାନ୍ଦ୍ରାଜ ଅବରୋଧ କରିବାକୁ ପରାମର୍ଶ ସ୍ଥିର କଲେ; ମାତ୍ର ତେତେବେଳେ ପଣ୍ଡିଚେରୀରେ ଅର୍ଥର ଟାଣଟୁଣ ହୋଇଥିଲା । ଲାଲି ସେହି ଅଭାବ ନିରାକରଣ ନିମନ୍ତେ ଅର୍କାଡ଼୍ ନଗର ଆକ୍ରମଣ ଓ ଅଧିକାର କଲେ; ମାତ୍ର

ଆଶାନୁରୂପ ଫଳ ଲାଭ ହେଲା ନାହିଁ; କାରଣ ଉତ୍ତର୍ୟ ମହାଜନମାନେ ପୂର୍ବରୁ ସମ୍ବାଦ ପାଇ ପଳାୟନ କରିଥିଲେ । ଯାହା ହେଉ ଲାଲି ଅନେକ ଯତ୍ନ କରି ଓ କାଢ ଉଦବଲରୁ କଷ୍ଟ ଟଙ୍କା ଦେଇ ଅର୍ଥ ସଂଗ୍ରହ କଲେ ।

୧୭୫୮ ସାଲ ଡିସେମ୍ବର ମାସରେ ୬୭୦୦ ଇଉରୋପୀୟ ଓ ୪୦୦୦ଦେଶୀୟ ଯୋଦ୍ଧା ସେନ ଲାଲି ମାନ୍ଦ୍ରାଜ ସମୀପରେ ଉପସ୍ଥିତ ହେଲେ । କିନ୍ତୁ ବୁସୀଙ୍କ ସହିତ ତାହାଙ୍କର ସଦ୍ଭାବ ଥିଲା ନାହିଁ, ଆଉ ଅନ୍ୟ ସେନା ମଧ୍ୟ ତାହାଙ୍କ ପ୍ରତି ବିରକ୍ତ ଥିଲେ । ଇଂରେଜମାନେ ଯୁଦ୍ଧର ଆଶଙ୍କା କରି ମେଜର ଲରେନ୍ସ ସେନାପତିଙ୍କ ଅଧୀନରେ ୪୦୦୦ ସେନା ମୌଜୁଦ ରଖିଥିଲେ । ଏହା ଛଡା ମେଜର କାଲିୟଡ୍ ମଧ୍ୟ ତ୍ରିଚୁନାପଲ୍ଲିରୁ କେତେକ ସେନାସହିତ ଆସି ଫରାସିମାନଙ୍କ ପଶ୍ଚାତ୍ ଧାବିତ ହେଲେ ଓ ସେମାନଙ୍କର ରସଦ ଆମଦାନୀ ବନ୍ଦ କରି ଦେଲେ । ସେହି ଉତ୍ପାତରେ ବିରକ୍ତ ହୋଇ ଲାଲି କହିଥିଲେ " ଏମାନେ ମକ୍ଷିକାର ସହୋଦର ଏକସ୍ଥାନରୁ ଘଉଡି ଦେଲେ ଅନ୍ୟସ୍ଥାନରେ ଆସି ବସୁଅଛନ୍ତି " ।

ଫରାସିମାନେ ଅଳ୍ପ ପରିଶ୍ରମରେ ମାନ୍ଦ୍ରାଜ ନଗରର ଦେଶୀୟ ଅଧିବାସିମାନଙ୍କର ପଲ୍ଲୀ ଅଧିକାର କଲେ । କିନ୍ତୁ ସେହି ସ୍ଥାନରେ ଅନେକ ମଦିରା ସଞ୍ଚିତ ଥିଲା, ପେଟପୂରାଇ ପାନ କରିବାରୁ ଫରାସିସେନାମାନେ ଅତ୍ୟନ୍ତ ମତୁଆଲା ହୋଇ ପଡିଲେ ।

ଏହି ସମୟରେ ସେଣ୍ଟଜର୍ଜ ଦୁର୍ଗରୁ ଇଂରେଜ ସେନାମାନେ ବାହାରି ଫରାସିମାନଙ୍କ ଉପରକୁ ଧାବିତ ହୁଅନ୍ତି । ବୁସୀ ଯେବେ ଯତ୍ନ କରି ଥାଆନ୍ତେ, ତେବେ ଧାବକମାନଙ୍କ ମଧ୍ୟରୁ ଗୋଟିଏ ପ୍ରାଣି ମଧ୍ୟ ଫେରି ନ ଥାଆନ୍ତା ମାତ୍ର ସେ ଲାଲିଙ୍କ ପ୍ରତି ବିରକ୍ତ ଥିବାରୁ ସେ ବିଷୟର କୌଣସି ଚେଷ୍ଟା କଲେ ନାହିଁ । ପୂର୍ବରେ ଉଲ୍ଲେଖ କରା ହୋଇଅଛି, ଅନ୍ୟାନ୍ୟ ସେନାନୀମାନେ ମଧ୍ୟ ତାହାଙ୍କ ପ୍ରତି ବିରକ୍ତ ଥିଲେ । ସେନାପତି ଯେତେ ସାହସିକ ଓ କର୍ମଦକ୍ଷ ହେଉନ୍ତୁ ପଛକେ ଅଧୀନସ୍ଥ ସେନାମାନେ ଆନ୍ତରିକ ଯତ୍ନ ସହିତ କର୍ମକାରକ ନ ହେଲେ ଶୁଭଫଳ ଲାଭ କରିବା କଠିନ, ତେଣୁ ଲାଲିଙ୍କର ଏହି ଉଦ୍ୟୋଗ ଯେ ବିଫଳ ହୋଇଥିଲା ଏ କଥା ଲେଖିବା ବାହୁଲ୍ୟ ଅଟେ, ଦୁଇ ମାସ ଅବରୋଧ କଲେ କୌଣସି ଫଳ ଦର୍ଶିଲା ନାହିଁ । ଆଉ ଏହି ସମୟରେ ଆଡମିରାଲ ପୋକକ ସାହେବ ଥୋକାଏ ଅଭିନବ ଇଂରେଜ ସେନା ସହିତ ମାନ୍ଦ୍ରାଜଠାରେ ଉପସ୍ଥିତ ହେଲେ ଏବଂ ଫରାସିଙ୍କ ମୁକାବାଲରେ ଭକ୍ଷ୍ୟଦ୍ରବ୍ୟର ନିତାନ୍ତ ଅପ୍ରତୁଳ ହୋଇ ପଡିବାରୁ ସୁତରାଂ ଲାଲିଙ୍କୁ ଶୀଘ୍ର ମାନ୍ଦ୍ରାଜ ପରିତ୍ୟାଗ କରିବାକୁ ହେଲା । ବ୍ୟଗ୍ରତା ପ୍ରଯୁକ୍ତ ଆହତ ଓ ପୀଡିତ ସେନାମାନଙ୍କୁ ସଙ୍ଗରେ ନେଇ ଯାଇ ପାରିଲେ ନାହିଁ । ଲାଲି

ଖଣ୍ଡିଏ ପତ୍ର ଲେଖି ସେମାନଙ୍କୁ ଇଂରେଜମାନଙ୍କ କରୁଣାରେ ସମର୍ପଣ କରି ଗଲେ । ସେହି ଲେଖା ସୁଦ୍ଧା ବ୍ୟର୍ଥ ହୋଇଥିଲା ନାହିଁ । ଏହି ଦୟାର କାର୍ଯ୍ୟ ପାଇଁ ଇଂରେଜ ଜାତିକୁ ଭୂୟସୀ ଧନ୍ୟବାଦ କରିବାକୁ ହେବ । ଅପର ସମୟରେ ମିତ୍ରପ୍ରତି ସମସ୍ତେ ଦୟା ପ୍ରକାଶ କରି ଥାଆନ୍ତି ଶତ୍ରୁ ପ୍ରତି ଯେଉଁମାନେ ଦୟା ପ୍ରକାଶ କରନ୍ତି ସେମାନେ ଅବଶ୍ୟ ପ୍ରାତଃସ୍ମରଣୀୟ ଲୋକ ।

ଏହି ଘଟନାର ଅବ୍ୟବହିତପରେ ଇଂଲଣ୍ଡରୁ ସମ୍ବାଦ ଆସିଲା ଯେ ସହସ୍ରାଧିକ ଇଂରେଜ ସେନାସହିତ ଆୟାର କୂଟ ସେନାପତି ହୋଇ ଆସୁଅଛନ୍ତି । ତେତେବେଳେ ମେଜର ବ୍ରେକଟନ ମାନ୍ଦ୍ରାଜରେ ସେନାପତି ପଦରେ ନିଯୁକ୍ତ ଥିଲେ । କୂଟ ପହୁଞ୍ଚିଲେ ତାହାଙ୍କ ଅଧୀନରେ ରହିବାକୁ ହେବ ଜାଣି ପୂର୍ବରୁ ବ୍ରେକଟନ ଖ୍ୟାତି ବଢ଼ାଇବା ପାଇଁ ଉତ୍ସୁକ ହେଲେ ଓ୍ୟାଣ୍ଡିୟାସ ଦୁର୍ଗ ଆକ୍ରମଣ କଲେ ମାତ୍ର ପୂର୍ଣ୍ଣକାମ ହୋଇ ପାରିଲେ ନାହିଁ ।

୧୭୫୯ ସାଲେ ଅକ୍ଟୋବର ମାସ ଶେଷରେ କର୍ଣ୍ଣେଲ କୂଟ ମାନ୍ଦ୍ରାଜରେ ଉପସ୍ଥିତ ହେଲେ । କୂଟଙ୍କର ବୟସ ତେତିଶ ବରଷ, ତାହାଙ୍କର ଶରୀର ମନ ଅତେଜ ଥିଲା । ସେ ଯେପରି ସାହସୀ ଓ ସ୍ଥିରପ୍ରତିଜ୍ଞ, ସେହିପରି ସତର୍କ ଓ ବିବେଚନାକାରୀ ଥିଲେ । ଦେଶୀୟ ସିପାହୀମାନଙ୍କୁ ବଶୀଭୂତ କରିବାର ଉପାୟ ଉତ୍ତମରୂପେ ଜାଣନ୍ତି । କୂଟ ଉପସ୍ଥିତ ହୋଇ ପ୍ରଥମେ ଓ୍ୟାଣ୍ଡିୟାସ ଦୁର୍ଗ ଆକ୍ରମଣ ଓ ଅଧିକାର କଲେ ।

ଓ୍ୟାଣ୍ଡିୟାସ ପତନ ସମ୍ବାଦ ପାଇ, ଲାଲି ଯୁଦ୍ଧଯାତ୍ରା କଲେ । ତେତେବେଳେ ଦୂରଦର୍ଶୀ ବୁସୀ ପ୍ରସ୍ତାବ କଲେ "ବର୍ତ୍ତମାନ ସଂଗ୍ରାମରେ ଉପସ୍ଥିତ ହେବା ଉଚିତ ନୁହଇ, ଇଂରେଜ ସେନାମାନେ ତ୍ରିଚିନପଲ୍ଲୀ ଉପରୁ ନଗର ଆକ୍ରମଣ କଲେ ଆମ୍ଭମାନଙ୍କ ପକ୍ଷରେ ଉତ୍ତମ ହୋଇ ପାରେ ।" ମାତ୍ର ତେତେବେଳ ପର୍ଯ୍ୟନ୍ତେ ବୁସୀଙ୍କ ପ୍ରତି ଲାଲିଙ୍କର ଅବିଶ୍ୱାସ ଥିଲା; ସୁତରାଂ ସେହି ଶୁଭଦ ପ୍ରସ୍ତାବରେ ସମ୍ମତ ହେଲେ ନାହିଁ । ଲାଲି ଓ୍ୟାଣ୍ଡିୟାସ ସମୀପରେ ଉପସ୍ଥିତ ହେଲେ, ତେତେବେଳେ ଲାଲିଙ୍କର ୨,୨୫୦ ଇଉରୋପୀୟ ଏବଂ ୧,୩୦୦ ସିପାହୀ ଥିଲେ ; ମାତ୍ର ଏମାନେ ନୂତନ ରଣବ୍ରତରେ ବ୍ରତୀ; ଏହା ପୂର୍ବରେ ଯୁଦ୍ଧଭୂମି ସ୍ପର୍ଶ କରି ଥିଲେ ନାହିଁ । ଇଂରେଜମାନଙ୍କ ପକ୍ଷରେ ୧,୯୦୦ ଇଉରୋପୀୟ, ୨,୧୦୦ ସିପାହୀ ପଦାତି ଓ ୧,୨୫୦ ଦେଶୀୟ ଅଶ୍ୱାରୋହୀଥିଲେ । ୧୭୬୦ ସାଲେ ଜାନୁୟାରି ମାସ ୨୦ ତାରିଖରେ ଉଭୟ ସେନାଦଳର ପରସ୍ପର ଭେଟ ହେଲା । ଉଭୟପକ୍ଷ କ୍ରମଶଃ ସନ୍ନିହିତ ହୋଇ ଅବଶେଷରେ ସଙ୍ଗୀନର ଅଗ୍ରଭାଗ ଦ୍ୱାରା ଯୁଦ୍ଧକରିବାକୁ ଲାଗିଲେ । ଉଭୟପକ୍ଷ ଅଟଳ, କେହି ପଦମାତ୍ର ବିଚଳିତ ହେଉ ନାହିଁ, କାହାର

ଜୟ ପରାଜୟର ସମ୍ଭାବନା ନାହିଁ । ଏମନ୍ତ ସମୟରେ ଫରାଶିମାନଙ୍କର ଏକ ବାରୁଦଘାଟରେ ହଠାତ୍ ଅଗ୍ନି ସଂଯୋଗ ହେବାରୁ ସୈନ୍ୟମାନେ ବିଷମ ବିଶୃଙ୍ଖଳ ହୋଇ ପଡିଲେ । ଏହି ଘଟନା ଇଂରେଜମାନଙ୍କପକ୍ଷରେ ଛୀରଶର୍କରାସଂଯୋଗ ପ୍ରାୟ ଘଟିଲା । ଫରାଶିସେନାମାନେ ଶ୍ରେଣୀଭଙ୍ଗ ହୋଇ ପଳାଇବାକୁ ଲାଗିଲେ । ଯୁଦ୍ଧରେ ଓ ପଳାଇବାରେ ଫରାଶିମାନଙ୍କପକ୍ଷର ୬୦୦ ସୈନ୍ୟ ନଷ୍ଟ ହେଲେ । ଇଂରେଜଙ୍କ ପକ୍ଷର ନିତାନ୍ତ ୧୯୦ରୁ ଅଧିକ ନୁହେ; ଏହି ଯୁଦ୍ଧରେ ବୁସୀ ବନ୍ଦୀ ହେଲେ ।

ମାନ୍ଦ୍ରାଜସ୍ଥିତ ଇଂରେଜମାନେ ଓ୍ୟାଣ୍ଡିୟାସର ଯୁଦ୍ଧର ଶେଷଫଳ ଜାଣିବା ପାଇଁ ଅତ୍ୟନ୍ତ ଉତ୍ସୁକ ଥିଲେ । ଯୁଦ୍ଧର ପରଦିନ ମଧ୍ୟାହ୍ନ ସମୟରେ ( ସେନାପତି କୁଟସାହେବଙ୍କ କର୍ତ୍ତୃକ ରଣକ୍ଷେତ୍ରରେ ପେନ୍ସିଲ ଲିଖିତ ଦୁଇଧାଡି) ଖଣ୍ଡିଏ ଜୟସମ୍ବାଦ ପତ୍ର ପାଇ ଜୟଧ୍ୱନି କରିବାକୁ ଲାଗିଲେ ଏବଂ ସେମାନେ, ଯୋଗ୍ୟ ସେନାପତିର ରଣନୈପୁଣ୍ୟ ଓ ସାହସର ଅତିଶୟ ପ୍ରଶଂସା କରିବାକୁ ଲାଗିଲେ । ସେହି ଦିନ ମାନ୍ଦ୍ରାଜରେ ଇଂରେଜମାନେ ଯେ ପ୍ରକାର ଆନନ୍ଦ ପ୍ରକାଶ କରିଥିଲେ ପଲାଶୀର ଯୁଦ୍ଧଜୟସମ୍ବାଦରେ କଲିକତାର ଇଂରେଜମାନଙ୍କର ଆନନ୍ଦ ସେଥିର ଏକମାତ୍ର ଉପମାସ୍ଥଳ । ଫଳତଃ ପଲାଶୀର ଯୁଦ୍ଧରେ ସେମାନଙ୍କର ଯେରୂପ ବଙ୍ଗଦେଶଲାଭ, ଏହି ସଂଗ୍ରାମରେ ପ୍ରାୟ ସେହିରୂପ କର୍ଣ୍ଣାଟର ଆଧିପତ୍ୟ ପ୍ରାପ୍ତି ।

ଓ୍ୟାଣ୍ଡିୟାସ ଜୟ ସମୟରେ କୁଟସାହେବ ଯେବେ ପଣ୍ଡିଚେରୀର ତଦାନୀନ୍ତନ ଦୁର୍ବଳଦଶା ଓ ଗୃହଛିଦ୍ର ଅବଗତ ହୋଇଥାନ୍ତେ, ତେବେ ସେ ଶୀଘ୍ର ସେହି ଶତ୍ରୁପୁରୀ ଆକ୍ରମଣ କରିଥାନ୍ତେ ସନ୍ଦେହ ନାହିଁ । ସେ ଶନୈଃଶନୈଃ ସେମାନଙ୍କ ସର୍ବନାଶ ସାଧନର ପନ୍ଥାରେ ପ୍ରବୃତ୍ତ ହେଲେ । ଅର୍କାଟ୍, ତ୍ରିନୋମାଲି, ଦେବୀକୁଟ ଓ କଡ୍ଡାଲୂର ପ୍ରଭୃତି ଅନେକ ସ୍ଥାନ ତାଙ୍କର ବଶୀଭୂତ ହେଲା । ଏଣେ ଫରାଶିମାନେ ସାହାଯ୍ୟ ପାଇଁ ମହୀସୂରର ତତ୍କାଳୀନ ସେନାପତି ପ୍ରସିଦ୍ଧ ହଏଦରଅଲିଙ୍କ ନିକଟରେ ଆବେଦନ କଲେ । ତାହାଙ୍କ ସହିତ ଏହି ପଣ ସ୍ଥିର ହେଲା ଯେ, ସେ ୩,୦୦୦ ଅଶ୍ୱାରୋହୀ ଓ ୫,୦୦୦ ପଦାତି ପ୍ରେରଣ କରିବେ, ଫରାଶିମାନେ ସ୍ୱାଧିକୃତ କର୍ଣ୍ଣାଟର ଅନ୍ତର୍ଗତ ଥାରଗଡ଼ ଦୁର୍ଗ ପ୍ରଦାନଦ୍ୱାରା ତାଙ୍କର ସେହି ଉପକାର ପରିଶୋଧ କରିବେ । ମହୀସୂରର ସେନାମାନେ ଆଗମନ କଲାରୁ କୁଟସାହେବ ସେମାନଙ୍କୁ ତଡିଦେବା ନିମନ୍ତେ ଏକଦଳ ସେନା ପଠାଇଦେଲେ; କିନ୍ତୁ ପ୍ରେରିତ ସେନାମାନେ ପରାସ୍ତ ହୋଇ ଫେରି ଆଇଲେ । ଯାହା ହେଉ ମହୀସୂରୀ ସେନାମାନଙ୍କଦ୍ୱାରା ଫରାଶିମାନଙ୍କର ବିଶେଷ ଉପକାର ହୋଇ ନାହିଁ । ସେମାନଙ୍କ

ଆସିବାର ଅଳ୍ପକାଳ ଉତ୍ତାରେ ସମ୍ବାଦ ଆସିଲା ଯେ, ମହୀସୁରରେ ଏକ ବିପ୍ଳବ ଉପସ୍ଥିତ ହୋଇଅଛି; ତତ୍କ୍ଷଣାତ୍ ସେମାନେ ଚଞ୍ଚଳ ହୋଇ ଲାଲିଙ୍କୁ କୌଣସି ସମ୍ବାଦ ନ ଦେଇ ସ୍ୱଳ୍ପକାଳରେ ସ୍ୱଦେଶକୁ ଚାଲିଗଲେ ।

କ୍ରମେ ଫରାସିମାନଙ୍କର ଶତ୍ରୁଦଳ ନିଜ ପଣ୍ଡିଚେରୀକୁ ବେଷ୍ଟନ କଲେ । ସେ-ସେବେଳେ ପଣ୍ଡିଚେରୀ ସମୀପବର୍ତ୍ତୀ ସମୁଦ୍ରଭାଗ ସ୍ୱବା ଇଂରେଜ ନୌସେନାମାନ-ଙ୍କର ଅଧିକୃତ ଥିଲା; ସୁତରାଂ ସ୍ଥଳ ଓ ଜଳ ସବୁଆଡ଼େ ନିରୁଦ୍ଧ । ନଗରରେ ସାହାଯ୍ୟର ସମାଗମ ଏକାବେଳକେ ବନ୍ଦ ହେଲା । ଯାହାହେଉ ଫରାସିମାନଙ୍କର ସାହସ ଏବଂ ବର୍ଷାକାଳର ଝଡ଼ ଓ ବୃଷ୍ଟି ହେତୁରୁ କୁଟସାହେବଙ୍କ ଚେଷ୍ଟିତ ସାଧନରେ ବିଳମ୍ବ ହେବାକୁ ଲାଗିଲା । ୮ ତାରିଖ ଡିସେମ୍ବର ରଜନୀରେ ଇଂରେଜ ସେନାମାନେ ଭିତ୍ତିଭେଦକ ୪ ଗୋଟା କମାଣ ଦ୍ୱାରା ପଣ୍ଡିଚେରୀର ପ୍ରାଚୀରକୁ ଲକ୍ଷକରି ଗୋଳା ବର୍ଷଣ କରିବାକୁ ଲାଗିଲେ । ଅବରୁଦ୍ଧ ବ୍ୟକ୍ତିମାନେ ଅସାମାନ୍ୟ ସାହସ ସହିତ ଅଷ୍ଟାହ ପର୍ଯ୍ୟନ୍ତ ଆତ୍ମରକ୍ଷା କରିଥିଲେ; କିନ୍ତୁ ଅବଶେଷରେ ଖାଦ୍ୟ ବସ୍ତୁର ଅଭାବ ହେତୁରୁ ଦୁର୍ଗବାସିମାନେ ୧୭୬୧ ସାଲ ଜନଓରିମାସ ର ୧୬ନଂ-ରେ ଶତ୍ରୁହସ୍ତେ ଦୁର୍ଗ ସମର୍ପଣ କଲେ; ଇଂରେଜମାନେ ଜୟୋଲ୍ଲାସରେ ଗଡ଼ ଅଧିକାର କରନ୍ତି । ଏ ଉତ୍ତାରେ ଉଭୟପକ୍ଷରେ ଶିଷ୍ଟାଚାର ଚଳନ୍ତାରୁ ଲାଲି ୨,୦୦୦ ଫରାସିସେନା ସହିତ ବନ୍ଦୀ ହେଲେ । କିନ୍ତୁ ସେହି ନଗରର ଦୁର୍ଗ ଥଳସାତ୍ କରି ଦେଲେ, ଦୁର୍ଗ ସହିତ ଫରାସି କୋମ୍ପାନୀଙ୍କର ପ୍ରଭୁତ୍ୱ ସ୍ପୃହା ଭାରତବର୍ଷରୁ ବିଲୁପ୍ତ ହୋଇଗଲା ।

ପଣ୍ଡିଚେରୀ ହସ୍ତଗତ ହୁଅନ୍ତେ ଜୟୀ ସେନାମାନଙ୍କ ମଧ୍ୟରେ ମହାଗୋଳମାଳ ଉପସ୍ଥିତ ହେଲା । କୋମ୍ପାନୀଙ୍କର ସବାଧ୍ୟକ୍ଷ ମାନ୍ଦ୍ରାଜସ୍ଥ ପିଗଟ୍‌ସାହେବ କହିଲେ, ଏହା କୋମ୍ପାନୀର ଅଧିକାର ଭୁକ୍ତ, ମାତ୍ର କୁଟ କହିଲେ ନା ଏହା ଇଂଲଣ୍ଡେଶ୍ୱ-ରଙ୍କର ଅଧୀନରେ ରହିବ । ପିଗଟ୍‌ସାହେବ କହିଲେ, ଏହା ଯଦି କୋମ୍ପାନୀଙ୍କର ଅଧୀନ ନ ହୁଏ ତେବେ ଆମ୍ଭେ ସୈନ୍ୟମାନଙ୍କ ଖରଚ ପାଇଁ ପଇସାଏ ମଧ୍ୟ ଦେବୁଁ ନାହିଁ । ଏଥିରେ ସମସ୍ତ ବିବାଦ ଭଞ୍ଜନ ଓ ନଗର କୋମ୍ପାନୀଙ୍କୁ ଦିଆଗଲା ।

ଫରାସି କୋମ୍ପାନୀର କର୍ତ୍ତୃପକ୍ଷମାନଙ୍କ ଅପରାଧରୁ ସେମାନଙ୍କର ପ୍ରଭୁତ୍ୱ ଭାରତବର୍ଷରୁ ଉଚ୍ଛିନ୍ନ ଗଲା । ଏହା ସେମାନଙ୍କର କୃତଘ୍ନତାର ଫଳ ସ୍ୱରୂପ ହୋଇ ଥିଲା । ମହାମତି ଡୁପ୍ଲେ ଭାରତବର୍ଷରେ ଇଉରୋପୀୟମାନଙ୍କର ଆଧିପତ୍ୟ ବିସ୍ତା-ରର ଉପାୟ ଦର୍ଶାଇ ଯାଇଅଛନ୍ତି । ଲାବର୍ଡ୍ଡନେ ମଧ୍ୟ କୋମ୍ପାନୀଙ୍କର ଅନେକ ମଙ୍ଗଳ ସାଧନ କରି ଥିଲେ, ମାତ୍ର କର୍ତ୍ତୃପକ୍ଷୀୟମାନେ ନରହତ୍ୟାକାରୀ ଅଥବା ତାଦୃଶ ଉତ୍କଟ ଅପରାଧୀମାନଙ୍କ ପ୍ରତି ଯେପରି ବ୍ୟବହାର କରିବାକୁ ହୁଏ, ଉକ୍ତ ଦୁଇ

ମହାତ୍ମାଙ୍କ ପ୍ରତି ତାହାଠାରୁ ଅଧିକ ଉତ୍ତମ ବ୍ୟବହାର କର ନ ଥିଲେ । ଲାଲି ଇଂଲଣ୍ଡକୁ ଯାଇ, ଫ୍ରାନସରେ ତାହାଙ୍କ ନାମରେ ଅତ୍ୟନ୍ତ ନିନ୍ଦା ହେଉ ଅଛି, ସେହି ଅପବାଦ ମୋଚନ କାରଣ ଫ୍ରାନ୍ସକୁ ଯିବାନିମନ୍ତେ ଇଂଲଣ୍ଡୀୟ କର୍ତ୍ତୃପକ୍ଷଙ୍କର ଅନୁମତି ପ୍ରାର୍ଥନା କଲେ । ଅନୁମତି ଦିଆଗଲା । କିନ୍ତୁ ସେ ଫ୍ରାନସରେ ଉପସ୍ଥିତ ହେବାମାତ୍ର ବନ୍ଦୀ ହେଲେ । ପରେ କୂଟ ବିଗ୍ରରରେ ଦୋଷୀ ସ୍ଥିର ହେବାରୁ ତାହାଙ୍କ ପ୍ରତି ଶିରଃଛେଦର ଆଜ୍ଞା ପ୍ରଦତ୍ତ ହେଲା ।

—୦୦*୦୦—

## ଅଷ୍ଟମ ଅଧ୍ୟାୟ ।

ସମସ୍ତ ଦେଶରେ ରାଷ୍ଟ୍ରବିପ୍ଳବ ଉତ୍ତାରେ କିଛିଦିନ ରାଜ୍ୟ ମଧ୍ୟରେ ନାନା· ବିଶୃଙ୍ଖଳା ଘଟି ଥାଏ । ତାହା ନିରାକରଣ ପୂର୍ବକ ପୁନଃ ଶାନ୍ତିସ୍ଥାପନ କରିବା, ପ୍ରଚୁର ଧୈର୍ଯ୍ୟ ଓ ବିଚକ୍ଷଣତାର ଆବଶ୍ୟକ । ମାତ୍ର ମୀରଜାଫର ସେ ଗୁଣରୁ ବଞ୍ଚିତ ଥିଲେ । ତାହାଙ୍କର ବିଷୟବୁଦ୍ଧି କିଛିହିଁ ନ ଥିଲା ଏବଂ ସେ ଭୀରୁ, ଅଳସ, ନିର୍ବୋଧ, ନିଷ୍ଠୁର, ଅର୍ଥଲୋଭୀ ଓ ଅବ୍ୟବସ୍ଥିତଚିତ୍ତ ଥିଲେ । ତାହାଙ୍କ ପୁତ୍ର ମୀରଣ, ସିରାଜଉଦ୍ଦୌଲାଙ୍କ ଠାରୁ ମଧ୍ୟ ଅଧିକ ନିର୍ବୋଧ ଓ ନିଷ୍ଠୁର ।

ମୀରଜାଫର ଷଡ଼ଯନ୍ତ୍ର ସମୟରେ ଇଂରେଜମାନଙ୍କୁ ପ୍ରଚୁର ଅର୍ଥ ଦେବ ପାଇଁ ଅଙ୍ଗୀକାର କରିଥିଲେ । ସେହି ଅର୍ଥ କେଉଁଠାରୁ ଦିଆଯିବ ସେ ଚିନ୍ତା ବେଳେସୁଦ୍ଧା ତାହାଙ୍କ ମନରେ ସ୍ଥାନ ପ୍ରାପ୍ତ ହୋଇ ନ ଥିଲା । ସେ ମନରେ କରି ଥିଲେ, ସୁବାଦାରୀ ପାଇଲେ କୌଣସି ପ୍ରକାରେ ଦେୟ ପରିଶୋଧ କରି ଯାଇ-ପାରେ, କିମ୍ବା ଇଂରେଜମାନଙ୍କୁ ଫାଁକି ଦେବା ବଡ଼ କଠିନ ହେବ ନାହିଁ; ମାତ୍ର ପରେ ସେ ଦେଖିଲେ, ଇଂରେଜମାନେ ଫାଁକ ପାଇବାର ପାତ୍ର ନୁହନ୍ତି ଓ ରାଜ-କୋଷରେ ମଧ୍ୟ ତାଦୃଶ ଅର୍ଥ ନାହିଁ । କ୍ଲାଇବ ପାଉଣା ଟଙ୍କା ପାଇଁ ଜିଦ କରିବାକୁ ଲାଗିଲେ, ଜାଫରଙ୍କର ତାହା ଦେବାକୁ ସମର୍ଥ ନାହିଁ । ଏହିରୂପେ କ୍ଲାଇବ ଓ ଜାଫରଙ୍କର ପରସ୍ପର ମନାନ୍ତର ହୋଇ ଉଠିଲା; ମାତ୍ର ସହସା କେହି ମନୋଗତ ଭାବ ପ୍ରକାଶ କଲେ ନାହିଁ । ଜାଫର ବିଗ୍ରର କଲେ କ୍ଲାଇବଙ୍କୁ ଚଳାଇଲେ ସର୍ବ-ନାଶର ସମ୍ଭାବନା, କ୍ଲାଇବ ମଧ୍ୟ ବୁଝି ଥିଲେ ଜାଫର ପରି ଅଯୋଗ୍ୟ ସୁବାଦାର ପଦସ୍ଥ ଥିଲେ, ଭବିଷ୍ୟତକୁ ସୁବାଦାରୀ ପଦ ଇଂରେଜଙ୍କ ଅଦୃଷ୍ଟରେ ଘଟିବା କଠିନ ନୁହେ ।

ଯାହା ହେଉ ଜାଫର ଅର୍ଥାଗମର ଉପାୟ ଅନ୍ୱେଷଣ କରିବାକୁ ଲାଗିଲେ ଅନ୍ୟ କୌଣସି ଉପାୟ ନ ଦେଖି ରାଜ୍ୟସ୍ଥ କେତେକ ଜଣ ପ୍ରଧାନ ଲୋକଙ୍କ ସମ୍ପତ୍ତି ହରଣ କରିବାକୁ ମନସ୍ଥ କଲେ । ପ୍ରଥମରେ ଖାଜାଞ୍ଚି ରାୟଦୁର୍ଲଭଙ୍କ ସମ୍ପତ୍ତି ଉପରେ

ତାହାଙ୍କର ଦୃଷ୍ଟି ପଡ଼ିଲା; ମାତ୍ର ରାଜ୍ୟଦୁର୍ଲ୍ଲଭ ଜାଫରଙ୍କର କୁଅଭିସନ୍ଧି ଜାଣିପାରି କ୍ଲାଇବଙ୍କ ଶରଣାଗତ ହୋଇ ସେ ଯାତ୍ରା ରକ୍ଷା ପାଇଗଲେ । ଅତଃପର ଜାଫର ବିହାରର ଯୋଗ୍ୟ ଶାସନକର୍ତ୍ତା ରାମନାରାୟଣଙ୍କୁ ପଦଚ୍ୟୁତ କରି ତାହାଙ୍କ ସମସ୍ତ ସମ୍ପତ୍ତି ଆତ୍ମସାତ୍ କରିବାକୁ ମନସ୍ଥ କଲେ । ରାମନାରାୟଣ ଏହି ସମ୍ବାଦ ପାଇ ହଠାତ୍ ବିଦ୍ରୋହୀ ହେଲେ । ଏଣେ ମେଦନୀପୁରର ଜମିଦାର ରାଜାରାମସିଂହ ଓ ପୂର୍ଣ୍ଣିୟାର ଶାସନକର୍ତ୍ତା ଅଦଲସିଂହ ମୀରଣର ଅତ୍ୟାଚାରରେ ବିରକ୍ତ ହୋଇ ଅସ୍ତ୍ର ଧାରଣ କଲେ; ଏହିରୂପେ ଭିନ୍ନ ପ୍ରଦେଶରେ ଭିନ୍ନ ବିଦ୍ରୋହ ଉପସ୍ଥିତ ହେଲା । ଜାଫର ଅତ୍ୟନ୍ତ ଭୀତ ହୋଇ କ୍ଲାଇବଙ୍କର ସହାୟତା ପ୍ରାର୍ଥନା କଲେ । ସେହି ପ୍ରାର୍ଥନା ମଧ୍ୟ ତଳେ ପଡ଼ିଲା ନାହିଁ ।

କ୍ଲାଇବ ମୁରଶିଦାବାଦକୁ ଗମନ କରନ୍ତେ ଅନ୍ୟାନ୍ୟ ପ୍ରଦେଶରେ ସହଜରେ ଶାନ୍ତି ସ୍ଥାପିତ ହେଲା; ମାତ୍ର ବିହାରକୁ କ୍ଲାଇବଙ୍କ ଗମନର ଆବଶ୍ୟକ ହେଲା । କ୍ଲାଇବ ସମୟ ବୁଝି ଅଡ଼ି ବସିଲେ, କହିଲେ ଆମ୍ଭମାନଙ୍କ ପ୍ରାପ୍ୟ ମଧ୍ୟରୁ ବର୍ତ୍ତମାନ ୨୩ ଲକ୍ଷ ଟଙ୍କା ନ ପାଇଲେ ଅମ୍ଭେ ବିହାରକୁ ଯିବୁଁ ନାହିଁ । ଜାଫରଙ୍କର ମନା କରିବାର ଶକ୍ତି ନାହିଁ ତତ୍‌କ୍ଷଣାତ୍ ୧୧୫ ଲକ୍ଷ ଟଙ୍କା ଦେଇ ବାକୀ ଟଙ୍କାଲାଗି ହୁଗଲି, ନଦୀୟା ଓ ବର୍ଦ୍ଧମାନର ରାଜସ୍ୱ ଲେଖିଦେଲେ । ଏଉତ୍ତାରୁ କ୍ଲାଇବ ବିହାରରେ ଉପସ୍ଥିତ ହେଲାରୁ ଓ ତାହାଙ୍କର ଚେଷ୍ଟାଦ୍ୱାରା ରାମନାରାୟଣଙ୍କ ସହିତ ଜାଫରଙ୍କର ସନ୍ଧି ହେଲା । ରାମନାରାୟଣ ସ୍ୱପଦରେ ପ୍ରତିଷ୍ଠିତ ରହିଲେ । ଅନନ୍ତର ଜାଫର ସମଭିବ୍ୟାହାରରେ କ୍ଲାଇବ ବଙ୍ଗଳାରେ ଉପସ୍ଥିତ ହେଲେ ।

କ୍ଲାଇବଙ୍କର ଅନୁପସ୍ଥିତି ସମୟରେ ବିଲାତସ୍ଥ ଡାଇରେକ୍ଟର ସମାଜରୁ ଏକ ଆଜ୍ଞା ଆସିଲା ତାହାର ମର୍ମ୍ମ ଏହି :—

କଲିକତାରେ ୧୦ ଜଣ ସଦସ୍ୟବିଶିଷ୍ଟ ଏକ କୌନସିଲ ସ୍ଥାପିତ ହେବ । ୪ ଜଣ ସଦସ୍ୟ ପର୍ଯ୍ୟାୟକ୍ରମେ ତାହାର ଅଧ୍ୟକ୍ଷତା ସମ୍ପାଦନ କରିବେ, ମାତ୍ର ସଦସ୍ୟମାନେ ବିବେଚନାକଲେ, ଏତେଶୀଘ୍ର ଅଧ୍ୟକ୍ଷ ପରିବର୍ତ୍ତନ ହେଲେ କାର୍ଯ୍ୟରେ ନାନାଗୋଲମାଲ ହେବାର ସମ୍ଭାବନା ଏଥିକୁ ସେମାନେ ଡାଇରେକ୍ଟରଙ୍କ ଆଦେଶ ରହିତ କରି କ୍ଲାଇବଙ୍କୁ ଅଧ୍ୟକ୍ଷତା ପଦରେ ନିଯୁକ୍ତ କଲେ । ଅବ୍ୟବହିତ ପରେ ଡାଇରେକ୍ଟର ସମାଜରୁ ପ୍ରଥମୋକ୍ତ ନିୟମ ରହିତ ହୋଇ ଶେଷୋକ୍ତ ପ୍ରକାରେ ଆଦେଶ ଆସି ଉପସ୍ଥିତ ହେଲା । ସେ ଯାହା ହେଉ ଅତଃପର କ୍ଲାଇବ ଏକ ଗୁରୁତର ବ୍ୟାପାରରେ ପ୍ରବୃତ୍ତ ହେଲେ । ପୂର୍ବେ ଉଲ୍ଲେଖ କରି ଯାଇଅଛି, ବୁଷୀ ଉତ୍ତର ସରକାରକୁ ଜାୟଗୀର ସ୍ୱରୂପ ପ୍ରାପ୍ତ ହୋଇ ତହିଁରେ ଫରାସିଙ୍କ ଆଧିପତ୍ୟ ସ୍ଥାପନ କରିଥିଲେ । ସେହି ପ୍ରଦେଶରେ ଆନନ୍ଦରାଜ ନାମକ ଏକ

କ୍ଷ୍ମୁଦ୍ରରାଜା ବାସ କରୁଥିଲେ । ସେହି ଆନନ୍ଦରାଜ କୌଣସି କାରଣ ପ୍ରଯୁକ୍ତ ଫରାସିମାନଙ୍କଉପରେ ବିରକ୍ତ ହୋଇ କ୍ଲାଇବଙ୍କୁ ଭାଷା ଲେଖିଲେ ଯେ, ଯେବେ ଇଂରେଜମାନେ ଉତ୍ତରସରକାର ପ୍ରଦେଶ ଆକ୍ରମଣ କରିବେ, ତେବେ ଆମ୍ଭେ ବିଶେଷ ସହାୟତା କରିବୁଁ । କ୍ଲାଇବ ଏହି ପତ୍ର ପାଇ ୬୦୦ ଇଉରୋପୀୟ ଓ ୬,୯୦୦ ଦେଶୀୟ ସେନା ସହିତ ଅତିଯୋଗ୍ୟ ସେନାପତି କର୍ଣ୍ଣେଲ ଫୋର୍ଡଙ୍କୁ ଉତ୍ତରସରକାର ପ୍ରଦେଶକୁ ପଠାଇ ଦେଲେ ।

୧୭୫୯ ସାଲ ଅକ୍ଟୋବରମାସ ୬୦ ତାରିଖରେ ବିଶାଖପଟ୍ଟନ ଠାରେ ଆନନ୍ଦରାଜଙ୍କ ସହିତ ଫୋର୍ଡଙ୍କର ଭେଟହେଲା । ଇଂରେଜମାନେ ଆଶା କରିଥିଲେ, ଆନନ୍ଦରାଜ ସମସ୍ତ ଯୁଦ୍ଧ ବ୍ୟୟ ନିର୍ବାହ କରିବେ; ତେଣୁ ସେମାନେ ସଙ୍ଗରେ ଅଧିକ ସମ୍ବଳ ନେଇ ନ ଥିଲେ, ମାତ୍ର ଅଳ୍ପ ସମୟ ଉତ୍ତାରେ ପ୍ରକାଶ ପାଇଲା ଯେ, ସମସ୍ତ ବ୍ୟୟ ଦେବାକୁ ରାଜାଙ୍କର କ୍ଷମତା ନାହିଁ । ପରେ ଆନନ୍ଦ ଓ ଇଂରେଜଙ୍କ ମଧ୍ୟରେ ଏହି ବନ୍ଦୋବସ୍ତ ହେଲା ଯେ, ରାଜା ସେନାମାନଙ୍କର ମାସିକ ବ୍ୟୟ ନିର୍ବାହ କରିବେ, ଉତ୍ତରସରକାର ହସ୍ତଗତ ହେଲେ ସମୁଦ୍ର-କୂଳ-ବର୍ତ୍ତୀ ସ୍ଥାନସକଳ ଛାଡ଼ି ସମସ୍ତ ଉତ୍ତରସରକାର ପ୍ରଦେଶ ରାଜାଙ୍କୁ ପ୍ରଦାନ କରାଯିବ । ଅନନ୍ତର ଫୋର୍ଡ, ରାଜାଙ୍କୁ ସଙ୍ଗରେ ଘେନି ରାଜମହେନ୍ଦ୍ରୀଠାରେ ଉପସ୍ଥିତ ହେଲେ । ସେ ସ୍ଥାନରେ ସେନାପତି କନ୍‌ଫଲାନ୍‌ସଙ୍କ ଅଧୀନରେ କେତେଗୁଡ଼ିଏ ଫରାସି ସେନା ଉପସ୍ଥିତ ଥିଲେ, ସେମାନଙ୍କର ସଂଖ୍ୟା ଇଂରେଜଙ୍କ ସୈନ୍ୟସଂଖ୍ୟା ଠାରୁ ନ୍ୟୂନ ନୁହଇ; ତଥାପି ଯୁଦ୍ଧ ଉପସ୍ଥିତ ହେଲାରୁ ସେମାନେ ପରାସ୍ତ ହୋଇ ପଳାୟନ କଲେ । କନ୍‌ଫଲାନ୍‌ସ ପଳାଇଯାଇ ମଛଲିବନ୍ଦର ଦୁର୍ଗରେ ଆଶ୍ରୟ ଗ୍ରହଣ କରି ଦାକ୍ଷିଣାତ୍ୟ ସୁବାଦାରଙ୍କର ସାହାଯ୍ୟପାଇଁ ପତ୍ର ଲେଖିଲେ ।

ଏଣେ ଫୋର୍ଡ କନ୍‌ଫଲାନସଙ୍କ ପଛେପଛେ ଗୋଡ଼ାଇଯାଇ ମଛଲିବନ୍ଦର ଦୁର୍ଗ ଆକ୍ରମଣ ଓ ଅଧିକାର କଲେ । ଏହି ସମୟରେ ଦାକ୍ଷିଣାତ୍ୟ ସୁବାଦାର ମଛଲିବନ୍ଦରଠାରେ ଉପସ୍ଥିତ ହେଲେ । ସେ ତେତେବେଳେ ଇଂରେଜମାନଙ୍କୁ ପ୍ରବଳଦେଖି ଅବଲମ୍ବେ ସେମାନଙ୍କ ସହିତ ସନ୍ଧି ସ୍ଥାପନକଲେ । ଏତେଶୀଘ୍ର ସନ୍ଧି କରିବାର କାରଣ ଏହି ଯେ, ସୁବାଦାର ରାଜଧାନୀ ତ୍ୟାଗ କରନ୍ତେ, ତାଙ୍କର ଭ୍ରାତା ନିଜାମଅଲି ବିଦ୍ରୋହୀ ହୁଅନ୍ତି; ତେଣୁ ତାହାଙ୍କୁ ଶୀଘ୍ର ସ୍ୱସ୍ଥାନକୁ ଯିବା ଓ କେତେଗୁଡ଼ିଏ ବଳିଷ୍ଠ ସେନା ସଂଗ୍ରହ କରିବା ଆବଶ୍ୟକ ହୋଇଥିଲା । ସନ୍ଧିର ପଣ ଅନୁସାରେ ସୁବାଦାର ଇଂରେଜମାନଙ୍କୁ ମଛଲିବନ୍ଦର ସମୀପସ୍ଥ ଏକ ବିସ୍ତୃତ ଭୂଭାଗ ପ୍ରଦାନ କଲେ ଓ ଉତ୍ତରସରକାରରୁ ଫରାସିମାନଙ୍କୁ ଦୂରୀଭୂତ କରିଦେବା ପାଇଁ ପ୍ରତିଶ୍ରୁତ ହେଲେ । ଏଣେ ଇଂରେଜମାନେ ସ୍ୱୀୟ ସେନାଦ୍ୱାରା ତାହାଙ୍କର

ଉପକାର କରିବାପାଇଁ ପ୍ରତିଜ୍ଞା କଲେ । ଅଳ୍ପକାଳ ଉତ୍ତାରେ ସୁବାଦାରଙ୍କର କିଛି ସୈନ୍ୟ ଆବଶ୍ୟକ ହେଲା, ମାତ୍ର କୌଣସି କାରଣପ୍ରଯୁକ୍ତ ଫୋର୍ଡ ପ୍ରତିଜ୍ଞା ପ୍ରତିପାଳନ କରି ପାରିଲେ ନାହିଁ ।

ଜୟଲାଭଦ୍ୱାରା ଫୋର୍ଡଙ୍କର ସୁଖ୍ୟାତି ହୁଅନ୍ତେ କ୍ଲାଇବ ଅତ୍ୟନ୍ତ ଆନନ୍ଦିତ ହେଲେ । କ୍ଲାଇବଙ୍କର ଅନ୍ୟ ଯେ ଦୁର୍ଗୁଣ ଥାଉ, ପରଶ୍ରୀକାତରତା ତାହାଙ୍କ ମନରେ ସ୍ଥାନ ପ୍ରାପ୍ତ ହୋଇ ନ ଥିଲା । ଉତ୍ତର ସରକାର ବିଷୟ ନିଷ୍ପତ୍ତି ହେଲାରୁ ଫୋର୍ଡ କିଛି ସୈନ୍ୟ ମାନ୍ଦ୍ରାଜକୁ ପ୍ରେରଣ କଲେ ଓ ଅବଶିଷ୍ଟ ସୈନ୍ୟସେନା ବଙ୍ଗ ଦେଶକୁ ବାହୁଡିଲେ ।

ଏହି ସମୟରେ ମୀରଜାଫରଙ୍କର ଦାରୁଣ ବିଭ୍ରାଟ ଉପସ୍ଥିତ ହେବାରୁ କ୍ଲାଇବଙ୍କୁ ପାଟନା ଯିବାକୁ ହୋଇଥିଲା । ଦିଲ୍ଲୀର ସମ୍ରାଟ୍ ଆଲମଗୀରଙ୍କ ପୁତ୍ର ସାହ ଆଲମ ଅଯୋଧ୍ୟାର ନବାବ ଓ ଆଲ୍ଲାହାବାଦର ନବାବଙ୍କ ସହିତ ମିଳିତ ହୋଇ ମୀରଜାଫରଙ୍କ ରାଜ୍ୟ ଆକ୍ରମଣ କରନ୍ତି । ଏହି ଆକ୍ରମଣର ସମ୍ବାଦ ପାଇ ମୀରଜାଫର ଅତ୍ୟନ୍ତ ଭୟ ପ୍ରାପ୍ତ ହେଲେ । ଇଂରେଜମାନଙ୍କୁ ଅନେକ ଟଙ୍କା ଦେବାକୁ ହୋଇ ଥିଲା, ତାହାଙ୍କର ନିଜର ମଧ୍ୟ ଅନେକ ଅପବ୍ୟୟ ଥିଲା । ଏଣୁ ତାହାଙ୍କର ଧନାଗାର ଶୂନ୍ୟ ପ୍ରାୟ ହୋଇ ଯାଇ ଥିଲା; ସୈନ୍ୟମାନେ ଅନେକ ଦିନ ବେତନ ନ ପାଇ ଅତ୍ୟନ୍ତ ଅସନ୍ତୁଷ୍ଟ ଓ ଅବାଧ ହୋଇଥିଲେ । ଏଣେ ତାହାଙ୍କ ପୁତ୍ର ମୀରଣର ପଶୁବତ୍ ଓ କ୍ରୂର ବ୍ୟବହାର ଦେଖି ପ୍ରଧାନ ପ୍ରଧାନ ପ୍ରଜାମାନେ ଅତ୍ୟନ୍ତ ଅସନ୍ତୁଷ୍ଟ ହୋଇଥିଲେ । ମୀରଜାଫରଙ୍କର ପ୍ରଧାନ ସହାୟ କ୍ଲାଇବ; କିନ୍ତୁ ବର୍ତ୍ତମାନ ତାହାଙ୍କ ସହିତ ମନାନ୍ତର ଉପସ୍ଥିତ ହୋଇଥିଲା । ତାହାଙ୍କୁ ବଙ୍ଗଳାରୁ ଦୂର କରି ଦେବାଲାଗି ଗୋପନରେ ଓଲନ୍ଦାଜମାନଙ୍କ ସହିତ ପରାମର୍ଶ କରୁଥିଲେ । ଯାହା ହେଉ କ୍ଲାଇବଙ୍କ ଶରଣ ଭିନ୍ନ ଜାଫରଙ୍କର ଉପାୟାନ୍ତର ଥିଲା ନାହିଁ । ସେ କ୍ଲାଇବଙ୍କର ସାହାଯ୍ୟ ପ୍ରାର୍ଥନା କଲେ, କ୍ଲାଇବ ମଧ୍ୟ ଅଙ୍ଗୀକୃତ ହେଲେ । ଏଣେ ସାହଆଲମ କ୍ଲାଇବଙ୍କୁ ଲେଖିଲେ "ଆପଣ ଯଦି ଆମ୍ଭର ଅଭୀଷ୍ଟ ସିଦ୍ଧି ବିଷୟରେ ସହାୟତା କରିବେ, ତେବେ ଆମ୍ଭେ କ୍ରମେ୨ ଆପଣଙ୍କୁ ଅନେକ ପ୍ରଦେଶର ଆଧିପତ୍ୟ ପ୍ରଦାନ କରିବୁଁ" କିନ୍ତୁ କ୍ଲାଇବ ତହିଁରେ କର୍ଣ୍ଣପାତ ମଧ୍ୟ କଲେ ନାହିଁ । ପରେ କ୍ଲାଇବ ମୀରଣକୁ ସଙ୍ଗରେ ଘେନି ବିହାର ଅଭିମୁଖେ ଚଳିଲେ । ସେମାନଙ୍କ ସଙ୍ଗରେ ୪୫୦ ଗୋରା, ୨,୫୦୦ ସିପାହୀ ଓ ମୀରଜାଫରଙ୍କର କେତେକ ନିଜ ସେନା ଥିଲେ । ଏଣେ ସାହଆଲମ ତିରିଶ ହଜାର ସେନା ସହିତ ଆସି ପାଟନା ଅବରୁଦ୍ଧ କଲେ । ତତ୍ରତ୍ୟ ଶାସନକର୍ତ୍ତା ରାମ-ନାରାୟଣ ମହା ଦକ୍ଷତା ସହିତ ୯ ଦିନ ପର୍ଯ୍ୟନ୍ତ ଆତ୍ମରକ୍ଷା କରିଥିଲେ । ପରେ

ପାଟନା ପରାସ୍ତ ହେବାର ସମ୍ପୂର୍ଣ୍ଣ ପୂର୍ବଲକ୍ଷଣ ଦେଖା ଗଲା । ଏମନ୍ତ ସମୟରେ ସମ୍ବାଦ ଆସିଥିଲା ଯେ, ଅଯୋଧ୍ୟାର ନବାବ ଆଲ୍ଲାହାବାଦ ଗ୍ରହଣ କରି ଅଛନ୍ତି; ଏଥିକୁ ଆଲ୍ଲାହାବାଦର ନବାବ ସର୍ସୈନ୍ୟେ ରାଜଧାନୀ ଉଦ୍ଧାରାର୍ଥେ ଗମନ କଲେ । ଏହି ସମୟରେ କ୍ଲାଇବ ପାଟନାଠାରେ ଉପସ୍ଥିତ ହୁଅନ୍ତି; ସୁତରାଂ ସାହଆଲମଙ୍କୁ ପାଟନାର ଆଶା ପରିତ୍ୟାଗପୂର୍ବକ ଭଙ୍ଗଦେଇ ପଳାଇ ଯିବାକୁ ହେଲା ।

ଏଉତ୍ତାରେ ସାହଆଲମଙ୍କର ମହତି ଦୁର୍ଦ୍ଦଶା ଉପସ୍ଥିତ ହେଲା । ସେ ପାଟ-ନାରୁ ପଳାଇ ଯାଇ ପ୍ରଥମେ ଅଯୋଧ୍ୟା, ପରେ ବଙ୍ଗଳାର ଆଶ୍ରୟ ପ୍ରାର୍ଥନା କରନ୍ତି; ମାତ୍ର କୌଣସି ସ୍ଥାନରେ ଆଶ୍ରୟ ପ୍ରାପ୍ତ ହେଲେ ନାହିଁ । ପରେ କ୍ଲାଇବଙ୍କୁ କିଛି ଅର୍ଥ ପ୍ରାର୍ଥନା କରିବାରେ କ୍ଲାଇବ ସହସ୍ର ସ୍ୱର୍ଣ୍ଣମୁଦ୍ରା ପ୍ରଦାନ କରନ୍ତି । ଏହି ବିପଦରୁ ଉଦ୍ଧାର ପାଇ, ଜାଫର ଦିଲ୍ଲୀଶ୍ୱର ସମ୍ରାଟଙ୍କୁ ଲେଖି କ୍ଲାଇବଙ୍କୁ ଉମରାଓ ଉପାଧି ଆଣି ଦେଲେ, କଲିକତା ଏବଂ ତାହାର ଦକ୍ଷିଣେ ଇଂରେଜମାନଙ୍କର ଯେ ବିସ୍ତୃତ ଜମିଦାରୀ ଥିଲା, ତାହାର ରାଜସ୍ୱ କ୍ଲାଇବଙ୍କୁ ଯାବଜ୍ଜୀବନ ଭୋଗ କରିବା ପାଇଁ ଦାନ କଲେ । ସେଥିରୁ କ୍ଲାଇବଙ୍କର ବାର୍ଷିକ ତିନଲକ୍ଷ ଟଙ୍କା ଲାଭ ହେଲା ।

ଯାହା ହେଉ ମୀରଜାଫର ବାରଂବାର ଉପକୃତ ହୋଇ ମଧ୍ୟ ସେ ସର୍ବଦା ଇଂରେଜମାନଙ୍କର ଉଚ୍ଛେଦର ମନ୍ତ୍ରଣା କରୁଥାନ୍ତି । ତାହାଙ୍କର ଧାରଣା ହୋଇ ଥିଲା ଯେ " ଆମ୍ଭେ ବଳବନ୍ତ ବିଦେଶୀମାନଙ୍କ ବାହୁବଳଦ୍ୱାରା ରାଜ୍ୟଲାଭ କରିଅଛୁଁ, ଅଳ୍ପମାତ୍ର ତ୍ରୁଟି ହେଲେ ସାହାଯ୍ୟକାରୀମାନେ ଆମ୍ଭକୁ ସିଂହାସନଚ୍ୟୁତ କରି ପାରନ୍ତି, ସର୍ବଦା ସେମାନଙ୍କର ମନୋରଞ୍ଜନ କରି ରାଜତ୍ୱ କରିବା ବିଡ଼ମ୍ବନା"; ଏଥିକୁ ଜାଫର ତାହାଁରୁ ମୁକ୍ତିଲାଭ କରିବାର ଉପାୟ ଅନ୍ୱେ-ଷଣ କରିବାକୁ ଲାଗିଲେ । ସେ ଏହା ମଧ୍ୟ ବୁଝି ପାରିଥିଲେ ଯେ, ଏତଦ୍ଦେ-ଶୀୟ ଅଶିକ୍ଷିତ ସୈନ୍ୟମାନେ ସୁଶିକ୍ଷିତ ସୈନ୍ୟମାନଙ୍କର ସମକକ୍ଷ ହୋଇ ଯୁଦ୍ଧ କରିବାକୁ କଦାଚ ସକ୍ଷମ ନୁହନ୍ତି; ତେଣୁ ପରକୀୟ ବଳ ସାହାଯ୍ୟ ଆବଶ୍ୟକ । ଏହି କଥା ବିଚାର କରି ସେ ଓଲନ୍ଦାଜମାନଙ୍କର ଖଟୀ ଜାଭା ଅନ୍ତର୍ଗତ ବଟେଭି-ୟାକୁ ପତ୍ର ଲେଖିଲେ, ଓଲନ୍ଦାଜମାନେ ମଧ୍ୟ ଇଂରେଜମାନଙ୍କ ପ୍ରତି ବିରକ୍ତ ହୋଇଥିଲେ; ଜାଫରଙ୍କ ନିମନ୍ତ୍ରଣ ଶୁଣିବାମାତ୍ର ଅତିସତ୍ୱର ୭୦୦ ଇୟୁରୋପୀୟ ଓ ୮୦୦ ମାଲାଇ ସୈନ୍ୟ ସହିତ ୭ ଖଣ୍ଡ ରଣତରୀ ଜାଫରଙ୍କ ସାହାଯ୍ୟ ପାଇଁ ପଠାଇ ଦେଲେ ।

କ୍ଲାଇବ ଏବିଷୟର ଗନ୍ଧ ମାତ୍ର ପାଇ ନ ଥିଲେ, କାରଣ ଗୁପ୍ତରେ

ଏହିଚକ୍ରାନ୍ତ କରି ଯାଉଥିଲା । ସାହାଆଲମଙ୍କ ଆକ୍ରମଣରୁ ରକ୍ଷାପାଇ, କ୍ଲାଇବ ଥରେ ଇଂରେଜମାନଙ୍କ ସହିତ ସାକ୍ଷାତ କରିବାପାଇଁ କଲିକତାକୁ ଆସିଥିଲେ, ସେହିସମୟରେ ଓଲନ୍ଦାଜୀ ରଣତରୀ ସକଳ ଭାଗୀରଥୀରେ ପ୍ରବିଷ୍ଟ ହୁଅନ୍ତି । ତାଙ୍କର ଉଭୟ ସଙ୍କଟରେ ପଡ଼ିଲେ, ଇଂରେଜମାନଙ୍କ ସହିତ ମୌଖିକ ପ୍ରଣୟ ରଖିବା ଓ ଓଲନ୍ଦାଜମାନଙ୍କର ସାହାଯ୍ୟ କରିବା ଉଭୟ ଆବଶ୍ୟକ ହୋଇଥିଲା । ଏଣେ ଇଂରେଜମାନେ ଜିଦ କରିବାକୁ ଲାଗିଲେ " ଆପଣ ଆଗନ୍ତୁକ ଓଲନ୍ଦାଜ ନୌସେନାମାନଙ୍କୁ ଦୂରକରି ଦେଉନ୍ତୁ । ତାଙ୍କର ଇତିକର୍ତ୍ତବ୍ୟତା ବିମୂଢ଼ ହୋଇ ଅଗତ୍ୟା ଏହିଉତ୍ତର ଦେଲେ ଯେ, ଆମ୍ଭେ ହୁଗଲୀକୁ ଯାଇ ଚୁଁଚୁଁଡ଼ାର କର୍ତ୍ତୃପକ୍ଷୀୟମାନଙ୍କୁ ଡକାଇ ଏହି ଅନ୍ୟାୟାଚରଣ ପାଇଁ ତାହାଙ୍କୁ ସମୁଚିତ ପ୍ରତିଫଳ ପ୍ରଦାନ କରିବୁଁ; ମାତ୍ର ସେ ହୁଗଲୀରୁ କ୍ଲାଇବଙ୍କୁ ଲେଖିଲେ ଯେ, ପବନର ପ୍ରତିକୂଳତା ହେତୁରୁ ଓଲନ୍ଦାଜୀ ଜାହାଜମାନେ ନଦୀମଧ୍ୟରେ ଆଶ୍ରୟ ଗ୍ରହଣ କରିଅଛନ୍ତି, ସୁବତାସ ପାଇଲେ ସେମାନେ ଚାଲିଯିବେ । ମାତ୍ର ନବାବଙ୍କ ଅଭିପ୍ରାୟ କ୍ଲାଇବଙ୍କ ଠାରେ ଅପ୍ରକାଶିତ ରହିଲା ନାହିଁ ଏବଂ ଓଲନ୍ଦାଜୀଜାହାଜମାନେ ମଧ୍ୟ କ୍ରମଶଃ କଲିକତାନିକଟକୁ ଆସିବାକୁ ଲାଗିଲେ ।

କ୍ଲାଇବ ବିଷମ ସଙ୍କଟରେ ପଡ଼ିଲେ । ସେତେବେଳେ ଇଂଲଣ୍ଡ ଓ ହଲଣ୍ଡଉଭୟ ଦେଶର ମୈତ୍ରୀ ଥିଲା ତେଣୁ ଓଲନ୍ଦାଜୀଜାହାଜମାନଙ୍କୁ ଆକ୍ରମଣ କଲେ ଇଂଲଣ୍ଡ ଓ ହଲଣ୍ଡର ପରସ୍ପର ଯୁଦ୍ଧ ଘଟିପାରେ, ଏଥିପାଇଁ ତାହାଙ୍କ ଉପରକୁ ବଡ଼ ଝୁଁକ ଆସିବ, ଶାନ୍ତିଭଙ୍ଗ ଅପରାଧରୁ ଗୁରୁତର ଦଣ୍ଡ ଘଟିବା ମଧ୍ୟ ଆଶ୍ଚର୍ଯ୍ୟ ନୁହଇ । ଏଣେ ତାହାଙ୍କର ହୃଦୟଙ୍ଗମ ହୋଇଥିଲା ଯେ, ଉପସ୍ଥିତ ଓଲନ୍ଦାଜୀସେନାମାନେ ଚୁଁଚୁଁଡ଼ାରେ ଉପସ୍ଥିତ ହେବା ମାତ୍ରକେ ତାଙ୍କର ଅବଶ୍ୟ ଛଦ୍ମଭାବ ପରିତ୍ୟାଗ କରି ସେମାନଙ୍କ ସଙ୍ଗେ ମିଳିତ ହେବେ । ସେତେବେଳେ ବଙ୍ଗଳାରେ ଇଂରେଜମାନଙ୍କର ପ୍ରଭୁତା ରକ୍ଷାକରିବା ଅତ୍ୟନ୍ତ କଠିନ ହୋଇ ପଡ଼ିବ । କ୍ଲାଇବ ଏହି ସକଳବିଷୟ ବିବେଚନା କରି ଓ ଅସମସାହସରେ ନିର୍ଭର କରି ଯୁଦ୍ଧ କରିବାକୁ ମନସ୍ଥ କଲେ । ଜଳ ଓ ସ୍ଥଳ ଉଭୟମାର୍ଗରେ ଓଲନ୍ଦାଜୀସେନାମାନଙ୍କ ଆଗମନ ବ୍ୟାଘାତ କରିବାପାଇଁ ସେନା ପ୍ରେରଣ କଲେ । ଓଲନ୍ଦାଜ ନୌସେନାର ଅଧିନାୟକ ଥୋକାଏ ସୈନ୍ୟ ଓହ୍ଲାଇ ଦେଲେ । ସେହି ସକଳ ସେନାମାନେ ସ୍ଥଳମାର୍ଗରେ ଚୁଁଚୁଁଡ଼ା ଗମନ କରିବାକୁ ଲାଗିଲେ । ଏଉତ୍ତାରେ ଇଂରେଜ ଓ ଓଲନ୍ଦାଜ ଉଭୟଙ୍କ ମଧ୍ୟରେ ଜଳଯୁଦ୍ଧ ଉପସ୍ଥିତ ହେଲା । ନୌ ଯୁଦ୍ଧରେ ଇଂରେଜମାନେ ଯେପରି ନିପୁଣ, ସେପରି ଅନ୍ୟକୌଣସି ଜାତି ନୁହନ୍ତି । ଓଲନ୍ଦାଜ ନୌସେନାମାନେ ସମ୍ପୂର୍ଣ୍ଣରୂପେ ପରାସ୍ତ ହେଲେ, ସେମାନଙ୍କର ସମସ୍ତ ରଣତରୀ

ଇଂରେଜମାନଙ୍କର ହସ୍ତଗତ ହେଲା । ସ୍ଥଳରେ ଓଲନ୍ଦାଜମାନଙ୍କର ଅନୁର ଦୁର୍ଗତି ଉପସ୍ଥିତ ହେଲା । କର୍ଣ୍ଣେଲ ଫୋର୍ଡ ଚୁଁଚୁଁଡ଼ା ନିକଟରେ ଆଗନ୍ତୁକ ସେନାମାନଙ୍କ ପ୍ରତୀକ୍ଷାରେ ପ୍ରେରିତ ହୋଇଥିଲେ; ସେମାନେ ଅଗତ ପ୍ରାୟ ଜାଣି ଆପଣା ଦୋଷ-କ୍ଷାଳନ ଉଦ୍ଦେଶ୍ୟରେ ଫୋର୍ଡ, କ୍ଲାଇବଙ୍କୁ ଲେଖିଲେ "ଯଦି ଆମ୍ଭେ କୌନସିଲର ଆଜ୍ଞା ପାଉଁ, ତେବେ ଆଗନ୍ତୁକମାନଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତ ହେବୁଁ" । ତେତେବେଳେ ରାତ୍ରୀକାଳ, କ୍ଲାଇବ ତାସ୍ ଖେଳୁଥିଲେ । ଖେଳରୁ ନ ଉଠି ପେନ୍‌ସିଲରେ ଉତ୍ତର ଦେଲେ "ପ୍ରିୟତମ ତୁମ୍ଭେ ଅବଲମ୍ବେ ଯୁଦ୍ଧରେ ପ୍ରବୃତ୍ତ ହୁଅ, ଆମ୍ଭେ କାଲି କୌନସିଲର ଆଜ୍ଞା ପଠାଇବୁଁ" । ଫୋର୍ଡ ଏହି ଆଜ୍ଞା ପାଇ ଏମନ୍ତ ବୀରତା ପ୍ରକାଶକରି ଶତ୍ରୁପକ୍ଷ ଆକ୍ରମଣ କଲେ ଯେ, ଅର୍ଦ୍ଧଘଣ୍ଟାକ ମଧ୍ୟରେ ଓଲନ୍ଦାଜମାନେ ପରାସ୍ତ ଓ ଲଣ୍ଡଭଣ୍ଡ ହୋଇଗଲେ । ତହୁଁ ଓଲନ୍ଦାଜମାନେ ଆପଣାମାନଙ୍କର ସମସ୍ତଦୋଷ ସ୍ୱୀକାରକରି ବିନୀତଭାବରେ କ୍ଲାଇବଙ୍କ ନିକଟରେ କ୍ଷମାପ୍ରାର୍ଥନା କଲେ ଓ ଯୁଦ୍ଧର ସମସ୍ତ ଖରଚ ଦେବାଲାଗି ସ୍ୱୀକୃତ ହେଲେ; ସୁତରାଂ ଉଭୟପକ୍ଷ ମଧ୍ୟରେ ସନ୍ଧି ହୋଇଗଲା, ଇଂରେଜମାନେ ସମସ୍ତ ରଣତରୀ ଫେରାଇ ଦେଲେ । ଏହି ଘଟନାର ଅଳ୍ପକାଳ ଉତ୍ତାରେ କ୍ଲାଇବ ଓ ଫୋର୍ଡ ସ୍ୱଦେଶକୁ ଯାତ୍ରା କରିବାପାଇଁ ମନସ୍ଥ କଲେ । କ୍ଲାଇବ ବିପୁଳ ଅର୍ଥରାଶି ଉପାର୍ଜ୍ଜନ କରିଥିଲେ, ତାହାଙ୍କର ଶରୀର ମଧ୍ୟ ରୁଗ୍ଣ ହୋଇଥିଲା; ତେଣୁ ସ୍ୱାସ୍ଥ୍ୟଲାଭ ଓ ବାବୁଗିରି କରିବାପାଇଁ ୧୭୬୦ ସାଲ ଫେବୃଏରିମାସରେ ପଦତ୍ୟାଗ ପୂର୍ବକ ସ୍ୱଦେଶକୁ ଯାତ୍ରାକଲେ । ତାହାଙ୍କ ପଦରେ ବାନ୍‌ସିଟାର୍ଟ ସାହେବ ନିଯୁକ୍ତ ହେଲେ; ମାତ୍ର ସେ ତେତେବେଳେ ମାନ୍ଦ୍ରାଜରେ ଥିବାରୁ ହଲ୍‌ଓଏଲ୍ ସାହେବ କର୍ମ ନିର୍ବାହ କରିବାକୁ ଲାଗିଲେ । ସେନାଧ୍ୟକ୍ଷପଦ ମେଜର କାଲାୟୃତଙ୍କୁ ପ୍ରଦତ୍ତ ହେଲା ।

କ୍ଲାଇବ ସ୍ୱଦେଶକୁ ଯାତ୍ରାକରିବାର ଅତ୍ୟଳ୍ପକାଳ ଉତ୍ତାରେ ବଙ୍ଗଳାଦେଶ-ରେ ଗୋଟିଏ ଦାରୁଣ ଗୋଳମାଳ ଉପସ୍ଥିତ ହେଲା । ଜାଫର ଓ ତଦୀୟ ପୁତ୍ର ମୀରଣଙ୍କ ଦୌରାତ୍ମ୍ୟରେ ସମସ୍ତଲୋକ ଅସନ୍ତୁଷ୍ଟି ପ୍ରକାଶ କରିବାକୁ ଲାଗିଲେ, ବିଶେଷରେ ପୂର୍ଣ୍ଣିୟାର ଫୌଜଦାର କଦମହୋସେନ୍ ବିଦ୍ରୋହର ଉଦ୍ୟୋଗ କରୁ-ଥିଲେ, ଏହିସମୟରେ ସାହଆଲମ ପାଟନା ଆକ୍ରମଣ କରନ୍ତି । ସାହଆଲମ ଏତେ-ବେଳେ ସାହଜାଦା ମାତ୍ର ଥିଲେ ନାହିଁ । ଜନକଙ୍କର ପରଲୋକ ଯାତ୍ରା ନିବନ୍ଧନ ସେ ସ୍ୱୟଂ ସମ୍ରାଟ୍ ହୋଇଥିଲେ; ମାତ୍ର ସେ ସମ୍ରାଟ୍‌ପଦ ଛଡ଼ା ଆଉକିଛି ପ୍ରାପ୍ତହୋଇ ନ ଥିଲେ । ସାମ୍ରାଜ୍ୟର ଅନ୍ୟାନ୍ୟ ପ୍ରଦେଶର କଥା ଅବା କି କହିବା ଦିଲ୍ଲୀସୁଦ୍ଧା ତାହାଙ୍କର ହସ୍ତଗତ ଥିଲା ନାହିଁ । ସେ ନାମରେ ଦିଲ୍ଲୀଶ୍ୱର ଥିଲେ, ଖଣ୍ଡିଏ ଗ୍ରାମ-

ସୁବା ତାହାଙ୍କର ହସ୍ତଗତ ଥିଲା ନାହିଁ । ସାମ୍ରାଜ୍ୟରୁ ନିର୍ବାସିତହୋଇ ଇତସ୍ତତଃ ଭ୍ରମଣ କରୁଥିଲେ ।

ସେ ଯାହା ହେଉ ପାଟନାର ସମ୍ବାଦ ମୁରଶିଦାବାଦରେ ଉପସ୍ଥିତ ହୁଅନ୍ତେ କାଲିଯୃଡ୍ ଓ ମୀରଣ ସସୈନ୍ୟେ ପାଟନା ଯାତ୍ରାକଲେ; ମାତ୍ର ସେମାନଙ୍କର ଉପ-ସ୍ଥିତ ହେବାପୂର୍ବେ ତତ୍ରତ୍ୟ ଶାସନକର୍ତ୍ତା ରାମନାରାୟଣ, ସାହଆଲମଙ୍କ ଦ୍ୱାରା ପରାସ୍ତ ହୋଇଥିଲେ । ସମ୍ରାଟ୍ ଚେଷ୍ଟା କରିଥିଲେ ଅନାୟାସରେ ନଗର ହସ୍ତଗତ କରି ଥାଆନ୍ତେ; ମାତ୍ର ସେ ତାହା ନ କରି ଦେଶଲୁଣ୍ଠନରେ କାଳକ୍ଷେପ କରୁଥିଲେ, ଏମନ୍ତ ସମୟରେ ମୀରଣ ଓ କାଲିଯୃଡ୍ ଉପସ୍ଥିତ ହେଲେ । ଉଭୟ ପକ୍ଷର ଯୁଦ୍ଧ ଉପସ୍ଥିତ ହେଲାରୁ ସମ୍ରାଟ୍ ସମ୍ପୂର୍ଣ୍ଣରୂପେ ପରାଭୂତ ହୋଇ ବିହାର ନଗରକୁ ପଳାୟନ କଲେ । ସେ ସ୍ଥାନରେ ତାହାଙ୍କ ମନରେ ଆଉ ଗୋଟିଏ ଅଭିସନ୍ଧି ଉଦୟ ହେଲା । ମୀରଣ ଓ କାଲିଯୃଡ୍ ପାଟନାରେ ଥାଉଁ ଥାଉଁ ମୁରଶିଦାବାଦ ଆକ୍ରମଣକଲେ ଅନାୟାସେ ନଗର ଅଧିକୃତ ହୋଇପାରେ; ତେଣୁ ସେ ଗିରବର୍ଦ୍ଧ ରେ ମୁରଶିଦାବାଦକୁ ଯାତ୍ରାକଲେ । ମାତ୍ର ମୀରଣ ଏହା ଜାଣିପାରି ଦ୍ରୁତଗତି ତରଣୀ ଦ୍ୱାରା ପିତାଙ୍କ ନିକଟକୁ ସମ୍ବାଦ ପଠାଇଲେ ଓ ଆପେ ମଧ ଯାତ୍ରାକଲେ । ସମ୍ରାଟ୍ ମୁରଶିଦାବାଦର ୧୫ କ୍ରୋଶ ଦୂରରେ ଉପସ୍ଥିତ ହୋଇ ଦେଖିଲେ ଯେ, ମୀରଣ ଓ କାଲିଯୃଡ୍ ତାହାଙ୍କ ପ୍ରତୀକ୍ଷାରେ ରହି ଅଛନ୍ତି; ଏଥକୁ ସେ ଯୁଦ୍ଧରେ ପ୍ରବୃତ୍ତ ନ ହୋଇ ଭଙ୍ଗଦେଇ ପଳାୟନକଲେ ଓ ପାଟନା ରକ୍ଷକଶୂନ୍ୟ ପ୍ରାୟ ଦେଖି ପୁନର୍ବାର ତାହା ଆକ୍ରମଣ କଲେ । ଏଣେ କାଲିଯୃଡ୍ ମଧ ନିଶ୍ଚିନ୍ତ ଥିଲେ ନାହିଁ ସେ ଅଳ୍ପ ସୈନ୍ୟସହିତ କାପ୍ତେନ ନକ୍ସ ସାହେବଙ୍କୁ ପାଟନା ସାହାଯ୍ୟାର୍ଥ ପଠାଇ ଦେଲେ । ପାଟନା ପତନୋନ୍ମୁଖ ସମୟରେ ନକ୍ସ ଉପସ୍ଥିତ ହେଲେ ଓ ସମ୍ରାଟଙ୍କୁ ସମ୍ପୂର୍ଣ୍ଣରୂପେ ପରାସ୍ତ କରି ଦୂରୀଭୂତ କରିଦେଲେ । ଏ ଉତ୍ତାରେ ସମ୍ରାଟ୍ ଆଉ ବଙ୍ଗଳାଦେଶ ସ୍ପର୍ଶ କରିଥିଲେ ନାହିଁ । ଏହି ଘଟନାର ଅଳ୍ପକାଳ ଉତ୍ତାରେ ପୂର୍ଣ୍ଣିୟାର ଫୌଜଦାର କଦମହୋସେନ ତ୍ରିଂଶତ୍ ସହସ୍ର ସୈନ୍ୟସହିତ ସାହଆଲମଙ୍କ ସହିତ ମିଳିତ ହେବା ପାଇଁ ପାଟନାଠାରେ ଉପସ୍ଥିତ ହେଲେ । ତେତେବେଳେ ନକ୍ସଙ୍କର ସହସ୍ରରୁ ଅଧିକ ସୈନ୍ୟ ଥିଲେ ନାହିଁ । ପାଟନାବାସିମାନେ ଅନୁମାନ କରିଥିଲେ ଯେ, ଯୁଦ୍ଧ ଆହ୍ୱାନ କରିବା ନକ୍ସଙ୍କର ମୃତ୍ୟୁକୁ ଆହ୍ୱାନ କରିବା ହେବ । ମାତ୍ର ନକ୍ସଙ୍କର ସହସ୍ର ଶିକ୍ଷିତ ସୈନ୍ୟ ସମ୍ମୁଖରେ ଫୌଜଦାରଙ୍କ ତ୍ରିଶ ସହସ୍ର ସୈନ୍ୟ ତିଷ୍ଠି ପାରିଲେ ନାହିଁ । ଏହି ଯୁଦ୍ଧରେ ରାଜା ଶୀତାବରାୟ ଅସାଧା-ରଣ ବୀରତା ପ୍ରକାଶ କରିବାରୁ ନକ୍ସସାହେବ ତାହାଙ୍କୁ ଭୂୟସୀ ପ୍ରଶଂସା କରିଥିଲେ; ଫୌଜଦାର ପରାଭୂତ ହୋଇ ଉତ୍ତରଦେଶ୍ୟ ପଳାୟନ କରିବାକୁ

ଲାଗିଲେ । କାଲାୟୃଡ୍ ଓ ମୀରଣ ଉପସ୍ଥିତ ହୋଇ ତାହାଙ୍କ ଅନୁସରଣ କରିବାକୁ ଲାଗିଲେ । ମାତ୍ର ୧୭୬୦ ସାଲ ଜୁଲାଇମାସ ୨ ତାରଖରେ ନବାବଙ୍କ ଶିବିରରେ ଏକ ଦାରୁଣ ଦୁଃଖଜନକ ଘଟନା ଉପସ୍ଥିତ ହେଲା । ମୀରଣ ତମ୍ବୁ ମଧ୍ୟରେ ଶୟନ କରି ଗଳ୍ପ ଶୁଣୁଅଛନ୍ତି ଓ ଦୁଇଜଣ ଦାସ ତାହାଙ୍କର ପଦମର୍ଦ୍ଦନ କରୁଅଛନ୍ତି ଏମନ୍ତ ସମୟରେ ବଜ୍ରପାତ ହେବାରୁ ତିନଜଣ ଦାସ ସହିତ ମୀରଣ ପଞ୍ଚତ୍ୱ ପ୍ରାପ୍ତ ହେଲେ । କାଲାୟୃଡ୍ ସେ ସ୍ଥାନରୁ ଫେରିଅସି ପାଟନାରେ ଛାଉଣୀ କଲେ ।

ମୀରଜାଫରଙ୍କ ରାଜତ୍ୱ ଦିନକ ପାଇଁ ମଧ୍ୟ ସୁଖକର ହୋଇଥିଲା ନାହିଁ । ସେ ଶୂନ୍ୟ ରାଜକୋଷ ପ୍ରାପ୍ତ ହୋଇଥିଲେ, ଏଣେ ଇଂରେଜମାନଙ୍କୁ ବିପୁଳଅର୍ଥ ଦେବା ପାଇଁ ପ୍ରତିଶ୍ରୁତ ହୋଇ ଥିଲେ, ତାହାଙ୍କ ନିଜର ମଧ୍ୟ ଅନେକ ଅପବ୍ୟୟ ଥିଲା; ତେଣୁ ତାହାଙ୍କୁ ଦାରୁଣ ପ୍ରଜାଶୋଷଣ କରିବାକୁ ହୋଇଥିଲା । ଏହି କାରଣ ଓ ମୀରଣଙ୍କର ଅତ୍ୟାଚାରରୁ ପ୍ରଜାମାନେ ତାହାଙ୍କ ପ୍ରତି ଅତ୍ୟନ୍ତ ବିରକ୍ତ ହୋଇ ଥିଲେ । ସେନାମାନେ ବେତନ ନ ପାଇ ଅବଶେଷେ ମୁରଶିଦାବାଦ ରାଜପ୍ରସାଦ ଅବରୁଦ୍ଧ କଲେ ଓ ନବାବଙ୍କର ପ୍ରାଣସଂହାର କରିବା ପାଇଁ ମଧ୍ୟ ବିଭୀଷିକା ପ୍ରଦର୍ଶନ କରିବାକୁ ଲାଗିଲେ, ଏହି ସମୟରେ ନବାବଙ୍କର ଜୁଆଇଁ ମୀରକାଶିମ ନିଜ ତହବିଲରୁ ଯଦି ୩୦ ଲକ୍ଷ ଟଙ୍କା ଦେଇ ନ ଥାଆନ୍ତେ, ତେବେ ମୁରଶିଦାବାଦରେ ଉତ୍କଟ ଦୁର୍ଯୋଗ ଉପସ୍ଥିତ ହୋଇ ଥାଆନ୍ତା ।

ମୀରଜାଫର ଏଥାହା ରକ୍ଷା ପାଇଲେ ସତ୍ୟ; କିନ୍ତୁ ଶୀଘ୍ର ତାହାଙ୍କର ରକ୍ଷକ ଇଂରାଜମାନେ ଭକ୍ଷକ ସ୍ୱରୂପ ହୋଇ ଦେଖା ଦେଲେ । ଜାଫର ରାଜତ୍ୱ ପ୍ରାପ୍ତି ସମୟରେ ଇଂରାଜମାନଙ୍କୁ ବିପୁଳ ଅର୍ଥରାଶି ଦେବା ପାଇଁ ପ୍ରତିଶ୍ରୁତ ହୋଇଥିଲେ ସେହି ଅଙ୍ଗୀକୃତ ଅର୍ଥ କେଉଁଠାରୁ ଦେବେ, ବୋଧ ହୁଏ ସେ ଭାବନା ତାହାଙ୍କ ମନରେ ଉଦୟ ହୋଇ ଥିଲା ନାହିଁ ଏବଂ ତାହା ପ୍ରାପ୍ତି ବିଷୟରେ ଇଂରାଜମାନଙ୍କ ମନରେ ଯେ କୌଣସି ପ୍ରକାର ସନ୍ଦେହ ଉପସ୍ଥିତ ହୋଇ ଥିଲା ଏହା ମଧ୍ୟ ବୋଧ ହୁଏ ନାହିଁ । କାରଣ ସେମାନେ ସେହି ପ୍ରାପ୍ୟ ଉପରେ ନିର୍ଭର କରି ବ୍ୟୟ ନିର୍ବାହ ଚିନ୍ତା ଏକାବେଳକେ ବିସର୍ଜନ କରି ଥିଲେ । ଡିରେକ୍ଟର ସମାଜ ମଧ୍ୟ ଆଦେଶ କରି ଥିଲେ ଯେ, ବଙ୍ଗଳାରୁ ଯେ ଅର୍ଥରାଶି ଲବ୍ଧ ହେବ, ତଦ୍ୱାରା ବଙ୍ଗ, ମାନ୍ଦ୍ରାଜ ଓ ବୋମ୍ବେ ତିନି ପ୍ରେସିଡେନ୍‌ସିର ବ୍ୟୟ ନିର୍ବାହ ହେବ, ଆଉ ଇଂଲଣ୍ଡରୁ ଅର୍ଥ ପ୍ରେରିତ ହେବ ନାହିଁ । ଏଣେ କଲିକତାର ରାଜକୋଷ ଶୂନ୍ୟପ୍ରାୟ ହୋଇ ଥିଲା, ପୁଣି ପୂର୍ବାପେକ୍ଷା ସେମାନଙ୍କର ଆୟଠାରୁ ବ୍ୟୟ ଅଧିକ ହେଉଥିଲା; କାରଣ ଏତେବେଳେ ସେ କ୍ରମଶଃ ବଣିକବୃତ୍ତି ଛାଡି ରାଜବୃତ୍ତି ଅବଲମ୍ବନ କରିବାରୁ ସୈନିକ ପ୍ରଭୃତି ବିଷୟରେ ଅଧିକ ବ୍ୟୟ ହେଉଥିଲା । ଏହି ସମୟ-

ରେ ବାନ୍‌ସିଟାର୍ଟ ସାହେବ ମାନ୍ଦ୍ରାଜରୁ ଆସି ହଲୱେଲ ସାହେବଙ୍କ ହସ୍ତରୁ ଗବର୍ଣ୍ଣରୀ ପଦ ଗ୍ରହଣ କଲେ । ସେ ରାଜକୋଷର ଈଦୃଶ ଦୁରବସ୍ଥା ଦେଖି ନାନା ଉପାୟ ଚିନ୍ତା କରିବାକୁ ଲାଗିଲେ । ଅବଶେଷେ ନବାବଙ୍କର ବଂଶଧର ଅନ୍ୟ କୌଣସି ଲୋକଙ୍କୁ ସୁବାଦାରୀ ପଦ ପ୍ରଦାନ କରି ତାହାଠାରୁ ଅର୍ଥ ଦୋହନ କରିବା ଉପାୟ ତାହାଙ୍କ ମଧ୍ୟରେ ସ୍ଥିର ହେଲା । ଇତିପୂର୍ବେ କାଶିମ, ସୁବାଦାରୀ ପଦପ୍ରାପ୍ତିର ପ୍ରତ୍ୟାଶାରେ ସେନାମାନଙ୍କୁ ତିନି ଲକ୍ଷ ଟଙ୍କା ଦେଇ ଥିଲେ, ବର୍ତ୍ତମାନ ସେ ସୁବାଦାରୀ ପଦର ଯୋଗ୍ୟ ବୋଲି ବିବେଚିତ ହୁଅନ୍ତି ।

ବାନ୍‌ସିଟାର୍ଟ ସାହେବ କାଲିଓ୍ୱଡ୍ ସାହେବଙ୍କ ସହିତ ମୁରଶିଦାବାଦରେ ଉପସ୍ଥିତ ହେଲେ ଓ ଜାଫରଙ୍କୁ ପଦଚ୍ୟୁତ କରି କାଶିମଙ୍କୁ ତତ୍ପଦରେ ଅଭିଷିକ୍ତ କରାଇଲେ । ଇଂରେଜମାନଙ୍କର ଏହି କାର୍ଯ୍ୟ ଯେ କପରି ନ୍ୟାଯ୍ୟାନୁମୋଦିତ, ତାହା ଇଂରେଜମାନେ ବୋଲନ୍ତୁ, ଆମ୍ଭର କୌଣସି କଥା ବୋଲିବାର ପ୍ରୟୋଜନ ନାହିଁ ।

ଏଉତ୍ତାରେ ମୀରଜାଫର ମୁରଶିଦାବାଦ ପରିତ୍ୟାଗ କରି କଲିକତା ଗମନ କରନ୍ତି । ଜାଫର ଏକ ନର୍ତ୍ତକୀର ନିତାନ୍ତ ଦାସ ହୋଇ ଥିଲେ, ସେହି ନର୍ତ୍ତକୀ ଅବଶେଷେ ମଣିବେଗମ ନାମରେ ପ୍ରସିଦ୍ଧ । ଜାଫର କଲିକତା ଗମନ ସମୟରେ ତାହାଙ୍କୁ ସଙ୍ଗରେ ଘେନିଗଲେ । ବୋଧହୁଏ ମୀରକାଶିମ ଇଂରେଜମାନଙ୍କୁ ଅନେକ ଟଙ୍କା ଦେବା ପାଇଁ ସ୍ୱୀକାର କରି ଥିଲେ, ତାହା ନ ହେଲେ ସେମାନେ କପାଁଇ ଜାଫରଙ୍କୁ ପଦଚ୍ୟୁତ କରି ତାହାଙ୍କୁ ନିଯୁକ୍ତ କରନ୍ତେ ?

କାଶିମ ସିଂହାସନରେ ବସି ଇଂରେଜ କୋମ୍ପାନୀଙ୍କୁ ପାଞ୍ଚଲକ୍ଷ ଓ ବାନ୍‌ସିଟାର୍ଟ ପ୍ରଭୃତି କର୍ମଚାରୀମାନଙ୍କୁ ଅନେକ ଟଙ୍କା ପ୍ରଦାନ କଲେ ଓ ବାକି ଟଙ୍କା କ୍ରମେ୨ ଦେବାଲାଗି ସ୍ୱୀକାର କଲେ । କାଶିମ, ଇଂରେଜ କର୍ମଚାରୀମାନଙ୍କୁ ଯେ ଅର୍ଥ ଦେଇ ଥିଲେ ତହିଁରୁ କଲିକତାର କୌନ୍‌ସିଲର କେତେକ ଜଣ ସଦସ୍ୟ ଅଂଶ ପାଇ ଥିଲେ ନାହିଁ; ତେଣୁ ସେମାନଙ୍କ ମନରେ ଅତ୍ୟନ୍ତ କ୍ରୋଧ ଓ କ୍ଷୋଭ ଜନ୍ମେ । ଭଲ ହେଉ ଅବା ମନ୍ଦ ହେଉ ବାନ୍‌ସିଟାର୍ଟ ଯେ ପ୍ରସ୍ତାବ କରିବେ ତାହା ପ୍ରତିବାଦ କରିବା ପାଇଁ ସେମାନେ ଦଳବଦ୍ଧ ହୋଇ ପ୍ରତିଜ୍ଞା କଲେ ।

---

## ନବମ ଅଧ୍ୟାୟ ।

୧୭୬୦ ସାଲ ଅକ୍ଟୋବରମାସରେ କାଶିମ ବଙ୍ଗଳା ସୁବାଦାରଙ୍କ ଆସନରେ ଉପବେଶନ କଲେ । ସେ ଅତି ଊର୍ଜ୍ଜସ୍ୱଳ ଓ କାର୍ଯ୍ୟକ୍ଷମ ଥିଲେ । ମୀରଜାଫରଙ୍କ ଅଯୋଗ୍ୟତା ହେତୁରୁ ଜମିଦାରମାନଙ୍କ ଉପରେ ଅନେକ ରାଜସ୍ୱ ବାକୀ ପଡ଼ି ଥିଲା

ଓ କର୍ମଚାରୀମାନେ ଅନେକ ଅର୍ଥ ଅପହରଣ କରଥିଲେ, କାଶିମ ସେହି ସକଳ ଉସୂଲ କର ରାଜକୋଷ ପୂର୍ଣ୍ଣ କରବାକୁ ଲାଗିଲେ । ନିଜର ବ୍ୟୟ ମଧ୍ୟ ଅନେକ ଊଣା କର ଦେଲେ, ତେଣୁ ଇଂରେଜମାନଙ୍କୁ ଓ ନିଜ ସେନାମାନଙ୍କୁ ଯେଉଁ ଦେଣା ଥିଲା ତାହା ନିଃଶେଷିତ ହୋଇ ଧନାଗାର ପୂର୍ଣ୍ଣ ହେବାକୁ ଲାଗିଲା । ଉଦ୍ୟୋଗ ଓ ମିତବ୍ୟୟୀ ପୁରୁଷ ଅଲକ୍ଷ୍ମୀର ରାଜ୍ୟରେ ମଧ୍ୟ ଧନବାନ୍ ହୋଇ ପାରନ୍ତି ।

କାଶିମ ସେନାଶୋଧନ ଓ ସଂଖ୍ୟା ବୃଦ୍ଧି କରବାକୁ ଲାଗିଲେ ଓ ଇଉରୋପୀୟ ପ୍ରଣାଳୀ ଅନୁସାରେ ଶିକ୍ଷା ଦେବାଲାଗି ଗର୍ଗିନ ଖାଁ ନାମକ ଜଣେ ଆର୍ମାନୀ ଓ ସମରୁ ନାମରେ ଜଣେ ଜର୍ମାନଙ୍କୁ ସେନାପତି ପଦରେ ନିଯୁକ୍ତ କଲେ । କାଶିମ ମୁରଶିଦାବାଦରୁ ରାଜପାଟ ଉଠାଇ ନେଇ ମୁଙ୍ଗେରରେ ସ୍ଥାପନ କରନ୍ତି । ଗର୍ଗିନ ଖାଁ ମୁଙ୍ଗେରରେ ବନ୍ଧୁକର କାରଖାନା ଆରମ୍ଭ କଲେ ।

ସମ୍ରାଟ୍ ସାହଆଲମ ଏ ଯାଏଁ ବିହାର ଦେଶରେ ଅବସ୍ଥିତି ଥିଲେ । ତାହାଙ୍କୁ ସେ ସ୍ଥାନରୁ ଦୂରୀକୃତ କରବା ଆବଶ୍ୟକ ବୋଧ ହେବାରୁ ଇଂରେଜ ସେନାର ତଦାନୀନ୍ତନ ସର୍ବାଧ୍ୟକ୍ଷ ମେଜର କର୍ଣ୍ଣାକ ପାଟନାରୁ ଯାଇ ତାହାଙ୍କୁ ଆକ୍ରମଣ ଓ ପରାସ୍ତ କଲେ । ଏ ଉତ୍ତାରେ ସନ୍ଧିର ପ୍ରସଙ୍ଗ ହେଲା, ସମ୍ରାଟ୍ ତହିଁରେ ସମ୍ମତ ହେବାରୁ ମେଜର କର୍ଣ୍ଣାକ ସମ୍ରାଟଙ୍କ ସମୀପକୁ ଗମନପୂର୍ବକ ସାକ୍ଷାତ୍ ଓ ବନ୍ଦନାଦ କଲେ । ମୀରକାଶିମ ସେ ସ୍ଥାନରେ ଉପସ୍ଥିତ ଥିଲେ, ସେ ବାର୍ଷିକ ୨୪ଲକ୍ଷ ଟଙ୍କା ଦେବାକୁ ସ୍ୱୀକୃତ ହେବାରୁ ସମ୍ରାଟ୍ ତାହାଙ୍କୁ ସୁବାଦାରୀ ପଦରେ ଦୃଢ଼ୀଭୂତ କର ଗଲେ । ବିଦାୟ ସମୟରେ ସମ୍ରାଟ୍ କର୍ଣ୍ଣାକ ସାହେବଙ୍କୁ କହିଲେ ଇଂରେଜ-ମାନେ ପ୍ରସ୍ତାବ କଲେ ସେମାନଙ୍କୁ ବଙ୍ଗ, ବିହାର ଓ ଉଡ଼ିଶାର ସୁବାଦାରୀ ପ୍ରଦତ୍ତ ହେବ । ( ୧୭୬୧ ) ।

ପୂର୍ବରୁ ପାଟନାରେ ଅନେକ ରାଜସ୍ୱ ବାକୀ ପଡ଼ି ଥିଲା, କାଶିମ ତତ୍ରତ୍ୟ ଶାସନକର୍ତ୍ତା ରାମନାରାୟଣଙ୍କୁ ହିସାବ ତଲବ କଲେ; ମାତ୍ର ରାମନାରାୟଣ ଉତ୍ତର ଦେଲେ ତାହାଙ୍କଠାରେ କଛି ପାଉଣା ନାହିଁ, ଯେ ରାଜସ୍ୱ ଅଦାୟ ହୋଇ ଥିଲା ତାହା ଦେଶରକ୍ଷାର୍ଥ ସମସ୍ତ ବ୍ୟୟ ହୋଇଅଛି । ଏ କଥା ଯେ ମିଥ୍ୟା ଏପର ବୋଧ ହୁଏ ନାହିଁ, ତଥାପି ହିସାବ ଦେବା ରାମନାରାୟଣଙ୍କର ଉଚିତ ଥିଲା; ମାତ୍ର ଇଂରେଜମାନେ ରାମନାରାୟଣଙ୍କ ସପକ୍ଷ ଥିବାରୁ କାଶିମଙ୍କ ପ୍ରତି ତାହାଙ୍କର କୌଣସିପର ଭୟ ବା ଭକ୍ତି ଥିଲା ନାହିଁ ।

ପୂର୍ବେ ଉଲ୍ଲେଖ କରା ଯାଇଅଛି କୌନସିଲର ସଦସ୍ୟମାନେ ଦୁଇ ଦଳରେ ବିଭକ୍ତ ହୋଇଥିଲେ । ସର୍ବାଧ୍ୟକ୍ଷ ଵାନସିଟାର୍ଟ ସାହେବଙ୍କ ଦଳ କାଶିମଙ୍କର ସପକ୍ଷ

ଅନ୍ୟଦଳ ତାହାଙ୍କର ବିପକ୍ଷ । କାଶିମ୍, ରାମନାରାୟଣଙ୍କୁ ଶାସନ କରିବା କାରଣ ଇଂରେଜମାନଙ୍କର ସାହାଯ୍ୟ ପ୍ରାର୍ଥନା କଲେ । ଏହି ବିଷୟ ଯେତେ କଲିକତା କୌନସିଲରେ ଅନେକ ତର୍କବିତର୍କ ହେଲା; ଅବଶେଷେ କାଶିମଙ୍କର ପ୍ରାର୍ଥନାରେ ସମ୍ମତ ହେବା ସ୍ଥିରୀକୃତ ହେଲା । ତହୁଁ କାଶିମ ସୈନ୍ୟ ପ୍ରେରଣ କରି ରାମନାରାୟଣଙ୍କୁ ଧୃତ ଓ କାରାଗାରରେ ବନ୍ଦୀ କଲେ ।

ଅତଃପର କାଶିମଙ୍କ ସହିତ ଇଂରେଜମାନଙ୍କର ବିଷମ ମନାନ୍ତର ଘଟିଲା । ମୀରଜାଫରଙ୍କୁ ପଦଚ୍ୟୁତ କରି ତତ୍ପଦେ ମୀରକାଶିମଙ୍କୁ ନିଯୁକ୍ତ କରିବା ଇଂରେଜ-ମାନଙ୍କର ଅତ୍ୟନ୍ତ ଅବିବେଚନାର କାର୍ଯ୍ୟ ହୋଇଥିଲା । କାରଣ ମୀରଜାଫର ଅତ୍ୟନ୍ତ ନିର୍ବୋଧ ଓ ହୀନସାହସ ଲୋକ ଥିଲେ । ଇଂରେଜମାନେ ତାହାଙ୍କୁ ଯେଉଁ ବାଟରେ ଚଳାନ୍ତି ସେ ସେହି ବାଟରେ ଚାଲୁଥିଲେ; ମାତ୍ର କାଶିମ ସେପରି ଧାତୁର ଲୋକ ଥିଲେ ନାହିଁ । ସେ ଅତିସାହସୀ ଓ ଚତୁର ଲୋକ ଥିଲେ । ସେ ଯାହା ହେଉ କାଶିମଙ୍କ ସହିତ ଇଂରେଜମାନଙ୍କର ଯେ ମନାନ୍ତର ଘଟିଲା ସେଥିର କଥା ଏହି :—

ମୋଗଲ ଅଧିକୃତ ଭାରତବର୍ଷର ସର୍ବତ୍ର ପଣ୍ୟଦ୍ରବ୍ୟ ଉପରେ ମାଶୁଲ ଗୃହୀତ ଓ ତଦ୍ଦ୍ୱାରା ଭୂରି ରାଜସ୍ୱ ଅଦାୟ ହେଉଥିଲା । ଜଳ ଓ ସ୍ଥଳ ଉଭୟ ମାର୍ଗରେ ସ୍ଥାନେ୨ ଘାଟଘର ଥାଏ, ବଣିକମାନେ ସେହି୨ ସ୍ଥାନରେ ମାଶୁଲ ଦେଇ ଯାଆନ୍ତି । ସେହି ମାଶୁଲକୁ ' ପଞ୍ଚୋତ୍ତରୀ ' ବୋଲାଯାଏ । ଇଂରେଜ କୋମ୍ପାନୀ ବହୁଚେଷ୍ଟାଦ୍ୱାରା ସେହି ପଞ୍ଚୋତ୍ତରୀରୁ ନିଷ୍କୃତି ପ୍ରାପ୍ତ ହୋଇ ଥିଲେ । କୋମ୍ପାନୀଙ୍କର ପଣ୍ୟତରୀ ସକଳ କଲିକତାର ରେସିଡେଣ୍ଟ ସାହେବଙ୍କ ଛାଡ଼ ଚିଠି ଦେଖାଇ ଓ କୋମ୍ପାନୀଙ୍କର ନିଶାଣ ଉଡ଼ାଇ କୁଠିଘରରୁ ଅବ୍ୟାହତି ପାଆନ୍ତି । କୋମ୍ପାନୀଙ୍କର କର୍ମଚାରୀମାନେ ଗୁପ୍ତଭାବରେ ବଙ୍ଗଳାର ବହୁଳ ଲାଭକର ବାଣିଜ୍ୟରେ ଲିପ୍ତ ଥିଲେ । କ୍ଲାଇବଙ୍କ ଦୃଢ଼ ଶାସନରେ କର୍ମଚାରୀମାନେ ପ୍ରକାଶ୍ୟ-ରୂପେ ଏହି କର୍ମରେ ଲିପ୍ତ ହୋଇ ପାରୁ ନ ଥିଲେ । ବର୍ତ୍ତମାନ ସେ ଇଂଲଣ୍ଡ ଯାତ୍ରା କରନ୍ତେ ସେମାନଙ୍କର ଅର୍ଥଲୋଭିତା ନିରଙ୍କୁଶ ହୋଇଥିଲା । ସେମାନେ ଲବଣ, ପାନ ଓ ଏତଦ୍ଦେଶୋତ୍ପନ୍ନ ସମସ୍ତ ପ୍ରକାର ଦ୍ରବ୍ୟର ବାଣିଜ୍ୟ କରିବାକୁ ଓ ଏକ ସ୍ଥାନରୁ ଅନ୍ୟସ୍ଥାନକୁ ମାଲ ଚଲାଣ କରିବାକୁ ଲାଗିଲେ । ଘାଟଘରମାନଙ୍କରେ ନବାବଙ୍କର ଅମଲାମାନେ ମାସୁଲ ମାଗିଲେ ସେମାନେ କୋମ୍ପାନୀଙ୍କର ମାଲ ବୋଲି କହନ୍ତି ଓ କୋମ୍ପାନୀର ନିଶାଣ ଉଡ଼ାନ୍ତି । ନବାବଙ୍କର ଗୋମାସ୍ତାମାନେ କିଛି ଉଚ୍ଚବାଚ୍ୟ କଲେ ଇଂରେଜ କର୍ମଚାରୀମାନେ ସେମାନଙ୍କୁ ଦାରୁଣ ପ୍ରହାର କରନ୍ତି ଓ କଏଦ କରନ୍ତି । ଦେଶୀୟ ବଣିକମାନେ ଶୁଣିଲେ ଯେ ଇଂରେଜମାନଙ୍କ

ପକ୍ଷରେ ମାଶୁଲ ଲାଗେ ନାହିଁ, ତେଣୁ ସେମାନେ ଇଂରେଜମାନଙ୍କୁ କିଛି ଦକ୍ଷିଣା ଦେଇ ସେମାନଙ୍କ ନାମରେ ମାଲ ଚାଲାଣ ଦେବାକୁ ଲାଗିଲେ । ଏହି ରୂପେ ଅକାଳଶ୍ମଶ୍ରୁ ବାଳକ ଇଂରେଜମାନେ କି ଯେଉଁମାନଙ୍କର ବାର୍ଷିକ ୧୦୦୦ଟଙ୍କାରୁ ଅଧିକ ଆୟ ନ ଥିଲା, ସେମାନେ ମଧ୍ୟ ସ୍ୱଚ୍ଛନ୍ଦରେ ୧୫।୨୦ ହଜାର ଟଙ୍କା ବାବୁଗିରିରେ ଉଡ଼ାଉଥିଲେ । ଇଂରେଜମାନେ ମାଶୁଲ ଦିଅନ୍ତି ନାହିଁ ଏବଂ ମାଲସକଳ ମଧ୍ୟ ବଜାରଦରରେ କିଣନ୍ତି ନାହିଁ; ସେମାନଙ୍କର ଯେତେ ଇଚ୍ଛା ତେତେ ମୂଲ୍ୟ ଦେଇ ମାଲ ଉଠାଇ ନିଅନ୍ତି । କୌଣସି ଅଜ୍ଞାନ ବିକ୍ରେତା ଦ୍ୱିରୁକ୍ତି କଲେ, ହୁଏ ତତ୍‌କ୍ଷଣାତ୍ ତାହା ପୃଷ୍ଠର ଚର୍ମ ଉଡ଼ିଯାଏ, ନଚେତ୍ ଶ୍ରୀଘରରେ ବାସ କରିବାକୁ ହୁଏ, ତେଣୁ ସେମାନେ ଅନ୍ୟାନ୍ୟ ବଣିକମାନଙ୍କ ଠାରୁ ମାଲ ଅଳ୍ପଦରରେ ବିକ୍ରୟ କରିବାରୁ ବଙ୍ଗଳାର ସମସ୍ତ ବାଣିଜ୍ୟ ସେମାନଙ୍କ ହସ୍ତଗତ ହୋଇଥିଲା ।

ମୀରକାଶିମ ଇଂରେଜମାନଙ୍କ ଅତ୍ୟାଚାରରେ ଅତ୍ୟନ୍ତ କ୍ରୁଦ୍ଧ ହୋଇ ତାହା ନିବାରଣ ନିମନ୍ତେ ପୁନଃପୁନଃ କଲିକତାର କୌନସିଲରେ ଆବେଦନ କରିଥିଲେ କିନ୍ତୁ ସଭାଧ୍ୟକ୍ଷ ବାନସିଟାର୍ଟ ଓ ହେଷ୍ଟିଂସସାହେବ ଭିନ୍ନ ଅନ୍ୟ ସଦସ୍ୟମାନେ ସେକଥାରେ କର୍ଣ୍ଣପାତ କରନ୍ତି ନାହିଁ । କାରଣ ଶେଷୋକ୍ତ ମହାତ୍ମାମାନେ ଦେଶୀୟ ବାଣିଜ୍ୟରେ ଲିପ୍ତ ଥିଲେ । ହେଷ୍ଟିଂସ୍ ଅନେକ ଚେଷ୍ଟାକଲେ ମଧ୍ୟ ବହୁତ ଅନିଷ୍ଟକର କର୍ମଚାରୀମାନଙ୍କର ବାଣିଜ୍ୟ ରହିତ କରି ପାରିଲେ ନାହିଁ । ସେ ଯେ ନିତାନ୍ତ ଅଯୋଗ୍ୟ ଥିଲେ ଏମନ୍ତ ନୁହେଁ, ତାହାଙ୍କ ସମୟରେ ଶାସନପ୍ରଣାଳୀ ଅତ୍ୟନ୍ତ ଗୋଲଯୋଗ ଥିଲା, ତେଣୁ ସଦସ୍ୟମାନଙ୍କର ଭ୍ରୂକୁଟୀ ଦେଖି ସେ ଭୀତ ହେଲେ । ଓ ନବାବଙ୍କ ତୁଷ୍ଟିପାଇଁ ତାହାଙ୍କ ନିକଟକୁ ଯାଇ କହିଲେ, ଇଂରେଜ କର୍ମଚାରୀମାନେ ପଣ୍ୟଦ୍ରବ୍ୟ ଉପରେ ଆପାତତଃ ଶତକଡ଼ା ୯ ଟଙ୍କା ଲେଖାଏଁ ଶୁଳ୍କ ଦେବେ; ମାତ୍ର ଯହିଁରେ ଶୀଘ୍ର ସେମାନଙ୍କର ବାଣିଜ୍ୟ ରହିତ ହୁଏ ସେ ବିଷୟରେ ବିଶେଷ ଚେଷ୍ଟା କରନ୍ତୁ, ମଧ୍ୟ ଆମ୍ଭେ କଲିକତାକୁ ଯାଇଁ କୌନସିଲରେ ଏ ବିଷୟର ମୀମାଂସା କରିବୁଁ । ଏହିକଥା କହି ବାନସିଟାର୍ଟ ସାହେବ କଲିକତାକୁ ପ୍ରତ୍ୟାଗମନ କଲେ; କିନ୍ତୁ ନବାବଙ୍କର କାଳବିଳମ୍ବ ସହିଲା ନାହିଁ । ବାନସିଟାର୍ଟ ସାହେବଙ୍କ ଯାତ୍ରାର ଅନତିକାଳବିଳମ୍ବରେ ଇଂରେଜ ବଣିକମାନଙ୍କ ନିକଟରୁ ଶତକଡ଼ା ୯ ଟଙ୍କା ହିସାବେ ଶୁଳ୍କ ଆଦାୟ କରିବା ପାଇଁ କର୍ମଚାରୀମାନଙ୍କୁ ଲେଖି ନେପାଳ ଦେଶକୁ ଯୁଦ୍ଧ ଯାତ୍ରା କଲେ । ସେହି ହୁକୁମ ଅନୁସାରେ ନବାବଙ୍କ କର୍ମଚାରୀମାନେ ଇଂରେଜ ବଣିକମାନଙ୍କୁ ଶୁଳ୍କ ମାଗିବାକୁ ଲାଗିଲେ; ମାତ୍ର ଇଂରେଜ ବଣିକମାନେ ବାନସିଟାର୍ଟ ସାହେବକୃତ ବନ୍ଦୋବସ୍ତ ଶୁଣି ନ ଥିଲେ;

ସୁତରାଂ ସେମାନେ ଶୁଳ୍କ ପ୍ରାର୍ଥିମାନଙ୍କୁ ପୂର୍ବବତ୍ ପ୍ରହାର ଓ କୟେଦ କରିବାକୁ ଲାଗିଲେ । ଏଣେ ବାନସିଟାର୍ଟ ସାହେବ କଲିକତାରେ ଉପସ୍ଥିତ ହେବାରୁ ମାଶୁଲ ବିଷୟ ବିଚାର ପାଇଁ କୌନସିଲ ବସିଲା । ଦ୍ୱାଦଶଜଣ ସଭ୍ୟ ଉପସ୍ଥିତ ହେଲେ ତନ୍ମଧ୍ୟେ ବାନସିଟାର୍ଟ ଓ ହେଷ୍ଟିଂସ୍ ସାହେବ ଭିନ୍ନ ସଦସ୍ୟମାନେ କହିଲେ, କୋ-ମ୍ପାନୀଙ୍କର କର୍ମଚାରୀମାନଙ୍କର ବାଣିଜ୍ୟ କରିବାର ସମ୍ପୂର୍ଣ୍ଣ ଅଧିକାର ଅଛି; ତେଣୁ ସେମାନେ ବିନାଶୁଲ୍କରେ ବାଣିଜ୍ୟ କରିବେ କେବଳ ଲବଣ ଉପରେ ଶତକରା ଅଢ଼ାଇଟଙ୍କା ହିସାବ ମାସୁଲ ଦେବେ, ତାହାମଧ୍ୟ ନବାବ ଦାବି କରିପାରନ୍ତି ନାହିଁ । କେବଳ ଇଂରେଜମାନେ ସ୍ୱଭାବସିଦ୍ଧ ବଦାନ୍ୟତା ପ୍ରକାଶ ପୂର୍ବକ ଏହା ଦାନ କରିବେ ।

ନବାବ ନେପାଳରୁ ବାହୁଡ଼ିବା ଉତ୍ତାରେ କୌନସିଲର ମତ ଶୁଣି ଅତ୍ୟନ୍ତ ରାଗାନ୍ୱିତ ହେଲେ ଓ କୌନସିଲରେ ଥରେ ବିଫଳ ପ୍ରାର୍ଥନା କଲେ । ଅବଶେଷେ ଅତ୍ୟନ୍ତ ବିରକ୍ତ ହୋଇ ମାଶୁଲ ଆଦାୟ ପ୍ରଥା ବଙ୍ଗଦେଶରୁ ଏକା-ବେଳକେ ଉଠାଇ ଦେଲେ । ତହିଁ ଇଂରେଜ ବଣିକମାନଙ୍କର ବିପୁଳ ଲାଭର ଦ୍ୱାର ଏକପ୍ରକାର ରହିତହୋଇ ଆସିଲା; କାରଣ ଦେଶୀ ବଣିକମାନେ ମାଶୁଲ ନ ଦେବାରୁ ସେମାନେ ସ୍ୱତା ଇଂରେଜମାନଙ୍କ ସମାନ ଦରରେ ବିକ୍ରୟ କରିବାକୁ ସମର୍ଥ ହେଲେ, ସୁତରାଂ ଇଂରେଜ ବଣିକମାନଙ୍କର ଏକଚାଟିଆ ବାଣିଜ୍ୟ ଏକପ୍ରକାର ରହିତ ହୋଇ ଆସିଲା । ଇଂରେଜ ମହାପୁରୁଷମାନେ ଏବିଷୟ ଶୁଣି ଅତ୍ୟନ୍ତ ରାଗାନ୍ୱିତ ହେଲେ ଓ ଦେଶୀୟ ବଣିକମାନଙ୍କଠାରୁ ମାଶୁଲ ଆଦାୟ କରିବା କାରଣ ଅନୁରୋଧକରି ପଠାଇଲେ । ଆମିୟଟ ଓ ହେ ସାହେବ ନବା-ବଙ୍କ ସଭାରେ ଉପସ୍ଥିତ ହୋଇ ସେହି ଅନୁରୋଧ ଜଣାଇଲେ; କିନ୍ତୁ ନବାବ ତହିଁରେ କର୍ଣ୍ଣପାତ ସୁଦ୍ଧା କଲେ ନାହିଁ । ସୁତରାଂ ଯୁଦ୍ଧ ଅନିବାର୍ଯ୍ୟ ହୋଇଆସିଲା ।

୧୭୬୧ ସାଲ ମେମାସ ତା ୧୫ ରିଖରେ ମୁଙ୍ଗେରରେ କେତେକଖଣ୍ଡ ଅସ୍ତ୍ର ପୂରିତନୌକା ଉପସ୍ଥିତ ହେଲା ସେହି ସକଳ ନୌକା କଲିକତାରୁ ପାଟନା ଯାଉଥିଲା, ନବାବ ସେ ସକଳ ନୌକା ଅଟକ କଲେ । ଆମିଅଟ ଓ ହେସାହେବ ସେତେବେ-ଳେ ମୁଙ୍ଗେରରେ ଉପସ୍ଥିତ ଥିଲେ । ସେମାନେ ସେ ସକଳ ନୌକା ମୋଚନ ପାଇଁ ବାରମ୍ବାର ପ୍ରାର୍ଥନା କଲେ ମାତ୍ର ତାହା ଅରଣ୍ୟରେ ରୋଦନପରି ହେଲା, ନବାବ କହିଲେ ପାଟନାରେ ଥିବା ଇଂରେଜ ସେନାମାନେ ଚାଲିଯାଉନ୍ତୁ ଓ ତତ୍ରତ୍ୟ ସବାଧ୍ୟକ୍ଷ ଦୁରନ୍ତ ଇଲିସ୍‌ସାହେବଙ୍କ ପଦରେ ହେଷ୍ଟିଂସ୍‌ସାହେବ ନିଯୁକ୍ତ ହେଉନ୍ତୁ, ତାହା ହେଲେ ଏହି ସକଳ ନୌକା ଛାଡ଼ିଦେବି, ନଚେତ୍ ଛାଡ଼ିଦେବି ନାହିଁ । ଏ ଉତ୍ତାରେ ଇଂରେଜ ଦୂତମାନେ ବିଦାୟ ପ୍ରାର୍ଥନାକଲେ । ନବାବ ଆମିୟଟ-

ସାହେବଙ୍କୁ ଯିବାପାଇଁ ଅନୁମତି ପ୍ରଦାନକଲେ ଓ କଲିକତାରେ ଯେ ନବାବକର୍ମ-ଗୃହମାନେ କୟେଦ ଥିଲେ, ସେମାନଙ୍କର ପ୍ରତିଭୂ ସ୍ୱରୂପ ହେସାହେବଙ୍କୁ କୟେଦ ରଖିଲେ । ଏଣେ ମହାମତି ଇଲିସ୍‌ସାହେବ ଅତର୍କିତରୂପେ ପାଟନା ଆକ୍ରମଣ ଓ ଅଧିକାର କରନ୍ତି, କିନ୍ତୁ ଅଳ୍ପକାଳ ଉତ୍ତାରେ ନବାବଙ୍କର ବହୁଳ ସେନା ଯାଇ ତାହାଙ୍କୁ ଅବରୁଦ୍ଧକରି ମୁଙ୍ଗେରକୁ ପ୍ରେରଣ କଲେ । ସେହିସମୟରେ କାଶିମ-ବଜାରର ଇଂରେଜକର୍ମଗୃହମାନେ ମଧ୍ୟ ବନ୍ଦୀଦଶାରେ ମୁଙ୍ଗେରରେ ଉପସ୍ଥିତ ହେଲେ । ନବାବ, ଆମିୟଟ୍‌ସାହେବଙ୍କୁ ଅଟକାଇବା ପାଇଁ ଆଜ୍ଞା ପଠାଇଲେ । ତେତେବେଳେ ଆମିୟଟ୍‌ସାହେବ ମୁରଶିଦାବାଦ ପର୍ଯ୍ୟନ୍ତ ଯାଇଥିଲେ, ସେ ସ୍ଥାନରେ ତଦୁପଲକ୍ଷେ ଦଙ୍ଗା ଉପସ୍ଥିତ ହେଲା, ସେହି ଦଙ୍ଗାରେ ଆମିୟଟ୍ ପଞ୍ଚତ୍ୱ ପ୍ରାପ୍ତହେଲେ ।

ମୀରକାଶିମଙ୍କ ସହିତ ଯୁଦ୍ଧ ଉପସ୍ଥିତ ହେବାରୁ କଲିକତା କୌନସିଲର ସଦସ୍ୟମାନେ ମୀରଜାଫରଙ୍କୁ ସୁବାଦାରୀ ପଦରେ ନିଯୁକ୍ତ କରିବାକୁ ପ୍ରତିଜ୍ଞା କଲେ । ଅନ୍ଧକୂଳ ସ୍ଥବିର ମଧ୍ୟ ତହିଁରେ ସମ୍ମତ ହେଲେ । ଜୁଲାଇମାସ ୭ ତାରିଖରେ ପୁନରଭିଷେକ ସମ୍ପନ୍ନ ହେଲା ।

କାଶୀମ ଇଂରେଜ କୋମ୍ପାନୀଙ୍କୁ ଯେସମସ୍ତ ଅଧିକାର ଓ କ୍ଷମତା ଦେଇଥିଲେ, ସେସମସ୍ତ ସ୍ଥିର ରହିଲା ଏବଂ ପ୍ରତ୍ୟେକ ଇଂରେଜଙ୍କର ନିଜ ନିଜ ହିସାବର କ୍ଷତିର ଯେ ସମଷ୍ଟି ହେବ, ସେ ଟଙ୍କା ମଧ୍ୟ ନବାବ ଧରିଦେବା ଲାଗି ସ୍ୱୀକୃତ ହେଲେ । ନିଜ ପ୍ରଜାମାନଙ୍କ ନିକଟରୁ ଶୁଳ୍କ ଗ୍ରହଣ ଓ ଇଂରେଜମାନଙ୍କୁ ବିନାଶୁଳ୍କରେ ବାଣିଜ୍ୟ କରିବାକୁ ଦେବେବୋଲି ପ୍ରତିଶ୍ରୁତ ହେଲେ । ଆହୁରି ମଧ୍ୟ ସ୍ୱୀକୃତ ହେଲେ ୧୨୦୦୦ ଅଶ୍ୱ ଓ ୧୨୦୦୦ ପଦାତିକସେନା ରଖିବାରେ ଇଂରେଜମାନଙ୍କର ଯେ ବ୍ୟୟ ହେବ, ତତ୍ସବୁ ନିଜ ତହବିଲରୁ ଦେବେ ।

ଏ ଉତ୍ତାରେ ଇଂରେଜ ସେନା ରଣକ୍ଷେତ୍ରରେ ପ୍ରବିଷ୍ଟହେଲେ, ଜୁଲାଇ-ମାସ ୧୯ ତାରିଖରେ କାଟୋୟାରେ ଯୁଦ୍ଧ ଉପସ୍ଥିତ ହେଲା; ସେ ସ୍ଥାନରେ ଇଂରେଜ ସେନାମାନେ ଜୟଲାଭ କଲେ । ସୁତିଝିଲଠାରେ ନବାବଙ୍କର ଯେ ସୈନ୍ୟ ଉପସ୍ଥିତ ଥିଲେ, ୧୭ ତାରିଖରେ ସେମାନଙ୍କୁ ପରାସ୍ତ କରି ଇଂରେଜ-ସେନା ମୁରଶିଦାବାଦ ଅଧିକାର କଲେ । ଏ ଉତ୍ତାରେ ଅଗଷ୍ଟମାସ ୨ ତାରିଖରେ ସୁତିର ସନ୍ନିହିତ ଘେରିଆନାମକ ସ୍ଥାନରେ ଯୁଦ୍ଧ ଉପସ୍ଥିତ ହେଲା; ସେ ସ୍ଥାନରେ ମଧ୍ୟ ନବାବଙ୍କ ସେନାମାନେ ପରାସ୍ତ ହେଲେ । ଅତଃପର ଇଂରେଜ ସେନାମାନେ ମୁଙ୍ଗେରଅଭିମୁଖେ ଯାତ୍ରାକଲେ, କାଶୀମ ତାହା ଶୁଣି ପାଟନା ପଳାଇଗଲେ । ଇତଃ-ପୂର୍ବେ ସେ ଅତ୍ୟନ୍ତ ବିରକ୍ତହୋଇ ରାଜା ରାମନାରାୟଣ, ରାଜା ରାଜବଲ୍ଲଭ ଓ

ସେଠାବଂଶୀୟ ୨ ଜଣ ପ୍ରଧାନ ବଣିକଙ୍କୁ ନିଷ୍ଠୁରରୂପେ ବଧ କରଥିଲେ; ସମ୍ପ୍ରତି ପାଟନାରେ ଉପସ୍ଥିତହୋଇ ତତ୍ରତ୍ୟ ଇଂରେଜ ବନ୍ଦୀମାନଙ୍କୁ ବଧ କରିବାକାରଣ ସେନାପତିମାନଙ୍କୁ ଆଜ୍ଞା ପ୍ରଦାନକଲେ; ମାତ୍ର ସେନାପତିମାନେ ମନସ୍ୱିତା ପ୍ରକାଶକର କହିଲେ "ଆମ୍ଭେମାନେ କିଛି ଘାତକ ନୋହୁଁ ଯେ ନିରସ୍ତ୍ର ବନ୍ଦୀମାନଙ୍କୁ ବଧ କରିବୁଁ ସେମାନଙ୍କ ହସ୍ତରେ ଅସ୍ତ୍ର ପ୍ରଦାନ କରନ୍ତୁ ଯୁଦ୍ଧ କରିବାକୁ ପ୍ରସ୍ତୁତ ଅଛୁଁ" ମୁସଲମାନମାନେ ଯେଉଁ ଘୃଣିତକାର୍ଯ୍ୟରେ ପ୍ରବୃତ୍ତ ହେଲେ ନାହିଁ, ଶମରୁନାମକ ଜଣେ ଖ୍ରୀଷ୍ଟଧର୍ମାବଲମ୍ବୀ ଅମ୍ଳାନମୁଖେ ସେହି ଅତିଗର୍ହିତ କାର୍ଯ୍ୟର ଭାର ଗ୍ରହଣ-କଲା । ସେହି ପାପିଷ୍ଠ କେତେକଜଣ ସେନାସହିତ କାରାଗାରରେ ପ୍ରବିଷ୍ଟ ହୋଇ ଗୁଳି କରି ଡାକ୍ତର ଫୁଲର୍ଟନଙ୍କୁ ଛାଡି ସମସ୍ତ ଇଂରେଜବନ୍ଦୀଙ୍କୁ ବଧକଲା । ସେ ସ୍ଥାନରେ ୫୭ ଜଣ ଭଦ୍ରଇଂରେଜ ଓ ଦେଢ଼ଶତ ଗୋରା ଅବରୁଦ୍ଧ ଥିଲେ ।

ମୁଙ୍ଗେରରୁ ପାଟନା ପଳାୟନ ସମୟରେ ରେବାନଦୀ ତଟରେ ଗୋଟିଏ ଭୟାନକ ଗୋଲଯୋଗ ଉପସ୍ଥିତ ହେଲା । ସମସ୍ତେ ନଦୀପାର ହୋଇ ପଳାଉ-ଅଛନ୍ତି, କେତେକଜଣ ଲୋକ ଗୋଟିଏ ଶବ କବର ସ୍ଥାନକୁ ଘେନ ଯାଉଅଛନ୍ତି; ପଚାରିବାରୁ ଜଣାଗଲା, ତାହା ସେନାପତି ଗର୍ଗିନଖାଁଙ୍କର ମୃତଦେହ । କେତେଜଣ ମୋଗଲସେନା ଉପରଓଳ ବେତନ ମାଗିବାପାଇଁ ଯାଇଥିଲେ, ସେ ବେତନ ନ ଦେବାରୁ ସେମାନେ ତାହାଙ୍କୁ ବଧକଲେ; ମାତ୍ର ଏକଥା ସତ୍ୟ ନୁହଇ; କାରଣ କଛିଦିନ ପୂର୍ବରେ ସେମାନଙ୍କର ବେତନ ନିଷ୍ପତ୍ତିକର ଦିଆ ଯାଇଥିଲା; ତାହାର କିଛି ପ୍ରାପ୍ୟ ଥିଲା ନାହିଁ । ବୋଧହୁଏ ମୀରକାଶିମ ଛଳକର ସେନାପତିଙ୍କୁ ବଧ କରିବା ନିମନ୍ତେ ସେହି ମୋଗଲମାନଙ୍କୁ ପଠାଇଥିଲେ । ଖୋଜାପିଟ୍ରସ ନାମରେ ଗର୍ଗିନଖାଁଙ୍କର ଭାଇ କଲିକତାରେ ବାସ କରନ୍ତି, ବାନସିଟାର୍ଟ ଓ ହେଷ୍ଟିଂସ୍ ସାହେବଙ୍କ ସହିତ ତାହାଙ୍କର ଅତି ପ୍ରଣୟ ଥିଲା । ପିଟ୍ରସ ଏହି ଅନୁରୋଧକର ଗର୍ଗିନ୍‌ଖାଁଙ୍କୁ ପତ୍ର ଲେଖିଥିଲେ ଯେ "ଆପଣ ନବାବଙ୍କ କର୍ମ ପରିତ୍ୟାଗ କରନ୍ତୁ ଓ ସୁଯୋଗ ପାଇଲେ ନବାବଙ୍କୁ ଧରାଇଦେବାକୁ ଚେଷ୍ଟା କରିବେ ।" ଏକଥା ଯେ ନିତାନ୍ତ ଅଳୀକ ଏମନ୍ତ ବୋଧହୁଏ ନାହିଁ । କାରଣ ମୀରକାଶିମଙ୍କର ସୈନ୍ୟ ଯେପରି ସୁଶିକ୍ଷିତ ହୋଇଥିଲେ, ଇତଃପୂର୍ବେ ବଙ୍ଗଦେଶରେ କୌଣସି ରାଜାଙ୍କର ସୈନ୍ୟ ଏପରି ଶିକ୍ଷିତ ହୋଇ ନ ଥିଲେ ତଥାପି ସେମାନେ ବାରମ୍ବାର ପରାସ୍ତ ହୋଇଥିଲେ; ଏଥିରୁ ଜଣାଯାଏ ଗର୍ଗିନଖାଁଙ୍କ ବିଶ୍ୱାସଘାତକତା କେବଳ ତାହାର ମୂଳକାରଣ । ସେ ଯାହା ହେଉ ନବାବଙ୍କ ପ୍ରଧାନ ଚର ସେନାପତି ବିଶ୍ୱାସଘାତୀ ହୋଇଅଛନ୍ତି ବୋଲି ରଜନୀ ଦୁଇପ୍ରହର ସମୟରେ ଆପଣା ପ୍ରଭୁଙ୍କୁ ଜଣାଇଲା । ତାହାର ପରଦିବସ ଏହି ଘଟନା ।

ନବମ୍ବରମାସ ୬ ତାରିଖରେ ପାଟନା ଇଂରେଜମାନଙ୍କ ହସ୍ତଗତ ହେଲା । କାଶିମ ପଳାୟନ କରି ଅଯୋଧ୍ୟାର ସୁବାଦର ସୁଯାଉଦ୍ଦୌଲାଙ୍କର ଶରଣ ଗ୍ରହଣ କଲେ । ସୁଯା ମଧ୍ୟ କାଶିମଙ୍କର ରାଜ୍ୟ ପୁନଃପ୍ରାପ୍ତି ବିଷୟରେ ସାହାଯ୍ୟ କରିବା-କାରଣ ପ୍ରତିଶ୍ରୁତ ହେଲେ । ଏଣେ ଇଂରେଜମାନଙ୍କର ତଦାନୀନ୍ତନ ସେନାପତି ମେଜର କର୍ଣ୍ଣାକ ଭାବୀ ଯୁଦ୍ଧ ପ୍ରତୀକ୍ଷାକରି ପାଟନାରେ ଅବସ୍ଥାନ କରିବାକୁ ଲାଗିଲେ । ୧୭୬୪ ସାଲ ମେମାସର ତ୍ରୟୋଦଶ ଦିବସରେ କାଶିମ ଓ ସୁଯାଉଦ୍ଦୌଲା ଆସି ତାହାଙ୍କୁ ଆକ୍ରମଣ ଓ ସମ୍ପୂର୍ଣ୍ଣରୂପେ ପରାସ୍ତ ହୋଇ ପଳାୟନ କଲେ ।

ଅତଃପର ହେକ୍ଟରମନରୋ ନାମକ ଜଣେ ଦକ୍ଷଇଂରେଜ ସେନାପତି ପଦରେ ନିଯୁକ୍ତ ହୋଇ ପାଟଣା ଯାତ୍ରାକଲେ । ସେ ସ୍ଥାନରେ ସେ କର୍ଣ୍ଣାକଙ୍କ ହସ୍ତରୁ ସୈନ୍ୟ ଗ୍ରହଣକରି ସେପ୍ଟମ୍ବର ମାସରେ ସୁଯାଙ୍କ ବିରୁଦ୍ଧେ ଅଯୋଧ୍ୟାଭିମୁଖେ ଯାତ୍ରାକଲେ । ଶୋଣନଦ ପାରହେବା ସମୟରେ ସୁଯାଉଦ୍ଦୌଲାଙ୍କ ସୈନ୍ୟ ସହିତ ଭେଟ ହେବାରୁ ଗୋଟିଏ କ୍ଷୁଦ୍ରଯୁଦ୍ଧ ହେଲା । ସେହି ଯୁଦ୍ଧରେ ନବାବଙ୍କର ସୈନ୍ୟମାନେ ପରାସ୍ତ ହେଲେ । ଅକ୍ଟୋବର ମାସ ତା ୨୨ ରିଖରେ ଇଂରେଜମାନେ ବକ୍ସାର ନଗ-ରରେ ଉତ୍ତୀର୍ଣ୍ଣ ହେଲେ । ସେ ସ୍ଥାନରେ ସୁଯାଙ୍କ ଶିବିରମଧ୍ୟ ସନ୍ନିବେଶିତ ଥିଲା । ପରଦିନ ଦିବା ୯ ଘଣ୍ଟା ସମୟରେ ଯୁଦ୍ଧ ଆରମ୍ଭ ହେଲା । ୧୨ ଟା ସମୟରେ ସୁଯାଉଦ୍ଦୌଲାଙ୍କ ସୈନ୍ୟମାନେ ପରାସ୍ତହୋଇ ପଳାୟନ କଲେ । ବକସାର ଯୁଦ୍ଧରେ ଇଂରେଜମାନଙ୍କର ପ୍ରତାପ ଅତୀବବର୍ଦ୍ଧିତ ହୁଏ । ଅଯୋଧ୍ୟାପତିଙ୍କର ଅଧିକାର ବିଲୁପ୍ତପ୍ରାୟ ହୋଇ ଆସିଲା ଏବଂ ବିନ୍ଧ୍ୟପର୍ବତ ଉଦୀଚ୍ୟ ପ୍ରଦେଶରେ ଇଂରେଜମାନେ ଅଦ୍ୱିତୀୟ ପ୍ରଭୁତ୍ୱଶାଳୀ ହୋଇ ଉଠିଲେ ।

ସମ୍ରାଟ୍ ସାହଆଲମ ସେ ସ୍ଥାନରେ ଉପସ୍ଥିତ ଥିଲେ । ଯୁଦ୍ଧର ପରଦିବସ ସେ ମନରୋସାହେବଙ୍କୁ ଅଭିନନ୍ଦନ ଓ ଅନୁଗ୍ରହ ପ୍ରାର୍ଥନାକରି ପଠାଇଲେ ଓ ସାହେବଙ୍କ ଶିବିରରେ ମଧ୍ୟ ଉପସ୍ଥିତ ହେଲେ । ମନରୋ ତାହାଙ୍କୁ ଆଶ୍ୱାସ ପ୍ରଦାନ କରିବାରୁ ସେ ଆପଣାକୁ କୃତାର୍ଥମନ୍ୟ ଜ୍ଞାନ କରିଥିଲେ । ଇଂରେଜ ସେନାପତି ତହୁଁ ବାରାଣସୀ ଯାତ୍ରା କଲେ । ସୁଯାଉଦ୍ଦୌଲାଙ୍କ ମନ୍ତ୍ରୀ ତାହାଙ୍କଠାରେ ଉପସ୍ଥିତ ହୋଇ ସନ୍ଧିପ୍ରାର୍ଥନା କଲେ । ଇଂରେଜ ସେନାପତି କହିଲେ ଯେବେ କାଶିମ ଓ ଶମରୁଙ୍କୁ ଆମ୍ଭ ହସ୍ତରେ ସମର୍ପଣ କରିବେ ତେବେ ଆମ୍ଭେମାନେ ସନ୍ଧି କରିବାକୁ ସମ୍ମତ ଅଛୁଁ । ଶରଣାଗତ ଲୋକକୁ ଶତ୍ରୁ ହସ୍ତରେ ସମର୍ପଣ କରିବା ଗର୍ହିତକର୍ମ୍ମ ବିବେଚନା କରି କାଶିମ ବିଷୟରେ ଅସମ୍ମତ ହେଲେ ଏବଂ ଶମରୁ ବିଷୟରେ କହିଲେ, ଆମ୍ଭେ ତାହାଙ୍କୁ ଭୋଜନର ନିମନ୍ତ୍ରଣ କରି କୌଣସି ପ୍ରକାରେ ତାହାଙ୍କର ପ୍ରାଣ

ସହାର କରନ୍ତୁ । ଏପ୍ରସ୍ତାବରେ ଇଂରେଜମାନଙ୍କର ମତ ହେଲା ନାହିଁ । ସୁତରାଂ ସନ୍ଧିପ୍ରସଙ୍ଗ ବିଫଳ ହେଲା ।

ଅତଃପର ମନରୋ ସୈନ୍ୟ ପଠାଇ ପୁନାର ଦୁର୍ଗ ଅକ୍ରମଣ କଲେ । ଏହି ସମୟରେ ଅର୍ଥାତ୍ ୧୭୬୫ ସାଲ ଜାନୁଏରୀମାସରେ ବଙ୍ଗଳାର ସୁବାଦାର ମୀର୍-ଜାଫର ପରଲୋକ ଯାତ୍ରା କରନ୍ତି ।

କୌନସିଲର ସଦସ୍ୟମାନେ ଜାଫରଙ୍କର ବିଂଶତିବର୍ଷବୟସ୍କ ୨ୟ ପୁତ୍ର ନଜାମଉଦ୍ଦୌଲାଙ୍କୁ ସୁବାଦାରୀ ସିଂହାସନରେ ଅଭିଷିକ୍ତ କଲେ । ନଜାମଉଦ୍ଦୌଲାଙ୍କ ସହିତ ଇଂରେଜମାନଙ୍କର ଏହିପରି ବନ୍ଦୋବସ୍ତ ହେଲା ଯେ ବର୍ଷକୁ ଛଅଲକ୍ଷ ଟଙ୍କା ବେତନରେ ଜଣେ ନାୟେବ ସୁବାଦାରଙ୍କ ସଙ୍ଗରେ ନିଯୁକ୍ତ ହେବେ । ( ସେହି ପଦରେ ମହମ୍ମଦରେଜାଖାଁ ନିଯୁକ୍ତ ହେଲେ । ହୁଗଲୀର ଫୌଜଦାର ନନ୍ଦକୁମାର ରାୟ ଉକ୍ତପଦ ପାଇଁ ପ୍ରାର୍ଥୀ ହୋଇଥିଲେ; ମାତ୍ର ଅସଚ୍ଚରିତ୍ରତା ନିବନ୍ଧନ ବଞ୍ଚିତ ହୁଅନ୍ତି ) । ପୂର୍ବ ସୁବାଦାରମାନେ ଇଷ୍ଟଇଣ୍ଡିଆ କୋମ୍ପାନୀଙ୍କୁ ଯେ ଯେ କ୍ଷମତା ଦେଇ ଯାଇଅଛନ୍ତି ତାହା ବଜାୟ ରହିବ ।

ଏହିରୂପେ ୧୭୬୦ ସାଲ ଫେବୃୟାରିମାସ କ୍ଲାଇବଙ୍କର ଇଂଲଣ୍ଡଯାତ୍ରା ଦିନଠାରୁ ୧୭୬୫ ସାଲ ଫେବୃୟାରିମାସ ନଜାମଉଦ୍ଦୌଲାଙ୍କ ସୁବାଦାରୀ ପ୍ରାପ୍ତିପର୍ଯ୍ୟନ୍ତେ ୫ ବରଷକାଳ ବଙ୍ଗଳାରେ ଇଂରେଜମାନଙ୍କର ପ୍ରଭୁତା କ୍ରମଶଃ ବଦ୍ଧମୂଳ ହୋଇ ଆସୁଥିଲା; କିନ୍ତୁ ଏହିସମୟରେ ଇଂଲଣ୍ଡର କୋର୍ଟ ଅବ୍ ଡିରେକ୍ଟରମାନେ ଚତୁର୍ଦ୍ଦିଗରେ ବିପଦ ସାଗର ଦେଖୁଥିଲେ । ପାଟନାର ହତ୍ୟାକାଣ୍ଡ, ସୁବାଦାରୀ ପରିବର୍ତ୍ତନ ଓ ବଙ୍ଗଳାର ବାଣିଜ୍ୟଘଟିତ ଅତ୍ୟାଚାର ଏହି ସକଳ ସମ୍ବାଦ ସେମାନଙ୍କୁ ଅତିବ ବ୍ୟାକୁଳିତ କରିଥିଲା । ବଙ୍ଗଳାଦେଶରୁ ଇଷ୍ଟଇଣ୍ଡିଆ କୋମ୍ପାନୀର ପ୍ରଭୁତା ଲୋପ ହେବାର ସମ୍ଭାବନା, ଏହି ସଂସ୍କାର ସେମାନଙ୍କର ମନରେ ଉଦିତ ହୋଇଥିଲା । ସେମାନେ ଏକବାକ୍ୟ ହୋଇ ସ୍ଥିରକଲେ ଯେ କ୍ଲାଇବଙ୍କ ବାହୁବଳରେ ବଙ୍ଗଳାର ଅଧିପତ୍ୟ ଲାଭ ହୋଇଅଛି, ସେହି କ୍ଲାଇବଭିନ୍ନ ଆଉ କେହି ତାହା ରକ୍ଷା କରି ପାରିବ ନାହିଁ । ଅତଏବ କ୍ଲାଇବଙ୍କୁ ଭାରତବର୍ଷକୁ ଆସିବା ପାଇଁ ଅନୁରୋଧ କରିବାକୁ ଲାଗିଲେ ।

— ୦୦✻୦୦ —

## ଦଶମ ଅଧ୍ୟାୟ ।

କ୍ଲାଇବ ଇଂଲଣ୍ଡରେ ଉପସ୍ଥିତ ହୋଇ ଲର୍ଡ ଉପାଧି ସହିତ ବହୁତ ସମ୍ମାନ ଲାଭ କରିଥିଲେ କିନ୍ତୁ ଡାଇରେକ୍ଟରସଭାର ଅଧ୍ୟକ୍ଷ ସଲିବାନ୍ "କ୍ଲାଇବ ଭାରତବର୍ଷରେ ଅନେକଥର ଡିରେକ୍ଟର ଆଜ୍ଞା ଲଙ୍ଘନ କରିଅଛନ୍ତି" ଏହି ଦୋଷ ଆରୋପ

କର ତାହାଙ୍କର ଜାୟଗୀର ବାଜେୟାପ୍ତ କଲେ । କ୍ଲାଇବ ଅଦାଲତରେ ଡିରେ-କ୍ଟର ନାମରେ ନାଲିଶ କଲେ । ସେହି ମୋକଦ୍ଦମା ଚାଲୁଅଛି ଏମନ୍ତ ସମୟରେ ଡିରେକ୍ଟର ସମାଜ ତାହାଙ୍କୁ ଭାରତବର୍ଷକୁ ପଠାଇବାପାଇଁ ପୁନର୍ବାର ଡାକଲେ ତହିଁରେ କ୍ଲାଇବ ଉତ୍ତର ଦେଲେ " ଆମ୍ଭର ଶତ୍ରୁ ସଲିବାନ୍ ଯେତେଦିନ ପଦସ୍ଥ ଥିବେ ଓ ଆମ୍ଭ ଜାୟଗୀର ପୁନର୍ବାର ନ ପାଇଅଛୁଁ ସେତେଦିନ ଆମ୍ଭେ ଭାରତ-ବର୍ଷକୁ ଯାଇ ନ ପାରୁଁ, ଡାଇରେକ୍ଟର ସମାଜର ଅଧ୍ୟକ୍ଷମାନେ ଏକବର୍ଷ ପାଇଁ କ୍ଷ୍ୟକ୍ତ ହୁଅନ୍ତି ସେତେବେଳେ ସଲିବାନଙ୍କର କାଳ ସମାପ୍ତ ହୋଇଥିଲା; ତତ୍ପ-ଦରେ କ୍ଲାଇବଙ୍କ ଅତି ଅନ୍ତରଙ୍ଗ ରୌସସାହେବ ମନୋନୀତ ହେଲେ । ୧୦ ବର୍ଷ ପାଇଁ ତାହାଙ୍କର ଜାୟଗୀର ବାହାଲ ରହିଲା ।

୧୭୬୫ ସାଲ ମେ ମାସ ୩ ତାରିଖରେ ଲର୍ଡକ୍ଲାଇବ କଲିକତାରେ ଉପ-ସ୍ଥିତ ହେଲେ । ଦୈବାତ୍ ସେହି ଦିନରେ ସୁଯାତ୍ରଦୌଲା କାର୍ଣ୍ଣାକଦ୍ବାସ ପରାସ୍ତ ହୋଇ ରୋହିଲଖଣ୍ଡକୁ ପଳାୟନ କରନ୍ତି ।

କ୍ଲାଇବ ବଙ୍ଗଦେଶରେ ଉପସ୍ଥିତ ହୋଇ ଦେଖିଲେ ଡିରେକ୍ଟର ସମାଜ ଯେ ସକଳ ଆପଦ ମନରେ କରି ବ୍ୟାକୁଳିତ ହେଉଥିଲେ ସେ ସକଳ ଆପଦର ଗନ୍ଧମାତ୍ର ବଙ୍ଗଦେଶରେ ଥିଲା ନାହିଁ । ଫଳେ ଶୁକ୍ଳପକ୍ଷେ ଚନ୍ଦ୍ରମା ପରି ଭାରତରେ ଇଂରେଜମାନଙ୍କର ସୌଭାଗ୍ୟ ଦିନଦିନ ବୃଦ୍ଧି ପାଉଥିଲା ।

ଇତଃପୂର୍ବେ ଡିରେକ୍ଟର ସମାଜ ଆଦେଶ କରିଥିଲେ, କୋମ୍ପାନୀଙ୍କର କର୍ମ-ଚାରିମାନେ ଏପରି ଗୋଟିଏ ପ୍ରତିଜ୍ଞା ପତ୍ରରେ ସ୍ୱାକ୍ଷର କରିବେ ଯେ, ସେମାନେ ଦେଶୀୟ କୌଣସିଲୋକ ନିକଟରୁ ସହସ୍ରକରୁ ଅଧିକ ଟଙ୍କା ଉପଢୌକନ ଗ୍ରହଣ କରିବେ ନାହିଁ । ସେ ଆଦେଶ ଅଦ୍ୟାବଧି କାର୍ଯ୍ୟରେ ପରିଣତ ହୋଇ ନ ଥିଲା । କ୍ଲା-ଇବ ପ୍ରଥମରେ ସେହି ଆଦେଶ ବାହାର କଲେ ଓ ଜିଦ କରି କୌନସିଲର ସଦସ୍ୟ-ମାନଙ୍କଠାରୁ ପ୍ରତିଜ୍ଞା ପତ୍ରରେ ସ୍ୱାକ୍ଷର କରାଇ ନେଲେ । ଏଥିରେ କୌନସିଲର ସଦସ୍ୟମାନଙ୍କ ମନରେ ଦାରୁଣ ଅସନ୍ତୋଷ ଜନ୍ମିଲା । କେବଳ ଏଥିରୁ ଯେ ସେମାନେ ନିଷ୍କୃତି ଲଭିଲେ ଏମନ୍ତ ନୁହେ । ଏହାର ଅବ୍ୟବହିତପରେ ନଜା-ମଉଦ୍ଦୌଲା କ୍ଲାଇବଙ୍କଠାରେ ଅଭିଯୋଗ ଉପସ୍ଥିତ କଲେ ଯେ ରେଜାଖାଁ କୋମ୍ପାନୀର ପ୍ରବଳ କର୍ମଚାରିମାନଙ୍କର ଅନୁଗ୍ରହ ଲଭପାଇଁ ଉତ୍କୋଚଦ୍ୱାରା ରାଜକୋଷ ଶୂନ୍ୟପ୍ରାୟ କରୁଅଛନ୍ତି ।

ସେହି ଅଭିଯୋଗ ବିଚାରକାଳରେ ପ୍ରକାଶ ପାଇଲା ଯେ, କୋମ୍ପାନୀ ସଚୀବମାନେ ଭୟଦେଖାଇ ରେଜାଖାଁଙ୍କ ନିକଟରୁ ଅନେକ ଅର୍ଥ ହସ୍ତଗତ କରିଅଛନ୍ତି । କ୍ଲାଇବ କର୍ମଚାରିମାନଙ୍କର ଦୋଷ ବର୍ଣ୍ଣନ କରି କର୍ତ୍ତୃପକ୍ଷୀୟମାନଙ୍କ

ନିକଟକୁ ରକ୍ଷାପଣୀ ପଠାଇଲେ । ଦୋଷିମାନଙ୍କ ମଧ୍ୟରୁ ଅନେକେ ଅବିଳମ୍ବେ କର୍ମ-ତ୍ୟାଗ କଲେ, ବସ୍ତୁତଃରେ ଅଧିକାଂଶ ଲୋକର କର୍ମ ଗଲା । ମହମ୍ମଦ ରେଜାଖାଁ-ଙ୍କର କୌଣସି ଦୋଷ ସପ୍ରମାଣ ହେଲା ନାହିଁ ; ସୁତରାଂ ସେ ପଦସ୍ଥ ରହିଲେ । ରାୟଦୁର୍ଲ୍ଲଭ ଓ ଜଗତଶେଠ ତାହାଙ୍କର ସହକାରୀ ନିଯୁକ୍ତ ହେଲେ । ଅତଃପର କ୍ଲାଇବ ପଶ୍ଚିମାଞ୍ଚଳକୁ ଯାତ୍ରାକଲେ । ଯିବା ସମୟରେ ମୁରଶିଦାବାଦରେ ଉପସ୍ଥିତ ହୋଇ ନବାବଙ୍କ ସହିତ ଏପରି ବନ୍ଦୋବସ୍ତ କରିଗଲେ ଯେ, ଏଉତ୍ତାରେ ନବାବ ରାଜ୍ୟସମ୍ବନ୍ଧୀୟ ଆୟବ୍ୟୟ କୌଣସି ବିଷୟରେ ହସ୍ତକ୍ଷେପ କରିବେ ନାହିଁ । ତାହା ଇଂରେଜମାନେ ଦେଖିବେ, ନବାବ କେବଳ ନିଜବ୍ୟୟ କାରଣ ବାର୍ଷିକ ୫୩ ଲକ୍ଷ ଟଙ୍କା ପାଇବେ । ଏହିଁଉତ୍ତାରେ କ୍ଲାଇବ ଅଯୋଧ୍ୟାରେ ଉପ-ସ୍ଥିତ ହେଲେ । ସେତେବେଳେ ସୁଜାଉଦ୍ଦୌଲା ଏପରି ନିସ୍ତେଜ ହୋଇ ପଡ଼ି-ଥିଲେ ଯେ, କ୍ଲାଇବ ଇଚ୍ଛାକଲେ ତାହାଙ୍କୁ ପଦଚ୍ୟୁତ କରିପାରନ୍ତେ; କିନ୍ତୁ ସେ ତାହା କଲେ ନାହିଁ । କେବଳ କଡ଼ା ଓ ଅଲ୍ଲାହାବାଦ ତାହାଙ୍କ ହସ୍ତରୁ ନେଇ ସମ୍ରାଟ୍ ସାହଆଲମଙ୍କୁ ପ୍ରଦାନ କଲେ । ନବାବଙ୍କସହିତ ଏହିପରି ବନ୍ଦୋବସ୍ତ ହେଲା ଇଂରେଜମାନେ ବିଗତ ଯୁଦ୍ଧରେ ବ୍ୟୟବାବତ ୫୦ ଲକ୍ଷ ଟଙ୍କା ପାଇବେ ଓ ଇଂରେଜମାନଙ୍କ ବିପଦ ସମୟରେ ସୁଜାଉଦ୍ଦୌଲା ଓ ସୁଜାଉଦ୍ଦୌଲାଙ୍କ ବିପଦ-ସମୟରେ ଇଂରେଜମାନେ ସାହାଯ୍ୟ କରିବେ ଏହା ମଧ୍ୟ ପଣବଦ୍ଧ ହେଲା ।

୧୭୬୫ ସାଲ ଅଗଷ୍ଟମାସ ତା ୧୨ ଦିଖରେ ସମ୍ରାଟ୍ ସାହଆଲମ ପୂର୍ବ ପ୍ରତିଜ୍ଞାନୁସାରେ ଇଙ୍ଗ୍ରେଜମାନଙ୍କ ହସ୍ତରେ ବଙ୍ଗ ବିହାର ଓ ଉଡ଼ିଷ୍ୟା ତିନପ୍ରଦେ-ଶର ସୁବାଦାରୀ ପ୍ରଦାନ କଲେ । କ୍ଲାଇବ ପୂର୍ବୋକ୍ତ ତିନ ପ୍ରଦେଶର ରାଜସ୍ୱ ବାର୍ଷିକ ୨୬ ଲକ୍ଷ ଟଙ୍କା ଦେବାପାଇଁ ପ୍ରତିଶ୍ରୁତ ହେଲେ । ଏହି ସକଳବିଷୟ ନିଷ୍ପତ୍ତି ହେଲାରୁ କ୍ଲାଇବ କଲିକତାକୁ ପ୍ରତ୍ୟାଗମନ କଲେ ।

କ୍ଲାଇବଙ୍କର କଲିକତା ଆଗମନ ସମୟରେ ଡିରେକ୍ଟର ସମାଜ, ବହୁ ଅନର୍ଥର ହେତୁଭୂତ କୋମ୍ପାନୀ କର୍ମଚାରୀମାନଙ୍କର ବାଣିଜ୍ୟ ରହିତ କରିବାପାଇଁ ବିଶେଷରୂପେ ଆଦେଶ କରିଥିଲେ । ବୋଧହୁଏ କ୍ଲାଇବଙ୍କର ମଧ୍ୟ ଏହିପରି ଇଚ୍ଛା ଥିଲା ଯେ, ସେ କଲିକତାରେ ଉପସ୍ଥିତ ହୋଇ ଏହି ବିଷୟ ମୀମାଂସା କରିବେ । କିନ୍ତୁ ତାହାଙ୍କର ସେହି ଇଚ୍ଛା କିଛିଦିନ ପାଇଁ ଗୁପ୍ତଭାବରେ ଥିଲା । ଏତେବେଳେ ସେ ପଶ୍ଚିମରୁ ଫେରିଆସି ସେହି ବିଷୟ ମୀମାଂସା କରିବାକୁ ବସିଲେ, ଇଦାନୀନ୍ତନ ସମୟରେ ଇଂରେଜ କର୍ମଚାରୀମାନେ ଯେପରି ସ୍ୱଳ୍ପ ବେତନ ପାଉ-ଅଛନ୍ତି ପୂର୍ବେ ସେପରି ଥିଲା ନାହିଁ । ସେତେବେଳେ ସେମାନେ ଅତି ଅଳ୍ପମାତ୍ର ବେତନ ପାଉଥିଲେ । କ୍ଲାଇବ [illegible] କଲେ ୨୦୦୦ [illegible] ଲଙ୍ଘନ

କର ଦାରୁଣ କଷ୍ଟଦେଶକୁ ଆସି କୋମ୍ପାନିର କର୍ମଚାରୀମାନେ ଏତେ ଅଳ୍ପ ବେତନରେ କଦାପି ସନ୍ତୁଷ୍ଟ ହୋଇ ରହୁଥାଇବେ ନାହିଁ, ବିଶେଷରେ ସେମାନଙ୍କର ସଂସାର ନିର୍ବାହ କରିବା ମଧ୍ୟ ଅତ୍ୟନ୍ତ କଠିନ ହେବ । ଏଥିକୁ ଯେପର୍ଯ୍ୟନ୍ତ ସେମାନଙ୍କର ବେତନବୃଦ୍ଧି ନ ହେଉଅଛି ସେତେଦିନ ସେମାନଙ୍କୁ ବାଣିଜ୍ୟ ବ୍ୟାପାରରୁ ସ୍ଥଗିତ ରଖିବା ନ୍ୟାୟାନୁଗତ ବିଚାର ନୁହଇ । ଆଉ ସେମାନଙ୍କ ବେତନ ବୃଦ୍ଧି ପାଇଁ କର୍ତ୍ତୃପକ୍ଷୀୟମାନଙ୍କୁ ଅନୁରୋଧ କରିବା ମଧ୍ୟ ଯୁକ୍ତିଯୁକ୍ତ ବୋଲି ତାହାଙ୍କର ବୋଧହେଲା ନାହିଁ; କାରଣ ସେ ବିଚାର କଲେ, ବେତନ ବୃଦ୍ଧି ହେଲେ ଡିରେକ୍ଟର ସମାଜ ଅନୁରୋଧରେ ପଡ଼ି ଅନେକ ଅଯୋଗ୍ୟ ଲୋକଙ୍କୁ ଭାରତବର୍ଷକୁ ପଠାଇବେ, ସୁତରାଂ ଭବିଷ୍ୟକାଳରେ ଅଯୋଗ୍ୟ କର୍ମଚାରୀମାନଙ୍କଦ୍ୱାରା ରାଜକାର୍ଯ୍ୟର ଅତ୍ୟନ୍ତ ବିଶୃଙ୍ଖଳ ଘଟିବ । ଏହି ସକଳ କାରଣପ୍ରଯୁକ୍ତ କ୍ଲାଇବ କର୍ମଚାରୀମାନଙ୍କୁ ପ୍ରକାରାନ୍ତରେ ଅନ୍ତର୍ବାଣିଜ୍ୟରେ ଲିପ୍ତ ରଖିବାକୁ ମନସ୍ଥ କଲେ । କର୍ମଚାରୀମାନେ ସ୍ୱତନ୍ତ୍ର ହୋଇ ବାଣିଜ୍ୟ କରୁଥିଲେ, କ୍ଲାଇବ ତାହା ରହିତ କରି ଏହିପରି ବନ୍ଦୋବସ୍ତ କଲେ ଯେ, ସମସ୍ତେ ସମବେତ ହୋଇ ବାଣିଜ୍ୟ କରିବେ, ସେଥିରୁ ଯେ ଉପସ୍ୱତ୍ୱ ମିଳିବ, ପଦ ଅନୁସାରେ ସମସ୍ତେ ବିଭାଗ କରି ନେବେ । ଏବିଷୟ ଅନୁମୋଦନ କାରଣ ଡିରେକ୍ଟର ସମାଜକୁ ବିଜ୍ଞାପନା ପଠାଇଲେ ।

କ୍ଲାଇବ ମସୀଜୀବମାନଙ୍କର ବିଷୟ ବନ୍ଦୋବସ୍ତ କଲା ଉତ୍ତାରେ ଅସୀଜୀବମାନଙ୍କର ବିଷୟରେ ହସ୍ତକ୍ଷେପ କଲେ । ସୈନିକ ବ୍ୟୟ ଲାଘବ କରିବା ପାଇଁ କର୍ତ୍ତୃପକ୍ଷୀୟମାନେ ଦୃଢ଼ରୂପେ ଆଦେଶ ପ୍ରଦାନ କରିଥିଲେ । ସେତେବେଳେ ସୈନିକ ବ୍ୟୟ ଏତେ ଅଧିକ ହେଉଥିଲା ଯେ, ତହିଁରେ ବଙ୍ଗଳାର ସମସ୍ତ ରାଜସ୍ୱ ବ୍ୟୟିତ ହେଉଥିଲା; ଏକଥା ଲେଖିଲେ ବୋଧ ହୁଏ ବଡ଼ ଅତ୍ୟୁକ୍ତି ହେବ ନାହିଁ ।

ଯୁଦ୍ଧକ୍ଷେତ୍ରରେ ଉପସ୍ଥିତ ଥିବା ସମୟରେ ଇଂରେଜ ସୈନିକ କର୍ମଚାରୀମାନେ ବେତନ ଛଡ଼ି କିଛି ଅଧିକା ଭତ୍ତା ପାଆନ୍ତି । ପଲାଶୀ ଯୁଦ୍ଧ ଉତ୍ତାରେ ଇଂରେଜମାନଙ୍କର ସୈନିକ ବ୍ୟୟଭାର ମୀରଜାଫରଙ୍କ ମସ୍ତକରେ ଲଦା ଯାଇ ଥିଲା । ସେହି ଦିନ ଠାରୁ ସେନାପତିମାନଙ୍କର ଭତ୍ତା ଦ୍ୱିଗୁଣିତ ହୋଇଥିଲା । ସେହି ଭତ୍ତା ଡବଲବଟା ନାମରେ ଅଭିହିତ । ଡବଲବଟା ରହିତ କରିବା ପାଇଁ ଡିରେକ୍ଟର ସମାଜ ବାରମ୍ବାର ଆଦେଶ ପଠାଇଥିଲେ ମଧ୍ୟ ସେନାପତିମାନଙ୍କ ଭୟ ହେତୁରୁ ତାହା ଏତେଦିନ କାର୍ଯ୍ୟରେ ପରିଣତ ହୋଇ ନ ଥିଲା ନାହିଁ । ଅଧୁନା କ୍ଲାଇବ ଡବଲବଟା ରହିତ କରିବା କାରଣ ଆଜ୍ଞା ପ୍ରଚାର କରିଦେଲେ । ଏହି ଆଜ୍ଞା ଶୁଣି

ସେନାପତିମାନେ ଅତ୍ୟନ୍ତ ଅସନ୍ତୋଷ ପ୍ରକାଶ କରିବାକୁ ଲାଗିଲେ ଓ ସମସ୍ତେ ସମବେତ ହୋଇ ପଦତ୍ୟାଗର ପତ୍ର ପ୍ରଦାନ କଲେ । ଏହି ସମୟରେ ଥୋକେ ମହାରାଷ୍ଟ୍ରୀୟ ସୈନ୍ୟ କଟକ ପ୍ରଦେଶର ସନ୍ନିଧାନରେ ଉପସ୍ଥିତ ହୋଇ ଥିବାର ସମ୍ବାଦ ଆସିଲା । କ୍ଲାଇବ ବିଷମ ଆପଦରେ ପଡ଼ିଲେ, କିନ୍ତୁ ସେ ବିପଦରେ ପଡ଼ି ବିହ୍ୱଳିତ ହେବାର ପାତ୍ର ଥିଲେ ନାହିଁ । ସେ ମାନ୍ଦ୍ରାଜରୁ ସୈନ୍ୟ ଅଣାଇବା ପାଇଁ ଅବିଳମ୍ବେ ପତ୍ର ଲେଖିଲେ ଓ କଲିକତାସ୍ଥିତ କେତେକ ବ୍ୟବହାରିକ କର୍ମଚାରୀଙ୍କ ହସ୍ତରେ ତରବାରି ପ୍ରଦାନ କଲେ, ଏହି ସକଳ କାର୍ଯ୍ୟ ଦେଖି ବିଦ୍ରୋହୀ ସେନାପତିମାନେ ଅତ୍ୟନ୍ତ ଭୀତ ହେଲେ ଓ ଅନେକ ଲୋକ ଆସି ବିନୟ ପୂର୍ବକ କ୍ଷମା-ପ୍ରାର୍ଥନା କରି ସ୍ୱ ସ୍ୱ ପଦରେ ନିଯୁକ୍ତ ହେଲେ କିନ୍ତୁ କ୍ଲାଇବ ଅଧିକ ବିଦ୍ରୋହିମାନଙ୍କୁ ପଦଚ୍ୟୁତ କରି ଇଂଲଣ୍ଡକୁ ପଠାଇ ଦେଲେ । କ୍ଲାଇବ ଡବଲବଟା ରହିତ କରି ଏହିରୂପେ ଇଉରୋପୀୟ ସୈନିକ କର୍ମଚାରୀମାନଙ୍କର ଅନ୍ୟାଯ୍ୟ ଆୟର ମାର୍ଗ ରୁଦ୍ଧ କରିଥିଲେ ସତ୍ୟ, ମାତ୍ର ପ୍ରକାରାନ୍ତରେ ସେମାନଙ୍କର ପରମ ଉପକାରର ସୂତ୍ରପାତ କରି ଯାଇଅଛନ୍ତି । ମୀରଜାଫରର ମୃତ୍ୟୁ ସମୟରେ କ୍ଲାଇବଙ୍କୁ ୫ ଲକ୍ଷ ଟଙ୍କା ଦେବା ପାଇଁ ଆପଣା ଉଇଲରେ ନିର୍ଦ୍ଦେଶ କରି ଯାଇଥିଲେ । କ୍ଲାଇବ କାହାରି-ଠାରୁ କିଛି ଉପହାର ଗ୍ରହଣ କରିବେ ନାହିଁ ଏହି ପରି ପ୍ରତିଜ୍ଞାପତ୍ରରେ ସ୍ୱାକ୍ଷର କରିଥିବାରୁ ସେହି ଟଙ୍କା ନିଜେ ଗ୍ରହଣ ନ କରି ବିବେଚନା କଲେ, ଏହା ମୂଳ-ଧନସ୍ୱରୂପ ଗଚ୍ଛିତ ରଖି ତାହାର ଲାଭରୁ ଅଶକ୍ତ ସୈନିକ ଓ ମୃତସୈନିକମାନଙ୍କର ପରିବାରର ଭରଣପୋଷଣ ପାଇଁ ବୃତ୍ତି ସ୍ଥାପନ କରିବା ଉଚିତ । ଏହିରୂପେ ଇଂଲଣ୍ଡର ଅନ୍ତର୍ଗତ ପପଲାର ନାମକ ସ୍ଥାନରେ ନିରାଶ୍ରୟ ସୈନିକଶାଳାର ସୂତ୍ରପାତ ହୋଇଅଛି । ୧୭୬୭ ସାଲେ ମୁରଶିଦାବାଦର ନବାବ ପଞ୍ଚତ୍ୱ ପ୍ରାପ୍ତ ହୁଅନ୍ତେ ତାହାଙ୍କର ଭ୍ରାତା ସୈଫଉଦ୍ଦୀନ ସିଂହାସନରେ ବସିଲେ । ଏହି ସୁଯୋଗେ କ୍ଲାଇବ ନବାବଙ୍କର ବୃତ୍ତି ୫୩ ଲକ୍ଷ ସ୍ଥଳରେ ୧୬ ଲକ୍ଷ କରି ଦେଲେ ।

କ୍ଲାଇବ କୋମ୍ପାନୀ କର୍ମଚାରୀମାନଙ୍କର ବ୍ୟବସାୟ ବିଷୟ ବନ୍ଦୋବସ୍ତ କରି ତାହା ଅନୁମୋଦନ କାରଣ ଡିରେକ୍ଟର ସମାଜକୁ ବିଜ୍ଞାପନୀ ପଠାଇଥିଲେ ଓ ତତ୍ସଙ୍ଗେ ଗବର୍ଣ୍ଣର ଜେନେରେଲଙ୍କ ବେତନ ବୃଦ୍ଧି କରିବା ପାଇଁ ମଧ୍ୟ ଅନୁରୋଧ କରିଥିଲେ; କିନ୍ତୁ ଡିରେକ୍ଟର ସମାଜ ତାହା ଶୁଣିଲେ ନାହିଁ । ପ୍ରତ୍ୟୁତ ନାନାଭ-ର୍ତ୍ସନା କରି କର୍ମଚାରୀମାନଙ୍କର ବାଣିଜ୍ୟ ଏକାବେଳକେ ରହିତ କରିବା କାରଣ କ୍ଲାଇବଙ୍କଠାକୁ ଦୃଢ଼ରୂପେ ଆଜ୍ଞା ପଠାଇଲେ । ସେ ସେହି ଆଜ୍ଞାପତ୍ର ପ୍ରାପ୍ତହୋଇ କର୍ମଚାରୀମାନଙ୍କର ବାଣିଜ୍ୟ ରହିତ କରିବା କାରଣ ଘୋଷଣା କରି ଦେଲେ ।

ଅତଃପର ଶାରୀରକ ଅସୁସ୍ଥତା ନବନ୍ଧନ ୧୭୬୭ ସାଲ ଜାନୁୟାରୀ ମାସରେ କ୍ଲାଇବ ସ୍ୱଦେଶକୁ ଯାତ୍ରା କରନ୍ତି ।

ସ୍ୱଦେଶକୁ ଗମନକରି ୭ ବରଷ ପର୍ଯ୍ୟନ୍ତ ଜୀବିତ ଥିଲେ । ସେହି ସମୟରେ ବଙ୍ଗଳାରେ ଅନୁଷ୍ଠିତ ତାହାଙ୍କର ଅନେକ କାର୍ଯ୍ୟର ଦୋଷ ଆନ୍ଦୋଳନ ହେଲା ସେହି ଉପଲକ୍ଷରେ ତାହାଙ୍କ ନାମରେ ପାର୍ଲିୟାମେଣ୍ଟରେ ଅଭିଯୋଗ ଉପସ୍ଥିତ ହେଲା । ମାତ୍ର ପାର୍ଲିୟମେଣ୍ଟ ତାହାଙ୍କର କୌଣସି ଦୋଷର ପ୍ରମାଣ ନ ପାଇବାରୁ ମୁକ୍ତି ଦାନ କଲେ ।

କ୍ଲାଇବଙ୍କ ବିଷୟରେ ଅମ୍ଭମାନଙ୍କର ମତ ଏହି, ସେ ଯେ ନିତାନ୍ତ ନିର୍ଦ୍ଦୋଷ ଥିଲେ ଏମନ୍ତ ନୁହଇ; ମାତ୍ର ସେ ଯେଯେ ଭୟାନକ ବିପଦରେ ପଡି ଦୁଷ୍କର୍ମରେ ହସ୍ତକ୍ଷେପ କରିଥିଲେ, ବୋଧକରୁଁ ଅନ୍ୟାନ୍ୟ ଲୋକେ ସେହିପରି ବିପଦରେ ପଡିଲେ ତାହାଙ୍କଠାରୁ ଯେ ନିତାନ୍ତ ନିର୍ମଳ ଅବସ୍ଥାରେ ରହି ପାରନ୍ତେ ଅମ୍ଭମାନଙ୍କର ଅନୁମାନ କଦାଚ ତାହା ଲକ୍ଷ କରଇବ ନାହିଁ । ଅଉ ଯେସ୍ଥଲେ ଇଂରେଜ ମାନଙ୍କର ଭାରତବର୍ଷର ରାଜ୍ୟ ସ୍ଥାପନର ସେ ଏକମାତ୍ର ମୂଳୀଭୂତ କାରଣ ସେସ୍ଥଲେ ତାହାଙ୍କର ସାମାନ୍ୟ ଦୋଷ ଘେନି ଏତେ ଆନ୍ଦୋଳନ କରିବା କଦାଚ ଉଚିତ ନୁହଇ । ଅହୋ ! ଯେ କ୍ଲାଇବଙ୍କ ଅନୁଗ୍ରହ ଲାଭ ବାସନାରେ ଜଗତଶେଠ ପ୍ରଭୃତି ବଙ୍ଗଦେଶୀୟ ଧନବାନ ଲୋକମାନେ ସ୍ୱର୍ଣ୍ଣରଜତରାଶି ତାହାଙ୍କ ସମ୍ମୁଖରେ ଜମା କରୁଥିଲେ ଯେ କ୍ଲାଇବଙ୍କର ନାମ ଶୁଣି ଭାରତୀୟ ରାଜା ଓ ସୁବାଦାର-ମାନେ କମ୍ପିତ ହେଉଥିଲେ ଓ ଦିଲ୍ଲି ସିଂହାସନର ଉତ୍ତରାଧିକାରୀ ସାହଆଲମଙ୍କର ଯେ କ୍ଲାଇବଙ୍କର ଅନୁଗ୍ରହ ପ୍ରାର୍ଥନୀୟ ଥିଲା. ସେହି ଶିରଜଉଦୌଲାନ୍ତକାରୀ କ୍ଲାଇବଙ୍କୁ ପାର୍ଲିଆମେଣ୍ଟ ମଧ୍ୟରେ ଛିଡ଼ାକରି ଚତୁର୍ଦ୍ଦିଗରୁ ଯେ ଦୋଷରାଶି ତାହାଙ୍କ ଉପରେ ନିକ୍ଷେପ କରିଥିଲେ ଓ ସେହି ହେତୁରୁ ତାହାଙ୍କର ଯେଉଁ ପରିଣାମ ହେଲା ତାହା ସ୍ମରଣ କରି ବର୍ତ୍ତମାନ ମଧ୍ୟ ପାର୍ଲିୟାମେଣ୍ଟ ପ୍ରତି ଅମ୍ଭମାନଙ୍କର ହିଜାତୀୟ ଘୃଣା ଓ ରାଗଜନ୍ମେ । ଶେଷ ଯାହା ହେଉ ପାର୍ଲିୟାମେଣ୍ଟରେ ତାହାଙ୍କର ନିର୍ଦ୍ଦୋଷିତା ପ୍ରମାଣୀକୃତ ହେଲା ସତ୍ୟ, ମାତ୍ର ତାହାଙ୍କର ଅଚରିତ ଦୋଷାବଳୀ ପାର୍ଲିୟାମେଣ୍ଟ ମଧ୍ୟରେ ଆନ୍ଦୋଳିତ ହେବାରୁ ସେ ନିତାନ୍ତ ଦୁଃଖିତ ଓ ବିରକ୍ତ ହୋଇ ଆତ୍ମହତ୍ୟାଦ୍ୱାରା ଜୀବନ ତ୍ୟାଗ କଲେ ।

---

## ଏକାଦଶ ଅଧ୍ୟାୟ ।

ପୂର୍ବ କେତେତ ଅଧ୍ୟାୟରେ ବଙ୍ଗଲାଦେଶର ବିବରଣ ଲେଖା ଯାଇଅଛି ସେହି ସମୟରେ କର୍ଣ୍ଣାଟ ଦେଶରେ ଯେ ସକଳ ଘଟନା ଉପସ୍ଥିତ ହୋଇ ଥିଲା ବର୍ତ୍ତମାନ ସେଥିର ସଂକ୍ଷେପ ବିବରଣ ଲେଖିବୁଁ ।

ପଣ୍ଡିଚେରୀ ଫରାସୀମାନଙ୍କର ହସ୍ତଭ୍ରଷ୍ଟ ହେବା ଦିନଠାରୁ ଇଂରେଜମାନଙ୍କର ଆଧିପତ୍ୟ କର୍ଣ୍ଣାଟରେ ଦିନକୁଦିନ ବୃଦ୍ଧି ହେଉଥିଲା । ଆପଣାମାନଙ୍କ ଉଦ୍ଦେଶ୍ୟ ପ୍ରଚ୍ଛନ୍ନ ରଖି ମହମ୍ମଦଅଲିଙ୍କୁ ନବାବପଦରେ ରଖିବା ପାଇଁ ସେମାନେ ଫରାସୀମାନଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତ ହୋଇଅଛନ୍ତି, ଏହିପରି ବାହାନା କରି ଚଳୁଥିଲେ । ଏଥିରେ ସେମାନଙ୍କର ଏହି ଲାଭ ହୋଇଥିଲା ଯେ, ଯୁଦ୍ଧର ଯାବତ୍ ବ୍ୟୟ ଦୁର୍ବଳ ମହମ୍ମଦଅଲି ଠାରୁ ଅନାୟାସରେ ଦୋହନ କରି ପାରୁ ଥିଲେ ।

୧୭୬୩ ସାଲ ଫେବୃୟାରୀ ମାସ ୧୦ ମ ଦିବସରେ ଇଂରେଜ ଓ ଫରାସୀମାନଙ୍କ ମଧ୍ୟରେ ସନ୍ଧି ହେଲା । ସନ୍ଧିପତ୍ରରେ ଏହି କେତୋଟା ନିୟମ ନିର୍ଦ୍ଧାରିତ ଥିଲା; —

୧ ମ । ୧୭୪୯ ସାଲ ପୂର୍ବରେ ଭାରତବର୍ଷରେ ଫରାସୀମାନଙ୍କର ଯେ ସକଳ ଅଧିଷ୍ଠାନ ଥିଲା ତତ୍ସମସ୍ତ ସେମାନେ ପୁନଃପ୍ରାପ୍ତ ହେବେ ।

୨ ୟ । ବଙ୍ଗଳା ସୁବାଦାର ଅଧୀନରେ ସେମାନେ (ଫରାସୀମାନେ) ସେନା ରଖିବାକୁ ବା ଦୁର୍ଗନିର୍ମାଣ କରିବାକୁ ପାଇବେ ନାହିଁ ।

୩ ୟ । ଇଂରେଜ ଫରାସୀ ଉଭୟ ଜାତି ସଲାବତଜଙ୍ଗଙ୍କୁ ଦାକ୍ଷିଣାତ୍ୟର ନ୍ୟାୟାନୁଗତ ନାଜିମ ଓ ମହମ୍ମଦଅଲିଙ୍କୁ କର୍ଣ୍ଣାଟର ନ୍ୟାୟାନୁଗତ ନବାବ ବୋଲି ଅଙ୍ଗୀକାର କରିବେ । କିନ୍ତୁ ସେତେବେଳେ ସଲାବତଜଙ୍ଗଙ୍କ ଭାଇ ନିଜାମଅଲି ତାହାଙ୍କ ପ୍ରାଣ ସଂହାର କରିଥିଲେ ।

ସନ୍ଧି ସୂତ୍ରରେ ମହମ୍ମଦଅଲି ଇଂରେଜମାନଙ୍କ ସାହାଯ୍ୟରେ ମଦୁରା ଓ ତିରୁନେଲ୍ଲିବଲ୍ଲିର ତତ୍କାଳୀନ ଜମିଦାର ମହମ୍ମଦ ଇସୁଫଙ୍କ ନିକଟରୁ ରାଜସ୍ୱ ଆଦାୟ କରିବାକୁ ଚେଷ୍ଟା କଲେ । ଇସୁଫ ଅତି ଅଚଳଚିତ୍ତ ଓ ଦୃଢ଼ପ୍ରତିଜ୍ଞ ଥିଲେ । ପୂର୍ବେ ସେ ଇଂରେଜମାନଙ୍କ ସୈନ୍ୟାଧିକାରରେ କର୍ମ କରି ଆପଣା ଗୁଣଗ୍ରାମ ଦ୍ୱାରା କ୍ରମଶଃ ଉନ୍ନତି ଲାଭ କରିଥିଲେ । ଇଂରାଜମାନଙ୍କ ପ୍ରତି ତାହାଙ୍କର ଅତିଶୟ ପ୍ରଭୁଭକ୍ତି ଥିଲା । ଯାହା ହେଉ ସେ ମଦୁରା ଓ ତିରୁନେଲ୍ଲିବଲ୍ଲିର ଜମିଦାରୀ ପାଇ ସେହି ସେହି ସ୍ଥାନର ନିର୍ଦ୍ଧନତା ହେତୁରୁ ଅଧିକ ରାଜସ୍ୱ ଆଦାୟ କରି ପାରୁଥିଲେ ନାହିଁ; ତେଣୁ ମହମ୍ମଦଅଲିକୁ ରାଜସ୍ୱ ଦେଇ ପାରୁ ନ ଥିଲେ, ଇଂରେଜ ଓ ମହମ୍ମଦଅଲିଙ୍କ ସେନାମାନେ ଉପସ୍ଥିତ ହୁଅନ୍ତେ ସେ ଆଗେ ରକ୍ଷା ପାଇଁ ବିଶେଷ ଚେଷ୍ଟା କରୁଥିଲେ କିନ୍ତୁ ଶେଷରେ ଜଣେ ବିଶ୍ୱାସଘାତକ ଫରାସୀ କର୍ମଚାରୀ ଦ୍ୱାରା ଧରାଯାଇ ମରାଗଲେ ।

ଏତତ୍ପରେ ମହମ୍ମଦଅଲିଙ୍କ ସହିତ ତାଞ୍ଜୋରାଧିପତିଙ୍କର ବିରୋଧ ଉପସ୍ଥିତ ହେଲା । କାବେରୀନଦୀ ଏହି ବିବାଦର ମୂଳଅଟେ । କାବେରୀନଦୀ ମୁହାଣ ଠାରେ

ଦୁଇ ଭାଗରେ ବିଭକ୍ତ ହୋଇ ପ୍ରବାହିତ ହୁଅଇ; ସେହି ଦୁଇ ପ୍ରବାହ ମଧ୍ୟବର୍ତ୍ତୀ ଦ୍ୱୀପାକାର କ୍ଷେତ୍ର ଶ୍ରୀରଙ୍ଗମ ନାମରେ ଅଭିହିତ ଅଟେ । ଶ୍ରୀରଙ୍ଗମର ଦକ୍ଷିଣବର୍ତ୍ତୀ କାବେରୀ ଶାଖା ତଞ୍ଜୋର ରାଜ୍ୟ ଦେଇ ପ୍ରବାହିତ ଓ ସେହି ପ୍ରବାହଦ୍ୱାରା ସେହି ଦେଶର କୃଷିକାର୍ଯ୍ୟ ବିଷୟରେ ଅନେକ ସାହାଯ୍ୟ ହୁଏ ।

ଶ୍ରୀରଙ୍ଗମର ପୂର୍ବଭାଗରେ ଗୋଟିଏ ବନ୍ଧ ଅଛି, ସେହି ବନ୍ଧକୁ ବରଷକୁ ବରଷ ମରାମତି କରିବାକୁ ହୁଅଇ, ନ କଲେ ଖାଇଯାଇ ଉତ୍ତରବାହିନୀ ଶାଖାଦ୍ୱାରା ସବୁପାଣି ବହିଯାଏ । ଦକ୍ଷିଣବାହିନୀ ଶାଖା ଶୁଷ୍କହୋଇ ପଡ଼େ । ତେଣୁ ତାଞ୍ଜୋରର କୃଷିକର୍ମପକ୍ଷରେ ଅତ୍ୟନ୍ତ ବିପଦ ଘଟେ । ଏଥିପାଇଁ ବନ୍ଧକୁ ଦୃଢ଼ୀଭୂତ କରିବା ତାଞ୍ଜୋରପତିଙ୍କ ନିତାନ୍ତ ବାସନା । କିନ୍ତୁ ବନ୍ଧଉପରେ ତାହାଙ୍କର ଅଧିକାର ଥିଲା ନାହିଁ । ଏହା ମହମ୍ମଦଅଲିଙ୍କ ଶାସନାଧୀନ ଅଟେ । ସେହି ବନ୍ଧକୁ ଦୃଢ଼ କରିବା ତାଞ୍ଜୋରପତିଙ୍କର ଯେମନ୍ତ ଇଚ୍ଛା ତାହା ଭାଙ୍ଗିଦେବା ମହମ୍ମଦଅଲିଙ୍କର ସେହିପରି ବାସନା । ଏହିସୂତ୍ର ଅବଲମ୍ବନ କରି ଦୁଇଜଣଙ୍କ ମଧ୍ୟରେ ମହାଯୁଦ୍ଧ ଘଟିଥାନ୍ତା; କିନ୍ତୁ ଇଂରେଜମାନେ ମଧ୍ୟସ୍ଥ ହୋଇ ଏହି ବିବାଦ ଏହିପରି ମୀମାଂସା କରି ଦେଲେ, ମହମ୍ମଦଅଲିଙ୍କର ବନ୍ଧଉପରେ କର୍ତ୍ତୃତ୍ୱ ଥିବ ଓ ତାଞ୍ଜୋରପତି ସ୍ୱୀୟ ବ୍ୟୟରେ ବନ୍ଧ ସଂସ୍କାର କରିବେ ।

୧୭୬୫ ସାଲରେ ଦାକ୍ଷିଣାତ୍ୟର ସୁବାଦାର ନାଜିମଅଲି ବହୁତ ସେନାସଙ୍ଗେ କର୍ଣ୍ଣାଟରେ ଉପସ୍ଥିତ ହୋଇ ନାନା ଅତ୍ୟାଚାର କରୁଥିଲେ; କିନ୍ତୁ ଇଂରେଜ ଓ ନବାବସେନାମାନେ ରଣକ୍ଷେତ୍ରରେ ଉପସ୍ଥିତ ହେବାମାତ୍ରକେ ସେ ପଳାଇଗଲେ । ଏହି ଘଟନାସମୟରେ ସମ୍ରାଟ୍ କ୍ଲାଇବଙ୍କର ନିତାନ୍ତ ହସ୍ତଗତ ଥିଲେ । କ୍ଲାଇବ ଇଂରେଜଙ୍କ ମିତ୍ର ମହମ୍ମଦଅଲିଙ୍କର ରାଜ୍ୟ ଦାକ୍ଷିଣାତ୍ୟ ସୁବାଦାରର ଏଲାକାରୁ ଖାରଜ କରି ପଠାଇଲେ । ସେ ଆହୁରି ମଧ୍ୟ ସନନ୍ଦ ବାହାର କଲେ ଯେ ଉତ୍ତର ସରକାର ପ୍ରଦେଶ ଇଂରେଜମାନଙ୍କ ଅଧିକାରରେ ରହିବ ।

୧୭୬୬ ସାଲ ମାର୍ଚ୍ଚମାସରେ ସେନାପତି କାଲିୟୁଡ୍ ସାହେବ ସେହିପ୍ରଦେଶ ଅଧିକାର କରିବାପାଇଁ ଯାତ୍ରା କଲେ । ତହିଁରେ ନାଜିମଅଲି କହିଲେ " ଇଂରେ-ଜମାନେ ଯଦି ଉତ୍ତରସରକାର ଆକ୍ରମଣ କରିବେ ତେବେ ଆମ୍ଭେ କର୍ଣ୍ଣାଟ ଆକ୍ରମଣ କରିବୁ " ଏଥିକୁ ଇଂରେଜମାନେ ନାଜିମଅଲିଙ୍କ ସହିତ ଏହିପରି ବନ୍ଦୋବସ୍ତ କଲେ ଯେ ଉତ୍ତରସରକାରର ଯେଉଁ ଅଂଶ ନାଜିମଅଲିଙ୍କ ଭ୍ରାତା ସଲାବତଜଙ୍ଗଙ୍କ ଅଧୀନରେ ଅଛି ଯାବତକାଳପର୍ଯ୍ୟନ୍ତ ତାହାଙ୍କ ଅଧୀନରେ ଥିବ । ଯେ ଅଂଶ ଇଂରେଜମାନେ ଦଖଲ କରିବେ ତାହାର ଉପଯୁକ୍ତ କର ଦେବେ । ଇଂରେଜମାନେ ଏହା ମଧ୍ୟ ପ୍ରତିଜ୍ଞା କଲେ ଯେ ଆବଶ୍ୟକ ହେଲେ ନାଜିମଅଲିଙ୍କୁ

ଇଂରେଜମାନେ ସୈନ୍ୟ ଦେଇ ସାହାଯ୍ୟ କରିବେ। ଏହି ଘଟନାର ଅଳ୍ପକାଳ ମଧ୍ୟରେ ଅନିର୍ଦ୍ଦିଷ୍ଟ ଘଟନାସୂତ୍ରରେ ମହୀଶୂରପତିଙ୍କ ସହିତ ନାଜିମଅଲିଙ୍କର ଯୁଦ୍ଧ ଘଟନା ହେବାରୁ ପୂର୍ବ ପ୍ରତିଜ୍ଞାନୁସାରେ ଇଂରେଜମାନଙ୍କର ସାହାଯ୍ୟ କରିବାର ଆବଶ୍ୟକ ହେଲା।

୧୭ ଶ ସାଲଠାରୁ ମହୀଶୂର ସ୍ୱାଧୀନତା ଅବଲମ୍ବନ କରିଥିଲା, ସେହିଦିନଠାରୁ ବ୍ରାହ୍ମଣକୁଳୋଦ୍ଭବ ରାଜାମାନେ ସେସ୍ଥାନରେ ରାଜପଣ କରି ଆସୁଥିଲେ। କାଳକ୍ରମେ ରାଜାମାନେ ଅଳସ ବିଳାସୀ ଓ ରାଜକାର୍ଯ୍ୟରେ ଅମନୋଯୋଗୀ ହେବାରୁ ମନ୍ତ୍ରୀମାନଙ୍କ ହସ୍ତରେ ସର୍ବାଧିକାରିତ୍ୱ ନ୍ୟସ୍ତ ଥିଲା। ପ୍ରଧାନ ମନ୍ତ୍ରିଙ୍କର ରାଜପ୍ରତିନିଧି ଏହି ଉପାଧି ଥିଲା। ବର୍ତ୍ତମାନ ସମୟର କିଛି ପୂର୍ବରେ ଦେବରାଜ ଓ ନନ୍ଦରାଜ ନାମରେ ଦୁଇସହୋଦର ମହୀଶୂର କର୍ତ୍ତୃତ୍ୱା ଥିଲେ।

ନନ୍ଦରାଜ, ହାଇଦରଅଲି ନାମକ ମୁସଲମାନ ଯୁବକ ଭାଗ୍ୟବର୍ଦ୍ଧନ ବିଷୟରେ ମନୋଯୋଗୀ ଥିଲେ। ଯେତେବେଳେ ଇଂରେଜମାନେ ମହୀଶୂରପ୍ରତି ଧାବିତ ହୁଅନ୍ତି ସେତେବେଳେ ହାଇଦରଅଲିଙ୍କ ହାତରେ ସେଦେଶର ଭାରଥିଲା। ତାହାର ମୂଳବୃତ୍ତାନ୍ତ ଏହି;—

ଶ୍ରୀରଙ୍ଗପଟ୍ଟନର ପ୍ରାୟ ୪୦ କ୍ରୋଶ ଉତ୍ତରରେ ସିରା ନାମକ ଗୋଟିଏ ନଗର ଅଛି। ଆରଙ୍ଗଜେବଙ୍କ ଅଧିକାର ସମୟରେ ସେହିନଗର ଏବଂ ତାହାର ସନ୍ନିହିତପ୍ରଦେଶ ମୁସଲମାନମାନଙ୍କ ସାମ୍ରାଜ୍ୟଭୁକ୍ତ ଥିଲା ଏବଂ ଦାକ୍ଷିଣାତ୍ୟର ସୁବାଦାରଙ୍କ ଅଧୀନରେ ଜଣେ ନବାବ ତାହାର ଶାସନକାର୍ଯ୍ୟରେ ନିଯୁକ୍ତଥିଲେ। କାଳକ୍ରମେ ଫତେମହମ୍ମଦ ନାମକ ଜଣେ ଲୋକ ତତ୍ରତ୍ୟ ଫୌଜଦାର ପଦରେ ନିଯୁକ୍ତ ଥିଲେ। କଥିତ ଅଛି ଫତେ ଜଣେ ସାମାନ୍ୟ ଫକୀରର ପୁତ୍ର ଅଟନ୍ତି। ପରେ ସିରା ରାଜବିପ୍ଳବ ସମୟରେ ଫତେ ନିଜ ପ୍ରଭୁଙ୍କ ପ୍ରାଣରକ୍ଷା କରିବାକୁ ଯାଇ ନିଧନ ପ୍ରାପ୍ତ ହୋଇଥିଲେ।

ଫତେଙ୍କର ଦୁଇ ପୁତ୍ର। ତନ୍ମଧ୍ୟରେ ପିତୃବିୟୋଗ ସମୟରେ କନିଷ୍ଠ ହାଇଦରର ୭ ବରଷ ମାତ୍ର ବୟସ ହୋଇଥିଲା। ସେ ଯେ ଭବିଷ୍ୟତରେ ଜଣେ ପ୍ରଧାନ ଲୋକ ହେବେ ଏକଥା କେହି ଅନୁମାନ କରି ନ ଥିଲେ। ୨୭ ବରଷ ବୟସ ପର୍ଯ୍ୟନ୍ତ ହାଇଦର ଖେଳ ବୁଲି ଦିନ କଟାଇ ଥିଲେ। ତାହାଙ୍କର ଜ୍ୟେଷ୍ଠ ମହୀଶୂରରେ ସେନାପତି। ଅଷ୍ଟାବିଂଶତି ବର୍ଷ ବୟସ ସମୟରେ ହାଇଦର ତାହାଙ୍କ ସହିତ ମିଳିତ ହେଲେ। ହାଇଦର ସ୍ୱକୀୟ ମହୀୟସୀ ଶକ୍ତି, ସାହସ, ଧୈର୍ଯ୍ୟ ପ୍ରଭୃତି ଗୁଣଗ୍ରାମଦ୍ୱାରା ଅତି ଅଳ୍ପକାଳ ମଧ୍ୟରେ କାହାରଠାରେ ଅପରିଚିତ ରହିଲେ ନାହିଁ। ପରେ ହିଦାଏ ଶଠବ୍ୟବସାୟୀ ଆସି ତାହାଙ୍କ ସହିତ ମିଳିତ

ହେଲେ । ସୁପ୍ରସିଦ୍ଧ ଶିବଜୀ ଯେପରି ଦସ୍ୟୁ ସାହାଯ୍ୟରେ ନିଜ ଅଭ୍ୟୁତ୍ଥାନର ସୋପାନ କରି ନେଇ ଥିଲେ, ହାଯ୍ଦର ମଧ୍ୟ ସେହି ଉପାୟ ଅବଲମ୍ବନ କଲେ । କ୍ରମଶଃ ଅଧୀନବର୍ଗର ସଂଖ୍ୟା ବୃଦ୍ଧି ହେବାକୁ ଲାଗିଲା । ଏହି ଅର୍ଦ୍ଧଦସ୍ୟୁ ଓ ଅର୍ଦ୍ଧଯୋଦ୍ଧାମାନେ ପ୍ରଭୁଙ୍କଠାରୁ ନିୟମିତ ବେତନ ପାଆନ୍ତି ଓ ଲୁଣ୍ଠଦ୍ରବ୍ୟରୁ ଅର୍ଦ୍ଧାଂଶ ପାଆନ୍ତି । ଅପରାର୍ଦ୍ଧ ଅଧିନାୟକଙ୍କ ନିଜସ୍ୱ ହୁଏ । ହାଯ୍ଦର ଖଣ୍ଡେରାଓ ନାମକ ଏକ ବ୍ରାହ୍ମଣର ସାହାଯ୍ୟରେ ଏମନ୍ତ କୌଶଳ ବନ୍ଦୋବସ୍ତ କରିଥିଲେ ଯେ, ଅଧୀନସ୍ଥମାନେ ତାହାଙ୍କ ପ୍ରାପ୍ୟାଂଶରେ କଡ଼ାଏ ମଧ୍ୟ ତଞ୍ଚକତା କରି ପାରୁଥିଲେ ନାହିଁ । ହାଯ୍ଦରଙ୍କର କ୍ରମଶଃ ସେନା, ଧନ ବଳ ଓ ଖ୍ୟାତି ବୃଦ୍ଧି ହେବାକୁ ଲାଗିଲା ଏବଂ ସେ ମହୀସୁର ମଧ୍ୟରେ ଜଣେ ପ୍ରଧାନ ଲୋକ ବୋଲି ଗଣ୍ୟ ହେବାକୁ ଲାଗିଲେ । ଅବଶେଷରେ ସେ (୧୭୫୫) ନନ୍ଦରାଜାଙ୍କ ପ୍ରସାଦରେ ଡିଣ୍ଡିଗଲ ପ୍ରଦେଶର ଫୌଜଦାର ପଦରେ ନିଯୁକ୍ତ ହେଲେ । ଡିଣ୍ଡିଗଲ ସମୀପସ୍ଥ ପ୍ରଦେଶର ପଲ୍ଲୀବାସିମାନେ ଚକ୍ରାନ୍ତ କରି ମହୀଶୂରପତିଙ୍କୁ ରାଜସ୍ୱ ପ୍ରଦାନ ବନ୍ଦ କଲେ । ଏଥିକୁ ହାଯ୍ଦର ବହୁଳ ସେନା ସହିତ ଯାଇ ସେମାନଙ୍କୁ ପରାସ୍ତ କରନ୍ତି ଏବଂ ସେହି ଜୟବିବରଣ ନାନା ଅଳଙ୍କାରସହ ରଚନା କରି ରାଜସଭାକୁ ପଠାଇ ଦେଲେ । ଜୟଲାଭ ପରେ ତାହାଙ୍କୁ ଯେ ସକଳ କଷ୍ଟ ସହିବାକୁ ହୋଇଥିଲା ଓ ଯେତେ ସେନା ଓ ସେନାପତି ନଷ୍ଟ ହୋଇଥିଲେ ତାହା ଏମନ୍ତ ବଢ଼ାଇ ଲେଖିଥିଲେ ଯେ କର୍ତ୍ତୃପକ୍ଷୀୟମାନେ ତାହା ପାଠକରି ତାହାଙ୍କର ଭୂୟସୀ ପ୍ରଶଂସା କରିଥିଲେ ଓ ଆହତ ସୈନ୍ୟମାନଙ୍କ ସାହାଯ୍ୟ ପାଇଁ ଦୂତଦ୍ୱାରା ବହୁଳଧନ ପଠାଇ ଦେଇଥିଲେ । ସେହି ଯୁଦ୍ଧରେ କେବଳ ୧୭ ଜଣ ଲୋକ ଆଘାତ ପ୍ରାପ୍ତ ହୋଇଥିଲେ ମାତ୍ର ହାଯ୍ଦର ୭ ଶତ ଅକ୍ଷତ ଲୋକଙ୍କ ଦେହରେ ପଟି ବସାଇ ରାଜଦୂତଙ୍କୁ ଦେଖାଇଥିଲେ । ଯେତେ ଦିନ ଆହତ ଲୋକମାନେ ସୁସ୍ଥ ନ ହେବେ ତେତେ ଦିନ ପର୍ଯ୍ୟନ୍ତ ପ୍ରତ୍ୟେକ ସୈନିକ ପାଇଁ ମାସିକ ଖୋରାକ ୧୪ ଟଙ୍କା ଦେବା ପାଇଁ ରାଜଦୂତ ବନ୍ଦୋବସ୍ତ କରିଗଲେ । ଆଉ ତାହାଙ୍କର ୧୦୦୦୦ ସୈନ୍ୟ ଥିଲେ କିନ୍ତୁ ତାହା ଏମନ୍ତ ପ୍ରକାର ସଜାଇ ରାଜଦୂତଙ୍କୁ ଦେଖାଇଲେ ଯେ ସେ (ଦୂତ) ତାହାଦେଖି ୧୮,୦୦୦ ସୈନ୍ୟ ଅନୁମାନ କରିଥିଲେ; ସେହି ଅନୁମିତ ସୈନିକର ବେତନ ରାଜସରକାରରୁ ପାଇବାର କଥା ହେଲା, ଏହିରୂପେ କ୍ରମଶଃ ହାଯ୍ଦରଙ୍କର ଖ୍ୟାତି ଓ ସମ୍ପତ୍ତି ବୃଦ୍ଧି ହେବାକୁ ଲାଗିଲା । ଏଣେ ଦୈବ ମଧ୍ୟ ତାହାଙ୍କର ଅନୁକୂଳ ହେଲେ ।

ଦେବରାଜ ବିଷୟ କର୍ମତ୍ୟାଗ କରିବାରୁ ହାଯ୍ଦରଙ୍କର ପ୍ରଧାନ ସହାୟ ନନ୍ଦରାଜ ମହୀଶୂରର ସର୍ବମୟ କର୍ତ୍ତୃତ୍ୱ ପ୍ରାପ୍ତ ହେଲେ । ୧୭୫୮ ସାଲରେ ମହୀଶୂର

ସୈନ୍ୟମାନଙ୍କ ମଧ୍ୟରେ ବିଦ୍ରୋହ ଉପସ୍ଥିତ ହୋଇଥିଲା, ହାଯ୍ଦର ତାହା ଶାନ୍ତି କରିଥିଲେ ସେଥିପାଇଁ ତାହାଙ୍କର ପ୍ରଚୁର ସମ୍ପତ୍ତି ସହିତ ବାଙ୍ଗାଲୋର ପ୍ରଦେଶର କର୍ତ୍ତୃତ୍ୱ ଲାଭକରିଥିଲେ । ପରବରଷ ପୁଣିଥରେ ମହାରାଷ୍ଟ୍ରୀୟ ସୈନ୍ୟ ଆସି ମହୀଶୂରର ଏକାଂଶ ଆକ୍ରମଣ କଲେ । ତନ୍ନିବାରଣ ପାଇଁ ସୈନ୍ୟ ପ୍ରେରଣ କରିବା ଆବଶ୍ୟକ ହେଲା । କିନ୍ତୁ " ଅନେକଦିନର ବେତନ ବାକିଅଛି " ଏହି ଆପତ୍ତି କରି ଅଧିକାଂଶ ସେନାପତି ଯିବାକୁ ଅସ୍ୱୀକୃତ ହେଲେ । ହାଯ୍ଦର ସେହିବାକି ଟଙ୍କା ନିଜତହବିଲରୁ ଦେବାରୁ କର୍ତ୍ତୃପକ୍ଷୀୟମାନେ ତାହାଙ୍କପ୍ରତି ଅତ୍ୟନ୍ତ ତୁଷ୍ଟହେଲେ; ଓ ତାହାଙ୍କୁ ପ୍ରଧାନ ସେନାପତି ପଦରେ ଅଭିଷିକ୍ତ କଲେ । ଏହା ଦେଖି ଅନେକ ବଂଶମର୍ଯ୍ୟାଦାଭିମାନୀ ସେନାପତି ପଦ ତ୍ୟାଗ କଲେ । ହାଯ୍ଦର ଶୀଘ୍ର ଯାଇ ଆକ୍ରମଣକାରୀମାନଙ୍କର ଉପଦ୍ରବ ନିବାରଣ ଓ ସେମାନଙ୍କର ସହିତ ପଣବନ୍ଧ କରି ଆସିଲେ । ଏହି ବ୍ୟାପାର ସମ୍ପାଦନ କରିବାରୁ ହାଯ୍ଦରଙ୍କର ଅତିମାତ୍ର ଯଶ ଓ ସମ୍ଭ୍ରମ ବୃଦ୍ଧି ହେଲା ଏବଂ ଯେତେବେଳେ ହାଇଦର ସଭାକୁ ଆସନ୍ତି ନନ୍ଦରାଜ ପ୍ରୀତିପ୍ରଫୁଲ୍ଲ ହୃଦୟରେ ସ୍ୱୟଂ ଉଠି ତାହାଙ୍କୁ ଆଲିଙ୍ଗନ କରନ୍ତି ।

କିନ୍ତୁ ଅଧିକ ଦୁଃଖର ବିଷୟ ଏହି ମହୋପକାରୀ ନନ୍ଦରାଜାଙ୍କଠାରେ ସକୃତଜ୍ଞ ହୋଇ ରହିବା ବାସନା କୃତଘ୍ନ ହାଯ୍ଦରଙ୍କ ହୃଦୟରେ ସ୍ଥାନ ପ୍ରାପ୍ତ ହୋଇ ଥିଲା ନାହିଁ । ସେ କୃତଜ୍ଞତା ସ୍ୱୀକାରଠାରୁ ଯହିଁରେ ତାହାଙ୍କର ବାସନା ସଫଳ ହେବ କେବଳ ସେହିରୂପ ଆଚରଣ କରନ୍ତି । ଧର୍ମର ଅନୁରୋଧ ତାହାଙ୍କ କାର୍ଯ୍ୟର ନିୟାମକ ଥିଲା ନାହିଁ । ନନ୍ଦରାଜାଙ୍କଦ୍ୱାରା ତାହାଙ୍କର ଯେତେଦୂର ଉପକାର ଲାଭର ସମ୍ଭାବନା ଥିଲା ତାହା ସମ୍ପୂର୍ଣ୍ଣ ହେବାର ଦେଖି ଶଠମୂସଲମାନ ପିତୃକଳ୍ପ ନନ୍ଦରାଜାଙ୍କୁ ଅପସାରିତ କରି ସର୍ବମୟ କର୍ତ୍ତା ହେବାର ଉପାୟ ଅନ୍ୱେଷଣ କରିବାକୁ ଲାଗିଲେ ।

ନନ୍ଦରାଜା ବହୁକାଳ ମହୀଶୂରରେ କର୍ତ୍ତୃତ୍ୱ କରିଥିଲେ, ଏଥିଲୁ ମର୍ଯ୍ୟାଦା ସହିତ ତାହାଙ୍କ ମାତ୍ସର୍ଯ୍ୟ ମଧ୍ୟ ବୃଦ୍ଧି ହୋଇଥିଲା । ଏଥିପାଇଁ ରାଜା ଓ ରାଜ-ପରିବାର ତାହାଙ୍କପ୍ରତି ଅତ୍ୟନ୍ତ ବିରକ୍ତଥିଲେ କିନ୍ତୁ ପ୍ରବଳ ସର୍ବାଧିକାରୀକୁ ଦମନ କରିବା ତାହାଙ୍କ ପକ୍ଷରେ ଅତ୍ୟନ୍ତ କଠିନ ଥିଲା । ଅବଶେଷେ ରାଜପରିବାରର ଗୋଟିଏ ବିଧବା ସ୍ତ୍ରୀ ଓ ହାଯ୍ଦରଙ୍କ ଧୂର୍ତ୍ତ ବ୍ରାହ୍ମଣ ବନ୍ଧୁ ଚକ୍ରାନ୍ତରେ ପ୍ରବୃତ୍ତ ହେଲେ । ହାଯ୍ଦର ସହିତ ସମସ୍ତ ପରାମର୍ଶ ସ୍ଥିର ହେଲା, ତଦନୁସାରେ ମହୀସୁରର ସେନାମାନେ ଆସି ପୂର୍ବବତ ବେତନ ପାଇଁ ପ୍ରଧାନମନ୍ତ୍ରୀ ନନ୍ଦରାଜାଙ୍କ ଦ୍ୱାରରେ ଧରଣା ଦେଲେ । ଧରଣାଦିୟା ଲୋକମାନଙ୍କର ବାସନା ପୂର୍ଣ୍ଣ ନ କରି ଅନ୍ନ ଗ୍ରହଣ କରିବା ଧନବାନ୍ ହିନ୍ଦୁମାନଙ୍କର ଧର୍ମ ନୁହଇ । ଏଣେ ସେମାନଙ୍କର

ହାଗ ଟଙ୍କା ଦେବାକୁ ନନ୍ଦରାଜଙ୍କ ସମ୍ମତି ବା ଇଚ୍ଛା ଥିଲା ନାହିଁ । ତେଣୁ ନନ୍ଦରାଜ ଉତ୍ତର ଦେଲେ, ଆମ୍ଭ ସହିତ ସେମାନଙ୍କର କୌଣସି ସମ୍ପର୍କ ନାହିଁ । ସେମାନେ ଯାଇ ରାଜାଙ୍କୁ ଟଙ୍କା ମାଗନ୍ତୁ । ତଦନୁସାରେ ସେନାମାନେ ଯାଇ ରାଜଦ୍ୱାରରେ ଧରଣା ଦେଇ ବସିଲେ । ଏଥକୁ ରାଜାଙ୍କ ସହିତ ହାୟଦରଙ୍କର ଏହିପରି ବନ୍ଦୋବସ୍ତ ହେଲା ଯେ ସୈନିକ ଭାର ହାୟଦରଙ୍କର ହସ୍ତରେ ରହିବ ନନ୍ଦରାଜାଙ୍କ ସହିତ କୌଣସି ସମ୍ପର୍କ ରହିବ ନାହିଁ । ଏହି ସୈନିକ ବ୍ୟୟ ନିର୍ବାହ ପାଇଁ ହାୟଦର ଏତେ ଭୂସମ୍ପତ୍ତି ପାଇଲେ ଯେ ମହୀଶୂରର ପ୍ରାୟ ଅର୍ଦ୍ଧାଂଶ ତାହାଙ୍କ ଭାଗରେ ପଡ଼ିଲା ।

କିନ୍ତୁ ଏହି ଅଧର୍ମୋପାର୍ଜିତ ସମ୍ପତ୍ତି ତାହାଙ୍କୁ ଦୀର୍ଘକାଳ ନିରୁଦ୍‌ବେଗରେ ଭୋଗକରିବାକୁ ହେଲା ନାହିଁ । ତାହାଙ୍କର ଉନ୍ନତିକାରମାନେ ବିପକ୍ଷରୂପ ଧାରଣ କରି ବସିଲେ । ପୂର୍ବୋକ୍ତ କୁନ୍ଦ ଓ ରାଜବାଲା ବର୍ତ୍ତମାନ ବିଗ୍ରହ କଲେ ଯେ ନନ୍ଦରାଜାଙ୍କୁ ପଦଚ୍ୟୁତ କରି ତାହାଙ୍କଠାରୁ ଅଧିକ ଶଙ୍କାଭାଜନ ଜଣେ ଲୋକଙ୍କୁ ମନ୍ତ୍ରି ପଦରେ ଅଭିଷିକ୍ତ କରାଗଲା, ଏଥିପାଇଁ ସେମାନେ ହାୟଦରଙ୍କର ବିନାଶ ସାଧନରେ ପ୍ରବୃତ୍ତ ହେଲେ । ଏହି ଚକ୍ରାନ୍ତ ସମୟରେ ହାୟଦର ଅଳ୍ପସେନା ସହିତ ଶ୍ରୀରଙ୍ଗପଟ୍ଟନ ଦୁର୍ଗ ସମୀପରେ ବାସ କରୁଥିଲେ । କୁନ୍ଦ ଏହି ସୁଯୋଗ ଦେଖି କାଳବିଳମ୍ବ ନ କରି ହାୟଦର ଶିବିର ଉପରେ ଗୋଳା ବର୍ଷଣ କରିବାକୁ ଲାଗିଲେ । ହାୟଦର ଉପାୟବିହୀନ ହୋଇ କେବଳ ଅଶ୍ୱସେନା ସହିତ ପଳାୟନ କରି ରକ୍ଷା ପାଇଲେ । ଏହିରୂପେ ହାୟଦରର ସମସ୍ତ ସମ୍ପତ୍ତି ଉଚ୍ଛିନ୍ନ ହେଲା । କିନ୍ତୁ ସେ ସହଜରେ ନିରାଶ ହେବାର ଲୋକ ଥିଲେ ନାହିଁ । ସେ ଅନ୍ୟ କୌଣସି ଉପାୟ ନ ଦେଖି ଅସ୍ତ୍ର ପରିତ୍ୟାଗ ପୂର୍ବକ ଏକାକୀ ଯାଇ ନନ୍ଦରାଜାଠାରେ ଉପସ୍ଥିତ ହେଲେ ଏବଂ ତାହାଙ୍କ ପଦଦ୍ୱୟ ଧାରଣ ପୂର୍ବକ କରୁଣସ୍ୱରରେ କ୍ଷମା ପ୍ରାର୍ଥନା କରିବାକୁ ଲାଗିଲେ । ନନ୍ଦରାଜା କୃତଘ୍ନ ଶଠ ମୁସଲମାନଙ୍କୁ ଭଲରୂପେ ଚିହ୍ନିଥିଲେ ତଥାପି ଦୟା ପ୍ରକାଶ ପୂର୍ବକ କ୍ଷମା ପ୍ରଦାନ କଲେ ଏବଂ ତାହାର ସାହାଯ୍ୟ ପାଇଁ ଆପଣାର ସୈନ୍ୟ ପଠାଇଲେ । ହାୟଦର ନବପ୍ରାପ୍ତ ସୈନ୍ୟ ସହିତ ଯାଇ କୁନ୍ଦଙ୍କୁ ଆକ୍ରମଣ ପୂର୍ବକ ଅଳ୍ପକାଳ ମଧ୍ୟରେ ତାହାଙ୍କର ସୈନ୍ୟ ସକଳ ଛିନ୍ନଭିନ୍ନ କରିଦେଲେ । ଏହିରୂପେ ହାୟଦରଙ୍କ ସୌଭାଗ୍ୟଲକ୍ଷ୍ମୀ ପୁନଃ ବିରାଜିତହେବାକୁ ଲାଗିଲା । ନନ୍ଦରାଜା ଓ ମହୀଶୂରପତିଙ୍କର ଭରଣପୋଷଣ ପାଇଁ କିଛି ଭୂମି ନିର୍ଦ୍ଦିଷ୍ଟ କରି ଦେଇ ଆପେ ମହୀଶୂରର ସର୍ବମୟ କର୍ତ୍ତା ହୋଇ ବସିଲେ ।

ହତଭାଗ୍ୟ କୁନ୍ଦକୁ ଲୌହପିଞ୍ଜରା ମଧ୍ୟରେ ବନ୍ଦ କରି ସବୁବେଳେ ଆପଣା ଆଗରେ ଝୁଲାଇ ରଖିଲେ । ୧୭୫୮ ।

ଅତଃପର ଉତ୍ତରୋତ୍ତର ହାଇଦରଙ୍କର ଭାଗ୍ୟ ବିସ୍ତୃତ ହେବାକୁ ଲାଗିଲା । ୧୭୬୧ ସାଲରେ ସଲାବତଜଙ୍ଗ ୩ ଲକ୍ଷ ଟଙ୍କା ପଣରେ ହାଇଦରଙ୍କୁ ସିରାଜ ନବାବୀ ପଦରେ ନିଯୁକ୍ତ କଲେ । ୧୭୬୩ ସାଲରେ ସେ ବଦ୍‌ନୌର ପ୍ରଦେଶର ଅଧିକାରସହିତ ଓ ସେ ସ୍ଥାନରୁ ବିପୁଳ ଅର୍ଥରାଶି ଲାଭ କରିଥିଲେ । ତହିଁ ପର-ବରଷ ମହାରାଷ୍ଟ୍ର ସେନାମାନେ ଆସି ତାହାଙ୍କୁ ଆକ୍ରମଣ କରିଥିଲେ; କିନ୍ତୁ ସେ ୩୨ ଲକ୍ଷ ଟଙ୍କା ଦେଇ ତହିଁରୁ ମୁକ୍ତି ଲାଭ କଲେ । ୧୭୬୬ ସାଲରେ ହାଇଦର ମଲବାର ପ୍ରଦେଶରେ ଆଧିପତ୍ୟ ସ୍ଥାପନ କରିଥିଲେ । ଏହିରୂପେ ଶ୍ରୀରଙ୍ଗପଟ୍ଟନ-ଠାରୁ କୃଷ୍ଣାନଦୀ ପର୍ଯ୍ୟନ୍ତ ସମସ୍ତ ଭୂଭାଗରେ ତାହାଙ୍କର ଆଧିପତ୍ୟ ବିସ୍ତାର ହେବାରୁ ଦାକ୍ଷିଣାତ୍ୟ ସୁବାଦାର ଓ ମହାରାଷ୍ଟ୍ରୀୟମାନେ ଈର୍ଷ୍ୟାପରବଶ ହୋଇ ତାହାଙ୍କ ବିନାଶ ସାଧନର ଚେଷ୍ଟା କରିବାକୁ ଲାଗିଲେ । ୧୭୬୭ ସାଲର ସନ୍ଧି ନିୟମାନୁ-ସାରେ ଇଂରେଜମାନେ ମଧ୍ୟ ତହିଁରେ ମିଳିତ ହେଲେ । ଏମାନେ ମଧ୍ୟ ହାଇଦରଙ୍କ ଉନ୍ନତି ଦେଖି ଭୀତ ହୋଇଥିଲେ । ଚକ୍ରାନ୍ତକାରୀମାନଙ୍କ ମଧ୍ୟରୁ କ୍ଷିପ୍ରଗତି ମହା-ରାଷ୍ଟ୍ରମାନେ ସର୍ବାଗ୍ରେ ଯୁଦ୍ଧକ୍ଷେତ୍ରରେ ଦେଖାଦେଲେ । ହାଇଦର ଆଗମନଶୀଳ ସେନାମାନଙ୍କ ଗତିରୋଧ ପାଇଁ ଅନେକ ଚେଷ୍ଟା କରିଥିଲେ; କିନ୍ତୁ ତାହା ବିଫଳରେ ପରିଣତ ହୋଇଥିଲା । ପ୍ରଥମରେ ସେମାନେ ଶିରାନଗର ହସ୍ତଗତ କଲେ । ହାଇଦର ଏହି ସମ୍ବାଦ ପାଇ ଅତ୍ୟନ୍ତ ଭୀତ ହେଲେ, କିନ୍ତୁ ସେ ଉତ୍ତମ ରୂପେ ଜାଣି ଥିଲେ ଯେ ମରହଟ୍ଟାମାନେ ଅର୍ଥ ପାଇଲେ ଭୁଲି ଯାଆନ୍ତି ଏଥିରୁ କିଞ୍ଚିତ୍ ଅଧିକ ପରିମାଣରେ ଦକ୍ଷିଣା ଗୁଣାଇ ଦେଲେ । ମରହଟ୍ଟାମାନେ ମଧ୍ୟ ତାହା ପାଇ ପ୍ରସ୍ଥାନ କଲେ ।

ମହାରାଷ୍ଟ୍ରମାନେ ବିଦାୟ ଗ୍ରହଣ କରିବା ପୂର୍ବେ ଇଂରାଜ ଓ ସୁବାଦାର ସେନା ମହୀଶୂର ଉତ୍ତରଭାଗ ପର୍ଯ୍ୟନ୍ତ ଉପସ୍ଥିତ ହୋଇଥିଲେ । କିନ୍ତୁ ଯେ ମୋହିନୀ ମନ୍ତ୍ରରେ ହାଇଦର ମରହଟ୍ଟାମାନଙ୍କୁ ଭୁଲାଇ ଥିଲେ ସେହି ମନ୍ତ୍ରରେ ସୁବାଦାରଙ୍କୁ ମଧ୍ୟ ଭୁଲାଇ ବିଦାୟ ଦେଲେ । ତେଣୁ ଇଂରେଜମାନେ କେବଳ ମଝିରେ ପଡି ରହିଲେ । ଏତେବେଳେ ହାଇଦର ଇଂରେଜମାନଙ୍କୁ ନିଃସହାୟ ଦେଖି ସେମାନଙ୍କୁ ଏକାବେଳକେ ଭାରତବର୍ଷରୁ ତଡ଼ି ଦେବାକୁ ମନସ୍ଥ କଲେ । କ୍ରମାଗତ ଦୁଇବରଷ କାଳ ଇଂରେଜମାନଙ୍କସହିତ ହାଇଦରଙ୍କର ଯୁଦ୍ଧ ହେଲା । ପ୍ରଥମ ପ୍ରଥମ ଯୁଦ୍ଧମାନଙ୍କରେ ଇଂରେଜମାନେ ଜୟୀ ହେଲେ, ଏହା ଦେଖି ଚଞ୍ଚଳମତି ସୁବାଦାର ହାଇଦର ପକ୍ଷ ତ୍ୟାଗ କରି ଇଂରେଜମାନଙ୍କ ପକ୍ଷ ଅବ-

ଲମ୍ବନ କଲେ । ସୁବାଦାର ହାଯୃଦରଙ୍କ ପକ୍ଷରେ ଥିବାବେଳେ ସେ କପଟ୍ର କାପୁରୁଷତା ପ୍ରଦର୍ଶନ ପୂର୍ବକ ହାଯୃଦରଙ୍କର ସାହାଯ୍ୟ କରୁଥିଲେ ସେ ବିଷୟର ଗୋଟିଏ ମାତ୍ର ଦୃଷ୍ଟାନ୍ତ ପ୍ରଦର୍ଶନ କଲେ ପର୍ଯ୍ୟାପ୍ତ ହେବ । ତ୍ରିଣମଲିକାମଳ ସ୍ଥାନ-ରେ ଉଭୟପକ୍ଷର ଗୋଟିଏ ଯୁଦ୍ଧ ଘଟେ । ସୁବାଦାର ସେ ସ୍ଥାନରେ ଉପସ୍ଥିତ ଥିଲେ । ସେହି ଯୁଦ୍ଧରେ ଇଂରେଜମାନଙ୍କ ପକ୍ଷର ୧୫୦୦ ଗୋରା ଓ ୯୦୦୦ ସିପାହୀ ଓ ବିପକ୍ଷ ପକ୍ଷରୁ ୭୦,୦୦୦ ଯୋଦ୍ଧା ଉପସ୍ଥିତ ଥିଲେ । ସୁବାଦାର ଉପସ୍ଥିତ ହୋଇ କହିଲେ " ବରଞ୍ଚ ଆମ୍ଭେ ନିଜର ଜଙ୍ଗଙ୍କ ଅନୁଗାମୀ ହେବୁଁ, ତଥାପି ଯୁଦ୍ଧରେ ପୃଷ୍ଠ ଦେବୁଁ ନାହିଁ " କିନ୍ତୁ ଅଳ୍ପକାଳ ଯୁଦ୍ଧ ହେଉଁରେ ସୁବାଦାର ଭୟ କହ୍ଲଲ ଚିତ୍ତରେ ସ୍ୱଗଣସହିତ ପଳାୟନ କଲେ । ଆଉ ଏକ ଚମତ୍କାର ଲୀଳା ଦେଖ ଯେଉଁଠାରେ ଭୟର ବିଶେଷ କାରଣ ଥିଲା ସେହି ସ୍ଥାନରେ କାପୁରୁଷତା ପ୍ରକାଶ ପାଇଥିଲା । ସୁବାଦାର ପ୍ରତ୍ୟାଶିତ ଯୁଦ୍ଧର ଜୟ ଦେଖାଇବାପାଇଁ କେତେ ଗୁଡ଼ିଏ ହସ୍ତିରେ ଅମ୍ବାରୋହଣ କରାଇ ପୁରବାସିନୀମାନଙ୍କୁ ସଙ୍ଗରେ ଘେନି ଯାଇ ଥିଲେ; ସୁବାଦାର ପଳାୟନ ସମୟରେ ସେହି ହସ୍ତି ଶ୍ରେଣୀ ଫେରାଇବାକୁ ଆଦେଶ ପ୍ରଦାନ କଲେ । ତେତେବେଳେ ଜଣେ ମାହନ୍ତ ଚିତ୍କାର କରି କହିଲେ " ଏହି ହସ୍ତିର ଏପରି ଗୃହଲିବାର ଅଭ୍ୟାସ ନାହିଁ ଏ ସାମ୍ରାଜ୍ୟ ପତାକାର ଅନୁଗମନ କରିଥାଏ " । ତେତେବେଳେ ବୈଦ୍ୟାଶ୍ରୀ ଶିଳାବୃଷ୍ଟି ପରି ଇଂରେଜ-ମାନଙ୍କ ପକ୍ଷରୁ ଗୋଳାବୃଷ୍ଟି ହେଉଥିଲା, ତଥାପି ବାମା ହସ୍ତି ଚଳାଇଲେ ନାହିଁ; ପରେ ପତାକା ପୁରୋଗତ ହେଲେ ହସ୍ତି ଚଳିଲା, ବାସ୍ତବାଙ୍କର କ ବୁଝାମଣା ଏହି ମାହନ୍ତକୁ ସ୍ତ୍ରୀ ଓ ସୁବାଦାରକୁ ପୁରୁଷ କରି ସୃଜି ଥିଲେ ।

ଯାହା ହେଉ ଏହି କାପୁରୁଷ ସୁବାଦାରଠାରୁ ପାଇ ଇଂରେଜମାନଙ୍କର ବିଶେଷ ଲାଭ ହୋଇ ଥିଲା ନାହିଁ । ହାଯୃଦରଙ୍କ ରଣ ଚାତୁର୍ଯ୍ୟରେ ଇଂରେଜ-ମାନେ ଏମନ୍ତ ଅସ୍ଥିର ହୋଇଥିଲେ ଯେ, ସହସା ତାହାଙ୍କ ସହିତ ସନ୍ଧି ସ୍ଥାପନ ନ କରି ସ୍ଥିର ହୋଇ ରହି ପାରିଲେ ନାହିଁ । ମାନ୍ଦ୍ରାଜ ସମୀପରେ ଇଂରେଜମାନଙ୍କ ସହିତ ହାଯୃଦରଙ୍କ ନିମ୍ନଲିଖିତ ପଣରେ ସନ୍ଧି ସ୍ଥାପିତ ହେଲା । ଉଭୟପକ୍ଷ କର୍ତ୍ତୃକ ଯେ ଯେ ଦେଶ ଗୃହୀତ ହୋଇଅଛି ତାହା ପରସ୍ପର ଫେରାଇ ଦେବେ ଏବଂ ସେମାନଙ୍କ କାହାର ବିପତ୍ପାତ ହେଲେ ପରସ୍ପର ସାହାଯ୍ୟ କରିବେ ।

ହାଯୃଦରଙ୍କ ସହିତ ଏହି ବିବାଦରେ ଅନ୍ୟାୟ ଓ ଅନାବଶ୍ୟକ ଅର୍ଥବ୍ୟୟ ହେବାରୁ କୋମ୍ପାନୀ ଆପଣା କର୍ମଚାରୀମାନଙ୍କ ପ୍ରତି ଅତ୍ୟନ୍ତ ଅସନ୍ତୁଷ୍ଟ ହୋଇ ସେମାନଙ୍କୁ ସକଳ ବିଷୟରେ ମିତବ୍ୟୟୀ ହେବା ପାଇଁ ଆଦେଶ ପ୍ରଦାନ କଲେ । ସେମାନେ ମନରେ ଭାବିଥିଲେ ମିତବ୍ୟୟିତା ଅବଲମ୍ବନ କଲେ ଭାରତବର୍ଷରୁ

ପ୍ରଚୁର ଅର୍ଥଲାଭ ହେବାକୁ ପାରେ । ଅତ୍ ସେମାନେ ଏହି ଆଦେଶ ମାତ୍ର ପ୍ରେରଣ କରି ଭାରତଭଣ୍ଡାରରେ ରାଶି୨ ସ୍ୱର୍ଣ୍ଣ ରୌପ୍ୟ ସଞ୍ଚିତ ଅଛି ବୋଲି କଳ୍ପନା ଚକ୍ଷୁରେ ଦେଖିବାକୁ ପାଇଲେ । ଏହି ସମୟରେ ଇଂଲଣ୍ଡୀୟ ପ୍ରଧାନ ରାଜମନ୍ତ୍ରୀ ଏତଦ୍ଦେଶୀ ସମ୍ବନ୍ଧେ ନିମ୍ନଲିଖିତ ନିୟମ ସକଳ ପ୍ରଚାର କଲେ ।

୧ ମ ନିୟମ । ବଙ୍ଗଳା ବିହାର ଓ ଓଡ଼ିଶା ଏହି ତିନି ପ୍ରଦେଶରେ ଜଣେ ସାଧାରଣ ଗଭର୍ଣ୍ଣର ନିଯୁକ୍ତ ଥିବେ, ତାହାଙ୍କର ବାର୍ଷିକ ବେତନ ୨୫ ଲକ୍ଷ ଟଙ୍କା ଏବଂ ତାହାଙ୍କର ସାହାଯ୍ୟ ପାଇଁ ଆଉ ଚାରିଜଣ ମନ୍ତ୍ରୀସ୍ୱରୂପ ନିଯୁକ୍ତ ଥିବେ ଆଉ୨ ପ୍ରେସିଡେନ୍‌ସି ବଙ୍ଗଳାର ଅଧୀନ ହେବ ।

୨ ୟ । ଡାଇରେକ୍ଟର ଅର୍ଥାତ୍ ପ୍ରଧାନ ଅଧ୍ୟକ୍ଷମାନେ ଚାରିବରଷ ଅନ୍ତର ନିଯୁକ୍ତ ହେବେ ।

୩ ୟ । କଲିକତା ନଗରୀରେ ସୁପ୍ରୀମକୋର୍ଟ ନାମକ ଗୋଟିଏ ବିଚାରାଳୟ ସ୍ଥାପିତ ହେବ; ସେଥିରେ ରାଜାଙ୍କ ନିଯୁକ୍ତ ଜଣେ ପ୍ରଧାନ ବିଚାରପତି ଓ ୩ ଜଣ ପିଉନିଜଜ ନିଯୁକ୍ତ ରହିବେ ।

୪ ର୍ଥ । କୋମ୍ପାନୀଙ୍କର ଅଧିକାର ସଂକ୍ରାନ୍ତ ରାଜକାର୍ଯ୍ୟ ବିଷୟର ସମସ୍ତ ବିଷୟ ଇଂଲଣ୍ଡୀୟ ରାଜମନ୍ତ୍ରିଙ୍କୁ ଗୋଚର କରିବାକୁ ହେବ ଏବଂ ସେମାନଙ୍କ କର୍ମକାରକମାନେ କୌଣସିପ୍ରକାର ଉତ୍କୋଚ ଗ୍ରହଣ ବା ବାଣିଜ୍ୟ କରିବାକୁ ପାରିବେ ନାହିଁ ।

—୦O*O୦—

## ଦ୍ୱାଦଶ ଅଧ୍ୟାୟ ।

ଉପର ଲିଖିତ ନିୟମ ପ୍ରଚଳିତ ହେଲା ଉତ୍ତାରେ ଅର୍ଥାତ୍ ୧୭୨୨ ସାଲରେ ହେଷ୍ଟିଂସ୍ ନାମକ ଜଣେ ପ୍ରଧାନ ଇଂରେଜ ଗବର୍ଣ୍ଣରିପଦରେ ନିଯୁକ୍ତ ହେଲେ । ଏବଂ ବାରୱେଲ ମନ୍‌ସନ୍ କ୍ଳେଭାରିଂ ଓ ଫ୍ରାନ୍‌ସିସ ଏମାନେ ନବସ୍ଥାପିତ ସୁପ୍ରୀମକୋର୍ଟର ବିଚାରକ, ସର୍‌ଇଲାଇଜାଇମ୍ପେ ପ୍ରଧାନ ବିଚାରକ ପଦରେ ନିଯୁକ୍ତ ହେଲେ ।

ହେଷ୍ଟିଂସ୍ ସାହେବ ନିଯୁକ୍ତ ହେବାମାତ୍ର ରାଜସ୍ୱ ଆଦାୟ ବିଷୟରେ ନୂତନ ବନ୍ଦୋବସ୍ତ କଲେ । ଦେଶୀୟ କର୍ମକାରକମାନଙ୍କ ଉପରେ ତତ୍ତ୍ୱାବଧାରକ ସ୍ୱରୂପ ଜଣେ୨ କଲେକ୍ଟର ନିଯୁକ୍ତ ହେଲେ । କଲେକ୍ଟରମାନେ ବୋର୍ଡ଼ ଅଫ୍ ରେଭିନ୍ୟୁ ନାମକ ସଭା ଅଧୀନରେ ରହି କର୍ମ କରିବେ ବୋଲି ଅବଧାରିତ ହେଲା ଏବଂ ଏତେବେଳେ ଜମିଦାରମାନଙ୍କ ସହିତ ନୂତନ ବନ୍ଦୋବସ୍ତ ହେବାରୁ ଫୌଜଦାରୀ ଓ ଦେୱାନୀ ମୋକଦ୍ଦମା ନିଷ୍ପତ୍ତି ପାଇଁ ପ୍ରତ୍ୟେକ ଜିଲ୍ଲାରେ ଦୁଇ୨ ବିଚାରାଳୟ

ସ୍ଥାପିତ ହେଲା । ଆଉ ଅପୀଲ ବିଷୟ ବିଚାର ନିମନ୍ତେ କଲିକତା ନଗରୀରେ ଦୁଇଗୋଟି ବିଚାରାଳୟ ସ୍ଥାପିତ ହେଲା । ଦେଓ୍ୱାନୀ ବିଷୟ ବିଚାରସ୍ଥାନର ନାମ ସଦରଦେଓ୍ୱାନୀ, ଏବଂ ଫୌଜଦାରୀ ସମ୍ବନ୍ଧୀୟ ବିଚାରସ୍ଥାନର ନାମ ସଦରନିଜାମତ ଅଦାଲତ । ଏଉତ୍ତାରେ ହେଷ୍ଟିଂସ୍ ସାହେବ ରାଜକାର୍ଯ୍ୟ ବିଷୟରେ ମନୋ-ଯୋଗୀ ହେଲେ ।

ମହମ୍ମଦରଜାଖାଁ ନାମକ ଜଣେ ମୁସଲମାନ ମୁରଶିଦାବାଦ ନବାବଙ୍କ ନାୟେବ ନାଜିମ ପଦରେ ନିଯୁକ୍ତ ଥିଲେ । କୌଣସି କାରଣରୁ ଗବର୍ଣ୍ଣର ସାହେବ ବିରକ୍ତ ହୋଇ ତାହାଙ୍କୁ ପଦଚ୍ୟୁତ କଲେ ଓ ତାହାଙ୍କ କର୍ମ ଦୁଇଭାଗରେ ବିଭକ୍ତ କରି ଅନ୍ୟ ଦୁଇଜଣ ଲୋକଙ୍କୁ ସେହି ଦୁଇ ପଦରେ ନିଯୁକ୍ତ କଲେ । ନବାବଙ୍କ ନିଜରକ୍ଷାର ଭାର ମଣିବେଗମନାମ୍ନୀ ବାରବିଳାସିନୀ ପ୍ରତି ଅର୍ପିତ ହେଲା ଏବଂ ତାହାଙ୍କ ଗୃହକର୍ମ ସମ୍ବନ୍ଧୀୟ ଅପରାପର ବିଷୟର କର୍ତ୍ତୃତ୍ୱ ରାଜା ନନ୍ଦକୁମାରଙ୍କ ପୁତ୍ର ରାଜା ଗୁରୁଦାସଙ୍କ ପ୍ରତି ଅର୍ପିତ ହେଲା ।

ଏହି ସମୟରେ ମୋଗଲ ସମ୍ରାଟଙ୍କର ରାଜଧାନୀ ମହାରାଷ୍ଟ୍ରମାନଙ୍କଦ୍ୱାରା ଆକ୍ରାନ୍ତ ହୁଅନ୍ତେ ସମ୍ରାଟ୍ ତାହା ପୁନର୍ଗ୍ରହଣରେ ଅସମର୍ଥ ହୋଇ ଇଂରେଜମାନଙ୍କ ସାହାଯ୍ୟ ପ୍ରାର୍ଥନା କଲେ, କିନ୍ତୁ କୃତକାର୍ଯ୍ୟ ହୋଇ ନ ପାରି ବିପକ୍ଷମାନଙ୍କ ହସ୍ତରେ ତାହାଙ୍କୁ ଆତ୍ମସମର୍ପଣ କରିବାକୁ ହେଲା । ମହାରାଷ୍ଟ୍ରମାନେ ଆଲ୍ଲାହାବାଦ ଓ କୋରା-ନାମକ ଦୁଇ ସ୍ଥାନ ଗ୍ରହଣ କରି ସମ୍ରାଟଙ୍କୁ ତ୍ୟାଗ କଲେ । ଏ ଉତ୍ତାରେ ମହାରା-ଷ୍ଟ୍ରୀୟମାନେ ବାଦସାହାଙ୍କୁ ଜୟ କରି ଅଯୋଧ୍ୟାର ଉଜୀରଙ୍କୁ ଲକ୍ଷ କରି ଧାବିତ ହେଲେ । ମହାରାଷ୍ଟ୍ରମାନେ ରୋହିଲାଖଣ୍ଡ ବାଟେ ଅଯୋଧ୍ୟାକୁ ଯିବା ପାଇଁ ଅନେକ ଯତ୍ନ କରିବାକୁ ଲାଗିଲେ, କିନ୍ତୁ ରୋହିଲାମାନେ ଅଯୋଧ୍ୟାର ଉଜୀରଙ୍କ ସପକ୍ଷତା ଅବଲମ୍ବନ କରି ସେମାନଙ୍କର ବାଟ ଓଗାଳି ବସିଲେ । ଦୁଃଖର ବିଷୟ ଉଜୀର ଏହି ମହୋପକାର ପ୍ରତ୍ୟକ୍ଷ କରି ମଧ୍ୟ ସେମାନଙ୍କ (ରୋହିଲାମାନଙ୍କ) ପ୍ରତି ଅତ୍ୟା-ଚାର କରିବାକୁ ତ୍ରୁଟି କରି ନ ଥିଲେ । ଉଜୀର ରୋହିଲାଖଣ୍ଡ ହସ୍ତଗତ କରିବା ପାଇଁ ବହୁକାଳରୁ ମନସ୍ଥ କରିଥିଲେ; ବର୍ତ୍ତମାନ ତଦ୍‌ବିଷୟର ସୁଯୋଗ ଦେଖି ଆପଣା ଅଭୀଷ୍ଟସିଦ୍ଧି ବିଷୟ ସାହାଯ୍ୟ କରିବା ପାଇଁ ହେଷ୍ଟିଂସ ସାହେବଙ୍କୁ ଅନୁ-ରୋଧ କରିବାକୁ ଲାଗିଲେ । ଏଣେ ହେଷ୍ଟିଂସ ଅର୍ଥପ୍ରାପ୍ତି ବିଷୟରେ ମୁଗ୍ଧ ହୋଇ ତହିଁରେ ଅଚିରାତ୍ ସ୍ୱୀକୃତ ହେଲେ । ଅବିଳମ୍ବରେ ଯୁଦ୍ଧ ଉପସ୍ଥିତ ହେଲା । ତହିଁରେ ଉଜୀର ଜୟୀ ହେଲେ । ଏ ବିଷୟରେ ସାହାଯ୍ୟ କରିବା ଇଂରେଜମା-ନଙ୍କର ଯେ ନିତାନ୍ତ ଅନ୍ୟାୟ ହୋଇଥିଲା ସେଥିରେ ସନ୍ଦେହ ନାହିଁ । ଆଉ ଏହି ସମୟରେ ବାଦସାହା ବଙ୍ଗ, ବେହାର ଓ ଉଡିଶ୍ୟା ଏହି ତିନି ପ୍ରଦେଶର ବାକୀ

ଖଜଣ୍ଡ ମାଗିବାରୁ ହେଷ୍ଟିଂସ ତହିଁରେ ଏକାବେଳକେ ଅସ୍ୱୀକୃତ ହେଲେ, ତେଣୁ ଏହି ସମୟଠାରୁ ସମ୍ରାଟ୍ ଉଲ୍ଲିଖିତ ଜନପ୍ରଦେଶର ଆଉ କଉଡ଼ାଏ ମଧ୍ୟ ଖଜଣ୍ଡ ପାଇ ନ ଥିଲେ । ଅନେକ ଲୋକେ ହେଷ୍ଟିଂସସାହେବଙ୍କର ଅନେକ ପ୍ରଶଂସା କରନ୍ତି । ସେମାନେ ମନରେ ଭାବନ୍ତୁ ଏହାଠାରୁ ଅତ୍ୟାଗ୍ରହତାର ପ୍ରମାଣ ଆଉ ଅଧିକ କି ହୋଇପାରେ ? ଏହି ଜନପ୍ରଦେଶର ଦେୱାନୀ ପ୍ରଦାନ କରିବାର କ୍ଷମତା ବାଦ୍‌ସାହାଙ୍କ ହସ୍ତରେ ନ୍ୟସ୍ତ ଥିଲା, ତଥାପି ସେ ସ୍ୱୟଂ ଉପଯାଚକ ହୋଇ ଅର୍ଥପ୍ରାପ୍ତି ପ୍ରତ୍ୟାଶାରେ କିଛି ଇଂରେଜମାନଙ୍କୁ ଦେୱାନୀ ଦେଇ ଥିଲେ ନାହିଁ । ସେମାନେ ଅପେ କର ପ୍ରଦାନ ବିଷୟରେ ସ୍ୱୀକୃତ ହୋଇ ପଛନ୍ତେ ତଥ୍ୟଜନକ-ରୂପ ପ୍ରବଞ୍ଚନା ଜାଲ ବିସ୍ତାର କରି ସମ୍ରାଟଙ୍କୁ ଠକାନ୍ତି । ଏହାଠାରୁ ଆଉ କ ଅଧିକ ଅତ୍ୟାଚର ହୋଇପାରେ ?

ଏହି ସମସ୍ତ ଅତ୍ୟାଚର ବିଷୟ ପ୍ରକାଶିତ ହୁଅନ୍ତେ ସୁପ୍ରୀମକୋର୍ଟର ବିଚାର-କମାନେ ହେଷ୍ଟିଂସଙ୍କ ପ୍ରତି ଅତ୍ୟନ୍ତ ବିରକ୍ତ ହେବାକୁ ଲାଗିଲେ । କିନ୍ତୁ ସେମା-ନଙ୍କର ଉପସ୍ଥିତ ସମୟରେ ଯେଉଁ ସମ୍ମାନସୂଚକ ତୋପଧ୍ୱନି ହୋଇଥିଲା ତାହାର ନ୍ୟୂନତା କେବଳ ଏହି କ୍ରୋଧର କାରଣ ଅଟେ । ବିଚାରକମାନେ କଲିକତାରେ ଉପସ୍ଥିତ ହୋଇ ହେଷ୍ଟିଂସଙ୍କ ନାମରେ ଅପବାଦ ଓ ଗ୍ଳାନି କରିବାକୁ ଲାଗିଲେ । ଦେଶୀୟ ଲୋକମାନେ ମଧ୍ୟ ହେଷ୍ଟିଂସସାହେବଙ୍କ ପ୍ରତି ଅତ୍ୟନ୍ତ ବିରକ୍ତ ଥିଲେ; ସେମାନେ ସୁଯୋଗ ପାଇ ତାହାଙ୍କ ନାମରେ ଅବେଦନ କରିବାକୁ ଲାଗିଲେ । ତନ୍ମଧ୍ୟରୁ ମହାରାଜ ନନ୍ଦକୁମାରଙ୍କ ଅବେଦନ ଏ ସ୍ଥାନରେ ଉଲ୍ଲେଖର ଯୋଗ୍ୟ ଅଟେ । ସେହି ଅବେଦନରୁ ପ୍ରକାଶ ପାଇଲା ଯେ, ହେଷ୍ଟିଂସ ସାହେବ ମଣିବେ-ଗମଙ୍କଠାରୁ ଲକ୍ଷେ ଟଙ୍କା ଉତ୍କୋଚ ଗ୍ରହଣ କରି ଅଛନ୍ତି ଓ ରେଜାଖାଁଙ୍କଠାରୁ ପ୍ରଚୁର ଅର୍ଥ ଗ୍ରହଣ କରି ତାହାଙ୍କୁ ବିନା ଦଣ୍ଡରେ ଅବ୍ୟାହତି ଦେଇଅଛନ୍ତି । ହେଷ୍ଟିଂସ ଦାରୁଣ ବିପଦରେ ପଡ଼ିଲେ ଓ ନନ୍ଦକୁମାରଙ୍କୁ ଆପଣାର ସମୂହ ବିପ-ଦର ମୂଳକାରଣ ଜାଣି ତାହାଙ୍କ ବିନାଶଦ୍ୱାରା ଆପଣାର ମୁକ୍ତି ଲାଭର ପନ୍ଥା ଅନ୍ୱେଷଣ କରିବାକୁ ଲାଗିଲେ । ଏହି ସମୟରେ ମୋହନପ୍ରସାଦ ନାମକ ଜଣେ ଲୋକ ହେଷ୍ଟିଂସସାହେବଙ୍କର ପ୍ରିୟପାତ୍ର ହେବା ବାସନାରେ ନନ୍ଦକୁମାରଙ୍କ ନାମରେ ଏକ ଅଭିଯୋଗ ଉପସ୍ଥିତ କଲା, ଅଭିଯୋଗପତ୍ରରେ ନନ୍ଦକୁମାର ଜାଲକାରୀ ବୋଲି ବର୍ଣ୍ଣିତ ଥିଲା । ସୁପ୍ରିମକୋର୍ଟରେ ବିଚାର ହେବାକୁ ଲାଗିଲା । ସେଠାରେ ହେଷ୍ଟିଂସଙ୍କ ପରମବନ୍ଧୁ ସର ଇଲାଇଜା ଇମ୍ପେ ସର୍ବମୟ କର୍ତ୍ତା ଥିଲେ; ତେଣୁ ସେ ଯେଉଁ ଆଡ଼କୁ ଟଳିଲେ ସେହି ଆଡ଼କୁ ମକଦ୍ଦମା ଗଡ଼ିଲା । ବିଚାରରେ

ନନ୍ଦକୁମାରଙ୍କ ପ୍ରତି ଫାସି ଆଦେଶ ହେଲା । ଅଳ୍ପାର ପରଦିନ ଫାସି ଦିଆଗଲା । ୧୭୭୪ ।

ପାଠକ ମହାଶୟମାନେ ବିଚାର କରି ଦେଖନ୍ତୁ ହେଷ୍ଟିଂସ କିପରି ଅତ୍ୟାଚାରି ଥିଲେ । ସାମାନ୍ୟ ଜାଲ ଅପରାଧରେ ଜଣେ ଦେଶୀୟ ମାନ୍ୟ ଗଣ୍ୟ ପ୍ରଧାନ ଲୋକଙ୍କୁ ବଧ କରିବା ଧର୍ମତଃ ଓ ନ୍ୟାୟତଃ ନିତାନ୍ତ ଅନୁଚିତ ହୋଇଅଛି । ବୋଧ କରୁଁ ହେଷ୍ଟିଂସଙ୍କର ଏହି ନୃଶଂସ ପଶୁବତ୍ ବ୍ୟବହାର ଏ ଦେଶୀୟ ଲୋକମାନଙ୍କ ମନରୁ ଚିରକାଳ ପାଇଁ ଅପନୀତ ହେବ ନାହିଁ ।

ପରେ ୧୭୭୬ ସାଲରେ ମନସନ୍ ନାମକ ମେମ୍ବର ପରଲୋକ ଗମନ କରିବାରୁ କେବଳ ଫ୍ରାନ୍‌ସିସ ଓ କ୍ଲେବରିଂ ୨ ଜଣ ହେଷ୍ଟିଂସଙ୍କର ବିପକ୍ଷ ରହିଲେ। ତହିଁରେ ହେଷ୍ଟିଂସଙ୍କ ଅତ୍ୟାଚାରିତା ଦିନକୁଦିନ ବୃଦ୍ଧି ହେବାକୁ ଲାଗିଲା ।

ଯେତେବେଳେ କଲିକତା ଓ ମାନ୍ଦ୍ରାଜ ଏହି ଦୁଇ ପ୍ରେସିଡେନ୍‌ସିର ଉନ୍ନତି ହେଉଥିଲା ତେତେବେଳେ ବୋମ୍ବେ ପ୍ରେସିଡେନ୍‌ସି ଅତି ହୀନାବସ୍ଥାରେ ଥିଲା । ତେତେବେଳେ ବୋମ୍ବେ ନଗର ଗୋଟିଏ ସାମାନ୍ୟ ଶାସନଠାରୁ ଅଧିକ ଉତ୍କୃଷ୍ଟ ଥିଲା ନାହିଁ । ଏତେବେଳେ ଇଂରେଜମାନେ ବୋମ୍ବେର ଉନ୍ନତି-ପାଇଁ ତତ୍‌ପାର୍ଶ୍ୱବର୍ତ୍ତୀ ସ୍ଥାନମାନଙ୍କରେ ଆକ୍ଷି ପକାଇବାକୁ ଲାଗିଲେ ଏବଂ କି ଉପାୟରେ ସେହି ସକଳସ୍ଥାନ ହସ୍ତଗତ ହେବ କୌନସେଲ ଗୃହରେ ସେହି ସକଳର କଳ୍ପନା ହେବାକୁ ଲାଗିଲା । କିନ୍ତୁ ଯେ ଉପାୟ ସେମାନେ ଉଦ୍ଭାବନ କଲେ ତାହା ନିତାନ୍ତ ଅନ୍ୟାୟ । ସ୍ୱାର୍ଥପରତା ମନୁଷ୍ୟମାନଙ୍କୁ ହିତାହିତ ବିବେଚନାଶୂନ୍ୟ କରିପକାଏ, ମନୁଷ୍ୟ ଯେତେ ଜ୍ଞାନୀ ଓ ସଭ୍ୟହେଉ ପଛକେ ସ୍ୱାର୍ଥ-ପରତାର ଅଧୀନ ହେଲେ ତାହାର ଧର୍ମାଧର୍ମ ଜ୍ଞାନ ଥାଏ ନାହିଁ ।

ଏଉତ୍ତାରେ ଇଂରେଜମାନଙ୍କ ଉପରେ ଗୋଟିଏ ଦାରୁଣ ବିପଦ ଉପସ୍ଥିତ ହୋଇଥିଲା । ହାୟଦରଙ୍କ ସହିତ ଏପରି ବନ୍ଦୋବସ୍ତ ହୋଇଥିଲା ଯେ, ସେମା-ନଙ୍କ ମଧ୍ୟରେ କାହାରି ଉପରେ ବିପଦ ପଡିଲେ ସେମାନେ ପରସ୍ପର ସାହାଯ୍ୟ କରିବେ । ହାୟଦର ଥରେ ମହାରାଷ୍ଟ୍ରଙ୍କଦ୍ୱାରା ଆକ୍ରାନ୍ତ ହୋଇ ଇଂରେଜମାନ-ଙ୍କର ସାହାଯ୍ୟ ପ୍ରାର୍ଥନା କରିଥିଲେ କିନ୍ତୁ ଇଂରେଜମାନେ ମୂର୍ଖତା ଅବା ଅନିର୍ଦ୍ଦିଷ୍ଟ କାରଣ ହେତୁରୁ ତାହାଙ୍କର ସାହାଯ୍ୟ ନ କରି ପ୍ରତିଜ୍ଞାଭଙ୍ଗ କରିଥିଲେ ସେହି ଦିନଠାରୁ ହାୟଦରଙ୍କର ଇଂରେଜମାନଙ୍କପ୍ରତି ଅତ୍ୟନ୍ତ ଘୃଣା ଓ ବିଦ୍ୱେଷ ସଞ୍ଚାର ହୋଇ ଆସୁଥିଲା; ତଥାପି ସେ ମନରେ କି ଭାବ ଗୁପ୍ତ ହୋଇ ରହିଥିଲେ । ଏହି ଘଟଣାର କିଛିଦିନ ଉତ୍ତାରେ ଇଂରେଜ ସେନାମାନଙ୍କୁ ଆପଣା ଅଧିକାର ମଧ୍ୟ ଦେଇ ଅନୁମତି ବିନା ଚାଲିଯାଉଥିବାର ଦେଖି ଆଉ କ୍ରୋଧ ସମ୍ଭାଳିପାରିଲେ

ନାହିଁ ଏବଂ କାଳ ବିଳମ୍ବ ନ କରି ବହୁଳସେନା ସଂଗ୍ରହପୂର୍ବକ କର୍ଣ୍ଣାଟଠାରେ ଉପସ୍ଥିତ ହେଲେ । ଇଂରେଜମାନଙ୍କୁ ଏହି ବିପଦୁପାତର ବାଷ୍ପମଧ୍ୟ ଜଣା ନ ଥିଲା ତେଣୁ ଯୁଦ୍ଧସଜ୍ଜାର ଆୟୋଜନ କିଛିହିଁ ହୋଇଥିଲା ନାହିଁ । ଏହି ବିପଦ ସମୟରେ ଦାକ୍ଷିଣାତ୍ୟ ସୁବାଦାର ନିଜାମଅଲ୍ଲିଙ୍କ ସାହାଯ୍ୟ ଛଡ଼ି ଉଦ୍ଧାରର ଅନ୍ୟ କୌଣସି ଉପାୟ ଥିଲା ନାହିଁ । କିନ୍ତୁ ସାହାଯ୍ୟ କରିବା ପଛକୁ ଥାଉ ବିଶ୍ୱାସଘାତକ ନିଜାମ ଇଂରେଜମାନଙ୍କ ବିପଦ ସାଗରରେ ଡୁବିବାକୁ ଦେଖି ଅଧିକ ତଳକୁ ଚାପିଦେବାକୁ ବସିଲେ । ଏଥିକୁ ଇଉରୋପରେ ଫରାଶୀ, ଭାରତବର୍ଷରେ ନିଜାମ-ଅଲ୍ଲି, ହାୟଦରଅଲ୍ଲି ଏବଂ ମହାରାଷ୍ଟ୍ର, ଏହିଗୁଡ଼ିକ ପ୍ରବଳଶତ୍ରୁ ଇଂରେଜମାନଙ୍କୁ ଘେରି ଆସିଲେ । କିନ୍ତୁ ଇଂରେଜମାନେ କାହିଁରେ ନିରୁତ୍ସାହ ଓ ସାହସହୀନ ହେବାର ପାତ୍ର ଥିଲେ ନାହିଁ । ଏହି ଦାରୁଣ ବିପଦସମୟରେ ଅସାମାନ୍ୟ ବିକ୍ରମ ପ୍ରକାଶ କରିବାକୁ ଲାଗିଲେ ଏବଂ ଗୋଟିଏ ଗୋଟିଏ କରି ସମସ୍ତ ଶତ୍ରୁର ମସ୍ତକ ଅବନତ କରାଇଲେ ।

ହାୟଦର ଯୁଦ୍ଧାରମ୍ଭ ସମୟରେ କୌଶଳପୂର୍ବକ ସମ୍ମୁଖ ଯୁଦ୍ଧରେ ପରାସ୍ତ ହୋଇ କେବଳ କର୍ଣ୍ଣାଟପ୍ରଦେଶୀୟ କେତେକ ନଗର ଲୁଣ୍ଠନ କଲେ ଏବଂ ସେହି ସକଳସ୍ଥାନରେ ନାନା ଅତ୍ୟାଚାର ଓ ବହୁଳ ଉତ୍ପାତଦ୍ୱାରା ସେହି ସକଳ-ସ୍ଥାନ ଏକାବେଳକେ ଉଚ୍ଛନ୍ନ କରିଦେଲେ । ପରେ ଇଂରେଜସେନାମାନେ କର୍ଣ୍ଣେଲ ବେଲିସନ୍ତ ସାକ୍ଷାତ୍ ହେବାରୁ ସୈନ୍ୟମାନଙ୍କ ସହିତ ତାହାଙ୍କୁ ବଧ କଲେ ସର ହେକଟର ମନରୋ ସାହେବ ମଧ୍ୟ ରଣରେ ପରାସ୍ତ ହେଲେ । ଗବର୍ଣ୍ଣର ଜେନେରଲ ହେଷ୍ଟିଂସ ସାହେବ ସେନାନୀମାନଙ୍କର ଏବମ୍ପ୍ରକାର ଦୁରବସ୍ଥାର ବିଷୟ ଶ୍ରବଣ କରି ମହାଚିନ୍ତିତ ହେଲେ ଓ ଅନେକ ବିଚାର କରି ସର ଆୟାର କୂଟନାମକ ପ୍ରସିଦ୍ଧ ଯୁଦ୍ଧବୀରଙ୍କୁ ସଂଗ୍ରାମନିମନ୍ତେ ମାନ୍ଦ୍ରାଜକୁ ପ୍ରେରଣ କଲେ । ସେତେବେଳେ ଆର୍କଟ ଓ ବେଲୋରପ୍ରଭୃତି କର୍ଣ୍ଣାଟୀୟ ପ୍ରଧାନପ୍ରଧାନ ନଗରସକଳ ହାୟଦରଙ୍କର ହସ୍ତଗତ ଥିଲା । କୂଟ ସାହେବ ପୂର୍ବେ ଓୟାଣ୍ଡିସ ନଗରରେ ଫରାଶିମାନଙ୍କ ସଙ୍ଗରେ ଯୁଦ୍ଧ କରି ସେମାନଙ୍କୁ ଏକାବେଳକେ ବୀର୍ଯ୍ୟହୀନ ଓ ହୀନାବସ୍ଥା କରିଥିଲେ, ଏତେବେଳେ ତଦପେକ୍ଷା ଅଧିକ ପ୍ରବଳ-ପରାକ୍ରାନ୍ତ ଶତ୍ରୁହସ୍ତରେ ପତିତ ହେଲେ ଏବଂ ବୟସର ଆଧିକ୍ୟ ପ୍ରଯୁକ୍ତ ଆପଣାର ମଧ୍ୟ ସେପରି ବଳବିକ୍ରମ ଥିଲା ନାହିଁ । ତେବେହେଁ ସେ କୌଣସିପ୍ରକାରେ ହତାଶ ଓ ଭଗ୍ନୋତ୍ସାହ ହେବାର ଲୋକ ନ ଥିଲେ । ବରଂ ସେ ସ୍ୱକୀୟ ସ୍ୱାଭାବିକ ଅକୁତୋଭୟତା ସହିତ ହାୟଦରଙ୍କ ୫୦ ହଜାର ସୈନ୍ୟଙ୍କୁ ଏକାବେଳକେ ପରାଭୂତ କରି ଜୟଲାଭ କଲେ । ତହିଁରେ କର୍ଣ୍ଣାଟର ଗୋଳମାଳ ଅନେକ ଅଂଶରେ କମିଗଲା ।

ଏହି ସମୟରେ ମାନ୍ଦ୍ରାଜର ଧନାଗାର ଶୂନ୍ୟପ୍ରାୟ ହୋଇଥିଲା । ବଙ୍ଗଳା-ପ୍ରେସିଡେନ୍‌ସିରେ ମଧ୍ୟ ସେପରି କିଛି ଅର୍ଥ ସଞ୍ଚିତ ଥିଲା ନାହିଁ । ଆଉ ବିଲାତର କର୍ତ୍ତୃପକ୍ଷୀୟମାନେ ମଧ୍ୟ ଟଙ୍କା ମାଗିପଠାଇ ଥିଲେ । ଏହି ସକଳ ଅଭାବ ମୋଚନ-ପାଇଁ ହେଷ୍ଟିଂସ ଅର୍ଥାଗମର ଉପାୟ ଅନ୍ୱେଷଣ କରିବାକୁ ଲାଗିଲେ; କିନ୍ତୁ ଯେ ହେଷ୍ଟିଂସ ସ୍ୱାର୍ଥସାଧନ ପାଇଁ ନରହତ୍ୟା କରିବାକୁ ମଧ୍ୟ ସଙ୍କୋଚିତ ନ ହୁଅନ୍ତି ସେ ଯେ ସ୍ୱକାର୍ଯ୍ୟ ସାଧନ ପାଇଁ କାହାର ସର୍ବନାଶ କରିବାକୁ ସଙ୍କୁଚିତ ହେବେ ଏକଥା କୌଣସିରୂପେ ବୋଧ ହୁଅଇ ନାହିଁ । ଅଯୋଧ୍ୟାସ୍ଥ ଦୁଇଜଣ ବେଗମ-ଙ୍କର ବିପୁଳସମ୍ପତ୍ତି ସଞ୍ଚିତ ଥିଲା, ହେଷ୍ଟିଂସ ତତ୍ରତ୍ୟ ଦୁର୍ବୃଦ୍ଧି ଉଜୀରଙ୍କସହିତ ପରା-ମର୍ଶ କରି ସେମାନଙ୍କୁ ଦାରୁଣ କାୟିକ କ୍ଲେଶ ପ୍ରଦାନ କରି ସେମାନଙ୍କର ସମସ୍ତ ସମ୍ପତ୍ତି ହରଣ କଲେ ।

ଏଥିପୂର୍ବେ ହେଷ୍ଟିଂସ ଆଉରି ଗୋଟିଏ ମଧ୍ୟ ଦାରୁଣ ଅତ୍ୟାଚାର କରିଥିଲେ । ଅଯୋଧ୍ୟାସ୍ଥ ଉଜୀର ପରଲୋକ ଗମନ କରନ୍ତେ ଇଂରେଜମାନେ ତାହାଙ୍କ ପୁତ୍ର ସଙ୍ଗରେ ସଦ୍ଭାବ ସ୍ଥାପନ କରି ବାରାଣସୀ ପ୍ରଦେଶ ଆପଣାମାନଙ୍କର ହସ୍ତଗତ କରିଥିଲେ । ତହିଁରେ ତତ୍ରତ୍ୟ ରାଜା ଚୈତ୍ୟସିଂହ କୋମ୍ପାନୀର ଶାସନା-ଧୀନତା ସ୍ୱୀକାର କରି ଯଥାଯୋଗ୍ୟ ରୂପେ ପ୍ରଜାପାଳନ ଓ ଇଂରେଜମାନଙ୍କୁ ନିୟମିତରୂପେ କର ପ୍ରଦାନ କରି ଆସୁଥିଲେ; କିନ୍ତୁ ତାହାଙ୍କ ପ୍ରତି ହେଷ୍ଟିଂସସା-ହେବଙ୍କର କୌଣସି ବିଷୟରେ ରାଗ ଥିଲା । ସେଥିପାଇଁ ସେ ଚୈତ୍ୟସିଂହଙ୍କ ଉଚ୍ଛେଦଚେଷ୍ଟା ନିୟତ କରୁଥାନ୍ତି । ବର୍ତ୍ତମାନ ଟଙ୍କାର ନିତାନ୍ତ ପ୍ରୟୋଜନ ହେବାରୁ ଚୈତ୍ୟସିଂହଙ୍କୁ ୫୦ ଲକ୍ଷ ଟଙ୍କା ମାଗି ପଠାଇଲେ । ଚୈତ୍ୟସିଂହ ନିରୁପାୟ ହୋଇ ତାହା ଦାନ କଲେ; ମାତ୍ର ଦୁରାଗ୍ରହ ହେଷ୍ଟିଂସ ତହିଁରେ ମଧ୍ୟ ତୁଷ୍ଟ ନ ହୋଇ ପୁନର୍ବାର ୫୦ ଲକ୍ଷ ଟଙ୍କା ମାଗିପଠାଇଲେ । ତାହାଙ୍କର ତେତେ ଟଙ୍କା ଦେବାର କ୍ଷମତା ନ ଥିଲା, ତେଣୁ ଦେଇ ପାରିଲେ ନାହିଁ । ଏଥିରୁ ହେଷ୍ଟିଂସ ମହା ବିରକ୍ତ ହୋଇ ଚୈତ୍ୟସିଂହଙ୍କୁ ବିଦ୍ରୋହୀ ବୋଲି ଜ୍ଞାନ କରି ତାହାଙ୍କ ଦମନ କରିବା ପାଇଁ ସସୈନ୍ୟେ ଯାତ୍ରା କଲେ । ପ୍ରଥମ ଚୈତ୍ୟସିଂହ ବିଳାପ ଓ ପରିତାପ କରି କରୁଣ-ସ୍ୱରରେ କ୍ଷମା ପ୍ରାର୍ଥନା କରିବାକୁ ଲାଗିଲେ; କିନ୍ତୁ ହେଷ୍ଟିଂସ ତହିଁରେ କର୍ଣ୍ଣପାତ ମଧ୍ୟ କଲେ ନାହିଁ । ତହୁଁ କ୍ଷୁଦ୍ର ଗୋଟିଏ ଗୋଳମାଳ ଘଟିଲା, ସେ ଗୋଳମାଳରେ ଚୈତ୍ୟସିଂହ ଚିରଜୀବନ ପାଇଁ ଦେଶାନ୍ତରିତ ହେଲେ । ହେଷ୍ଟିଂସ ରାଜବଂଶରୁ ଅନ୍ୟ ଏକ ଲୋକଙ୍କୁ ସିଂହାସନରେ ବସାଇ ସମସ୍ତ ଶାସନଭାର କୋମ୍ପାନିଙ୍କ ହସ୍ତରେ ରଖିଲେ । ଏପରି ଅନ୍ୟାୟ କରି ଜଣେ ଅଧୀନ ଓ ଆଶ୍ରିତ ରାଜାର ମାନ ଓ ସର୍ବସ୍ୱାପହରଣ କରିବା କି ଭୟାନକ କାଣ୍ଡ । ହେଷ୍ଟିଂସ ବାରମ୍ବାର ଦୁଷ୍କର୍ମ

କରିବାରୁ ତାହାଙ୍କ ଆତ୍ମା ଏମନ୍ତ କଳୁଷିତ ହୋଇ ଯାଇ ଥିଲା ଯେ ଦୁଷ୍କର୍ମ କରିବାକୁ ତାହାଙ୍କର ଭୟ ହେଉ ଥିଲା ନାହିଁ । ଯାହା ହେଉ ଏହି ସକଳ ଅନ୍ୟାୟ କର୍ମ ସକାଶେ କର୍ତ୍ତୃପକ୍ଷୀୟମାନଙ୍କ ଦ୍ୱାରା ସେ ଅତ୍ୟନ୍ତ ଅପମାନିତ ହୋଇଥିଲେ ।

୧୭୮୫ ସାଲେ ହେଷ୍ଟିଂସ କର୍ମ ତ୍ୟାଗକରି ସ୍ୱଦେଶକୁ ଯାତ୍ରା କଲେ । ସ୍ୱଦେଶରେ ପ୍ରଥମ କେତେଦିନ ତାହାଙ୍କ ନାମରେ କିଛି ଶୁଣା ଗଲା ନାହିଁ । ତାହାର ପର ସେ ଭାରତବର୍ଷରେ ଅତ୍ୟାଚାର କରି ଯାଇ ଅଛନ୍ତି ବୋଲି ପାର୍ଲିୟାମେଣ୍ଟରେ ଅଭିଯୋଗ ଉପସ୍ଥିତ ହେଲା । ସୁପ୍ରସିଦ୍ଧ ବକ୍ତା ବାର୍କସାହେବ ହେଷ୍ଟିଂସଙ୍କ ଭାରତ ଅଚରିତ ଦୁଷ୍କର୍ମ ସକଳ ବର୍ଣ୍ଣନ କରି ଉପର୍ଯ୍ୟୁପରି କେତୋଟି ବକ୍ତୃତା କଲେ । ଶ୍ରୋତାମାନେ ନିସ୍ତବ୍ଧ ମନରେ ଶୁଣିବାକୁ ଲାଗିଲେ । ସମସ୍ତେ ହେଷ୍ଟିଂସଙ୍କୁ ସାକ୍ଷାତ୍ ପାପରାଶି ସ୍ୱରୂପ ଦେଖିବାକୁ ଲାଗିଲେ । ଏକ ରାଜମନ୍ତ୍ରୀଙ୍କ ସହଧର୍ମିଣୀ ସେ ସ୍ଥାନରେ ଉପସ୍ଥିତ ଥିଲେ, ସେ ଏହି ସକଳ ଅତ୍ୟାଚାରର ବୃତ୍ତାନ୍ତ ଶ୍ରବଣ କରି ମୋହିତ ଓ ହତଜ୍ଞାନ ହୋଇ ପଡ଼ିଲେ । ୯ ବରଷ କାଳ ହେଷ୍ଟିଂସଙ୍କ ବିଚାର ହୋଇଥିଲା ଏହି ନବବାର୍ଷିକ ବିଚାର ଶେଷରେ ହେଷ୍ଟିଂସ ନିର୍ଦ୍ଦୋଷୀ ବୋଲି ସାବ୍ୟସ୍ତ ହେଲେ । ପାର୍ଲିୟାମେଣ୍ଟ ସଭାରେ ହେଷ୍ଟିଂସଙ୍କ ଦୋଷ ସାବ୍ୟସ୍ତ ହେଲା ନାହିଁ ସତ୍ୟ; ମାତ୍ର ସେ ନିଜେ ଜାଣନ୍ତି ଯେ, ଧର୍ମ ସଭାରେ ସେ ନିର୍ଦ୍ଦୋଷୀ ବୋଲି ପରିଚିତ ହୋଇ ପାରିବେ ନାହିଁ । ହେଷ୍ଟିଂସ ଆପଣା ଦୁଷ୍କର୍ମର ଯେ ଅଂଶିକ ପ୍ରତିଫଳ ଭୋଗ ନ କରିଥିଲେ ଏମନ୍ତ ନୁହଇ । ଏହି ମକଦ୍ଦମା ଉପଲକ୍ଷରେ ଉକୀଲର ବେତନ ଓ ଆନୁଷଙ୍ଗିକ ବ୍ୟୟରେ ସେ ସର୍ବସ୍ୱାନ୍ତ ହୋଇଥିଲେ । ପୂର୍ବୋକ୍ତ ବାର୍କସାହେବ ବୋଲନ୍ତି " ଆପଣା ସପକ୍ଷରେ ଅନୁକୂଳ କଥା ଲେଖାଇବା ପାଇଁ ସେ ସମ୍ବାଦପତ୍ରିକା ସମ୍ପାଦକମାନଙ୍କୁ ୨ ଲକ୍ଷ ଟଙ୍କା ଉତ୍କୋଚ ଦେଇଥିଲେ । ସେ ଯାହା ହେଉ ହେଷ୍ଟିଂସ ଯେ, ନିତାନ୍ତ ଅତ୍ୟାଚାରୀ ଥିଲେ ଏକଥା, ସାଧାରଣଙ୍କ ସ୍ୱୀକାର୍ଯ୍ୟ, ସନ୍ଦେହ ନାହିଁ । ଯେହେତୁ ହେଷ୍ଟିଂସ ଅତ୍ୟାଚାର ପୂର୍ବକ ଭାରତବର୍ଷରୁ ଯେ ସକଳ ଅର୍ଥ ଉପାର୍ଜନ କରିଥିଲେ, ତାହା କିଛି ଆପଣା ପାଇଁ ନୁହଇ, କୋମ୍ପାନୀଙ୍କପାଇଁ କରିଥିଲେ ମାତ୍ର ତାହା କୋମ୍ପାନିର ଅନୁମୋଦିତ ନୁହଇ । ଯଦି କୋମ୍ପାନିଙ୍କର ଅନୁମୋଦିତ ନ ହେଲା, ତେବେ ସେପରି ଅତ୍ୟାଚାର କରିବାର ପ୍ରୟୋଜନ କି ଥିଲା ? ଏସ୍ଥଳରେ ହେଷ୍ଟିଂସ ସ୍ୱୀୟ ଅତ୍ୟାଚାରିତାବୃତ୍ତିର ବଶମ୍ବଦ ହୋଇ ଏହି ସକଳ ଅତ୍ୟାଚାର କରି ନ ଥିଲେ ବୋଲି କିଏ ସ୍ୱୀକାର କରିବେ? ହେଷ୍ଟିଂସଙ୍କ ଉପରେ ଯଦି କେହି କର୍ତ୍ତୃପକ୍ଷୀୟ ନ ଥାଆନ୍ତେ ଆଉ ଅନ୍ୟାୟୋପାର୍ଜିତ ଅର୍ଥ ସକଳ ଯଦି ତାହାଙ୍କର ନିଜସ୍ୱ ହେଉ ଥାଆନ୍ତା ତେବେ ସେ ଭାରତବର୍ଷରେ କି କରି ଯାଇ ଥାଆନ୍ତେ ବୋଲା ଯାଇ ନ ପାରେ ।

## ରାଜମନ୍ତ୍ରୀ ପିଟ୍‌ସାହେବଙ୍କ ପ୍ରସ୍ତାବିତ ଭାରତୀୟ ଶାସନ ପ୍ରଣାଳୀ ।

ଇଂଲଣ୍ଡୀୟ ରାଜମନ୍ତ୍ରୀ ଲର୍ଡ ନର୍ଥଙ୍କର ଅଧୀନରେ ଫକ୍‌ସନାମକ ଜଣେ ପ୍ରଧାନ ମେମ୍ବର ଭାରତବର୍ଷୀୟ ଶାସନ ସମ୍ବନ୍ଧରେ କେତେଗୁଡ଼ିଏ ନିୟମର ପାଣ୍ଡୁଲେଖ୍ୟ ପ୍ରସ୍ତୁତ କରି ସଭାରେ ଉପସ୍ଥିତ କରିଥିଲେ, କିନ୍ତୁ ତାହା ସଭ୍ୟମାନଙ୍କ ଦ୍ୱାରା ନିତାନ୍ତ ଉପେକ୍ଷିତ ହୋଇଥିଲା ଓ ସେହି ଉପଲକ୍ଷରେ ଲର୍ଡ ଆଉ ଫକ୍‌ସ ଉଭୟେ ପଦଚ୍ୟୁତ ହୋଇଥିଲେ । ତତ୍ପରେ ୱିଲିୟମ ପିଟ୍‌ସାହେବ ମନ୍ତ୍ରୀପଦରେ ନିଯୁକ୍ତ ହୋଇ ରାଜ୍ୟଶାସନ ସମ୍ବନ୍ଧରେ ଯେ ନୂତନ ନିୟମାବଳୀ ପ୍ରଚାର କରନ୍ତି ତାହା ସର୍ବାଦୃତ ଓ ସ୍ୱୀକୃତ ହୋଇ ୧୭୮୪ ସାଲ ଠାରୁ ୧୮୩୩ ସାଲ ଯାଏ ବଳବତ୍ ଓ ପ୍ରଚଳିତ ଥିଲା ।

ଏତେଦିନ ଯାଏ କୋମ୍ପାନୀଙ୍କର ଏତଦ୍ଦେଶୀୟ ସମସ୍ତ କାର୍ଯ୍ୟ ଡାଇରେକ୍ଟର ଅର୍ଥାତ୍ ଅଧ୍ୟକ୍ଷ ସଭାଦ୍ୱାରା ନିର୍ବାହିତ ହୋଇ ଆସୁଥିଲା । ଅଂଶିମାନେ କେବଳ ସେମାନଙ୍କର କିଛି ଅନିୟମ ଦେଖିଲେ ଦମନ କରୁଥିଲେ । ଏହା ଛଡ଼ା ପାର୍ଲିୟାମେଣ୍ଟ ଅଥବା ଇଂଲଣ୍ଡେଶ୍ୱରଙ୍କର ତଦ୍ୱିଷୟରେ କୌଣସି କ୍ଷମତା ନ ଥିଲା । ଗବର୍ଣ୍ଣର ଜେନେରାଲ ଅଥବା ଅନ୍ୟ କୌଣସି ଉଚ୍ଚପଦ କର୍ମକାରକ ନିଯୁକ୍ତ ହେଲେ କେବଳ ରାଜାଙ୍କ ସମ୍ମତି ମାତ୍ର ଗ୍ରହଣ କରା ହେଉଥିଲା; କିନ୍ତୁ ଭାରତବର୍ଷର ଉନ୍ନତି ଦେଖି ଇଂଲଣ୍ଡୀୟ ଅଧୀଶ୍ୱର ତତ୍ସମ୍ପର୍କୀୟ ପ୍ରଧାନ କ୍ଷମତା ଆପଣା ହସ୍ତଗତ କରିବାକୁ ଇଚ୍ଛା କଲାଇଲେ । ଫକ୍‌ସସାହେବ ତଦ୍ୱିଷୟରେ ଯେଉଁ ଉପାୟ ଉଦ୍ଭାବନ କରିଥିଲେ, ତାହା ଅସଙ୍ଗତ ବୋଧ ହେବାରୁ ପରିତ୍ୟକ୍ତ ହୋଇଥିଲା । ପରେ ପିଟ୍‌ସାହେବ ସେହି ମନୋରଥ ପୂର୍ଣ୍ଣ କରିବାର ମାର୍ଗ ପ୍ରସ୍ତୁତ କଲେ ।

ତାହାଙ୍କ ପ୍ରସ୍ତାବ ଅନୁସାରେ "ବୋର୍ଡ ଅବ କଣ୍ଟ୍ରୋଲ" ନାମକ ଗୋଟିଏ ସମାଜ ସ୍ଥାପିତ ହେଲା । ଏହା ଛଡ଼ା ଅଂଶିମାନେ ଓ ଅଧ୍ୟକ୍ଷମାନଙ୍କର ସଭାମଧ୍ୟ ରହିଲା; କିନ୍ତୁ ଶେଷୋକ୍ତ ଦୁଇସଭାର କ୍ଷମତା ତାଦୃଶ ରହିଲା ନାହିଁ । ଏହି ଅଭିନବ ସମାଜର ମେମ୍ବରମାନଙ୍କୁ ରାଜା ସ୍ୱୟଂ ନିଯୁକ୍ତ କରନ୍ତି । ଭାରତବର୍ଷୀୟ କାର୍ଯ୍ୟାଦି ବିଷୟର ସମସ୍ତଭାର ସେମାନଙ୍କ ପ୍ରତି ଅର୍ପିତ ଥିଲା । ଏହି ସମୟଠାରୁ ବୋର୍ଡ ସର୍ବମୟ କର୍ତ୍ତା ହୋଇ ବସିଲେ । ଏହି ନିୟମପତ୍ର ଦ୍ୱାରା ଗବର୍ଣ୍ଣର ଜେନେରଲ ଏକ ଅତିରିକ୍ତ କ୍ଷମତା ପ୍ରାପ୍ତ ହେଲେ । ଏତଦ୍ଦେଶୀୟ ମହାସଭାର ସଙ୍ଗରେ କୌଣସି ବିଷୟରେ ତାହାଙ୍କ ମତର ଅନୈକ୍ୟ ହେଲେ ସେ ଅଧିକାଂଶ ମେମ୍ବରଙ୍କ ମତ ଅତିକ୍ରମ କରି ଆପଣା ମତ ପ୍ରବଳ ଓ ପ୍ରଚଳିତ ରଖି ପାରିବେ । ଏହି ନିୟମ ପ୍ରଚଳିତ ହେବା କିଛି ଦିନ ପୂର୍ବେ ହେଷ୍ଟିଂସ ଗବର୍ଣ୍ଣରୀ ପଦ ତ୍ୟାଗ କରି ବିଲାତ ଯାତ୍ରା କରିଥିଲେ । ସେ ପଦ ତ୍ୟାଗ କରି ଗଲେ କୌନସିଲର ମେକ୍‌ଫର୍ସନ

ନାମକ ପ୍ରଧାନ ମେମ୍ବର କିଛିକାଳ ପାଇଁ ତଦୀୟ କାର୍ଯ୍ୟନିର୍ବାହ କରିଥିଲେ ଅନନ୍ତର ଜଣେ ଅଭିନବ ଲୋକ ତତ୍ପଦରେ ନିଯୁକ୍ତ ହୋଇ ଆସିଲେ ।

---

## ତ୍ରୟୋଦଶ ଅଧ୍ୟାୟ

## କର୍ଣ୍ଣୱାଲିଶ ଗବର୍ଣ୍ଣର ।

୧୭୮୮ ସାଲରେ କର୍ଣ୍ଣୱାଲିଶ ବାହାଦୂର ଗବର୍ଣ୍ଣର ପଦାଭିଷିକ୍ତ ହୋଇ ଏଦେଶରେ ଉପସ୍ଥିତ ହେଲେ । ଇଂଲଣ୍ଡରୁ ଯାତ୍ରା କରିବା ସମୟରେ ଭାରତବର୍ଷୀୟ କୌଣସି ରାଜା ସହିତ ଯୁଦ୍ଧରେ ପ୍ରବୃତ୍ତ ନ ହେବା ପାଇଁ କର୍ତ୍ତୃପକ୍ଷୀୟମାନେ ବିଶେଷରୂପେ ଆଦେଶ କରିଥିଲେ ଏବଂ କର୍ଣ୍ଣୱାଲିଶ ମଧ୍ୟ ଉତ୍ତମରୂପେ ବୁଝି ଥିଲେ ଯେ କୋମ୍ପାନୀର ରାଜ୍ୟ ଆଉ ବୃଦ୍ଧି କଲେ ରକ୍ଷା ପାଇବ ନାହିଁ । ଏଥିକୁ ଯହିଁରେ ଏତଦ୍ଦେଶୀୟ ରାଜାମାନଙ୍କ ସହିତ ସଦ୍ଭାବ ରକ୍ଷିତ ହୁଏ ସେ ବିଷୟରେ ବିଶିଷ୍ଟରୂପେ ଯତ୍ନଶୀଳ ହୋଇଥିଲେ; କିନ୍ତୁ ଦୁର୍ଦ୍ଦୈବ ପ୍ରଯୁକ୍ତ ତାହାଙ୍କୁ କର୍ତ୍ତୃପକ୍ଷୀୟମାନଙ୍କ ଏବଂ ସ୍ୱୀୟମତର ବିରୁଦ୍ଧ କର୍ମ କରିବାକୁ ହୋଇ ଥିଲା ।

ହାୟଦରଅଲ୍ଲି ଜୀବିତାବସ୍ଥାରେ ବହୁଦିନ ତ୍ରିବାଙ୍କୋଡ଼ ରାଜ୍ୟ ହସ୍ତଗତ କରିବା ପାଇଁ ବିଶେଷ ଚେଷ୍ଟା କରିଥିଲେ; କିନ୍ତୁ କୃତକାର୍ଯ୍ୟ ହୋଇ ପାରି ନ ଥିଲେ । ପରେ ତତ୍ପୁତ୍ର ଟୀପୁଶୁଲତାନ ମଧ୍ୟ ସେହି ଦୁରାଶାର ଉପଦେଶ ଅନୁସାରେ ୧୭୮୯ ସାଲେ ତତ୍ପ୍ରଦେଶ ଆକ୍ରମଣ କଲେ । ତେତେବେଳେ ତ୍ରିବାଙ୍କୋଡର ରାଜାଙ୍କ ସହିତ ଇଂରେଜମାନଙ୍କର ମେଳ ଥିଲା; ତେଣୁ ତାହାଙ୍କର ସାହାଯ୍ୟ କରିବା ପାଇଁ ଇଂରେଜମାନେ ପ୍ରସ୍ତୁତ ହେବାକୁ ଲାଗିଲେ । ଆଉ ଏହି ସମୟରେ ମହାରାଷ୍ଟ୍ରୀୟ ପେଶୱାୟ ଓ ଦାକ୍ଷିଣାତ୍ୟ ସୁବାଦାର ଏ ଦୁହିଙ୍କ ସହିତ ଟୀପୁଙ୍କର ମନାନ୍ତର ଥିବାରୁ ସେମାନେ ମଧ୍ୟ ତ୍ରିବାଙ୍କୋଡର ରାଜାଙ୍କ ସାହାଯ୍ୟ ପାଇଁ ପ୍ରସ୍ତୁତ ହେବାକୁ ଲାଗିଲେ । ଏହି ତ୍ରିଦଳ ମିଳି ଟୀପୁଙ୍କ ବିରୁଦ୍ଧରେ ଅସ୍ତ୍ର ଧାରଣ କଲେ; ତଥାପି ପ୍ରଥମ ଯୁଦ୍ଧରେ ଟୀପୁଙ୍କର ବିଶେଷ କ୍ଷତିହେଲା ନାହିଁ । ପର ବରଷ କର୍ଣ୍ଣୱାଲିଶ ସ୍ୱୟଂ ରଣସ୍ଥଳବର୍ତ୍ତୀ ହେଲେ ଏବଂ ଅପରିମିତ ବିକ୍ରମ ଓ ସାହସ ପ୍ରକାଶ ପୂର୍ବକ ବାଙ୍ଗାଲୋର ନଗରୀୟ ଦୁର୍ଗ ଅଧିକାର କରି ନେଲେ । ଏଉତ୍ତାରେ ମହୀଶୂରର ରାଜଧାନୀ ଶ୍ରୀରଙ୍ଗପଟ୍ଟନ ଅଭିମୁଖରେ ଯାତ୍ରା କଲେ । ସେ ସ୍ଥାନରେ ଉପସ୍ଥିତ ହୋଇ ନଗର ଆକ୍ରମଣର ଉଦ୍ୟୋଗ କରୁଅଛନ୍ତି ଏମନ୍ତ ସମୟରେ ଟୀପୁଙ୍କ ସନ୍ଧି ପ୍ରସ୍ତାବ ଆସି ଉପସ୍ଥିତ ହେଲା । ଟୀପୁ ଯେ ଭୟ ପାଇ ଏହି ସନ୍ଧିର ପ୍ରସ୍ତାବ କରିଥିଲେ ସେଥିରେ ସନ୍ଦେହ ନାହିଁ । ଯାହା ହେଉ କର୍ଣ୍ଣୱାଲିଶ ତହିଁରେ ଅସ୍ୱୀକୃତ ହେଲେ ନାହିଁ । ସନ୍ଧି ନିୟମରେ ଏହିକଥା ଅବଧାରିତ ହେଲା;—

ଟୀପୁ ଅପଣା ରାଜ୍ୟର ଅର୍ଦ୍ଧାଂଶ ଇଂରେଜ ସୁବାଦାର ଏବଂ ପେଶୋୟା ଏମାନଙ୍କୁ ପ୍ରଦାନ କରବେ ଅଉ ଭବିଷ୍ୟତେ ସେମାନଙ୍କ ମଧ୍ୟରେ କାହାର ସଙ୍ଗ- ରେ ବବାଦ କରବେ ନାହିଁ । ଏହ ପ୍ରତଜ୍ଞା ପାଳନ ନମନ୍ତେ ଅପଣା ଦୁଇପୁତ୍ରଙ୍କୁ ସେମାନଙ୍କ ହସ୍ତରେ ପ୍ରଦାନ କରବେ ଏବଂ ହାଯୃଦରଙ୍କର୍ତ୍ତୃକ ବନ୍ଦୀକୃତ ଇଂରେଜ ସେନାମାନଙ୍କୁ ମୁକ୍ତ କର ଦେବେ । ଟୀପୁ ଏହ ସନ୍ଧି ପ୍ରସ୍ତାବରେ ସ୍ୱୀକୃତ ହୋଇ ଅତ ସୁବୁଦ୍ଧିର କର୍ମ କରଥିଲେ ନଚେତ୍ ଏପର ବହୁଳ ଶତ୍ରୁ ହସ୍ତରୁ ମୁକ୍ତିଲାଭ କରବା ତାହାଙ୍କ ପକ୍ଷରେ ଦୁଃସାଧ୍ୟ ଥିଲା । ଏହ ସନ୍ଧି ଦ୍ୱାରା ଇଂରେଜମାନେ ୨୪ ହଜାର ବର୍ଗମାଇଲ ଭୂମି ପ୍ରାପ୍ତ ହେଲେ ।

ଯୁଦ୍ଧ ଶେଷ ହେଲା ଉତ୍ତାରେ ଲର୍ଡ଼ କର୍ଣ୍ଣଓୟାଲିଶ ଅସାଧାରଣ ବଚକ୍ଷଣତା ପ୍ରକାଶପୂର୍ବକ ଏତଦ୍ଦେଶୀୟ ଶାସନପ୍ରଣାଳୀ ସୁଶୃଙ୍ଖଳାବଦ୍ଧ କରବାକୁ ଲାଗିଲେ । ତାହାଙ୍କ ପ୍ରବର୍ତ୍ତତ ନୟମ ଏହ ଏହ;—

ଏପର୍ଯ୍ୟନ୍ତ ମୁସଲମାନମାନଙ୍କ ସ୍ଥାପିତ ପ୍ରଥାନୁସାରେ ରାଜକାର୍ଯ୍ୟ ନର୍ବାହତ ହୋଇ ଅସୁଥିଲା । ବଙ୍ଗଳା, ବହାର ଓ ଉଡ଼ିଶ୍ୟା ଏହ ତନପ୍ରଦେଶ ଯେ ନାନା ଭାଗରେ ବଭକ୍ତ ହୋଇଥିଲା, କୋମ୍ପାନୀ ତାହାର ପ୍ରତ୍ୟେକସ୍ଥାନରେ ଜଣେ୨ ଇଂରାଜ କର୍ମକାରକ ଓ କେତେଗୁଡ଼ିଏ ଦେଶୀୟ ସାହାଯ୍ୟକାର କର୍ମକାରକ ନଯୁକ୍ତ କରଥିଲେ; ଏମାନେ ରାଜସ୍ୱ ଆଦାୟ ଓ ତତ୍‌ସଂକ୍ରାନ୍ତ ଅନ୍ୟାନ୍ୟକାର୍ଯ୍ୟ ନର୍ବାହ କରୁଥିଲେ । ଜମିଦାରମାନେ ଅପଣା୨ ଅଧିକାରସ୍ଥ ଭୂମିର ରାଜସ୍ୱ ଉଲ୍ଲିଖିତ କର୍ମଚାରମାନଙ୍କ ହସ୍ତରେ ପ୍ରଦାନ କର ବେତନସ୍ୱରୂପ ଯଥାଯୋଗ୍ୟ ସତୁକଷ୍ଟରୁ ଅର୍ଥପ୍ରାପ୍ତ ହେଉଥିଲେ । ଏଅଲ୍ଲୁ ଏମାନଙ୍କୁ ମଧ୍ୟ ଏକପ୍ରକାର କୋମ୍ପା- ନୀର ଭୃତ୍ୟ ବୋଲଲେ ବୋଲାଯାଇପାରେ । ଫୌଜଦାରୀବଷୟର ଚଳତ ନୟମ ଉତ୍କୃଷ୍ଟ ନ ଥିଲା । ନରହତ୍ୟା ଦସ୍ୟୁବୃତ୍ତି ପ୍ରଭୃତ ଗୁରୁତର ଅପରାଧର ଦଣ୍ଡବଧାନ ନମନ୍ତେ ପ୍ରତ୍ୟେକ ସଦରରେ କାଜୀ ନାମଧାରୀ ଜଣେ୨ ବଚାରକ ନଯୁକ୍ତ ଥିଲେ ଏବଂ କ୍ଷୁଦ୍ର ଅପରାଧର ବଚାର ନମନ୍ତେ ପ୍ରତ୍ୟେକ ଗ୍ରାମରେ ଗୋଟିଏ୨ ପଞ୍ଚାଏତ ଅର୍ଥାତ୍ ସଭା ହେଉଥିଲା । ଏହ ନୟମଦ୍ୱାରା ଯେ କେତେଦୂର ଉତ୍କୃଷ୍ଟ ଫଳ ହେଉଥିଲା ତାହା ଅମ୍ଭେମାନେ ନ ଜାଣୁ । ସେ ଯାହା ହେଉ ଗବର୍ଣ୍ଣର ସାହେବ ସେହ ସକଳପ୍ରଥା ରହତ କର ଯେଉଁ ନୟମ ଚଳନ କରାନ୍ତ ତାହା ସଂକ୍ଷେପରେ ଉଲ୍ଲେଖ କରା ଯାଉଅଛୁ ;—

କର୍ଣ୍ଣଓୟାଲିଶ ସାହେବ ରାଜସ୍ୱବଷୟ ବନ୍ଦୋବସ୍ତ କରବାକୁ ଯାଇ ପ୍ରଥମେ ବଡ଼ ଗୋଲମାଲରେ ପଡଲେ । ଭୂମିର ଯଥାର୍ଥ ସ୍ୱାମୀ ନରୂପଣ କରବା ପ୍ରଥମେ ତାହାଙ୍କ ପକ୍ଷରେ କଠିନ ହୋଇଥିଲା । କୌଣସି୨ ଲୋକ ପ୍ରଜା କେହ ବା

ଜମିଦାର, କେହି କେହି ବା ଗବର୍ଣ୍ଣମେଣ୍ଟ ଭୂମିର ଯଥାର୍ଥ ସ୍ୱାମୀ ବୋଲି ତାହାଙ୍କ ଉପଦେଶ ଦେଲେ । କର୍ଣ୍ଣଓ୍ୱାଲିଶ ସାହେବ ଏବିଷୟରେ ଯଥାର୍ଥ ମୀମାଂସା କରନ୍ତୁ । ତାହାଙ୍କ ସୂକ୍ଷ୍ମବିଚାରରେ ଜମିଦାରମାନେ ଭୂମିର ଯଥାର୍ଥ ସ୍ୱାମୀ ବୋଲି ସାବ୍ୟସ୍ତ ହେଲେ । ଗବର୍ଣ୍ଣର ସାହେବ ଭୂମିବିଷୟରେ ୧୦ ବର୍ଷ ସକାଶେ ବନ୍ଦୋବସ୍ତ କରି ଏହି ଘୋଷଣା କରି ଦେଲେ ଯେ ଯଦି ଡିରେକ୍ଟରମାନେ ସ୍ୱୀକୃତ ହୁଅନ୍ତି, ତେବେ ଏହା ଚିରସ୍ଥାୟୀ ବନ୍ଦୋବସ୍ତ ବୋଲି ଗଣ୍ୟ ହେବ । ଏହାର ନାମ " ଦଶଶାଲା ବନ୍ଦୋବସ୍ତ " ଅଟେ । ଏତଦ୍ଦ୍ୱାରା ଜମିଦାରମାନେ ଭୂମିର ଯଥାର୍ଥ ସ୍ୱାମୀ ବୋଲି ଗଣ୍ୟ ହେବାକୁ ଲାଗିଲେ ଏବଂ ପ୍ରଜାମାନଙ୍କସଙ୍ଗରେ ଇଚ୍ଛାନୁସାରେ ବନ୍ଦୋବସ୍ତ କରିବାର କ୍ଷମତା ସେମାନଙ୍କ ହସ୍ତେ ରହିଲା । ଅତି ଗତ କେତେକ ବର୍ଷର ହାରାହାରି କରି ରାଜସ୍ୱ ଅବଧାରିତ ହେଲା । ମଧ୍ୟ ଏପରି ବନ୍ଦୋବସ୍ତ ହେଲା ଯେ ଜମିଦାରମାନେ ସ୍ୱ ସ୍ୱ ଦେୟ ରାଜସ୍ୱ ଦେବାକୁ ଅକ୍ଷମ ହେଲେ ଅଥବା ଗୋଲମାଲକଲେ ସେମାନଙ୍କ ଜମିଦାରୀ ନିଲାମ ହୋଇଯିବ; କିନ୍ତୁ ଶେଷ ନିୟମଟା ଜମିଦାରମାନେ ପ୍ରଜାମାନଙ୍କ ଉପରେ ଖଟାଇ ପାରିବେ ନାହିଁ ଏବଂ ଯେସକଳ ନିଷ୍କରଭୂମିର ସନନ୍ଦ ଉତ୍ତମ ଥିଲା, ସେମାନଙ୍କସହିତ ଏହିନିୟମର କୌଣସି ସମ୍ପର୍କ ରହିଲା ନାହିଁ । ଡିରେକ୍ଟରସମାଜ ଏଥିରେ ଅମତ ପ୍ରକାଶ ନ କରିବାରୁ ତେଣୁ ଏହା ଚିରସ୍ଥାୟୀ ହେଲା । ଏହି ଅଭିନବ ବନ୍ଦୋବସ୍ତଦ୍ୱାରା ଯେ ବିଶେଷ ଉପକାର ସାଧିତ ହୋଇ ନାହିଁ ଏମନ୍ତ ନୁହେ; କିନ୍ତୁ ତାହା ଦୋଷଶୂନ୍ୟ ମଧ୍ୟ ହୋଇ ନାହିଁ । ଆମ୍ଭେମାନେ କେତୋଟି ପ୍ରଧାନ ଦୋଷ ଦେଖୁଅଛୁଁ । ପ୍ରଥମ ଭୂମିର ଉର୍ବରତ୍ୱ ଓ ଉଷରତ୍ୱ ରାଜସ୍ୱର ନ୍ୟୂନାତିରେକ ନ ବୁଝି କରଧାର୍ଯ୍ୟ କରିବାରୁ କୌଣସି୨ ଅଳ୍ପମୂଲ୍ୟବିଶିଷ୍ଟ ଭୂମିରେ ଅଧିକକର ଓ ଉତ୍କୃଷ୍ଟ ଭୂମିରେ ଅଳ୍ପମାତ୍ର କର ଧାର୍ଯ୍ୟ ହୋଇ ଯାଇଅଛି । ୨ୟ ପ୍ରଜାମାନେ ଚିରକାଳ ଯେ ଭୂମିର ସ୍ୱତ୍ୱ ଭୋଗ କରି ଆସୁଥିଲେ, ସେହି ଭୂମି ଉପରେ ସେମାନଙ୍କର ସ୍ୱତ୍ୱାଧିକାର ରହିଲା ନାହିଁ । ୧୭୯୩ ସାଲରେ ଏହି ନିୟମ ସଙ୍କଳିତ ଓ ପ୍ରଚାରିତ ହେଲା । ଏହା ଛଡ଼ା କର୍ଣ୍ଣଓ୍ୱାଲିଶ ସାହେବ ଆହୁରି ମଧ୍ୟ କେତେ ଗୁଡ଼ିଏ ନିୟମ ପ୍ରଚାର କରିଥିଲେ, ତନ୍ମଧ୍ୟରୁ କେତେଗୁଡ଼ିଏ ପ୍ରୟୋଜନୀୟ କଥାର ସଂକ୍ଷେପ ବିବରଣ ଲେଖା ଯାଉଅଛି ।

ହେଷ୍ଟିଂସ ସାହେବଙ୍କ ନିୟମାନୁସାରେ ଫୌଜଦାରୀ, ଦେଓ୍ୱାନୀ ଏବଂ ରାଜସ୍ୱ ସଂଗ୍ରହ ଏହି ସକଳ କର୍ମ ଜଣେ ଇଂରେଜଦ୍ୱାରା ନିର୍ବାହିତ ହେଉଥିଲା, ଅର୍ଥାତ୍ ବର୍ତ୍ତମାନର କଲେକ୍ଟର, ମାଜିଷ୍ଟ୍ରେଟ ଏବଂ ଜଜ ଏହି ତିନିଜଣଙ୍କ କର୍ମର ଭାର ଜଣେଲୋକଙ୍କ ଉପରେ ଅର୍ପିତ ଥିଲା । କର୍ଣ୍ଣଓ୍ୱାଲିଶ ସାହେବ ଏହି

ନିୟମକୁ ସୁନିୟମ ବିବେଚନା ନ କରି ଭିନକର୍ମରେ ପୃଥକ୍ ୨ ଜଣେ ଜଣେ ଲୋକ ନିଯୁକ୍ତ କଲେ । ପ୍ରତ୍ୟେକ ପ୍ରଧାନ ଜିଲ୍ଲାରେ ଗୋଟିଏ ୨ ଅଦାଲତ ସ୍ଥାପିତ ହେଲା ଓ ସେଥିରେ ଜଣେ ୨ ଜଜ ଓ କେତେଗୁଡ଼ିଏ ଅଧୀନକର୍ମଚାରୀ ନିଯୁକ୍ତ ହେଲେ । ତନ୍ମଧ୍ୟରେ ନିମ୍ନସ୍ଥ କର୍ମଚାରୀମାନେ ଅର୍ଥାତ୍ ମୁନସଫମାନେ ଟ ୫୦ ଟଙ୍କାରୁ ଉର୍ଦ୍ଧ୍ୱ ଦାବିର ମକଦମାରେ ହସ୍ତକ୍ଷେପ କରିବେ ନାହିଁ ବୋଲି ଅବଧାରିତ ହେଲା । ଏମାନଙ୍କ ବିଚାରର ଅପୀଲ ଜଜସାହେବଙ୍କ ଠାରେ ହେବ ଏବଂ ଜଜସାହେବ ବିଚାରର ଅପୀଲ ଶୁଣିବା ପାଇଁ କଲିକତା, ଢାକା, ପାଟନା ଓ ମୁରଶିଦାବାଦ ଏହି ଚାରି ସ୍ଥାନରେ ୪ ଗୋଟି ନୂତନ ବିଚାରାଳୟ ସ୍ଥାପିତ ହେଲା । ଏହି ସକଳ ସ୍ଥାନରେ ଇଂରେଜ ଛଡ଼ି ଅନ୍ୟ ସର୍ବଜାତୀୟ ଲୋକମାନଙ୍କର ବିଚାର ହେବାର ସ୍ଥିର ହେଲା । ଏହି ଚାରି ପ୍ରଧାନ ବିଚାରାଳୟର ନାମ "ପ୍ରବିନସାଲକୋର୍ଟ ।" ଏହି ବିଚାରାଳୟରେ ତିନିଜଣ ଲେଖାଏ ପ୍ରଧାନ କର୍ମଚାରୀ ନିଯୁକ୍ତ ହେଲେ । ଏହି ସକଳ ପ୍ରଧାନ ବିଚାରାଳୟର ନିଷ୍ପାଦିତ ବିଚାରର ଅପିଲ କଲିକତାସ୍ଥ ସଦର ଦେଓୟାନୀ ଅଦାଲତରେ ବିଚାର ହେବାର ସ୍ଥିର ହେଲା । ମୁସଲମାନ କାଜିମା-ନଙ୍କ ହସ୍ତରେ ଯେ ବିଚାରର ଭାର ନ୍ୟସ୍ତ ଥିଲା, ଗବର୍ଣ୍ଣର ସାହେବ ତାହା ରହିତ କରି ଦେଲେ । ଏହା ଛଡ଼ା ପ୍ରତ୍ୟେକ ଜିଲାରେ ୧୦ କୋଶ ଅନ୍ତର ଦାରୋଗା ଉପାଧିଧାରୀ ଜଣେ ୨ କର୍ମଚାରୀ ନିଯୁକ୍ତ ହେଲେ । ଏହି ସକଳ ନିୟମ ପ୍ରଚାର କରି ଗବର୍ଣ୍ଣର ସାହେବ ସ୍ୱଦେଶକୁ ଯାତ୍ରା କଲେ । ୧୭୯୩ ସାଲ ।

——o——

## ଚତୁର୍ଦ୍ଦଶ ଅଧ୍ୟାୟ ।

### ସରଜନ ସୋର ଏବଂ ଓଏଲେସଲି ଗବର୍ଣ୍ଣରମାନଙ୍କର ବୃତ୍ତାନ୍ତ ।

ଲର୍ଡ କର୍ଣ୍ଣଓୟାଲିଶ ସାହେବଙ୍କ ଉତ୍ତାରେ ସରଜନ ସୋର ସାହେବ ତିନିବରଷକାଳ ଏଦେଶର ପ୍ରଧାନ ଶାସନକାର୍ଯ୍ୟ ନିର୍ବାହ କରିଥିଲେ । ତାହାଙ୍କ ଶାସନ ସମୟରେ ଏମନ୍ତ କିଛି ବିଶେଷ ଘଟନା ଘଟି ନାହିଁ; କେବଳ ଇଂରେଜ ଓ ଫରାସିମାନଙ୍କ ମଧ୍ୟରେ ୟୁରୋପରେ ମହା ବିବାଦ ଉପସ୍ଥିତ ହେବାରୁ ଭାରତ-ବାସୀ ଫରାସିମାନେ ଇଂରେଜମାନଙ୍କ ପ୍ରତିକୂଳରେ ଅସ୍ତ୍ର ଧାରଣ କରିବା ପାଇଁ ଏଦେଶୀୟ ରାଜାମାନଙ୍କୁ ପରାମର୍ଶ ଦେଇଥିଲେ । ସେମାନଙ୍କ ଚେଷ୍ଟା ଯେ ନିତାନ୍ତ ବିଫଳ ହୋଇଥିଲା ଏମନ୍ତ ନୁହଇ, ଇଂରେଜମାନେ ସାବଧାନ ହୋଇ ନ ଥିଲେ ବୋଧ ହୁଅଇ ସେମାନଙ୍କର ସର୍ବନାଶ ଉପସ୍ଥିତ ହୋଇଆଣନ୍ତା, କିନ୍ତୁ "ଯାହାକୁ ରଖିବ ଅନନ୍ତ, କି କରିପାରେ ବଳବନ୍ତ" ଏଥିକୁ ଇଂରେଜ-ମାନଙ୍କ ପ୍ରତି ସୌଭାଗ୍ୟଲକ୍ଷ୍ମୀ ସୁପ୍ରସନ୍ନା ଥିବାରୁ ଯେତେବେଳେ ଯେପରି ଲୋକ

ଅବଶ୍ୟକ ତେତେବେଳେ ସେହିପରି ଲୋକ ଯୁଟିଥିଲେ । ଏହି ସମୟରେ ଜଣେ ଉପଯୁକ୍ତ ବୁଦ୍ଧିମାନ୍ ଓ ପରାକ୍ରାନ୍ତ ଲୋକ ଗବର୍ଣ୍ଣର ପଦରେ ନିଯୁକ୍ତ ହୋଇ ଆସିବାରୁ ଇଂରେଜମାନେ ସମୂହବିପଦରୁ ଉଦ୍ଧାର ପାଇଥିଲେ । ଏହିଲୋକ ନ ଆସିଥିଲେ ଅବଧାରିତ ଇଂରେଜ କୋମ୍ପାନୀଙ୍କୁ ଭାରତରାଜ୍ୟ ତ୍ୟାଗ କରିବାକୁ ହୋଇଥାଆନ୍ତା । ଏହି ଅଭିନବ ଗବର୍ଣ୍ଣରଙ୍କ ନାମ ମାର୍କୁଇସ ଅବ ୱେଲେସଲି । ସେ ୧୭୯୮ ସାଲରେ ପ୍ରଧାନ ଶାସନକର୍ତ୍ତା ପଦରେ ନିଯୁକ୍ତ ହୋଇ ଏ ଦେଶକୁ ଆସିଥିଲେ ।

୧୭୯୨ ସାଲର ସନ୍ଧିପତ୍ରଦ୍ୱାରା ଟିପୁଙ୍କ ସହିତ ପ୍ରକାଶ୍ୟ ବିବାଦର ଅବସାନ ହୋଇଥିଲା ସତ୍ୟ, କିନ୍ତୁ ତଦ୍ଦ୍ୱାରା ପରସ୍ପରର ମନୋମାଳିନ୍ୟ ଅନ୍ତରିତ ହୋଇ ନ ଥିଲା । ସେହି ନିୟମାନୁସାରେ ଟିପୁଙ୍କର ଯେଉଁ ଦୁଇପୁତ୍ର ଇଂରେଜମାନଙ୍କ ନିକ-ଟରେ ଥିଲେ ସେମାନେ ସମ୍ପ୍ରତି ବାହୁଡ଼ିଥିଲେ । ତେଣୁ ଟିପୁ ଏତେବେଳେ ନିଃଶଙ୍କଚିତ୍ତରେ ଆପଣା ଦୁଷ୍ଟାଭିପ୍ରାୟ ସାଧନରେ ପ୍ରବୃତ୍ତ ହେଲେ । ଇଂରେଜ କୋମ୍ପାନୀଙ୍କୁ ଏକାବେଳକେ ତଡ଼ିଦେବା ତାହାଙ୍କର ନିତାନ୍ତ ବାସନା ଥିଲା, ତେଣୁ ମନ୍ତ୍ରଣା କରି ଭାରତବର୍ଷ ଓ କାବୁଲର କେତେଜଣ ରାଜାଙ୍କୁ ଇଂରେଜମା-ନଙ୍କ ବିରୁଦ୍ଧରେ ଅସ୍ତ୍ରଧାରଣ କରିବା ପାଇଁ ପ୍ରବର୍ତ୍ତାଇବାକୁ ଲାଗିଲେ ଏବଂ ଆଫ୍ରିକାର ଦକ୍ଷିଣପ୍ରାନ୍ତସ୍ଥ ମରିସସ ଦ୍ୱୀପବାସୀ ଫରାସିମାନଙ୍କର ମଧ୍ୟ ସାହାଯ୍ୟ ପ୍ରାର୍ଥନା କରିବାକୁ ଲାଗିଲେ ଏବଂ ଏହି ସମୟରେ ସୁପ୍ରସିଦ୍ଧ ମହାବୀର ନେପୋ-ଲିୟନବୋନାପାର୍ଟ ମିଶର ଦେଶରୁ ତାହାଙ୍କୁ ଲେଖିଥିଲେ ଯେ "ଆମ୍ଭେ ଭାରତ-ବର୍ଷକୁ ଯାଇ ଦୁରାତ୍ମ ଇଂରେଜମାନଙ୍କ ହସ୍ତରୁ ତୁମ୍ଭକୁ ଉଦ୍ଧାର କରି ଦେବୁଁ *" କିନ୍ତୁ ସୁଯୋଗ ନ ଘଟିବାରୁ ଆସିପାରି ନ ଥିଲେ । ସେ ଯାହା ହେଉ ଟିପୁସୁଲତାନ-ଙ୍କର ରଣସଜ୍ଜାର ଏହି ସକଳ ପୂର୍ବଲକ୍ଷଣ ଦେଖି ଗବର୍ଣ୍ଣର ସାହେବ ତାହାଙ୍କୁ କାରଣ ପଚାରି ପଠାଇଲେ; କିନ୍ତୁ ଟିପୁଙ୍କର ଫରାସିମାନଙ୍କଠାରୁ ସାହାଯ୍ୟ ପାଇ-ବା ପ୍ରତ୍ୟାଶା ଥିଲା; ଏଣୁ ତାହାଙ୍କ ପତ୍ର ସନ୍ଦର୍ଭ ଅଗ୍ରାହ୍ୟ କଲେ । ତେଣୁ ଯୁଦ୍ଧ ଘଟିବାର ଅବଧାରିତ ହେଲା । ଇଂରେଜମାନେ ବୋମ୍ବାଇଠାରୁ କର୍ଣ୍ଣେଲଷ୍ଟୁଆର୍ଟ

* ବର୍ତ୍ତମାନ ଫରାସିସ ରାଜବିପ୍ଳବ ଉପଲକ୍ଷରେ ଫରାସିମାନଙ୍କ ସହିତ ୟୁରୋପସ୍ଥ ଅନ୍ୟାନ୍ୟ ରାଜାମାନଙ୍କର ଭୟାନକ ସଂଗ୍ରାମ ଘଟେ । ସେହି ସଂଗ୍ରାମରେ ନେପୋଲିୟନ ନାମକ ସୁବିଖ୍ୟାତ ପୁରୁଷ ଫରାସିସେନା ନାୟକ ଥିଲେ । ଇଂରେଜମାନଙ୍କୁ ବିନାଶ କରିବା ତାହାଙ୍କର ନିତାନ୍ତ ମାନସ ଓ ମୂଳ ଅଭିପ୍ରାୟ । ସେଥିପାଇଁ ସେ ଟିପୁଙ୍କୁ ଏମନ୍ତ ପତ୍ର ଲେଖିଥିଲେ । ସୁଯୋଗ ନ ପାଇବାରୁ ସେ ଭାରତ-ବର୍ଷକୁ ଆସି ପାରିଲେ ନାହିଁ । ଏହାକୁ ଇଂରେଜମାନଙ୍କର ଅତି ସୌଭାଗ୍ୟ ବୋଲି ମଣିବାକୁ ହେବ ନଚେତ୍ ଭାରତବର୍ଷରେ ଯେ କି ଭୟାନକ ଉତ୍ପାତ ଘଟିଥାଆନ୍ତା ବୋଲିଯାଇ ନ ପାରେ ।

ନାମକ ସେନାନୀଙ୍କ ଅଧୀନ ଏକଦଲ ସୈନ୍ୟ ଓ ମାଡ୍ରାଜଠାରୁ ଜେନେରେଲ କର୍ଣ୍ଣେଲ ଓଏଲସିଲ ଓ ଫ୍ଲୋଇଡ୍ ନାମକ ୨ଜଣ ସେନାପତି ସହିତ ବହୁଳ ସୈନ୍ୟ ପ୍ରେରଣ କଲେ । ପ୍ରଥମ ଯୁଦ୍ଧରେ ଷ୍ଟୁଅର୍ଟ ସାହେବ ପରାଜିତ ହେଲେ ମାତ୍ର ଶେଷ ଯୁଦ୍ଧରେ ବୋମ୍ବାଇର ସେନାପତିମାନେ ମିଳିତ ହେବାରୁ ଟିପୁଙ୍କ ସୈନ୍ୟମାନେ ସମ୍ପୂର୍ଣ୍ଣରୂପେ ପରାଜୟ ସ୍ୱୀକାର କଲେ । ତେତେବେଳେ ସବୁସେନାପତି ମିଳିତ ହୋଇ ଏକାବେଳକେ ମହୀଶୂର ରାଜଧାନୀ ଶ୍ରୀରଙ୍ଗପଟ୍ଟନ ଆକ୍ରମଣ କଲେ । କିଛିକାଳ ଯୁଦ୍ଧ ପରେ ମହୀଶୂର ସମ୍ପୂର୍ଣ୍ଣରୂପେ ଇଂରେଜମାନଙ୍କର ହସ୍ତଗତ ହେଲା । ଟିପୁ ଯୁଦ୍ଧରେ ମରିପଡିଲେ । ଏହି ଯୁଦ୍ଧରେ ଯେ କେବଳ ମହୀଶୂର ହସ୍ତଗତ ହେଲା ଏମନ୍ତ ନୁହଇ ଏଥିରେ ଇଂରେଜମାନେ ଯେପରି ଲାଭବାନ ହୋଇଥିଲେ ଅନ୍ୟ କୌଣସିସ୍ଥାନରୁ ଏକାବେଳକେ ଏତେ ଲାଭପାଇ ନ ଥିଲେ ।

ହାଯଦର ମହୀଶୂରର ପୂର୍ବ ରାଜବଂଶକୁ ପଦଚ୍ୟୁତ କରି ସ୍ୱୟଂ ରାଜ୍ୟେଶ୍ୱର ହୋଇଥିଲେ, ଗବର୍ଣ୍ଣର ସାହେବ କୟିଦଂଶ ଭୂସମ୍ପତ୍ତିସହିତ ସେମାନଙ୍କର ହାଲୁପ୍ତପୂର୍ବମର୍ଯ୍ୟାଦା ପ୍ରଦାନ କରିଥିଲେ । ରାଜ୍ୟର ଅପରାଂଶ ନିଜାମ, ପେଶୋୟା ଓ ଇଂରେଜ ଗବର୍ଣ୍ଣମେଣ୍ଟ ଏହି ତିନିଜଣ ବାଣ୍ଟି ନେଲେ । ଏଥିରେ ଇଂରେଜମାନଙ୍କର ୨୦ ସହସ୍ର ବର୍ଗମାଇଲ ଭୂମି ଲାଭହେଲା; ପୂର୍ବେ ଟିପୁଠାରୁ ସେମାନେ ୨୪ ସହସ୍ର ବର୍ଗମାଇଲ ଭୂମି ପାଇଥିଲେ । ଏଥକୁ ଟିପୁସହିତ ଯୁଦ୍ଧ କରି ଇଂରେଜମାନଙ୍କର ୪୪ ସହସ୍ର ବର୍ଗମାଇଲ ଭୂମିଲାଭ ହେଲା । ପରନ୍ତୁ ଏହି ଯୁଦ୍ଧରେ ଇଂରେଜମାନଙ୍କର ଆଉ ଗୋଟିଏ ମହତ୍ ଫଳଲାଭ ହେଲା । ଆଜିଯାଏ ଭାରତବର୍ଷସ୍ଥ ଯେ ରାଜାମାନେ ଇଂରେଜ କୋମ୍ପାନୀର ବିପକ୍ଷତାଚରଣ କରି ଆସୁଥିଲେ, ସେମାନେ ବର୍ତ୍ତମାନ ଇଂରେଜମାନଙ୍କ ବାହୁବଳର ପରିଚୟ ପାଇ ବନ୍ଧୁତା ସ୍ଥାପନପାଇ ଯତ୍ନ କରିବାକୁ ଲାଗିଲେ । ପ୍ରଥମରେ ଦାକ୍ଷିଣାତ୍ୟର ସୁବାଦାର ଇଂରେଜମାନଙ୍କ ସହିତ ମହୀଶୂରରୁ ହୁଇଥରରେ ଯେ ଭୂମିପାପ୍ତ ହୋଇଥିଲେ, ଏତେବେଳେ ସେମାନଙ୍କସହିତ ସଦ୍ଭାବ ବର୍ଦ୍ଧନ ପାଇଁ ତତ୍ସମସ୍ତ ପ୍ରଦାନ କଲେ । ଏଥିରୁ ଇଂରେଜ କୋମ୍ପାନୀଙ୍କର ୨୬ ସହସ୍ର ବର୍ଗମାଇଲ ଭୂମିଲାଭ ହେଲା । ତାଞ୍ଜୋରର ଅଧିପତି ମଧ୍ୟ ସେହି ଆଶୟରେ ୪ ସହସ୍ର ବର୍ଗମାଇଲ ଭୂମି ପ୍ରଦାନ କଲେ । ପର୍ତ୍ତୁଗିଜମାନେ ଇଚ୍ଛାପୂର୍ବକ ଗୟାନଗରୀ ପ୍ରଦାନ କରିଥିଲେ ।

ଅଯୋଧ୍ୟାର ଉଜୀର ସ୍ୱୀୟରାଜ୍ୟ ନିରାପଦରେ ରକ୍ଷା କରିବାନିମନ୍ତେ ଇଂରେଜମାନଙ୍କୁ କେତେଗୁଡ଼ିଏ ସୈନ୍ୟ ପ୍ରାର୍ଥନା କଲେ । ଇଂରେଜମାନେ ତାହାଙ୍କର ବାସନା ପୂର୍ଣ୍ଣ କରିବାରୁ ସେ ଗୋରକ୍ଷପୁର ପ୍ରଭୃତି ୩୦ ସହସ୍ର ବର୍ଗମାଇଲ ଭୂମି ପ୍ରଦାନକଲେ । ପୁଣି କୋମ୍ପାନୀ କର୍ଣ୍ଣାଟ ରାଜ୍ୟ ଆପଣାମାନଙ୍କ କରସ୍ଥ

କରି ନବାବଙ୍କୁ ବୃତ୍ତିଭୋଗୀ କରି ରଖିଲେ । ଏତଦ୍ୱାରା ୩୦ ସହସ୍ର ବର୍ଗମାଇଲ ଭୂମି ଇଂରେଜମାନଙ୍କର ଉଦରସ୍ଥ ହେଲା ।

ଏହିସକଳ ଘଟନାଉତ୍ତାରେ ଇଂରେଜମାନେ ଅନେକଗୋଟି ସାମାନ୍ୟ ଯୁଦ୍ଧରେ ପ୍ରବୃତ୍ତ ହୋଇଥିଲେ, ତନ୍ମଧ୍ୟରେ ଧୁନ୍ଦିୟାନାମକ ଦସ୍ୟୁଦଳପତିସହିତ ଯୁଦ୍ଧ, ଗୋଟିଏ ପ୍ରଧାନ ଅଟେ । ଇଂରେଜମାନେ ତାହାଙ୍କୁ ସହଜରେ ପରାସ୍ତ କରିଥିଲେ । ୧୮୦୨ ସାଲରେ ସିନ୍ଧିୟା ଓ ବେରାରର ରାଜା ଇଂରେଜମାନଙ୍କର ବିରୁଦ୍ଧରେ ଯୁଦ୍ଧ ଘୋଷିଲେ । କେହି୨ ଅନୁମାନ କରନ୍ତି ମହାରାଷ୍ଟ୍ରୀୟ ପେଶୋୟା ମଧ୍ୟ ଗୁପ୍ତଭାବରେ ସେମାନଙ୍କ ସହିତ ମିଳିତ ହୋଇଥିଲେ । କିନ୍ତୁ ଇଂରେଜ-ମାନଙ୍କ ବୁଦ୍ଧିବଳରୁ ଏହି ଷଡ଼ଯନ୍ତ୍ର ସେପରି ଫଳଦାୟକ ହୋଇ ନ ଥିଲା । ଗବର୍ଣ୍ଣର ବାହାଦୁର ଲେକ ଓ ୱେଲସ୍ଲି ନାମକ ଦୁଇଜଣ ସେନାପତିଙ୍କ ଅଧୀନରେ ଦୁଇଗୋଟି ସେନା ଉତ୍ତର ଓ ଦକ୍ଷିଣଦିଗକୁ ପ୍ରେରଣ କଲେ ଏହି ଦୁଇସେନାନୀ ଅଷ୍ଟାଦଶସିନ୍ଧିପକ୍ଷରେ ଯତ୍ନ କରିବାକୁ ତ୍ରୁଟିକରି ନ ଥିଲେ, ପ୍ରଥମତଃ ଲେକ ସିନ୍ଧିୟା ସହିତ ଯୁଦ୍ଧରେ ପ୍ରବୃତ୍ତ ହେଲେ । ହିନ୍ଦୁସ୍ଥାନର ମଧ୍ୟଭାଗରେ ସିନ୍ଧିୟାଙ୍କର ଯେସକଳ ଅଧିକାର ଥିଲା, ଲେକ ପ୍ରଥମରେ ସେ ସକଳ ଲୁଣ୍ଠନ କରିବାକୁ ଲାଗିଲେ ଏବଂ ସିନ୍ଧିୟାଙ୍କ ସାହାଯ୍ୟନିମନ୍ତେ ଯେସକଳ ଫରାସି ସୈନ୍ୟ ଉପସ୍ଥିତ ଥିଲେ ସେମାନଙ୍କୁ ପରାସ୍ତ କରି ଅଲିଗଡ଼ ଦୁର୍ଗ ଅଧିକାର କଲେ । ଅନନ୍ତର ଦିଲ୍ଲୀକୁ ଯାଇ କୌଶଳଦ୍ୱାରା ବିପକ୍ଷମାନଙ୍କୁ ତଡ଼ିଦେଲେ ଓ ସମ୍ରାଟଙ୍କୁ ସେମାନଙ୍କ ଅଧୀନତା ଓ ଅତ୍ୟାଚାରରୁ ମୁକ୍ତ କରିଦେଲେ । ସମ୍ରାଟ୍ ଏପାଏ ସିନ୍ଧିୟା ହସ୍ତଗତ ଥିଲେ, ଲେକ ନିର୍ଦ୍ଧାରିତ ବୃତ୍ତି ଦାନଦ୍ୱାରା ତାହାଙ୍କୁ ସୁଖୀ କଲେ । ଏଥିଉତ୍ତାରେ ଆଗ୍ରାନଗରୀ ତାହାଙ୍କର ହସ୍ତଗତ ହେଲା । ମଧ୍ୟ ଲାସୋୟାରିର ପ୍ରସିଦ୍ଧ ସଂଗ୍ରାମଦ୍ୱାରା ସିନ୍ଧିୟାଙ୍କ ସୈନ୍ୟସକଳ ଏକାବେଳକେ ଛିନ୍ନଭିନ୍ନ ହୋଇ-ଯିବାରୁ ତେଣୁ ସିନ୍ଧିୟାଙ୍କୁ ଇଂରେଜମାନଙ୍କ ସହିତ ମିଳନ କରିବାକୁ ହେଲା । ଏଥିରେ ଇଂରେଜମାନେ ଦୋୟାବ, ବରୋଚ, ଅହମଦନଗର ଓ ଓଡ଼ିଶା ପ୍ରାପ୍ତ ହେଲେ । ୧୮୦୦ ।

ଯେତେବେଳେ ଲେକ ସିନ୍ଧିୟାସହିତ ଯୁଦ୍ଧରେ ଲିପ୍ତଥିଲେ ୱେଲସ୍ଲି ମଧ୍ୟ ସେହି ସମୟରେ ଦକ୍ଷିଣ ଓ ପଶ୍ଚିମ ଅଞ୍ଚଳରେ ଶତ୍ରୁ ବିନାଶସାଧନ କରୁ-ଥିଲେ । ସେ ପ୍ରଥମରେ ବିରାରସ୍ଥ ରାଜାଙ୍କ ଅଧିକାର ଅକ୍ରମଣପୂର୍ବକ ଆରଙ୍ଗା-ବାଦ ଓ କ୍ରମେ୨ ଆଉ କେତୋଟି ନଗର ଅଧିକାର କରିଥିଲେ । ପ୍ରଥମେ ସିନ୍ଧିୟା ଓ ବେରାରରାଜା ଦୁହେଁ ଯୁଦ୍ଧରେ ଲିପ୍ତ ଥିଲେ । କିନ୍ତୁ ପୂର୍ବୋଲ୍ଲିଖିତ ଲାସୋୟାରିର ରଣକ୍ଷେତ୍ରରେ ପରାସ୍ତ ହୋଇ ସିନ୍ଧିୟା ତାହାଙ୍କ ପୂର୍ବାଞ୍ଚଳସ୍ଥ ଅଧି-

କାର ରକ୍ଷାନିମନ୍ତେ ଯତ୍ନ କଲେ । ତେତେବେଳେ ୱେଲସିଲ ବରାରର ରାଜାଙ୍କୁ ଏକାକୀ ପାଇ ସନ୍ଧିସତ୍ତ୍ୱେ ତାହାଙ୍କସହିତ ଯୁଦ୍ଧ କରୁକରୁଁ ତାହାଙ୍କୁ ଅର୍ଗୋମ୍ବ ନାମକ ସ୍ଥାନରେ ଜୟକଲେ । କ୍ରମେ ଗାଉଇଲ ଘରର ଦୁର୍ଗ ତାହାଙ୍କ ହସ୍ତରେ ପଡ଼ିବାରୁ ମହାରାଷ୍ଟ୍ରମାନଙ୍କ ଗୌରବ ଓ ପୂର୍ବପ୍ରଭାବ ଏକାବେଳକେ ବିଲୁପ୍ତ ହୋଇଗଲା । ଏଥିରୁ ବରାରର ରାଜା ହତାଶ ଓ ଭୟପ୍ରାପ୍ତ ହୋଇ ଇଂରେଜମାନଙ୍କ ସହିତ ସନ୍ଧିର ପ୍ରସ୍ତାବ କଲେ । ଇଂରେଜମାନେ ଏଥିରେ ସମ୍ମତ ହେବାରୁ ଦାକ୍ଷିଣାତ୍ୟର ଅନ୍ତଃପାତୀ ଅଧିକାରସ୍ଥ ଭାରତବର୍ଷ ପ୍ରଦାନ କଲେ । ଏଥିରେ ଇଂରେଜମାନଙ୍କର ୩୬୦୦୦ ବର୍ଗ ମାଇଲ ଭୂମି ହସ୍ତଗତ ହେଲା ।

ସିନ୍ଧିୟା ଓ ବରାରର ରାଜା ଶାସିତ ହେଲା ଉତ୍ତାରେ ଏତେବେଳେ ଏହାଙ୍କଠାରୁ ଅଧିକ ପ୍ରବଳ ଓ ପରାକ୍ରାନ୍ତ ଆଉ ଜଣେ ମହାରାଷ୍ଟ୍ର ଦେଖା ହେଲେ । ତାହାଙ୍କର ନାମ ହୋଲ୍‌କାର । ସେ ଏତେଦିନଯାଏ ଇଂରେଜମାନଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତ ହୋଇ ନ ଥିଲେ । ସମ୍ପ୍ରତି ସିନ୍ଧିୟାଙ୍କ ସନ୍ଧିରେ ହୋଇଥିବ ଇଂରେଜମାନଙ୍କୁ ପ୍ରଦତ୍ତ ହେବାରୁ ତାହାଙ୍କର ମଧ୍ୟ କେତେକ ଭୂମି ତାହାମଧ୍ୟରେ ଚାଲିଗଲା । ସେହିସକଳ ଭୂମି ଫେର ପାଇବାର ଉପାୟାନ୍ତର ନ ଦେଖି ଯୁଦ୍ଧଦ୍ୱାରା ପାଇବାକୁ ସିଦ୍ଧାନ୍ତ କଲେ । ହୋଲ୍‌କାର ପ୍ରଥମରେ ଇଂରେଜଙ୍କ ବନ୍ଧୁ ଜୟପୁର ରାଜାଙ୍କୁ ଆକ୍ରମଣ କରିବେ ବୋଲି ଭୟ ଦେଖାଇବାରୁ ଇଂରେଜମାନେ ଯୁଦ୍ଧସଜ୍ଜା କରିବାକୁ ଲାଗିଲେ । ସେମାନେ ଏହିପରି କୌଶଳ ଅବଲମ୍ବନ କଲେ ଯେ, ସେନାପତି ଲେକ ଦିଲ୍ଲୀବାଟେ ପଶ୍ଚିମଦିଗରୁ ଯାଇ ହୋଲକାରରାଜ୍ୟ ଆକ୍ରମଣ କରିବେ । ମନ୍‌ସନ୍ ହୋଲକାରଙ୍କ ପଶ୍ଚାଦ୍‌ବର୍ତ୍ତୀ ହେବେ ଏବଂ ସେନାପତି ମରେ, ଗୁଜ୍ଜରାଟରୁ ଯାତ୍ରା କରିବେ । ଏହିପରି ନାନାଦିଗରୁ ତାହାଙ୍କୁ ଆକ୍ରମଣ କରିବା କଥା ସ୍ଥିର ହେଲା । କିନ୍ତୁ ପ୍ରଥମଯୁଦ୍ଧରେ ମନସନ୍ ଏମନ୍ତ ପରାସ୍ତ ହେଲେ ଯେ, ଜୀବନଘେନି ଫେରଆସିବା ତାହାଙ୍କପକ୍ଷରେ କଠିନ ହୋଇଥିଲା । ଏଥିରେ ଇଂରେଜମାନଙ୍କ ଦୁଃଖର ଅବସାନ ହେଲା ନାହିଁ । ବରଂଚ ଭୟର କାରଣ ଦିନକୁ ଦିନ ବୃଦ୍ଧି ହେବାକୁ ଲାଗିଲା । ଏଯାଏ ଭରତପୁରସ୍ଥ ରାଜାଙ୍କସହିତ ଇଂରେଜମାନଙ୍କର ପ୍ରଣୟ ଥିଲା; କିନ୍ତୁ ସେ ବିଶ୍ୱାସଘାତକତାପୂର୍ବକ ବିପକ୍ଷପକ୍ଷର ସାହାଯ୍ୟ କରିବେ ବୋଲି ପ୍ରତିଶ୍ରୁତ ହେଲେ ଏବଂ ସିନ୍ଧିୟା ମଧ୍ୟ ସୁଯୋଗ ପାଇ ସେମାନଙ୍କସହିତ ମିଳିତ ହେଲେ, ଏମାନେ ମିଳିତ ହୋଇ ଦିଲ୍ଲୀ ଆକ୍ରମଣର ବିବିଧକୌଶଳ ଓ ମନ୍ତ୍ରଣା କରିବାକୁ ଲାଗିଲେ । କିନ୍ତୁ ସକଳ ଚେଷ୍ଟା ବିଫଳ ହେଲା । ଲେକ ଯୁଦ୍ଧ କରିବାକୁ ଯାଉଅଛନ୍ତି ଶୁଣି ହୋଲ୍‌କାର୍ ନିତାନ୍ତ ଭୀତ

ହୋଇ ସାକ ନଗରକୁ ପଳାୟନ କଲେ । ଇଂରେଜସେନାନୀ ପ୍ରେଂସାର୍ ସାହେବ ତାହାଙ୍କ ଅନୁସରଣ କରିବାକୁ ଲାଗିଲେ ଏବଂ ଏକସ୍ଥାନରେ ହୋଲକାରଙ୍କର ଥୋକାଏ ସୈନ୍ୟକୁ ପରାଜୟ କରି ଆପେ ନିଧନ ପ୍ରାପ୍ତ ହେଲେ । ତେବେ ମଧ୍ୟ ଲେକ କିଛିମାତ୍ର ଦୁଃଖିତ ବା ସାହସହୀନ ନ ହୋଇ ହୋଲକାରଙ୍କ ଅପରାଂଶ ସୈନ୍ୟକୁ ଏକାବେଳକେ ପରାସ୍ତ କଲେ । ହୋଲକାର ସେଥିରେ ଫରେକାବାଦ ଯାତ୍ରା କଲେ । ମାତ୍ର ସେ ସ୍ଥାନରେ ମଧ୍ୟ ନିରାପଦରେ ରହି ନ ପାରି ଭରତପୁରସ୍ଥ ପ୍ରସିଦ୍ଧ ଦୁର୍ଗରେ ଆଶ୍ରୟ ଗ୍ରହଣ କଲେ । ଇଂରେଜମାନେ ତାହାଙ୍କ ପିଛେ ପିଛେ ଯାଇ ସେହି ଦୁର୍ଗ ଆକ୍ରମଣ କଲେ ଓ ସେହି ଦୁର୍ଗ ପ୍ରାଚୀର ଭାଙ୍ଗିବାକୁ ଚାରିଥର ଚେଷ୍ଟା କଲେ; ମାତ୍ର ତାହା ବିଫଳ ହେବାରୁ ତତ୍ରତ୍ୟ ରାଜାଙ୍କସହିତ ଇଂରେଜମାନଙ୍କ ସନ୍ଧି କରିବାକୁ ହେଲା । ଏଥିରୁ ହୋଲକାର ଅସହାୟ ଓ କ୍ଷମତାହୀନ ହୋଇ ଦସ୍ୟୁହୀନ ପେଣ୍ଡାରୀପରି ପଡ଼ି ରହିଲେ । ଫଳେ ଏହିଦିନଠାରୁ ମହାରାଷ୍ଟ୍ରସାମନ୍ତ-ମାନେ ହୀନବଳ ହୋଇ ଭଗ୍ନ ହେଲେ । ଆଉ ହୋଲକାର, ବ୍ରିଟିସ ଅଧିକାର ମଧ୍ୟରେ ସୁଦ୍ଧା ରହି ନ ପାରି ଚମ୍ବଲନଦୀ ପାରି ହୋଇ ପଳାୟନ କଲେ । ୧୮୦୫ ।

ଏତେବେଳେ ଲର୍ଡ଼ ଓଏଲେସଲିଙ୍କ ବାହୁବଳରୁ ଭାରତବର୍ଷସ୍ଥ ସମସ୍ତ ପ୍ରବଳଶକ୍ତି ମୁଣ୍ଡ ନୁଆଁଇଲେ । ଆଉ ଯେ ଦିଲ୍ଲୀଶ୍ୱରଙ୍କ ବାହୁବଳରେ ସମସ୍ତ ଭାରତଭୂମି କମ୍ପମାନ ହେଉଥିଲା, ସେହି ଦିଲ୍ଲୀଶ୍ୱର ଜଣେ କୋମ୍ପାନୀର ପ୍ରଜୁଣା ଗ୍ରହଣକରି ବୃତ୍ତିପାଇ ରହିଲେ । ହିମାଳୟପର୍ବତଠାରୁ କୁମାରିକାଅନ୍ତରୀପପର୍ଯ୍ୟନ୍ତ ସମସ୍ତ ପ୍ରଧାନ ସ୍ଥାନ କୋମ୍ପାନୀରାଜ୍ୟଭୁକ୍ତ ହେଲା । ଓଏଲେସଲି ଅସାଧାରଣ ବୁଦ୍ଧିମାନ ଓ କ୍ଷମତାଶାଳୀ ଥିଲେ, ତାହାଙ୍କୁ ସମ୍ରାଟ୍ ଆକବରଙ୍କସହିତ ତୁଳନା କଲେ ମଧ୍ୟ କରାଯାଇ ପାରେ । ତାହାଙ୍କ କାର୍ଯ୍ୟାବଳୀବିଷୟ ଆଲୋଚନା କଲେ ଜଣାଯାଏ ଯେ, କେବଳ ସାମ୍ରାଜ୍ୟବିସ୍ତାର ରାଜନୀତିର ଉଦ୍ଦେଶ୍ୟ ବୋଲି ସେ ମଣୁଥିଲେ । ଭାରତବର୍ଷୀୟମାନଙ୍କୁ ଉଚ୍ଚପଦ ଦେବା ବା ବିଦ୍ୟାଦାନ କରିବା ରାଜନୀତି ବିରୁଦ୍ଧ ବୋଲି ତାହାଙ୍କର ଜ୍ଞାନ ଥିଲା; କିନ୍ତୁ ସେ ଗୋଟିଏ ଉପକାର କରି ଆମ୍ଭମାନଙ୍କଠାରେ ଚିରସ୍ମରଣୀୟ ହୋଇ ରହିଅଛନ୍ତି । ବହୁକାଳରୁ ଏମନ୍ତପ୍ରଥା ଚଳିଆସୁଥିଲା ଯେ, ଗଙ୍ଗାସାଗର ବା ଗଙ୍ଗାତୀରସ୍ଥ ଅନ୍ୟାନ୍ୟ ପବିତ୍ରତୀର୍ଥରେ କେହି୨ ଆପଣା ଶିଶୁସନ୍ତାନକୁ ଜଳରେ ଭସାଇ ଦେଉଥିଲେ । ଲର୍ଡ଼ ଓଏଲେସଲି ୧୮୦୨ ସାଲେ ଖଣ୍ଡିଏଆଇନ ପ୍ରଚାର କରି ତାହା ରହିତ କରିଅଛନ୍ତି ।

ଏହି ସକଳକାର୍ଯ୍ୟ ସମାଧାନ କରି ଓଏଲେସଲି ସାହେବ ସ୍ୱଦେଶକୁ ଯାତ୍ରା କଲେ ।

---

## ପଞ୍ଚଦଶ ଅଧ୍ୟାୟ ।

### ଲର୍ଡ଼ କର୍ଣ୍ଣୱାଲିସ ଓ ଲର୍ଡ଼ ମିଣ୍ଟୋ ।

ଲର୍ଡ଼ ଓଏଲେସଲି ଭାରତବର୍ଷ ପରିତ୍ୟାଗ କରି ଯାନ୍ତେ ଲର୍ଡ଼ କର୍ଣ୍ଣୱାଲିଶ ପୁନର୍ବାର ତତ୍ପଦରେ ନିଯୁକ୍ତ ହୋଇ ଆସିଥିଲେ କିନ୍ତୁ ଦୁଇମାସ ଉତ୍ତାରେ ବାରଣସୀ ସମୀପରେ ଗାଜିପୁରଠାରେ ତାହାଙ୍କର ପ୍ରାଣତ୍ୟାଗ ହେଲା । ତହିଁଉତ୍ତାରେ ଡିରେକ୍ଟରମାନେ ଲର୍ଡ ମିଣ୍ଟୋଙ୍କୁ ଗବର୍ଣ୍ଣର ଜେନରେଲ ପଦରେ ନିଯୁକ୍ତ କରି ପଠାଇଲେ । ସେ ୧୮୦୭ ସାଲରେ ଆସି କଲିକତାରେ ଉପସ୍ଥିତ ହେଲେ । ମିଣ୍ଟୋ କାର୍ଯ୍ୟଭାର ଗ୍ରହଣ କରି ପ୍ରଥମରେ ପଞ୍ଜାବାଧିପତି ମହାରାଜ ରଣଜିତସିଂହଙ୍କ ସହିତ ସନ୍ଧି ସ୍ଥାପନ କଲେ । ସନ୍ଧିରେ ଏପରି ନିୟମ ରହିଲା ଯେ ଶତଦ୍ରୁ ନଦୀ ଉତ୍ତରଭାଗରେ ମହାରାଜାଙ୍କର ଯେ ସକଳ ଅଧିକାର ଅଛି କୋମ୍ପାନୀଙ୍କ ସହିତ ସେ ସକଳର କୌଣସି ସମ୍ପର୍କ ରହିବ ନାହିଁ । ଦକ୍ଷିଣକୂଳରେ ଯେ ସମସ୍ତ ଦେଶ ଅଛି ତାହା କୋମ୍ପାନୀର କରଗତ ହେବ । ରଣଜିତ ସିଂହ ସତ୍ୟବାଦୀ ଲୋକ ଥିଲେ । ସେ କଦାଚ ଏହି ନିୟମ ଭଗ୍ନ କରି ନାହାନ୍ତି ।

ରଣଜିତସିଂହଙ୍କ ସହିତ ବନ୍ଧୁତା ସ୍ଥାପନ କରିବାର ଦୁଇମାସ ଉତ୍ତାରେ ଅନ୍ୟ ଗୋଟିଏ ଯୁଦ୍ଧ ଘଟିଲା । ଅମୀରଖାଁ ନାଗପୁରାଧିପତିଙ୍କୁ ଆକ୍ରମଣ କଲେ । ନାଗପୁର କୋମ୍ପାନୀର ମିତ୍ରରାଜ୍ୟ ଅଟେ । ଏଥିକୁ ମିଣ୍ଟୋ ସାହେବ ଅବିଳମ୍ବେ ଦୁଇଦଳ ସେନା ପଠାଇ ଅମୀରଙ୍କୁ ଦୂର କରିଦେଲେ ।

ଏଉତ୍ତାରେ ଗବର୍ଣ୍ଣର ସାହେବ ବାଣିଜ୍ୟ କାର୍ଯ୍ୟର ସୁବିଧା ପାଇଁ ଫରାସି-ମାନଙ୍କଠାରୁ ମରିସସ୍ ଓ ବୋର୍ବୋ ଓ ଜାବାଦ୍ୱୀପ ବଳପୂର୍ବକ ଗ୍ରହଣ କଲେ । ୧୮୧୦ ।

୧୮୧୩ ସାଲେ ଲର୍ଡ ମିଣ୍ଟୋ ସ୍ୱଦେଶକୁ ଯାତ୍ରା କରିବାରୁ ମାରକୁଇ ଅବ ହେଷ୍ଟିଂସ ତତ୍ପଦରେ ନିଯୁକ୍ତ ହୋଇ ଆସିଲେ । ଲର୍ଡ ହେଷ୍ଟିଂସଙ୍କ ଉପସ୍ଥିତ ସମୟେ ଭାରତବର୍ଷରେ ନାନା ଗୋଲମାଲ ଉପସ୍ଥିତ ହୋଇଥିଲା । ଗୋଲମାଲ-କାରମାନଙ୍କ ମଧ୍ୟରେ ନେପାଳେଶ୍ୱର ଜଣେ ପ୍ରଧାନ ଅଟନ୍ତି । ଗବର୍ଣ୍ଣର ସାହେବ ତାହାଙ୍କୁ ଶାସନ କରିବା ପାଇଁ ଅକେଟାରଲୋନ ନାମକ ସେନାପତିଙ୍କ ସଙ୍ଗରେ ଥୋକାଏ ସୈନ୍ୟ ପଠାଇ ଦେଲେ । ନେପାଳ ମଧ୍ୟକୁ ଯାଇ ଯୁଦ୍ଧ କରିବା ସହଜ କଥା ନୁହଇ । ମାତ୍ର ଇଂରେଜ ସେନାମାନେ କୌଶଳପୂର୍ବକ ତାହା ମଧ୍ୟକୁ ପ୍ରବେଶ କରି ନେପାଳେଶ୍ୱରଙ୍କୁ ପରାସ୍ତ କଲେ । ତହୁଁ ୧୮୧୬ ସାଲେ ଉଭୟ ମଧ୍ୟରେ ସନ୍ଧି ସ୍ଥାପିତ ହେଲା; ସନ୍ଧିର ନିୟମାନୁସାରେ ନେପାଳର ରାଜଧାନୀ କାଠମୁଣ୍ଡ ନଗରରେ ଜଣେ ଇଂରେଜ ରେସିଡେଣ୍ଟ ନିଯୁକ୍ତ ହେଲେ ।

ନେପାଲେଣରଙ୍କୁ ପରାସ୍ତ କରି ଗବର୍ଣ୍ଣର ସାହେବ ନିଶ୍ଚିନ୍ତ ହୋଇ ପାରିଲେ ନାହିଁ । ତାହାଙ୍କୁ ଆଉ ଗୋଟିଏ ଶତ୍ରୁଦଳ ଦମନ କରିବା ପାଇଁ ସୈନ୍ୟ ପଠାଇବାକୁ ହେଲା । ସେହି ଶତ୍ରୁଦଳର ନାମ ପିଣ୍ଡାରି । ଏମାନେ ଅଶ୍ୱାରୋହୀ ଦସ୍ୟୁଦଳ । ପରର ସର୍ବସ୍ୱ ହରଣ କରିବା ଏମାନଙ୍କ ପ୍ରଧାନ କାର୍ଯ୍ୟ ଅଟେ । ପିଣ୍ଡାରିମାନେ ଇଂରେଜ ପ୍ରଜାମାନଙ୍କ ଉପରେ ଯେପରି ଅତ୍ୟାଚାର କରୁଥିଲେ ତାହା ଶୁଣିଲେ ଏତେବେଳେ ମଧ୍ୟ ଲୋମାଞ୍ଚିତ ହୁଏ । ଛାତିରେ ପଥର ଚପାଇବା, ଓଲଟା ଲୋହାରେ ଠିଆ କରାଇବା, ମୁଣ୍ଡରେ ନିଆଁ ଜାଳିବା ଓ ଲୁଗାରେ ଗରମ ତେଲ ପକାଇବା ଏମାନଙ୍କର ପୀଡ଼ନର ଉପାୟ ଥିଲା । ଏହି ସକଳ କଥା ଶୁଣି ସିନ୍ଧିୟା ଏବଂ ଆଉ୨ ମହାରାଷ୍ଟ୍ରସାମନ୍ତମାନେ ଆନନ୍ଦିତ ହୋଇ ସେମାନଙ୍କ ସହିତ ମିଳିତ ହୋଇଥିଲେ । ଏଣେ ଗବର୍ଣ୍ଣମେଣ୍ଟ ଅପାରସେନା ପଠାଇ ପ୍ରବଳ ଦସ୍ୟୁ-ମାନଙ୍କୁ ବିନାଶ କରିବାକୁ ଲାଗିଲେ । ପିଣ୍ଡାରିମାନଙ୍କ ସଙ୍ଗରେ ଯୁଦ୍ଧ ଚାଲୁଅଛି ଏମନ୍ତ ସମୟରେ ବାଜିରାଓ ପେଶୋୟା, ହୁଲକାର ଓ ନାଗପୁରାଧିପତି ଏମାନେ ମିଳିତ ହୋଇ ଇଂରେଜମାନଙ୍କୁ ଆକ୍ରମଣ କଲେ । ମାତ୍ର ଏଥିରେ କେବଳ ସେହିମାନଙ୍କର ସର୍ବନାଶ ହେଲା । ନାଗପୁରାଧିପତି ପଦଚ୍ୟୁତ ହେଲେ । ହୁଲକାରଙ୍କ ପ୍ରାୟ ଅର୍ଦ୍ଧାଂଶ ରାଜ୍ୟ ଅପହୃତ ହେଲା । ପେଶୋୟା ବାର୍ଷିକ ୮ଲକ୍ଷ ଟଙ୍କା ପାଇ ବିଠୁର ନଗରରେ ବାସ କରିବାକୁ ଲାଗିଲେ ।

୧୮୨୩ ସାଲ ଜାନୁୟାରି ମାସରେ ହେଷ୍ଟିଂସ ସାହେବ ପଦତ୍ୟାଗ କରି ସ୍ୱଦେଶକୁ ଯାତ୍ରା କଲେ । ହେଷ୍ଟିଂସ ସାହେବ ଆଉ ଯେ ସକଳ କର୍ମ କରନ୍ତୁ ମାତ୍ର ଗୋଟିଏ କର୍ମ କରି ଆମ୍ଭମାନଙ୍କଠାରେ କୃତଜ୍ଞତାଭାଜନ ହୋଇ ଯାଇଅଛନ୍ତି ପୂର୍ବେ କୋମ୍ପାନୀ ଏ ଦେଶୀୟମାନଙ୍କୁ ଶିକ୍ଷା ଦେବା ବିଷୟରେ କୌଣସି ଚେଷ୍ଟା କରୁ ନ ଥିଲେ । ସେମାନଙ୍କ ସଂସ୍କାର ଥିଲା ଯେ, ଭାରତବର୍ଷୀୟମାନେ ଶିକ୍ଷିତ ହେଲେ କୋମ୍ପାନୀ ପକ୍ଷରେ ଅମଙ୍ଗଳ ଘଟିପାରେ; ମାତ୍ର ହେଷ୍ଟିଂସ ସେମାନଙ୍କ କୁସଂସ୍କାର ମୋଚନ କରି ଯାଇଅଛନ୍ତି । ତାହାଙ୍କ ଯତ୍ନରୁ ସ୍ଥାନେ୨ ବିଦ୍ୟାଳୟ ସ୍ଥାପିତ ହେବାକୁ ଆରମ୍ଭ ହୋଇଥିଲା ।

ହେଷ୍ଟିଂସ ଇଂଲଣ୍ଡକୁ ଯାତ୍ରା କରନ୍ତେ, ଲର୍ଡ ଆମହର୍ଷ୍ଟ ଗବର୍ଣ୍ଣରଜେନରଲ ହୋଇ ଭାରତବର୍ଷକୁ ଆଗମନ କଲେ । ଏହାଙ୍କ ଅଧିକାର ସମୟରେ ବିଶେଷ କୌଣସି ଘଟନା ଘଟି ନାହିଁ । କେବଳ ଭରତପୁର ଦୁର୍ଗ ବ୍ରିଟିସ ସାମ୍ରାଜ୍ୟଭୁକ୍ତ ଓ ବ୍ରହ୍ମଦେଶୀୟ ରାଜାଙ୍କ ସହିତ ପ୍ରଥମ ଯୁଦ୍ଧଘଟନା ଘଟି ଥିଲା । ବ୍ରହ୍ମଦେଶୀୟ ରାଜା ଆଶାମ, ମଣିପୁର, ଆରାକାନ ଓ ସମସ୍ତ ମାର୍ତାବାନ ଉପକୂଳ ପ୍ରଦାନ କରି ସନ୍ଧି ସ୍ଥାପନ କରିଥିଲେ ।

ଅମହର୍ଷ୍ଟ ସାହେବ ପଦତ୍ୟାଗ କଲା ଉତ୍ତାରେ ଲର୍ଡ଼ ଉଇଲିୟମ ବେଣ୍ଟିଙ୍କ ଗବର୍ଣ୍ଣରଜେନରଲ ହୋଇ ଆଗମନ କରିଥିଲେ । ତାହାଙ୍କ ରାଜ୍ୟଶାସନର ପ୍ରଥମ ଭାଗରେ କାଶ୍ମରର ରାଜା ପରଲୋକ ଗମନ କଲେ । କେହି ଉତ୍ତରାଧିକାରୀ ନ ଥିବାରୁ ତାହାଙ୍କ ରାଜ୍ୟ କୋମ୍ପାନୀଙ୍କ ରାଜ୍ୟଭୁକ୍ତ ହେଲା । ୧୮୩୬ ଏହାର ବରଷକ ଉତ୍ତାରେ କୁର୍ଗରାଜ୍ୟ ମଧ୍ୟ ବ୍ରିଟିସ ସାମ୍ରାଜ୍ୟରେ ମିଶିଗଲା ।

ବେଣ୍ଟିଙ୍କସାହେବ ୧୮୩୦ ସାଲରେ ଖଣ୍ଡିଏ ଆଇନ ପ୍ରଚାର କରି ସହମରଣ ପ୍ରଥା ନିବାରଣ କରି ଚିରସ୍ମରଣୀୟ ହୋଇଅଛନ୍ତି । ସୁପ୍ରସିଦ୍ଧ ରାଜା ରାମମୋହନରାୟ ଏ ବିଷୟରେ ଅନେକ ଯତ୍ନ କରିଥିଲେ । ସେ ତୈମୁର ବଂଶୀୟମାନଙ୍କର ନଷ୍ଟ ମର୍ଯ୍ୟାଦା ଉଦ୍ଧାର ପାଇଁ ବିଲାତକୁ ଯାଇଥିଲେ । ସେ କୃତକାର୍ଯ୍ୟ ହୋଇ ପାରି ନ ଥିଲେ ସତ୍ୟ କିନ୍ତୁ ତାହାଙ୍କ ଯତ୍ନରେ ୩ଲକ୍ଷ ଟଙ୍କା ବୃତ୍ତି ବୃଦ୍ଧି ହୋଇଥିଲା ।

ଲର୍ଡ ଉଇଲିଅମ ବେଣ୍ଟିଙ୍କ ଭାରତବର୍ଷୀୟମାନଙ୍କ ପରମବନ୍ଧୁ ଥିଲେ । ସେ ମୁନସଫ ଓ ସଦରଅମୀନ ପଦ ସୃଷ୍ଟିକରି ତହିଁରେ ଏ ଦେଶର ଲୋକମାନଙ୍କୁ ନିଯୁକ୍ତ କରି ଥିଲେ । ତାହା ଛଡ଼ା ସେ ଏ ଦେଶୀୟମାନଙ୍କର ଇଂରାଜୀଶିକ୍ଷାର ଉପାୟ ନିର୍ଦ୍ଧାରଣ କରି ଯାଇଅଛନ୍ତି । ଇୟୁରୋପୀୟ ଆୟୁର୍ବିଦ୍ୟା ଶିକ୍ଷାପାଇଁ କଲିକତାରେ ଯେଉଁ ମେଡିକେଲ କଲେଜ ସ୍ଥାପିତ ଅଛି, ତାହା ତାହାଙ୍କ ଯତ୍ନର ଫଳ ଅଟେ ।

୧୮୧୩ ସାଲରେ କୋମ୍ପାନୀ ଯେଉଁ ଚାର୍ଟର ପାଇଥିଲେ ବେଣ୍ଟିଙ୍କଙ୍କ ଶାସନର ଶେଷଭାଗରେ ତାହା ସମ୍ପୂର୍ଣ୍ଣ ହେଲା । ଏଣୁ ସେମାନେ ଆଉ ୨୦ ବରଷ ପାଇଁ ନୂଆ ସନନ୍ଦ ପ୍ରାପ୍ତ ହେଲେ । ନୂଆ ସନନ୍ଦର ନିୟମ ଅନୁସାରେ କୋମ୍ପାନୀଙ୍କୁ ସମସ୍ତ ବାଣିଜ୍ୟକାର୍ଯ୍ୟ ତ୍ୟାଗ କରିବାକୁ ହେଲା । ଏଣୁ ସେମାନେ ରାଜ୍ୟଶାସନ କାର୍ଯ୍ୟ ପର୍ଯ୍ୟାଲୋଚନା କରିବାପାଇଁ ଯଥେଷ୍ଟ ସମୟ ପାଇଲେ । ଏହି ସମୟରେ ଆଇନ ପ୍ରସ୍ତୁତ କରିବା କାରଣ କଲିକତା ମହାନଗରୀରେ ଲାକମିସନ ନାମକ ଗୋଟିଏ ସଭା ସ୍ଥାପିତ ହେଲା । ତାହାଙ୍କ ଅଧିକାର ସମୟରେ ସର୍ବ ପ୍ରଥମ କଲିକତାରେ ଦୁଇ ଖଣ୍ଡି ବାଷ୍ପୀୟପୋତ ନିର୍ମିତ ହୋଇଥିଲା ।

୧୮୩୫ ସାଲରେ ଲର୍ଡ ଉଇଲିୟମ ବେଣ୍ଟିଙ୍କ ଭାରତବର୍ଷ ପରିତ୍ୟାଗ କଲାରୁ କୌନସଲର ମେମ୍ବରମାନେ ମେଟକାଫ ସାହେବଙ୍କୁ ଗବର୍ଣ୍ଣର ଆସନରେ ଅଭିଷେକ କରାଇଲେ । ମେଟକାଫ ସାହେବ ଏ ଦେଶର ମୁଦ୍ରାଯନ୍ତ୍ରକୁ ସ୍ୱାଧୀନତା ଦାନ କରି ସଭ୍ୟତାର ମାର୍ଗ ଏକାବେଳକେ ପରିଷ୍କାରର ବିଧାନ କରି ଯାଇଅଛନ୍ତି । ତାହାଙ୍କୁ ଚିରସ୍ମରଣୀୟ କରିବାନିମନ୍ତେ ଥୋକାଏ ପ୍ରଧାନଲୋକ କଲିକତାସ୍ଥ ବର୍ତ୍ତମାନ ମେଟକାଫ ହଲ ନିର୍ମାଣ କରି ଅଛନ୍ତି ।

ମେଟକାଫ ସାହେବଙ୍କ ଉତ୍ତାରେ ଲର୍ଡ ଅକ୍ଲାଣ୍ଡ ସାହେବ ଗବର୍ଣ୍ଣରଜେନେରଲ ପଦ ପ୍ରାପ୍ତ ହେଲେ । ୧୮୩୬ । ଅକ୍ଲାଣ୍ଡ ସାହେବଙ୍କ ଅଧିକାର ସମୟରେ କାବୁଲରେ ଗୋଟିଏ ଭୟଙ୍କର ଘଟନା ଘଟିଥିଲା । ପଞ୍ଜାବର ଅଧିପତି ରଣଜୀତସିଂହ ଓ ଅଫଗାନ ସରଦାର ସାସୁଜାଙ୍କ ସଙ୍ଗରେ ବନ୍ଧୁତା ଥିଲା, କାବୁଲ ଓ କାନ୍ଦାହାରର ଅଧିପତି ଦୋସ୍ତମହମ୍ମଦ, ରଣଜିତସିଂହଙ୍କ ପ୍ରତି ଯୁଦ୍ଧସଜ୍ଜା କରବାରୁ ତେଣୁ ମିତ୍ରରାଜଙ୍କ ସାହାଯ୍ୟ ପାଇଁ ଇଂରେଜମାନଙ୍କୁ ମଧ୍ୟ ଅଣ୍ଟା ବାନ୍ଧିବାକୁ ହେଲା । ଦୋସ୍ତମହମ୍ମଦ ପରାଜିତ ଓ ବନ୍ଦୀକୃତ ହୋଇ କଲିକତାକୁ ଅଣାଗଲେ । ମାତ୍ର ଦୋସ୍ତଙ୍କ ପୁତ୍ର ଆକବରଖାଁ ପିଲିଜ ପାହାଡ଼ର ଅସଭ୍ୟଜାତିମାନଙ୍କ ସାହାଯ୍ୟରେ ଗଜନୀ ନଗରକୁ ଆସି ଇଂରେଜମାନଙ୍କ ପ୍ରତି ଭୟଙ୍କର ଅତ୍ୟାଚାର କରବାକୁ ଲାଗିଲେ । ଏହି ଉତ୍ପାତରେ ତତ୍ରତ୍ୟ ଇଂରେଜମାନଙ୍କ ରେସିଡେଣ୍ଟ ମ୍ୟାକନେଟନ ସାହେବ ହତ ହେଲେ ଏବଂ ବ୍ରିଟିଶ ଗବର୍ଣ୍ଣମେଣ୍ଟଙ୍କ ୫ ହଜାର ସିପାହୀ ୬୦ ହଜାର ଉଟ ମଧ୍ୟ ହତ ହେଲେ । କେବଳ ଜଣେମାତ୍ର ଭଗ୍ନଦୂତ ଫେରଆସି ଜେଲାଲାବାଦସ୍ଥ ଇଂରେଜମାନଙ୍କୁ ଏହି ଭୟଙ୍କର ସମ୍ବାଦ ଦେଲା ।

କାବୁଲର ଭଗ୍ନଦୂତ ମୁଖରୁ ଉକ୍ତ ଲିଖିତ ଘୋର ବିପଦବାର୍ତ୍ତା ଶୁଣି ଇଂରେଜମାନେ ଯଥୋପଯୁକ୍ତ ପ୍ରତୀକାର ବିଧାନ କରବାକୁ ଲାଗିଲେ; ଫଳେ ଇଂରେଜସେନାମାନେ ପୁନର୍ବାର ଯାଇଁ ନଗର ଅଧିକାରପୂର୍ବକ ୨ ଶତ ବନ୍ଦୀଙ୍କୁ ଉଦ୍ଧାର କଲେ । କାବୁଲଯୁଦ୍ଧରେ ୫ ହଜାର ସେନା ଓ ୬୦ ହଜାର ଉଟ ନିଧନ ପ୍ରାପ୍ତ ଓ ବାରକୋଟି ଟଙ୍କା ବ୍ୟୟହେବା ବାର୍ତ୍ତା ଇଂଲଣ୍ଡରେ ଉପସ୍ଥିତ ହେବାରୁ ଇଂଲଣ୍ଡର ଡିରେକ୍ଟରମାନେ ଅକ୍ଲାଣ୍ଡସାହେବଙ୍କ ଉପରେ ଅତ୍ୟନ୍ତ ରାଗାନ୍ୱିତ ହେଲେ । ଏହିସମୟରେ ରାଜମନ୍ତ୍ରୀ ପରିବର୍ତ୍ତନ କାଳ ଉପସ୍ଥିତ । ରବର୍ଟପୀଲ ମନ୍ତ୍ରୀ ଆସନରେ ଆସୀନ ହେଲେ । ଅକ୍ଲାଣ୍ଡସାହେବ ପୀଲସାହେବଙ୍କ ଦଳର ଲୋକ ଥିଲେ ନାହିଁ; ତେଣୁ ସେ ଯେ ଦୀର୍ଘକାଳଯାଏ ପଦସ୍ଥ ରହିବେ ତାହାର କୌଣସି ସମ୍ଭାବନା ନ ଥିଲା । ଡାଇରେକ୍ଟରମାନେ ଲର୍ଡଏଲେନବରାଙ୍କୁ ଗବର୍ଣ୍ଣରଜେନେରଲ କର ପଠାଇଲେ । ସେ ଭାରତବର୍ଷରେ ଉପସ୍ଥିତ ହୋଇ ଅଳ୍ପଦିନ ଉତ୍ତାରେ ଗଜନୀରେ ଜୟପତାକା ଉଡ଼ାଇଲେ । ବହୁକାଳପୂର୍ବେ ଗଜନୀରାଜ ମାମୁଦ ସୋମନାଥଙ୍କ ମନ୍ଦିରରୁ ଯେଉଁ ଚନ୍ଦନକାଷ୍ଠନିର୍ମିତ କପାଟ ନେଇ ଯାଇଥିଲେ, ଜୟର ଚିହ୍ନସ୍ୱରୂପ ତାହା କଲିକତାକୁ ଉଠାଇ ଆଣିଲେ । ଅନନ୍ତର ଦୋସ୍ତମହମ୍ମଦଙ୍କ ସହିତ ସନ୍ଧିସ୍ଥାପିତ ହେବା ଉତ୍ତାରେ ଏଲେନ୍‌ବରା ମିତ୍ରଭାବରେ ତାହାଙ୍କୁ ଖଣ୍ଡେ ଚିଠି ଲେଖିଥିଲେ, ତାହାର ମର୍ମ ଏହି;—

" ଆପଣ କନ୍ଦହାର କାବୁଲ ନଗରରେ ବାସ କରିଥିଲେ ତେଣୁ ଆମ୍ଭମାନଙ୍କର ଅନେକ ବିଷୟ ପ୍ରତ୍ୟକ୍ଷ କରି ଯାଇଅଛନ୍ତି; ତେବେ ଆମ୍ଭମାନଙ୍କ ସାମର୍ଥ୍ୟ ବିଷୟରେ ଆପଣ କି ବିବେଚନା କରନ୍ତି ? " ଦୋସ୍ତମହମ୍ମଦ ଉତ୍ତର ଲେଖିଲେ " ଆମ୍ଭେ ଆପଣମାନଙ୍କର ସୈନ୍ୟ, ଐଶ୍ୱର୍ଯ୍ୟ ଓ ସାମର୍ଥ୍ୟ ସମସ୍ତ ଦେଖି ଆସିଅଛୁଁ, ଅଧିକ ଆଶ୍ଚର୍ଯ୍ୟର ବିଷୟ ଏହି ଯେ, ଆପଣମାନଙ୍କର ଏତେ ଥାଇଁ ମଧ୍ୟ କାବୁଲର ଅନୁର୍ବର ଭୂମିରେ ମୁଣ୍ଡ ଛୋଡ଼ିବାକୁ ଆସିଥିଲେ " ଲର୍ଡଏଲେନବରାଙ୍କ ସମୟରେ ସିନ୍ଧୁଦେଶରେ ଗୋଟିଏ କ୍ଷୁଦ୍ରଯୁଦ୍ଧ ହୋଇଥିଲା; ମାତ୍ର ତାହାକୁ ସ୍ୱତନ୍ତ୍ରଯୁଦ୍ଧ ବୋଲା-ଯାଇ ନ ପାରେ, ତାହା କେବଳ ଅଫ୍‌ଗାନ୍‌ଯୁଦ୍ଧର ଲାଙ୍ଗୁଳ ଅଟେ । ବୋମ୍ବେଇରୁ ଯେ ସକଳ ସେନା ଅଫଗାନ୍‌ଯୁଦ୍ଧକୁ ଯାଇଥିଲେ, ଫେରିଯିବାବେଳେ ବାଟରେ ସେମାନଙ୍କର ଜ୍ୱାଳନୀକାଠର ଆବଶ୍ୟକ ହେବାରୁ ସେମାନେ ବିନାନୁମତିରେ ସିନ୍ଧୁଦେଶସ୍ଥ ବଣରୁ କାଷ୍ଠ ଭାଙ୍ଗି ଆଣିବାରୁ ଆମୀରମାନେ ବିରକ୍ତ ହୋଇ ଯୁଦ୍ଧ କରିଥିଲେ ।

ଏଲେନବରାଙ୍କୁ ନିଯୁକ୍ତକରି ଭାରତବର୍ଷକୁ ପଠାଇବା ସମୟରେ କର୍ତ୍ତୃପକ୍ଷୀ-ୟମାନେ ଭାବିଥିଲେ, ସେ ଶାନ୍ତିସ୍ଥାପନ କରି ରାଜ୍ୟଶାସନ କରିବେ; କିନ୍ତୁ ସେମା-ନଙ୍କ ଆଶା ନୈରାଶ୍ୟରେ ପରିଣତ ହେଲା । ସେ ଯେଉଁ ଦୁଇବରଷ ଭାରତ-ବର୍ଷରେ ଥିଲେ, ଦିନକ ପାଇଁ ମଧ୍ୟ ଯୁଦ୍ଧାନଳ ନିର୍ବାପିତ ନ ଥିଲା । ଏଥିକୁ ଡିରେକ୍ଟର ସମାଜ ତାହାଙ୍କୁ ପଦଚ୍ୟୁତ କରି ତତ୍ପଦରେ ଲର୍ଡହାର୍ଡିଞ୍ଜସାହେବଙ୍କୁ ନିଯୁକ୍ତକରି ପଠାଇଲେ । ହାର୍ଡିଞ୍ଜ ପ୍ରଥମରେ ଡିରେକ୍ଟରମାନଙ୍କ ଉପଦେଶ ଓ ସ୍ୱକୀୟ ସ୍ୱଭାବସିଦ୍ଧଗୁଣ ଅନୁସାରେ କିଛିକାଳ ଶାନ୍ତି ସ୍ଥାପନକରି ରାଜ୍ୟଶାସନ କରି-ବାକୁ ଲାଗିଲେ । ମାତ୍ର ପରେ ଏମନ୍ତ ଏକ ଘଟନା ଉପସ୍ଥିତ ହେଲା ଯେ, ସେ ଯୁଦ୍ଧରେ ପ୍ରବୃତ୍ତ ନ ହୋଇ ସ୍ଥିରହୋଇ ରହି ପାରିଲେ ନାହିଁ ।

ପଞ୍ଜାବର ଅଧିପତି ମହାରାଜ ରଣଜିତସିଂହ ୧୮୩୯ ସାଲରେ ପ୍ରାଣତ୍ୟାଗ କରନ୍ତି । ରଣଜିତସିଂହ ଅତି ପ୍ରବଳପ୍ରତାପ ନରପତି ଥିଲେ । ତାହାଙ୍କ ବାହୁବଳ ପ୍ରଭାବରୁ ତାହାଙ୍କ ବର୍ତ୍ତମାନ ସମୟରେ ପଞ୍ଜାବ ଏକାବେଳକେ ନିରୁପଦ୍ରବ ଥିଲା । ବିଶେଷରେ ଇଂରେଜମାନଙ୍କ ସହିତ ତାହାଙ୍କର ଦିନକପାଇଁ ମଧ୍ୟ ମନାନ୍ତର ନ ଥିଲା । ସେ ସୁବୁଦ୍ଧିରେ ଇଂରେଜମାନଙ୍କ ବାହୁବଳ ଉତ୍ତମରୂପେ ଜ୍ଞାତ ଥିଲେ; ତେଣୁ ତାହାଙ୍କର ୮୦ ହଜାର ଶିକ୍ଷିତଯୋଦ୍ଧା ଥିଲେ ମଧ୍ୟ ସେ ଇଂରେଜମାନଙ୍କ ସହିତ ସମର କରିବାକୁ ଉଦ୍ୟତ ହୋଇ ନ ଥିଲେ । ଦିନକରେ ଜଣେ ଲୋକ ତାହାଙ୍କ ସଭାରେ ଖଣ୍ଡେ ଭାରତବର୍ଷର ମାନଚିତ୍ର ଦେଖାଇଲା । ମହାରାଜ ମାନ-ଚିତ୍ର ମଧ୍ୟରେ କେତେକ ସ୍ଥାନ ଲୋହିତ ରଙ୍ଗରେ ରଞ୍ଜିତ ଥିବାର କାରଣ ପଚ୍ଚ-

ରିଲେ । ଅନୁବାଦକ କହିଲା, ଇଂରେଜମାନଙ୍କ ରାଜ୍ୟର ଚିହ୍ନ । ମହାରାଜ କହିଲେ "ସବ୍ ଲାଲ ହୋ ଯାଏଗା" । ଏତେବେଳେ ମହାରାଜାଙ୍କ ଭବିଷ୍ୟତ୍‌ବାଣୀ ସଫଳ ହୋଇଅଛି । ସେ ଯାହା ହେଉ ମହାରାଜାଙ୍କ ଉତ୍ତରାଧିକାରମାନେ ସେପରି ପ୍ରବଳ ପ୍ରତାପ ଥିଲେ ନାହିଁ; ତେଣୁ ପଞ୍ଜାବର ସୌଭାଗ୍ୟଲକ୍ଷ୍ମୀ ମଧ୍ୟ ଦୀର୍ଘକାଳ ବିରାଜମାନ ରହିପାରିଲେ ନାହିଁ । ସୌଭାଗ୍ୟଲକ୍ଷ୍ମୀ ଅଳସବିଳାସୀ କାପୁରୁଷମାନଙ୍କୁ ପରିତ୍ୟାଗ କରିଥାଆନ୍ତି ଏ କଥା ସ୍ୱତଃସିଦ୍ଧ ଅଟେ । ରଣଜିତସିଂହ ପରଲୋକ ଗମନକରନ୍ତେ ଖରକସିଂହ ସିଂହାସନ ପ୍ରାପ୍ତହେଲେ କିନ୍ତୁ ତାହାଙ୍କ ପୁତ୍ର ନୁନିହାଲ୍‌ସିଂହ ରାଜ୍ୟଲୋଭ ବାସନାରେ ସ୍ୱଅରହସ୍ତ ବିଷଦାନ କରି ପିତାଙ୍କୁ ବଧ କଲେ । ପଣ୍ଡିତମାନେ ବୋଲିଅଛନ୍ତି "ଅତି ମହାପାପର ଫଳ ତିନିଦିନ ତିନିମାସ ଅବା ତିନିବରଷ ମଧ୍ୟରେ ଅବଶ୍ୟ ଭୋଗ କରିବାକୁ ହୁଏ ।" ନୁନିହାଲ୍ ପିତାର ଅନ୍ତ୍ୟେଷ୍ଟିକ୍ରିୟା ସମାପନ କରି ସିଂହାସନାରୋହଣ କରିବା ପାଇଁ ଯାଇଁ ସିଂହଦ୍ୱାରଠାରେ ଉପସ୍ଥିତ ହୋଇଅଛନ୍ତି ଏମନ୍ତ ସମୟରେ ହଠାତ୍ ସିଂହଦ୍ୱାର ତାହାଙ୍କ ମସ୍ତକରେ ଭାଙ୍ଗି-ପଡିବାରୁ ସେ ନିଧନ ପ୍ରାପ୍ତ ହେଲେ ।

ନୁନିହାଲଙ୍କ ଅପଘାତ ମୃତ୍ୟୁ ହୁଅନ୍ତେ ତଦୀୟ ଭ୍ରାତା ଶେରସିଂହ ରାଜ୍ୟାଭିଷିକ୍ତ ହେଲେ । ସେ ମଧ୍ୟ ଅଯୋଗ୍ୟ ପୁରୁଷ ଥିଲେ; ତେଣୁ ରାଜ୍ୟମଧ୍ୟରେ ଅରାଜକ କାଣ୍ଡ ଉପସ୍ଥିତ ହେବାକୁ ଲାଗିଲା । ରାଜମନ୍ତ୍ରୀ ଧ୍ୟାନସିଂହ ନିହତ ହେଲେ । ମୂଲତାନର * ଶାସନକର୍ତ୍ତା ଛଟଲମଲ ଦରବାର ମଧ୍ୟରେ ପିସ୍ତଲର ଗୁଳିଖାଇ ମରି ପଡିଲେ । ଖାଲସାମାନେ † ଉପଯୁକ୍ତ ସମୟରେ ବେତନ ନ ପାଇବାରୁ ରାଜ୍ୟମଧ୍ୟରେ ନାନା ଉତ୍ପାତ କରିବାକୁ ଲାଗିଲେ ଓ ଶତଦ୍ରୁ ନଦୀ ପାରି ହୋଇ ପୂର୍ବଦିଗକୁ ଆସିବାକୁ ଲାଗିଲେ । ଗବର୍ଣ୍ଣର ଜେନେରଲ ପ୍ରଥମରେ ସେମାନଙ୍କୁ ଅନେକ ବୁଝାଇଲେ, ପରେ କୌଣସି ପ୍ରକାରରେ କୃତକାର୍ଯ୍ୟ ହୋଇ ନ ପାରି ଯୁଦ୍ଧଘୋଷଣା କରିଦେଲେ । ଯୁଦ୍ଧ ଆରମ୍ଭ ହୁଅନ୍ତେ ଖାଲସାମାନେ ଛିନ୍ନଭିନ୍ନ ହୋଇ ପଳାୟନ କଲେ ; ପଞ୍ଜାବରାଜ୍ୟ ଇଂରେଜମାନଙ୍କର ସହଜରେ ହସ୍ତଗତ ହେଲା । କିନ୍ତୁ ଗବର୍ଣ୍ଣର ଜେନେରଲ ତାହା ଇଂରେଜରାଜ୍ୟଭୁକ୍ତ ନ କରି ରଣଜିତସିଂହଙ୍କ ପୁତ୍ର ଦଲୀପ ସିଂହଙ୍କୁ ସିଂହାସନରେ ସ୍ଥାପିତ କରାଇଲେ ଓ ତାହାଙ୍କ ଦରବାରରେ ହେନରି ଲରେନ୍‌ସ ସାହେବଙ୍କୁ ରେସିଡେଣ୍ଟ ପଦରେ ନିଯୁକ୍ତ କରି ପଠାଇଲେ ଓ ଖାଲସାମାନଙ୍କୁ ଦମନରେ ରଖିବାପାଇଁ ଥୋକାଏ ସେନା ମଧ୍ୟ ନିଯୁକ୍ତ କଲେ । ଏତେବେଳେ ମଧ୍ୟ ଗବର୍ଣ୍ଣମେଣ୍ଟ ନିରାପଦରେ ରହି-

* ମୂଲତାନ ଓ ଲାହୋର ମଧ୍ୟ ମହାରାଜ ରଣଜିତ ସିଂହଙ୍କ ଶାସନାଧୀନ ଥିଲା ।

† ରଣଜିତ ସିଂହଙ୍କ ସୈନ୍ୟମାନଙ୍କୁ ଖାଲସା କୋହାଯାଏ ।

ପାରିଲେ ନାହିଁ । ନିମ୍ନଲିଖିତ ଘଟନା ଇଂରେଜମାନଙ୍କୁ ମହା ବ୍ୟାକୁଳିତ କରି ପକାଇଲା ତାହାର ବିବରଣ ଏହି :—

ଲାହୋରର ଶାସନକର୍ତ୍ତା ଛଲମଲ ନିଧନପ୍ରାପ୍ତ ହୁଅନ୍ତେ ତତ୍ପୁତ୍ର ମୂଲ-ରାଜ ତତ୍ପଦରେ ନିଯୁକ୍ତ ହେଲେ ।

ଲାହୋର ଦରବାରର ଏହିପ୍ରକାର ରୀତିଥିଲା ଯେ କୌଣସି ଲୋକ ଶାସନକର୍ତ୍ତା ପଦରେ ନିଯୁକ୍ତ ହେଲେ ତାହାଠାରୁ ସଲାମୀସ୍ୱରୂପ କିଛି ଟଙ୍କା ନିଆ-ଯାଏ ତଦନୁସାରେ ଦରବାର ତାହାଙ୍କୁ କୋଟିଏ ଟଙ୍କା ମାଗିଲେ ମାତ୍ର ମୂଲରାଜ ତାହା ଦେବାକୁ ଅକ୍ଷମ ଓ ଅସ୍ୱୀକୃତ ହେବାରୁ ଶେଷରେ ୧୮ ଲକ୍ଷ ଟଙ୍କା ଦେବାର କଥା ସ୍ଥିର ହେଲା । ତାହାମଧ୍ୟ କିସ୍ତିବନ୍ଦୀ କରିଦେବାର କଥା ରହିଲା । ଏହି ବନ୍ଦୋବସ୍ତର ଅଳ୍ପକାଳଉତ୍ତାରେ ମୂଲରାଜ ସ୍ୱୀକୃତ ଟଙ୍କା ଦେବାକୁ ଅକ୍ଷମ, ଏହି ବାହାନା କରି ପଦଚ୍ୟୁତି ପତ୍ର ପଠାଇ ଦେଲେ । ଦର-ବାର ମଧ୍ୟ ତାହା ଗ୍ରାହ୍ୟ କରି ସରଦାରଖାଁସିଂ ନାମକ ଏକ ଲୋକକୁ ତତ୍ପଦରେ ନିଯୁକ୍ତ କଲେ ଏବଂ ଜନ୍ ଆଗ୍ନ୍ୟୁ ଓ ଆଣ୍ଡ୍ରୁରସନ ନାମକ ଦୁଇଜଣ ବ୍ରିଟିସ କର୍ମଚାରୀସହିତ ତାହାଙ୍କୁ ମୂଲତାନକୁ ପଠାଇ ଦେଲେ । ୫୦୦ ସିପାହି ମଧ୍ୟ ସେମାନଙ୍କ ସହିତ ପ୍ରେରିତ ହେଲା । ସେମାନେ ମୂଲତାନରେ ଉପସ୍ଥିତ ହୋଇ ବିଦ୍ରୋହର କୌଣସି ଚିହ୍ନ ଦେଖିଲେ ନାହିଁ । ମୂଲରାଜସହିତ ସାକ୍ଷାତ୍ ହୁଅନ୍ତେ ସେ ବ୍ରିଟିସ କର୍ମଚାରୀମାନଙ୍କୁ ଦୁର୍ଗମଧ୍ୟକୁ ଘେନିଗଲେ । ଏତେବେଳେ ବିପଦ ନିକଟବର୍ତ୍ତୀ ହୋଇ ଆସିଲା । ମୂଲରାଜ ଯଥାରୀତି ଦୁର୍ଗ ସମର୍ପଣ କଲେ । ଏଉତ୍ତାରେ ସେମାନେ ଦୁର୍ଗଦ୍ୱାର ଦେଇ ବହିର୍ଗତ ହେଉ ଅଛନ୍ତି, ଏମନ୍ତ ସମୟରେ ବ୍ରିଟିସ କର୍ମଚାରୀମାନେ ଅତର୍କରୂପେ ଆକ୍ରାନ୍ତ ହେଲେ । ମୂଲରାଜ ତେତେବେଳେ ଅଶ୍ୱୋପରି ଥିଲେ, ଏହିକାଣ୍ଡ ଦର୍ଶନ କରି କାହାକୁ କିଛି ନ କହି ବଗିଚାଘରକୁ ଚାଲିଗଲେ, ସରଦାରଖାଁସିଂ ଆହତ କର୍ମଚାରୀମାନଙ୍କୁ ଶିବି-ରକୁ ଘେନି ଗଲେ ।

ପରଦିବସ ପ୍ରାତଃକାଳରେ ମୂଲତାନର ସମସ୍ତ ସେନା ବିଦ୍ରୋହରେ ପ୍ରବୃତ୍ତ ହେଲେ । ବିପକ୍ଷ ଶିବିର ବେଷ୍ଟିତ ହେଲା । ଆହତ କର୍ମଚାରୀମାନେ ଶଯ୍ୟାଗତ ଥିଲେ ତଥାପି ଆତ୍ମରକ୍ଷା ପାଇଁ ବୀରତା ପ୍ରକାଶ କରିବାକୁ ଲାଗିଲେ । କିନ୍ତୁ ଅଳ୍ପକାଳ ଉତ୍ତାରେ "ଆମ୍ଭମାନଙ୍କ ଦେଶର ସହସ୍ର ସହସ୍ର ଲୋକ ଆସି ତୁମ୍ଭମାନଙ୍କୁ ଏହି ନିଷ୍ଠୁରତାର ପ୍ରତିଫଳ ପ୍ରଦାନ କରିବେ" ଏହିକଥା କହି ଭୂତଳଶାୟୀ ହେଲେ । ଏଣେ ସରଦାରଖାଁସିଂଙ୍କ ପିତା ଚତରସିଂହ ହାଜରା ପ୍ରଦେଶରେ ବିଦ୍ରୋହାନଳ ପ୍ରଜ୍ୱଳନ କରିବାକୁ ଲାଗିଲେ । ସରଦାରଖାଁସିଂହଙ୍କ

ଜ୍ୱଳିତ ବିଦ୍ରୋହାନଳର ଶିଖା ଆସି ତାହାର ସହିତ ମିଳିତ ହେଲା । ଫଳେ ପଞ୍ଜାବର ସମସ୍ତ ସ୍ଥାନରେ ଇଂରେଜ ବିରୁଦ୍ଧରେ ତରବାରି ଚକମକ ହେବାକୁ ଲାଗିଲା । ଶିଖ ସରଦାରମାନେ ଦଲୀପସିଂହଙ୍କୁ ହସ୍ତଗତ କରିବାପାଇଁ ଅନେକ ଚେଷ୍ଟା କରିବାକୁ ଲାଗିଲେ ମାତ୍ର ଲାହୋରସ୍ଥିତ ରେସିଡେଣ୍ଟ ତାହାଙ୍କୁ ନଜରବନ୍ଦୀରେ ରଖିବାରୁ ତାହାଙ୍କର ସମସ୍ତ ଚେଷ୍ଟା ବିଫଳ ହୋଇ ଗଲା ।

ପଞ୍ଜାବର ଉଲ୍ଲିଖିତ ଘଟନା ସମୟରେ ଲର୍ଡ଼ଡେଲହୌସୀ ପ୍ରଥମରେ ଭାରତବର୍ଷକୁ ଆସିଥିଲେ । ସେ ସନ ୧୮୪୮ ସାଲ ଅକ୍ଟୋବର ମାସ ତା ୫ ରିଖରେ କେତେକଜଣ ଭଦ୍ର ଇଂରେଜସହିତ ବାରିକପୁରସ୍ଥ ଗବର୍ଣ୍ଣମେଣ୍ଟ ହାଉସରେ ନୃତ୍ୟ ଗୀତାଦି ଶ୍ରବଣ କରୁଅଛନ୍ତି ଏମନ୍ତ ସମୟରେ ଲାହୋର ରେସିଡେଣ୍ଟ ପ୍ରେରିତ ମୂଳରାଜ ବିଦ୍ରୋହ ସମ୍ବାଦ ଉପସ୍ଥିତ ହେଲା । ଲର୍ଡ଼ଡେଲହୌସୀ ପତ୍ରଖଣ୍ଡିକ ପାଠ କରି କହିଲେ ସନ୍ଧିଭଙ୍ଗ ହୁଏ ଏହା କୌଣସିପ୍ରକାର ଆମ୍ଭର ଇଚ୍ଛା ନୁହଇ ତେବେ ଯେ ଭାରତୀୟ ରାଜା ଯୁଦ୍ଧବାସନା କରିବେ ସେ ପ୍ରତିଫଳସହିତ ଅବଶ୍ୟ ଯୁଦ୍ଧପ୍ରାପ୍ତ ହେବେ ।

ଏଥିର କିଛିଦିନ ଉତ୍ତାରେ ଲର୍ଡଡେଲହୌସୀ ନେପାଳକୁ ଯାତ୍ରା କଲେ; ଫିରୋଜପୁରରେ ସମସ୍ତ ବ୍ରିଟିସସେନା ସଂଗୃହୀତ ହୋଇ ନବମ୍ବର ମାସ ତା ୧୩ ରିଖରେ ଲାହୋରରେ ଯାଇ ଉପସ୍ଥିତ ହେଲେ । ବ୍ରିଟିସ ସେନାପତି ଲର୍ଡଗଫ ଶିମଳା ପାହାଡ଼ରେ ଥିଲେ, ନବମ୍ବର ମାସ ତା ୨୧ ରିଖରେ ସେ ମଧ୍ୟ ଆସି ଶତଦ୍ରୁନଦୀ ବାମତୀରସ୍ଥ ସେନାମାନଙ୍କ ସହିତ ମିଳିତ ହେଲେ ଓ ପରଦିବସ ରାମନଗରରେ ଯୁଦ୍ଧାରମ୍ଭ କଲେ । ଏହି ଯୁଦ୍ଧରେ ବ୍ରିଟିସ ସେନାପତି ଜୟୀ ହେଲେ ସତ୍ୟ ମାତ୍ର କେତେଗୁଡ଼ିଏ ଯୋଗ୍ୟଯୋଦ୍ଧା ବିନାଶ ଭିନ୍ନ ଆଉ କିଛି ଲାଭ କରି ପାରିଲେ ନାହିଁ । କିଛିଦିନ ଉତ୍ତାରେ ଶତଦ୍ରୁ ନଦୀ ତଟରେ ଆଉ ଥରେ ଯୁଦ୍ଧ ଘଟନା ହେଲା ସେଥିରୁ ମଧ୍ୟ ବ୍ରିଟିସ ସେନାନୀ କିଛି ଲାଭ କରି ପାରିଲେ ନାହିଁ ।

୧୮୪୯ ସାଲ ଜାନୁୟାରି ମାସ ତା ୨ ରିଖରେ ଜେନରଲ ହୁଇସ ବୋମ୍ବାଇ ସେନାମାନଙ୍କୁ ଘେନି ମୂଳତାନ ନଗର ଲୁଣ୍ଠନ ପୂର୍ବକ ଦୁର୍ଗ ଅବରୋଧ କଲେ ଏବଂ ଅନବରତ ଦୁର୍ଗ ପ୍ରାଚୀର ଉପରେ ଏମନ୍ତ ଗୋଳାବର୍ଷଣ କରିବାକୁ ଲାଗିଲେ ଯେ ମୂଳରାଜ ସ୍ୱୀୟ ଭୀତ ସେନାମାନଙ୍କୁ କୌଣସିରୂପେ ଉତ୍ସାହିତ କରିପାରିଲେ ନାହିଁ । ତହୁଁ ମୂଳରାଜ ଉଦ୍ଧାରର ଉପାୟ ନ ଦେଖି ହୁଇସ ସାହେବଙ୍କୁ ଲେଖିଲେ "ଆପଣ ଯଦ୍ୟପି ଆମ୍ଭର ଓ ଆମ୍ଭ ଅନ୍ତଃପୁରିକାମାନଙ୍କର ପ୍ରାଣଦାନ କରିବା ପାଇଁ ପ୍ରତିଶ୍ରୁତ ହେବେ ତେବେ ଆମ୍ଭେ ଆପଣଙ୍କ ହସ୍ତରେ ଦୁର୍ଗ ସମର୍ପଣ କରିବୁଁ"

ସେନାପତି ଉତ୍ତର ଦେଲେ "ଇଂରେଜମାନେ ଖ୍ରୀଷ୍ଟିୟାନମାନଙ୍କୁ କଷ୍ଟ ବୋଲନ୍ତି ନାହିଁ । ମାତ୍ର ଆପଣଙ୍କର ଜୀବନରକ୍ଷା ଅବା ବିନାଶ କରିବାର ଭାର ଗବର୍ଣ୍ଣର ଜେନେରଲ ଲର୍ଡଡେଲହାଉସୀଙ୍କ ହସ୍ତରେ ଗଚ୍ଛିତ ଅଛି ।

ମୂଲତାନ ପତନର କିଛିଦିନ ପୂର୍ବେ ସେନାପତି ଲର୍ଡ ଗଫ ଚିଲିଆନୱାଲା ନାମକ ସ୍ଥାନରେ ଶିଖସରଦାରମାନଙ୍କ ସହିତ ଏକ ଯୁଦ୍ଧ କରିଥିଲେ । ସେହି ଯୁଦ୍ଧରେ ଇଂରେଜ ସେନାମାନେ କୃତକାର୍ଯ୍ୟ ହୋଇଥିଲେ ଏକଥା କୌଣସି ପ୍ରକାରରେ ବୋଲିଯାଇ ନ ପାରେ । ଏ ଉତ୍ତାରେ ହୁଇସ ୧୨ ସହସ୍ର ସୈନ୍ୟ ସହିତ ଗଫଙ୍କ ସହିତ ମିଳିତ ହେବାରୁ ଗଫ ବର୍ଦ୍ଧିତ ସାମର୍ଥ୍ୟ ହୋଇ ପୁନର୍ବାର ଶିଖସରଦାରମାନଙ୍କୁ ଆକ୍ରମଣ କରିବା ପାଇଁ ବାହାରିଲେ । ଏଣେ ଶିଖସରଦାରମାନେ କାବୁଲର ଅଧିପତି ଦୋସ୍ତମହମ୍ମଦଙ୍କୁ ସାହାଯ୍ୟ ପ୍ରାର୍ଥନା କରିବାକୁ ଲାଗିଲେ । ସମସ୍ତେ ଅନୁମାନ କରିଥିଲେ ଦୋସ୍ତମହମ୍ମଦ ଇଂରେଜମାନଙ୍କ ବାହୁବଳ ବିଷୟ ଉତ୍ତମରୂପେ ଅବଗତ ଅଛନ୍ତି । ତେଣୁ ସେ ଏକର୍ମରେ ହସ୍ତକ୍ଷେପ କରିବେ ନାହିଁ । କିନ୍ତୁ ସେହି ଅଜ୍ଞାନ ବୁଢ଼ା ମିଛେ୨ ଆସି ବିଳୁଆତିରେ ଦେହ ଘସି ହୋଇ ଗୁଜରାଟଯୁଦ୍ଧରେ ଉତ୍ତମ ଶିକ୍ଷା ପାଇ ଗଲେ । ଫେବୃଆରୀ ମାସ ତା ୨୧ ରିଖରେ ଗୁଜରାଟଠାରେ ଚୋଟିଏ ଯୁଦ୍ଧ ହେଲା । ବେଳ ୧୨ ଟା ସମୟରେ ଶିଖ ଓ କାବୁଲି ସେନାମାନେ ଇଂରେଜମାନଙ୍କ କଳଡ଼ାମାସ ବୃଷ୍ଟି ପରି ପଡିତ ଗୋଳାମାଳାର ତେଜ ସହି ନ ପାରି ବିଶୃଙ୍ଖଳ ହୋଇ ପଳାୟନ କଲେ । ଚଞ୍ଚଳ ହୋଇପଳାଇଯିବାରୁ ସେମାନଙ୍କର ସମସ୍ତ ଉପକରଣ ଇଂରେଜମାନଙ୍କର ହସ୍ତଗତ ହେଲା । ଅଫଗାନ ସେନାମାନେ ଏକାବେଳକେ ପଞ୍ଜାବରୁ ଦୂରୀଭୂତ ହେଲେ ।

ଏତେବେଳେ ସେରସିଂହ ଅନ୍ୟ ଉପାୟ ନ ଦେଖି ମାର୍ଚ୍ଚମାସ ତା ୫ ରିଖରେ ଇଂରେଜ ବନ୍ଦୀମାନଙ୍କୁ ବ୍ରିଟିସ ସେନାପତି ଛାଉଣୀକୁ ପଠାଇଦେଲେ ଓ ମାର୍ଚ୍ଚମାସ ତା ୧୪ ରିଖରେ ୧୩ ଜଣ ସରଦାର ଓ ୧୬ ହଜାର ସେନା ସହିତ ବ୍ରିଟିସ ସେନାପତି ସମୀପରେ ଉପସ୍ଥିତ ହୋଇ ସମସ୍ତ ଅସ୍ତ୍ର ଶସ୍ତ୍ର ସେନାପତିଙ୍କ ପାଦୋପରି ସ୍ଥାପନ କଲେ ।

ଏହିରୂପେ ଯୁଦ୍ଧକାର୍ଯ୍ୟ ସମାପ୍ତ ହୋଇଯିବା ମାତ୍ର ଡେଲହାଉସୀ ଫିରୋଜପୁରରେ ପ୍ରଚାର କରିଦେଲେ " ଲର୍ଡ ହାର୍ଡିଞ୍ଜ ମହାରାଜ ଦଲୀପସିଂହଙ୍କ ସହିତ ଯେଉଁ ବନ୍ଦୋବସ୍ତ କରିଥିଲେ ଏଉତ୍ତାରେ ବ୍ରିଟିସ ଗବର୍ଣ୍ଣମେଣ୍ଟ ସେ ନିୟମ ଅନୁସାରେ ଚଳିବେ ନାହିଁ । ଅଜଠାରୁ ପଞ୍ଜାବ ବ୍ରିଟିସସାମ୍ରାଜ୍ୟର ଏକ ଅଂଶ ବୋଲି ଗଣନା କରାଯିବ । ମହାରାଜ ଦଲୀପସିଂହ ପଦଚ୍ୟୁତ ରାଜାଙ୍କର ସମ୍ମାନିତ

ଓ ସମାଦୃତ ହେବେ ଓ ୫ଲକ୍ଷ ଟଙ୍କା କର ପେନ୍‌ସନ ପ୍ରାପ୍ତ ହେବେ । ଅତ୍ର ଯୁଦ୍ଧ ସମୟରେ ଯେ ସମସ୍ତ ସରଦାର ସଦ୍‌ବ୍ୟବହାର କରଥିଲେ, ସେମାନେ ସ୍ୱ ପଦରେ ପ୍ରତିଷ୍ଠିତ ଥିବେ ଓ ଯେଉଁମାନେ ବିଦ୍ରୋହାଚରଣ କରଥିଲେ ସେମାଙ୍କର ଭୂସମ୍ପତ୍ତି ବାଜେୟାପ୍ତ ହେବ " ।

୧୮୪୯ ସାଲ୍ ମାର୍ଚ୍ଚମାସ ତା ୨୯ ରଖରେ ଲାହୋରରେ ଶେଷ ଦରବାର ହେଲା । ମହାରାଜ ଦଲୀପସିଂହ ଓ ସମାଗତ ଅନ୍ୟାନ୍ୟ ସରଦାରମାନଙ୍କ ସମ୍ମୁଖରେ ଘୋଷଣାପତ୍ର ଇଂରେଜୀ, ପାରସ୍ୟ ଓ ହିନ୍ଦୁସ୍ଥାନୀ ଭାଷାରେ ପଠିତ ହେଲା । ଘୋଷଣାପତ୍ର ପାଠ ସମୟରେ ସମସ୍ତେ ନିସ୍ତବ୍ଧଭାବରେ ଶୁଣିବାକୁ ଲାଗିଲେ । କେବଳ ଦେଓୟାନ ରାଜା ଦୀନନାଥ ଏତିକି ମାତ୍ର କହିଲେ ଏହି ଘୋଷଣାପତ୍ର ନ୍ୟାୟସଙ୍ଗତ ହେଉ ଅବା ନ୍ୟାୟବିରୁଦ୍ଧ ହେଉ ଆମ୍ଭମାନଙ୍କୁ ଏହା ପାଳନ କରିବାକୁ ହେବ । ଅନନ୍ତର ରାଜା ତେଜସିଂହ ଘୋଷଣାପତ୍ର ଖଣ୍ଡିକ ମହାରାଜ ଦଲୀପସିଂହ ହସ୍ତରେ ଦେବାରୁ ସେ ତତ୍‌କ୍ଷଣାତ୍ ତାହା ସ୍ୱାକ୍ଷର କରିଦେଲେ ।

ଏହିରୂପେ ପଞ୍ଜାବସମର ସମାପ୍ତ ହୁଅନ୍ତେ ଲର୍ଡ ଡେଲ୍‌ହାଉସି ଦ୍ୱାଦଶବର୍ଷୀୟ ବାଳକ ମହାରାଜ ଦଲୀପସିଂହଙ୍କ ବିଦ୍ୟାଶିକ୍ଷାର ବନ୍ଦୋବସ୍ତ କରିଦେଲେ । ଜନ ଲଗିନ ନାମକ ଜଣେ ଡାକ୍ତର ଶିକ୍ଷକପଦରେ ନିଯୁକ୍ତ ହେଲେ । କିଛିଦିନ ଉତ୍ତାରେ ଏହି ଡାକ୍ତର ସାହେବ ମହାରାଜ ଦଲୀପସିଂହଙ୍କୁ ଖ୍ରୀଷ୍ଟାନ ଧର୍ମରେ ଦୀକ୍ଷିତ କରାଇ ଇଂଲଣ୍ଡେଶ୍ୱରୀଠାରୁ "ସର" ଉପାଧିଲାଭ କଲେ । ବର୍ତ୍ତମାନ ଦଲୀପ ସିଂହ ଲର୍ଡ ଶ୍ରେଣୀଭୁକ୍ତ ହୋଇ ସ୍କଟଲଣ୍ଡ ଦେଶରେ ବାସ କରୁଅଛନ୍ତି ।

ଚିଲିଆନୱାଲା ଯୁଦ୍ଧର ହତ୍ୟାକାଣ୍ଡ ଇଂଲଣ୍ଡରେ ପହୁଞ୍ଚିଲାରୁ ସମସ୍ତେ ସେନାପତି ଲର୍ଡ ଗଫପ୍ରତି ଅସନ୍ତୋଷର ଚିହ୍ନ ପ୍ରକାଶକରିବାକୁ ଲାଗିଲେ । ଲର୍ଡ ଗଫ ଅତି ଉପଯୁକ୍ତ ସେନାପତି ଥିଲେ ମଧ୍ୟ ତେତେବେଳେ ସମସ୍ତେ ତାହାଙ୍କର ଗୁଣଗ୍ରାମ ଭୁଲିଗଲେ । କର୍ତ୍ତୃପକ୍ଷୀୟମାନେ ସର ଚାର୍ଲ୍‌ସ ନେପିୟରଙ୍କୁ ସେନାପତି ପଦରେ ନିଯୁକ୍ତକରି ଭାରତବର୍ଷକୁ ପଠାଇଲେ । ନେପିୟର ଭାରତବର୍ଷରେ ଉପସ୍ଥିତ ହୋଇ ଦେଖିଲେ ଗଫ ସମସ୍ତକାର୍ଯ୍ୟ ସମାପ୍ତ କରିଅଛନ୍ତି । ଶିଖମାନେ ପରାଜିତ ଓ ପଞ୍ଜାବ ବ୍ରିଟିସରାଜ୍ୟ ଯୋଜିତ ହୋଇଅଛି । ନେପିୟର ଭାରତବର୍ଷରେ ପହୁଞ୍ଚିବା କିଛିଦିନଉତ୍ତାରେ ଏମନ୍ତ ଏକକାରଣ ଉପସ୍ଥିତହେଲା ଯେ ତହିଁରେ ତାହାଙ୍କୁ ପଦତ୍ୟାଗ କରି ସ୍ୱଦେଶକୁ ଫେରିଯିବାକୁ ହେଲା ।

ସିପାହିମାନେ ବ୍ରିଟିସ ସାମ୍ରାଜ୍ୟ ବାହାରରେ ଯୁଦ୍ଧକଲେ ସେମାନେ ଭତ୍ତା ପାଆନ୍ତି । ପଞ୍ଜାବ ବ୍ରିଟିସ ସାମ୍ରାଜ୍ୟରେ ଯୋଜିତ ହେବାରୁ ସେହିଭତ୍ତା ଉଠିଗଲା ସିପାହିମାନେ ଭତ୍ତାରୁ ବଞ୍ଚିତହେବାରୁ ପ୍ରକାଶ୍ୟ ବିଦ୍ରୋହର ଚିହ୍ନ ଦେଖାଇବାକୁ

ଲାଗିଲେ । ଗଭର୍ଣ୍ଣର ଜେନେରଲ ଯୁଦ୍ଧଉପଲକ୍ଷରେ ତେତେବେଳେ ବ୍ରହ୍ମଦେଶରେ ବାସ କରୁଥିଲେ । ଏବିଷୟ ତାହାଙ୍କୁ ଜଣାଇ ତାହାଙ୍କର ଆଦେଶ ଆଣିବାକୁ ଗଲେ ଅନେକ ବିଳମ୍ବହେବ ଏହିବିଳମ୍ବ ସହି ନ ପାର ସିପାହିମାନଙ୍କ ମହା ଉତ୍ପାତ ଘଟନାର ମଧ୍ୟ ଅସମ୍ଭବ ନୁହଇ । ଏଥକୁ ସେନାପତ ଗବର୍ଣ୍ଣର ଜେନେରଲଙ୍କ ମତର ଅପେକ୍ଷା ନ କର ସିପାହିମାନଙ୍କର ବେତନ ବଢ଼ାଇଦେଲେ । ଅନନ୍ତର ଗବର୍ଣ୍ଣର ଜେନେରଲ ବ୍ରହ୍ମଦେଶରୁ ବାହୁଡ଼ାବାକେ ଉତ୍ତାରେ ସିପାହିମାନଙ୍କର ବେତନ ବୃଦ୍ଧିର କାରଣ ପଚାରିଲେ । ସେଥିରେ ସେନାପତ ଉତ୍ତର ଦେଲେ ସିପାହିମାନେ ଭତ୍ତା ନ ପାଇବାରୁ ଅତ୍ୟନ୍ତ ଅବାଧ ହେଲେ । ଆମ୍ଭ ସାମରିକ ନୟମାନୁସାରେ ସେମାନଙ୍କୁ ଦଣ୍ଡଦାନ କଲୁଁ । ତହିଁରେ ମଧ୍ୟ ସେମାନେ ଯେ-ସ୍ଥଳେ ବଶୀଭୂତ ନ ହେଲେ ସେସ୍ଥଳେ ବାଧ୍ୟହୋଇ ସେମାନଙ୍କର ବେତନ ବୃଦ୍ଧି କରଦେବାକୁ ହେଲା । ଡେଲହାଉସୀ ଉତ୍ତରଦେଲେ ୨ । ୪ ଦଳ ସିପାହୀ ବିଦ୍ରୋହରେ ପ୍ରବୃତ୍ତହେଲେ ଭାରତବର୍ଷର କଛି ତାଦୃଶ କ୍ଷତର ସମ୍ଭାବନା ନ ଥିଲା ; ତୁମ୍ଭେ ସିପାହିମାନଙ୍କର ବେତନବୃଦ୍ଧି କରଦେଇ ନତାନ୍ତ ଅନ୍ୟାୟକର୍ମ କରଅଛ । ତେତେବେଳେ ନେପିୟର ଭାବିଲେ ଏକ ଆକାଶରେ ଦୁଇସୂର୍ଯ୍ୟ ଉଦତ ରହି ନ ପାରେ ଏହା ବବେଚନା କର ତଦାଧୀନନ ଇଂଲଣ୍ଡୀୟ ସେନା-ପତ ଓ୍ୱେଲିଂଟନ ନକଟକୁ ପଦତ୍ୟାଗର ପତ୍ର ପଠାଇଲେ ।

୧୮୨୬ ସାଲରେ ବ୍ରହ୍ମଦେଶୀୟ ରାଜାସହିତ ବ୍ରିଟିସ ଗଭର୍ଣ୍ଣମେଣ୍ଟଙ୍କର ସଙ୍ଗରେ ଯେଉଁ ଯୁଦ୍ଧ ହୋଇଥିଲା ସେଥିରେ ରାଜା ପରାସ୍ତହୋଇ କେତେଗୁ-ଡ଼ିଏ ରାଜ୍ୟ ଦାନପୂର୍ବକ ସନ୍ଧିସ୍ଥାପନ କରଥିଲେ । ସେହିସନ୍ଧି ଆଜପର୍ଯ୍ୟନ୍ତ ( ୧୮୫୨ ) ଅକ୍ଷତଭାବରେ ଥିଲା । ପରେ ରେଙ୍ଗୁନର ଶାସନକର୍ତ୍ତା କେତେ-ଗୁଡ଼ିଏ ବ୍ରିଟିସ ବଣିକମାନଙ୍କୁ ଅପମାନ କରବାରୁ ଲର୍ଡ ଡେଲହୌସୀ ସ୍ୱୟଂ ବ୍ରହ୍ମଦେଶକୁ ଯାଇ ପେଗୁପ୍ରଦେଶ ବ୍ରିଟିସ ସାମ୍ରାଜ୍ୟଭୁକ୍ତ କର ଦେଇଥିଲେ ମାତ୍ର ବର୍ତ୍ତମାନ ବ୍ରହ୍ମଦେଶସମ୍ପୂର୍ଣ୍ଣ ବ୍ରିଟିସ ସାମ୍ରାଜ୍ୟଭୁକ୍ତ ହୋଇଅଛି ।

ପରେ ଦେଖାଯିବ ସ୍ୱାର୍ଥଲାଭ ସ୍ଥଳରେ ଡେଲହୌସୀ ଧର୍ମର ଶାସନ ଅତକ୍ରମ କରବାକୁ କଛିମାତ୍ର ସଙ୍କୁଚିତ ହେଉ ନ ଥିଲେ । ତାହାଙ୍କ ଭାରତବ-ର୍ଷରେ ଉପସ୍ଥିତ ହେବା ଅଳ୍ପକାଳଉତ୍ତାରେ ସିତାରାନଗର ବ୍ରିଟିସ ରାଜ୍ୟରେ ଯୋଜିତ ହେବାର ପ୍ରଥମ ସୁଯୋଗ ଉପସ୍ଥିତ ହେଲା । ସିତାରାନଗର ମହାବଳେ-ଶ୍ୱର ପାହାଡ଼ର ନକଟ ଓ କୃଷ୍ଣାଉତ୍ପତ୍ତ ସ୍ଥାନର ଅନତଦୂରରେ ଅବସ୍ଥିତ । ଏହିନଗର ଶିବଜୀଙ୍କର ରାଜଧାନୀ ଥିଲା । ବର୍ତ୍ତମାନ ସମୟର ପୂର୍ବେ ଇଂରେ-ଜମାନେ ମହାରାଷ୍ଟ୍ରୀୟ ପେଶୋୟା ବାଲାଜୀବିଶ୍ୱନାଥଙ୍କୁ ପରାସ୍ତ କର ଶିବଜୀବଂ-

ଶଧର ପ୍ରତାପସିଂହଙ୍କୁ ସେହିରାଜ୍ୟରେ ସ୍ଥାପନ କରିଥିଲେ । ପ୍ରତାପସିଂହ ଓ କୋମ୍ପାନୀ ବାହାଦୁର ମଧ୍ୟରେ ଯେଉଁ ସନ୍ଧିସ୍ଥାପିତ ହୋଇଥିଲା ସେଥିରେ ଏହି କଥାଥିଲା ଯେ ପ୍ରତାପସିଂହ ପୁତ୍ରପୌତ୍ରାଦିକ୍ରମେ ରାଜ୍ୟଭୋଗ କରିବାକୁ ପାଇବେ । ପୁତ୍ରପୌତ୍ରାଦି ଅଭାବେ ଦତ୍ତକ ପୁତ୍ର ଗ୍ରହଣ କଲେ ସେହିପୁତ୍ର ରାଜ୍ୟାଧିକାରୀ ହୋଇପାରିବେ । ୧୮୧୯ ସାଲରେ ଏହିସନ୍ଧି ସ୍ଥାପିତ ହୋଇଥିଲା ।

୧୮୩୯ ସାଲରେ ବ୍ରିଟିସ ଗବର୍ଣ୍ଣମେଣ୍ଟ ନାଗପୁରର ପଦଚ୍ୟୁତ ରାଜା ଓ ଗୋୟାବାସୀ ପର୍ତ୍ତୁଗୀଜମାନଙ୍କ ସହିତ ମିଳିତ ହୋଇ ଇଂରେଜମାନଙ୍କ ବିପକ୍ଷରେ ଷଡ଼ଯନ୍ତ୍ର କରୁଅଛନ୍ତି ଏହି ଦୋଷଭାର ପ୍ରତାପସିଂହଙ୍କ ମସ୍ତକରେ ପକାଇ ତାହାଙ୍କୁ ପଦଚ୍ୟୁତ କଲେ । କିନ୍ତୁ କେଉଁସୂତ୍ର ଅବଲମ୍ବନ କରି ଡେଲହୌସୀ ଯେ ପ୍ରତାପସିଂହଙ୍କୁ ଦୋଷୀ କଲେ ତାହା ଆମ୍ଭେମାନେ ନ ଜାଣୁ । ମଧ୍ୟ କର୍ଣ୍ଣେଲ ଗ୍ରାଣ୍ଟ-ଡ ନାମକ କୋମ୍ପାନୀର ଜଣେ କର୍ମଚାରୀ ସ୍ପଷ୍ଟକଥାରେ ବୋଲନ୍ତି ଯେ ପ୍ରତାପସିଂହ ସମ୍ପୂର୍ଣ୍ଣରୂପେ ନିର୍ଦ୍ଦୋଷୀ । ଯାହା ହେଉ ରାଜା ରାତ୍ରି ସମୟରେ ରାଜଭବନରୁ ବହିଷ୍କୃତ ଓ ନଗରର ୪ କ୍ରୋଶ ଦୂରେ ଏକ ଗୋହାଳି ଘରକୁ ନୀତହେଲେ । ତାହାଙ୍କ ଧନାଗାରରେ ମଣି ମୁକ୍ତାଦି ୫ ଲକ୍ଷ ଟଙ୍କାର ଦ୍ରବ୍ୟଥିଲା ତାହା କୋମ୍ପାନୀ ଧନାଗାରକୁ ନୀତହେଲା ।

ଇଂରେଜମାନେ ଏହିରୂପେ ପ୍ରତାପସିଂହଙ୍କୁ ପଦଚ୍ୟୁତକରି ଆପା ସାହେବଙ୍କୁ ତତ୍ପଦରେ ନିଯୁକ୍ତ କଲେ । ଆପା ସାହେବଙ୍କ ସହିତ ନୂତନ କୌଣସି ନିୟମ କରାଗଲା ନାହିଁ । ପ୍ରତାପସିଂହଙ୍କ ସହିତ ଯେଉଁ ସନ୍ଧି ନିୟମ ସ୍ଥାପିତହୋଇଥିଲା ସେହି ନିୟମ ପ୍ରବଳ ରହିଲା ।

୧୮୪୮ ଓ ୧୮୪୯ ସାଲରେ ପ୍ରତାପସିଂହ ଓ ଆପାସାହେବ ଦୁଇଭ୍ରାତା କ୍ରମାନ୍ୱୟେ ପରଲୋକ ଗମନ କଲେ । ସେମାନଙ୍କ କାହାର ପୁତ୍ରାଦି ନ ଥିଲା ମାତ୍ର ହିନ୍ଦୁଧର୍ମାନୁସାରେ ଦତ୍ତକ ପୁତ୍ର ଗ୍ରହଣ କରିଥିଲେ । ଆପା ସାହେବ ମୃତ୍ୟୁ ସମୟରେ ଯେଉଁ ଦତ୍ତକ ପୁତ୍ର ଗ୍ରହଣ କରିଥିଲେ ସେ ତାହାଙ୍କର ଅନ୍ତ୍ୟେଷ୍ଟି କ୍ରିୟା ସମ୍ପନ୍ନ କରିଥିଲେ ।

ବହୁକାଳରୁ ଭାରତବର୍ଷମଧ୍ୟରେ ଏହିରୀତି ଚଳିତ ଅଛି ଯେ ଔରସଜାତ ପୁତ୍ରପରି ଦତ୍ତକ ପୁତ୍ର ମଧ୍ୟ ବିଷୟାଧିକାରୀ ହୋଇପାରିବ । ଲର୍ଡ୍ ଡେଲହୌସୀ ଅର୍ଥ୍ୟକାଙ୍କ୍ଷାର ଏହି ଚିରାଗତ ପ୍ରଥା ଲଙ୍ଘନକରି ସେହି ଦତ୍ତକ ପୁତ୍ରକୁ ବିଷୟାଧିକାରରୁ ବଞ୍ଚିତ କଲେ । ମାତ୍ର ତାହାଙ୍କର ଏହି କାର୍ଯ୍ୟ ଯେ ନିତାନ୍ତ ନ୍ୟାୟ ବିରୁଦ୍ଧ ଏକଥା ଉଲ୍ଲେଖ କରିବା ଅଧିକ ଅଟେ । ଯେଉଁ ସନ୍ଧିନିୟମ

ଲଙ୍ଘନ କରିବାକୁ ଦୁର୍ଦ୍ଧର୍ଷ ମୁସଲମାନ ମଧ୍ୟ ସଙ୍କୁଚିତ ହୋଇ ଥାଆନ୍ତି ସଭ୍ୟ ବ୍ରିଟିସ ଗବର୍ଣ୍ଣମେଣ୍ଟ ଅନାୟାସରେ ସେହି ସନ୍ଧି ନିୟମ ଲଙ୍ଘନ କଲେ ଏହାଠାରୁ ଅଧିକ ଲଜ୍ଜାକର ବିଷୟ ହୋଇ ପାରେ ?

ଲର୍ଡ ଡେଲହୌସୀଙ୍କ ଅନ୍ୟାୟକାରିତା ପ୍ରବୃତ୍ତି ଏଥିରେ ମଧ୍ୟ ନିବୃତ୍ତ ହେଲା ନାହିଁ । ୧୮୫୩ ସାଲରେ ନାଗପୁରାଧିପତି ଅପୁତ୍ରିକ ଅବସ୍ଥାରେ ପ୍ରାଣ-ତ୍ୟାଗ କଲେ ଓ ମୃତ୍ୟୁସମୟରେ ସେ ପାଟରାଣୀଙ୍କୁ ଦତ୍ତକ ପୁତ୍ର ଗ୍ରହଣ କରିବା ପାଇଁ ଅନୁମତି ଦେଇ ଯାଇ ଥିଲେ । ଏ ଅବସ୍ଥାରେ ହିନ୍ଦୁ ଶାସ୍ତ୍ରାନୁସାରେ ସେହି ପୁତ୍ର ଯେ ସିଂହାସନର ଯଥାର୍ଥ ଉତ୍ତରାଧିକାରୀ ସେଥିରେ ସନ୍ଦେହ ମାତ୍ର ନାହିଁ । ମଧ୍ୟ ୧୮୩୪ ସାଲରେ ଧାର୍ ନଗରସ୍ଥ ଓ ୧୮୪୧ ସାଲରେ କୃଷ୍ଣ ନଗରସ୍ଥ ଦତ୍ତକ ରାଜକୁମାରମାନେ ରାଜ୍ୟାଧିକାରୀ ହୋଇ ଥିଲେ । ସେତେବେଳେ ବ୍ରିଟିସ ଗବର୍ଣ୍ଣମେଣ୍ଟ କୌଣସି କଥା କହି ନ ଥିଲେ । ଏହି ସକଳ ପ୍ରମାଣ ଜାଜ୍ୱଲ୍ୟମାନ ଥାଉଁ ଥାଉଁ ମଧ୍ୟ ଡେଲହୌସୀ ନାଗପୁରେଶ୍ୱରୀଙ୍କ ଗୃହୀତ ଦତ୍ତକ ପୁତ୍ରଙ୍କୁ ଗ୍ରାହ୍ୟ କଲେ ନାହିଁ । ସୁତରାଂ ନାଗପୁର ବ୍ରିଟିସ ରାଜ୍ୟରେ ମିଶିଗଲା ।

ସିତାରା ଓ ନାଗପୁର ଗ୍ରହଣ କରିବା ଅବ୍ୟବହିତ ପରେ ଝାନ୍‌ସିରେ ମଧ୍ୟ ଏହିରୂପ ଘଟଣା ହେଲା ।

୧୮୫୩ ସାଲରେ ତହିଁର ରାଜା ଗଙ୍ଗାଧର ରାଓ ଅପୁତ୍ରିକଅବସ୍ଥାରେ ପ୍ରାଣତ୍ୟାଗ କଲେ । ସେ ମୃତ୍ୟୁ ପୂର୍ବେ ଆନନ୍ଦରାଓ ନାମରେ ଗୋଟିଏ ବାଳକଙ୍କୁ ଦତ୍ତକ ପୁତ୍ର ଗ୍ରହଣ କରିଥିଲେ ଓ ବ୍ରିଟିସ ରେସିଡେଣ୍ଟଙ୍କୁ ଏହି ମର୍ମରେ ଖଣ୍ଡିଏ ପତ୍ର ଲେଖି ଯାଇଥିଲେ ଯେ, ଆମ୍ଭେ ବ୍ରିଟିସ ଗବର୍ଣ୍ଣମେଣ୍ଟଙ୍କୁ ଅତିଶୟ ଭକ୍ତି କରୁଥାଉଁ, ଗବର୍ଣ୍ଣମେଣ୍ଟ ମଧ୍ୟ ଆମ୍ଭପ୍ରତି ଯଥେଷ୍ଟ ଅନୁଗ୍ରହ ପ୍ରଦର୍ଶନ କରୁଥାଆନ୍ତି ଏସ୍ଥଳେ ଆମ୍ଭଶରୀର ସହିତ ଆମ୍ଭର ବଂଶମର୍ଯ୍ୟାଦା ଏକାବେଳକେ ଲୋପହୋଇ ଯିବ ଏହା ଅତି ଆକ୍ଷେପର ବିଷୟ । ଏଥିରୁ ବ୍ରିଟିସ ଗବର୍ଣ୍ଣମେଣ୍ଟଙ୍କ ସହିତରେ ଯେଉଁ ସନ୍ଧି ସ୍ଥାପିତ ଅଛି, ସେହି ସନ୍ଧିର ୨ୟ ନିୟମ ଅନୁସାରେ ଗୋଟିଏ ଦତ୍ତକ ପୁତ୍ର ଗ୍ରହଣ କଲୁଁ । ଆମ୍ଭପ୍ରତି ଗବର୍ଣ୍ଣମେଣ୍ଟଙ୍କର ଯେରୂପ ଅନୁଗ୍ରହ ଅଛି, ଆମ୍ଭ ଉତ୍ତାରେ ଆନନ୍ଦରାଓଙ୍କ ପ୍ରତି ସେହିପରି ଅନୁଗ୍ରହ ଯେମନ୍ତ ରହେ, ଆମ୍ଭର ଏତିକିମାତ୍ର ପ୍ରାର୍ଥନା । ଗଙ୍ଗାଧରରାଓ ବ୍ରିଟିସ ଗବର୍ଣ୍ଣମେଣ୍ଟଙ୍କୁ ଏହିପତ୍ର ଲେଖିବା ବହୁ ଦିନ ପରେ ପରଲୋକ ଗମନ କଲେ । ତାହାଙ୍କର ଭାର୍ଯ୍ୟା ଲକ୍ଷ୍ମୀବାଈ ଅତି ତେଜସ୍ୱୀନୀ ଓ ବୁଦ୍ଧିମତୀ ଥିଲେ । ସେ ସ୍ୱାମିଙ୍କ ବାସନା ପୂର୍ଣ୍ଣ କରିବା ପାଇଁ ଅନେକ ଯତ୍ନ କଲେ; କିନ୍ତୁ କୌଣସି ପ୍ରକାରେ କୃତକାର୍ଯ୍ୟ ହୋଇ ପାରିଲେ

ନାହିଁ । ଏକେ ବ୍ରିଟିସରେସିଡେଣ୍ଟ ତାହାଙ୍କ ସହିତ ସାକ୍ଷାତ କରିବା ପାଇଁ ଯାଇ-ଥିଲେ; ଲକ୍ଷ୍ମୀବାଈ ପରଦା ମଧ୍ୟରେ ଥାଇଁ କହିଲେ "କ୍ୟା ମେରା ଝାନସି ଦେଗା ନେହିଁ" ରାଣୀ ବାକ୍ୟରେ ଯେରୂପ ତେଜୋବତ୍ତା ପ୍ରକାଶ କଲେ କାର୍ଯ୍ୟରେ ତଦ୍ରୂପ କରି ପାରିଲେ ନାହିଁ ; ତେଣୁ ଝାନସି ଅନାୟାସରେ ବ୍ରିଟିସ ରାଜ୍ୟ ସଙ୍ଗରେ ଯୋଜିତ ହେଲା ।

ଲୋଭ-ରିପୁର ଗୋଟିଏ ଚମତ୍କାର ଗୁଣ । ତାହାକୁ ଚରିତାର୍ଥ କରିବା ନିମନ୍ତେ ଯେତେ ଚେଷ୍ଟା କରାଯାଏ ଆହୂତ ପ୍ରାପ୍ତ ଜ୍ୱଳନ୍ତହୁତାଶନବତ୍ ତାହାର ପ୍ରଭାବ ତେତେ ବୃଦ୍ଧି ପାଉଥାଏ । ଏତେ ଅନ୍ୟାୟ କରି ମଧ୍ୟ ଡେଲହାଉସୀଙ୍କ ଦୁଷ୍ପ୍ରବୃତ୍ତି ଚରିତାର୍ଥ ହେଲା ନାହିଁ । ବରଞ୍ଚ ଉତ୍ତରୋତ୍ତର ବୃଦ୍ଧି ପାଇବାକୁ ଲାଗିଲା ।

ଲର୍ଡ ଓଏଲେସଲଙ୍କ ଅଧିକାର ସମୟରେ କର୍ଣ୍ଣାଟର ନବାବ ଓ ତାଞ୍ଜୋରର ହିନ୍ଦୁରାଜାମାନଙ୍କର କ୍ଷମତା ବିଲୁପ୍ତ ହୋଇଥିଲା । କେବଳ ସେମାନଙ୍କର ଅସାର ରାଜୋପାଧି ମାତ୍ର ଥିଲା, ମଧ୍ୟ ପ୍ରଚୁର ବୃତ୍ତି ଭୋଗ କରୁ ଥିଲେ । ବର୍ତ୍ତମାନ ସେ-ମାନେ ପରଲୋକ ଗମନ କରିବାରୁ ଡେଲହାଉସୀ ସେମାନଙ୍କର ରାଜୋପାଧି ଉଠାଇ ଦେଲେ ଏବଂ ବୃତ୍ତି ମଧ୍ୟ ବନ୍ଦ କରି ଦେଲେ ।

ପେଶୋୟା ଅର୍ଥାତ୍ ମହାରାଷ୍ଟ୍ରୀୟ ମନ୍ତ୍ରୀ ଶିବଜୀ ବଂଶଧରମାନଙ୍କର କ୍ଷମତା ବିଲୋପ କରି ପୁନା ନଗର ସ୍ଥାପନ କରିଥିଲେ; ପୁନା ନଗର ପ୍ରଶସ୍ତ ପ୍ରାନ୍ତର ମଧ୍ୟରେ ଅବସ୍ଥିତ । ଏହାର ମଧ୍ୟ ଦେଇ ମୁଣ୍ଡା ଓ ମୂଲ୍ଲାନଦୀ ପ୍ରବାହିତ ହେଉଅଛି । କି ଧନସମ୍ପତ୍ତି କି ବିସ୍ତାରିତା ସକଳ ବିଷୟରେ ଏହା ରାଜାର ରାଜଧାନୀଠାରୁ ଶ୍ରେଷ୍ଠତା ପ୍ରାପ୍ତ ହୋଇଥିଲା । ୧୮୧୮ ସାଲରେ ଇଂରେଜମାନେ ହାୟଦରାବା-ଦର ନିଜାମଙ୍କ ସାହାଯ୍ୟରେ ପୁନା ନଗର ଅଧିକାର କଲେ ଓ ତାହାର ଅଧି-କାରୀ ବାଜିରାଓଙ୍କୁ ୭ ଲକ୍ଷଟଙ୍କା ବୃତ୍ତି ସହିତ କାନପୁର ସମୀପବର୍ତ୍ତୀ ବିଠୁର ନଗର ଦାନ କଲେ । ବାଜିରାଓ ଦୀର୍ଘଜୀବୀ ଥିଲେ; ସେ ପ୍ରାୟ ୩୬ ବରଷ ଉକ୍ତ ନଗ-ରରେ ଅଧିପତ୍ୟ କରିଥିଲେ । ତାହାଙ୍କର ଅପତ୍ୟ ଥିଲା ନାହିଁ । ତେଣୁ ସେ ଦେଶ ପ୍ରଚଳିତ ନୟମାନୁସାରେ ଗୋଟିଏ ଦତ୍ତକପୁତ୍ର ଗ୍ରହଣ କରିଥିଲେ । ସେହି ପୁତ୍ରର ନାମ ନାନାସାହେବ । ବାଜିରାଓ ମୃତ୍ୟୁର କତିପୟଦିନ ପୂର୍ବେ ବ୍ରିଟିସ ଗବର୍ଣ୍ଣ-ମେଣ୍ଟଙ୍କୁ ଜଣାଇଲେ ଯେ, ଅମ୍ଭେ ଯଥା ଶାସ୍ତ୍ରସମ୍ମତ ଗୋଟିଏ ଦତ୍ତକ ପୁତ୍ର ଗ୍ରହଣ କରିଅଛୁଁ । ବର୍ତ୍ତମାନ ଅମ୍ଭର ପ୍ରାର୍ଥନା ଅମ୍ଭମୃତ୍ୟୁ ଉତ୍ତାରେ ଦତ୍ତକ ପୁତ୍ର ଯେମନ୍ତ ଅମ୍ଭ ସମସ୍ତ ସମ୍ପତ୍ତି ସହିତ ପେନସନ୍‌ର ଅଧିକାରୀ ହୁଏ; କିନ୍ତୁ ଗବର୍ଣ୍ଣମେଣ୍ଟ ତାହା ଗ୍ରାହ୍ୟ କଲେ ନାହିଁ, ନିରାଶ ମଧ୍ୟ କଲେ ନାହିଁ । ଲେଖିଲେ ଆପଣଙ୍କ ଦତ୍ତକ ପୁତ୍ରର ଭରଣପୋଷଣ ବିଷୟ ଅବଶ୍ୟ ଏକ ସମୟରେ ବିଚାର କରାଯିବ ।

୧୮୫୧ ସାଲ ଜାନୁୟାରୀ ମାସରେ ବାଜୀରାଓ ପ୍ରାଣ ତ୍ୟାଗ କଲେ । ତେ-ତେବେଳେ ନାନାସାହେବଙ୍କ ବୟସ ୨୭ ବରଷ ମାତ୍ର । ପିତାଙ୍କ ମୃତ୍ୟୁ ଉତ୍ତାରେ ସେ ୧୫ ଲକ୍ଷ ଟଙ୍କା ନଗଦ ଓ ୧୫ ଲକ୍ଷ ଟଙ୍କାର କୋମ୍ପାନୀ କାଗଜ ପ୍ରାପ୍ତ ହୋଇ ଥିଲେ; କିନ୍ତୁ ତାହା ହେଲେ କି ହେବ ଅନେକ ଲୋକର ଭରଣ ପୋଷଣର ଭାର ତାହାଙ୍କ ହସ୍ତରେ ପଡ଼ିଲା । ବାଜୀରାଓଙ୍କ ଦେଓୟାନ ରାମଚନ୍ଦ୍ରପନ୍ଥ ବ୍ରିଟିସ ଗବର୍ଣ୍ଣମେଣ୍ଟଙ୍କ ନିକଟକୁ ଏହି ମର୍ମରେ ଖଣ୍ଡିଏ ପତ୍ର ଲେଖିଲେ ଯେ, ନାନାସା-ହେବ କୋମ୍ପାନୀକୁ ପିତୃ ସ୍ଥାନୀୟ ମଣନ୍ତି; ଏଥିକୁ ପ୍ରାର୍ଥନା କୋମ୍ପାନୀ ଅନୁଗ୍ରହ କରି ତାହାଙ୍କ ପରିବାରର ଓ ପାରିଷଦବର୍ଗର ଭରଣପୋଷଣ ଭାର ଗ୍ରହଣ କରନ୍ତୁ । ଏହିପତ୍ର ପ୍ରଥମରେ ବିଠୁରସ୍ଥ କମିସନରଙ୍କ ହସ୍ତରେ ପଡ଼ିଲା, କମିସନର ଅତି ଦୟାଳୁ ଲୋକ ଥିଲେ ସେ ନାନାସାହେବଙ୍କ ବୃତ୍ତିପାଁଇ ଅନୁରୋଧ କରି ପଶ୍ଚି-ମାଞ୍ଚଳର ଲେଫ୍‌ଟନେଣ୍ଟ ଗବର୍ଣ୍ଣମେଣ୍ଟଙ୍କ ନିକଟକୁ ପଠାଇ ଦେଲେ । ଲେଫ୍‌ଟନେଣ୍ଟ ଗବର୍ଣ୍ଣମେଣ୍ଟ ଡେଲହାଉସୀଙ୍କ ଚେଲା, ସେ ଦରଖାସ୍ତରେ ଡେଲହାଉସୀଙ୍କ ସନ୍ତୁଷ୍ଟି-ଜନକ ମନ୍ତବ୍ୟ ପ୍ରକାଶ କରି ତାହାଙ୍କ ନିକଟକୁ ପଠାଇଦେଲେ ମଧ୍ୟ କମିସନରଙ୍କୁ ଲେଖିଲେ ଅମ୍ଭେ ତୁମ୍ଭ ପ୍ରେରିତ ନାନାସାହେବଙ୍କ ଦରଖାସ୍ତ ଗବର୍ଣ୍ଣରଜନରଲଙ୍କ ନିକଟକୁ ପଠାଇଲୁଁ; କିନ୍ତୁ ତୁମ୍ଭେ ନାନାସାହେବଙ୍କୁ ବୁଝାଇ ଦେବ ଯେମନ୍ତ ସେ ବୃତ୍ତିର ଆଶା ନ ରଖିବେ । ଦରଖାସ୍ତ ଡେଲହାଉସୀଙ୍କ ହସ୍ତରେ ପଡ଼ିଲା । ତାହା-ଙ୍କର ନିତାନ୍ତ ଇଚ୍ଛା କଲେ କୌଶଳରେ ଭାରତବର୍ଷ ରାଜାମାନଙ୍କର ସର୍ବନାଶ କରି କୋମ୍ପାନୀ କୋଷ ପୂର୍ଣ୍ଣ କରିବେ । ବର୍ତ୍ତମାନ ସୁଯୋଗ ଥାଉଁ୨ ଯେ ନାନା-ସାହେବଙ୍କ ପ୍ରାପ୍ୟ ବୃତ୍ତି ବାହାଲ ରଖିବେ ସେ ମିଛକଥା ତେଣୁ ନାନାସାହେବଙ୍କ ବିନୟ ପ୍ରାର୍ଥନା କି କମିଶନର ସାହେବଙ୍କ ଅନୁରୋଧ କାହିଁରେ କିଛିଫଳ ଦର୍ଶିଲା ନାହିଁ । ସୁତରାଂ ଲେଫ୍‌ଟନେଣ୍ଟ ଗବର୍ଣ୍ଣରଙ୍କ ମନ୍ତବ୍ୟ ବାହାଲ ରହିଲା । କମିସନର ସାହେବଙ୍କୁ ଏହି ମର୍ମରେ ଖଣ୍ଡିଏ ପତ୍ର ଲେଖାଗଲା ଯେ, ତୁମ୍ଭର ନାନାସାହେବଙ୍କ ବୃତ୍ତି ବାହାଲ ରଖିବା ବିଷୟରେ ଅନୁରୋଧ କରିବା ଉଚିତ ନ ଥିଲା । ତୁମ୍ଭର ଏହା କର୍ତ୍ତବ୍ୟ ମଧ୍ୟ ନୁହେ । ଅତଃପ୍ରାୟ କର୍ତ୍ତବ୍ୟତାର ଅନୁଗତ ନ ହୋଇ ଆମ୍ଭର ମତାନୁସାରେ କାର୍ଯ୍ୟ କର । ନିର୍ବୋଧ କମିସନର ତାହା ବୁଝି ନ ପାରି ସମୁଚିତ ପ୍ରତିଫଳ ପ୍ରାପ୍ତହେଲେ ।

ଗବର୍ଣ୍ଣର ଜନରଲ ଦରଖାସ୍ତ ଅଗ୍ରାହ୍ୟ କରିବାରୁ ସେ ଅଶାର ହାସ ହୋଇ ବିଲାତରେ ଦରଖାସ୍ତ କଲେ । ଦରଖାସ୍ତ ଗବର୍ଣ୍ଣରଜନରଲଙ୍କ ହାତଦେଇ ବିଲାତକୁ ଗଲା । ନାନାସାହେବ ଆପଣାର ନ୍ୟାଯ୍ୟଦାବୀ ସାବ୍ୟସ୍ତ କରାଇବା ପାଁଇ ନାନାକଥା ଲେଖିଥିଲେ; କିନ୍ତୁ କି ଅଲଙ୍କାରଯୁକ୍ତବାକ୍ୟବିନ୍ୟାସ କି ନ୍ୟାୟା-

ନୃଗତ ହେତୁପନ୍ୟାସ ତାହାଁରେ ଡେଲହାଉସୀଙ୍କ ବଣିକ ପ୍ରଭୁ ଡାଇରେକ୍ଟରଙ୍କ ମନ ଟଳିଲା ନାହିଁ । ସେମାନଙ୍କଚମତ୍କାର ଅନୁମାନ ଶକ୍ତିରେ ଉଦୟ ହେଲା, ପଦଚ୍ୟୁତ ପେଶୋୟା ୩୩ ବରଷ ଯାବତ ପ୍ରଚୁର ବୃତ୍ତି ଭୋଗ କରିଅଛନ୍ତି; ସେଥିରୁ ସେ ଅନେକ ଅର୍ଥ ବଞ୍ଚାଇ ଯାଇଥିବେ, ତଦ୍ଦ୍ୱାରା ତାହାଙ୍କ ଉତ୍ତରାଧିକାରୀମାନଙ୍କର ଭରଣ ପୋଷଣ ଉତ୍ତମରୂପେ ଚଳପାରେ ଆଉ ବୃତ୍ତି ଦାନ କରିବା ପ୍ରୟୋଜନ ନାହିଁ । ଆଉ ନୂଆ ସାହେବମାନଙ୍କ ଲାଗି ଯଦି ଅଧିକ ଖରଚ ହେଉଥାଏ ତେବେ ସେମାନଙ୍କୁ ଛଡ଼ାଇଦେବା ଉଚିତ । ନାନାସାହେବ ଆପଣା ଦାବୀ ସପ୍ରମାଣ କରାଇବା ପାଇଁ ଅଜିମୁଲ୍ଲାଖାଁ ନାମକ ଏକ ଲୋକଙ୍କୁ ଉକୀଲ ସ୍ୱରୂପ କରି ବିଲାତକୁ ପଠାଇ ଥିଲେ ସେ ଆପଣା ପ୍ରଭୁଙ୍କ ଦାବୀ ସପ୍ରମାଣ କରାଇବାପାଇଁ ଅନେକ ଯତ୍ନ କଲେ ମାତ୍ର ତାହାଁରେ କିଛି ଫଳ ଦର୍ଶିଲା ନାହିଁ । ଡିରେକ୍ଟରମାନେ ଗବର୍ଣ୍ଣରଜେନରଲଙ୍କୁ ଲେଖିଲେ, ନାନାସାହେବଙ୍କୁ ବୁଝାଇ ଦେବ, ବୃତ୍ତି ପ୍ରାପ୍ତି କିଛି ତାହାଙ୍କର ମୌରସୀ ନୁହଇ ତେଣୁ ସେ ବୃତ୍ତିର ଆଶା ପରିତ୍ୟାଗ କରନ୍ତୁ । ଦୁଃଖର ବିଷୟ ଏହି ଯେ ନାନାସାହେବ ପୈତୃକ ସମସ୍ତ ବିଷୟ ହରାଇଲେ ନାହିଁ । ତାହାଙ୍କ ବିଠୁର ନଗର ବାହାଲ ରହିଲା କିନ୍ତୁ ଗବର୍ଣ୍ଣମେଣ୍ଟ ତାହାର ଶାସନ ଭାର ସ୍ୱହସ୍ତରେ ରଖିଲେ । ନାନାସାହେବ କେବଳ ତାହାର ଉପସ୍ୱତ୍ୱ ମାତ୍ର ଭୋଗ କରିବାକୁ ଲାଗିଲେ ।

ବିଠୁର ବିଷୟ ନିଷ୍ପତ୍ତିହେବା ଉତ୍ତାରେ ଅଯୋଧ୍ୟା ପ୍ରଦେଶ ଡେଲହାଉସିଙ୍କ ଲକ୍ଷର ସ୍ଥଳ ହେଲା । ୧୮୦୧ ସାଲରେ ଲର୍ଡ ଓଏଲେସ୍‌ଲୀଙ୍କ ଅଧିକାର କାଳେ ନବାବ ସାଦତଅଲିଖାଁ ଓ କୋମ୍ପାନୀବାହାଦୁର ଏହି ଉଭୟ ମଧ୍ୟରେ ଏମନ୍ତ ବନ୍ଦୋବସ୍ତ ହୋଇଥିଲା ଯେ, ଅଯୋଧ୍ୟାରେ କେତେଗୁଡ଼ିଏ ବ୍ରିଟିସ ସୈନ୍ୟ ରହିବେ, ତାହାର ବ୍ୟୟ ନିର୍ବାହ ନିମନ୍ତେ ନବାବ ରାଜ୍ୟର କେତେକ ଅଂଶ କୋମ୍ପାନୀକୁ ଦାନ କରିବେ । କୋମ୍ପାନୀ ମଧ୍ୟ ପ୍ରତିଶ୍ରୁତ ହୋଇଥିଲେ ଯେ ଶତ୍ରୁହସ୍ତରୁ ନବାବଙ୍କୁ ରକ୍ଷା କରିବେ ଓ ରାଜ୍ୟର ଶାସନ ପ୍ରଣାଳୀ ଯଦି ବିଶୃଙ୍ଖଳ ହୁଏ ତେବେ ଶୃଙ୍ଖଳା କରିବାପାଇଁ ପରାମର୍ଶ ଦେବେ । ଏହି ସନ୍ଧିର ନିୟମ ଅନ୍ୟୂନ ୪ ଯୁଗକାଳ ଅକ୍ଷତଭାବରେ ଥିଲା । ଏତେବେଳେ ଡେଲହାଉସୀ ନବାବ ଓୟାଜିଦଅଲିଙ୍କୁ ବିଳାସୀ ଓ ନିସ୍ତେଜ ଦେଖି ରାଜ୍ୟ ସୁଚାରୁରୂପେ ଶାସିତ ହେଉ ନ ଥିବା ଦୋଷ ଦେଇ ଅଯୋଧ୍ୟା ବ୍ରିଟିସ ରାଜ୍ୟରେ ଯୋଜିତ ହେବାର ବିଷୟ ପ୍ରଚାର କରି ଦେଲେ । ଡେଲହାଉସୀଙ୍କର ଏହି କାର୍ଯ୍ୟ ଯେ, ସର୍ବଠାରୁ ଘୋର ଅନ୍ୟାୟ ସେଥିରେ ସନ୍ଦେହମାତ୍ର ନାହିଁ । ନାଗପୁର, ସାତାରା, ଝାନସି ପ୍ରଭୃତି ରାଜ୍ୟ, ମନରେ କର କାହାର ଯଥାର୍ଥ ଉତ୍ତରାଧିକାରୀ ଥିଲା ନାହିଁ ବୋଲି

ବ୍ରିଟିସ ରାଜ୍ୟରେ ଯୋଜିତ ହେଲା; ମାତ୍ର ଅଯୋଧ୍ୟାର ସେପରି ନୁହଇ, ଏହାର ଯଥାର୍ଥ ଅଧିକାରୀ ସ୍ୱୟଂ ବର୍ତ୍ତମାନ, ଡେଲହାଉସୀଙ୍କ ଅନ୍ତରଙ୍ଗ ବନ୍ଧୁମାନଙ୍କୁ ପଚାରି ସେମାନେ ଅବଶ୍ୟ ଡେଲହାଉସୀଙ୍କ ଏହି କାର୍ଯ୍ୟକୁ ଘୋରଅନ୍ୟାୟ୍ୟ କାର୍ଯ୍ୟ ବୋଲି ବୋଲିବେ । ଗବର୍ଣ୍ଣମେଣ୍ଟ ଯେ ହେତୁବାଦ ଦେଖାଇ ଅଯୋଧ୍ୟା ଗ୍ରହଣ କଲେ ତାହା ନିତାନ୍ତ ଅକିଞ୍ଚିତ୍କର ବରଂ ସେ "ଆମ୍ଭେମାନେ ବଳବାନ୍ ଅର୍ଥ ସମ୍ପତ୍ତିର ମଧ୍ୟ ଅଭାବ ନାହିଁ ବଳେ କୌଶଳେ ଆମ୍ଭେମାନେ ଭାରତ ଭୂମିକୁ ଏକଚ୍ଛତ୍ରା କରିବୁଁ ଏ ସ୍ଥଳେ ଅଯୋଧ୍ୟାର ନବାବ ସ୍ୱପଦରେ ରହିବା ଉଚିତ ନୁହେ ।" ଏହି କଥା ବୋଲି ଯଦି ଅଯୋଧ୍ୟା ଗ୍ରହଣ କରନ୍ତେ ତାହା ହେଲେ ଆମ୍ଭେମାନେ ଥରେ ହେଲେ ତାହାଙ୍କୁ ସରଳ ବୋଲି ବୋଲନ୍ତୁ କିନ୍ତୁ ରାଜ୍ୟ ଉତ୍ତମରୂପେ ଶାସନ କରି ନ ପାରିଲେ ଯେ ଅଯୋଧ୍ୟା ଗ୍ରହଣ କରାଯିବ ଏମନ୍ତ ନିୟମ ନାହିଁ । ବରଂ ସନ୍ଧିପତ୍ରରେ ଏମନ୍ତ ଲେଖା ଥିଲା ଯେ ନବାବ ଉତ୍ତମରୂପେ ରାଜ୍ୟ ଶାସନ କରି ନ ପାରିଲେ ସୁଶାସନ ପାଇଁ ବ୍ରିଟିସ ଗବର୍ଣ୍ଣମେଣ୍ଟ ଉପଦେଶ ଦେବେ । " ଉପଦେଶ " ଅର୍ଥ ଯେ ଗ୍ରହଣ କରିବା ଏହା ହସ୍ତପଦବିଶିଷ୍ଟ ପ୍ରାଣୀ ମାତ୍ରେ ଅନୁମୋଦନ କରିବେ ନାହିଁ ।

ଏହି ଘୋଷଣାପତ୍ର ପ୍ରଚାରିତ ହେବାରୁ ନବାବ ଲକ୍ଷ୍ନୌସ୍ଥିତ ବ୍ରିଟିସ ରେସିଡେଣ୍ଟ ଅଉଟ୍ରାମଙ୍କ ନିକଟରେ ସନ୍ଧି ନିୟମ ଭଗ୍ନ ହେଲା ବୋଲି ନାନାପ୍ରକାର ଆପତ୍ତି କରିବାକୁ ଲାଗିଲେ; କିନ୍ତୁ କୌଣସି ରୂପେ ସ୍ୱପକ୍ଷ ସମର୍ଥନ କରି ପାରିଲେ ନାହିଁ । ଅଉଟ୍ରାମ କହିଲେ ଗବର୍ଣ୍ଣରଜେନେରଲ ଆପଣଙ୍କୁ ଯେଉଁ ସନ୍ଧିପତ୍ର ସ୍ୱାକ୍ଷର କରିବାକୁ ଦେଇଅଛନ୍ତି ତାହା ଆପଣଙ୍କୁ ସ୍ୱାକ୍ଷର କରିବାକୁ ହେବ । ସେହି ସନ୍ଧିପତ୍ର ଲଙ୍ଘନ କରିବାକୁ କାହାରି କ୍ଷମତା ନାହିଁ । ତେଣୁ ଏହା ଅପରିହାର୍ଯ୍ୟ । ଏହା ବିରୁଦ୍ଧରେ ତର୍କ କରିବାର ବୃଥା । ନବାବ ଏହିକଥା ଶୁଣି ଅତ୍ୟନ୍ତ ବିମର୍ଷ ହେଲେ ଓ ସନ୍ଧିପତ୍ର ଖଣ୍ଡିକ ପାଠ କରି କହିଲେ " ସନ୍ଧି ସମକକ୍ଷ ଲୋକମାନଙ୍କ ମଧ୍ୟରେ ହୋଇଥାଏ ଅମ୍ଭେ କିଏ ଯେ ବ୍ରିଟିସ ଗବର୍ଣ୍ଣମେଣ୍ଟ ଅମ୍ଭକୁ ସନ୍ଧିପତ୍ରରେ ସ୍ୱାକ୍ଷର କରିବାକୁ ଅନୁରୋଧ କରୁଅଛନ୍ତି । ଶତବର୍ଷ ହେଲା ଅମ୍ଭ ପିତୃପୁରୁଷମାନେ ବ୍ରିଟିସଗବର୍ଣ୍ଣମେଣ୍ଟଙ୍କ ସାହାଯ୍ୟ ଅନୁଗ୍ରହ ଓ ଆଶ୍ରୟ ଲାଭ କରି ଆସୁଅଛନ୍ତି । ମଧ୍ୟ ବ୍ରିଟିସଗବର୍ଣ୍ଣମେଣ୍ଟ ଏହି ଅଯୋଧ୍ୟାର ସୃଷ୍ଟିକାରକ; ତେଣୁ ଏହା ଉପରେ ତାହାଙ୍କର ସର୍ବତୋମୁଖୀ କ୍ଷମତା ଅଛି; ଏ କ୍ଷେତ୍ରେ ଗବର୍ଣ୍ଣମେଣ୍ଟ ଇଚ୍ଛା କଲେ ଏହାର ଉନ୍ନତିସାଧନ ଅଥବା ଅଧଃପାତିତ କରି ପାରନ୍ତି ।" ଅଉଟ୍ରାମ ଡେଲହାଉସୀ ଧରଣର ଲୋକ ଥିଲେ ନାହିଁ । ଭାରତବର୍ଷୀୟ ରାଜାମାନଙ୍କ ଉପରେ ତାହାଙ୍କର ଯଥେଷ୍ଟ ସ୍ନେହ ଥିଲା । ନବାବଙ୍କ

ବିଳାପ ଶୁଣି ସେ ଅତ୍ୟନ୍ତ ଦୁଃଖିତ ହେଲେ; କିନ୍ତୁ ତାହାଙ୍କର କିଛି କରିବାର କ୍ଷମତା ଥିଲା ନାହିଁ । ଯେ ନବାବଙ୍କୁ ଏତିକମାନ କହିଲେ ପ୍ରତୀକାରହୀନ ବିଷୟରେ ବିଳାପ କରିବା ବୃଥା ।

ଯେତେବେଳେ ନବାବ ଅକର୍ମଣ୍ୟ ଥିଲେ, କିନ୍ତୁ ପ୍ରଜାମାନେ ଯେ ତାହାଙ୍କ ଶାସନରେ ବିରକ୍ତ ଥିଲେ ଏମନ୍ତ ବୋଧ ହୁଏ ନାହିଁ । କାରଣ ତାହା ହୋଇ-ଥିଲେ ପ୍ରଜାମାନେ ବିଦ୍ରୋହରେ ପ୍ରବୃତ୍ତ ହୋଇ ଥାଆନ୍ତେ; ମାତ୍ର ତାହା ହୋଇ ନ ଥିଲା । ପ୍ରଜାମାନେ ହନକିପାଇଁ ସୁଦ୍ଧା ବିଦ୍ରୋହର ଚିହ୍ନ ଦେଖାଇ ଥିଲେ ନାହିଁ । ବ୍ରିଟିସ ଗଭର୍ଣ୍ଣମେଣ୍ଟ ନବାବଙ୍କ ଠାରୁ ଉତ୍ତମରୂପେ ଶାସନ କରୁଅଛନ୍ତି ସନ୍ଦେହ ନାହିଁ ମାତ୍ର ପ୍ରଜାମାନେ ବନ୍ଦୋବସ୍ତ ପର୍ଯ୍ୟନ୍ତ ଏଥିରେ ସନ୍ତୁଷ୍ଟ ଥିଲେ ନାହିଁ । ନବାବଙ୍କୁ ପଦଚ୍ୟୁତ କରିବାର ପ୍ରାୟ ୧୫ ବରଷ ଉତ୍ତାରେ ଅମ୍ଭେମାନେ ଲକ୍ଷ୍ନୌ ଯାଇ ଥିଲୁଁ । ସେହି ସମୟରେ ତତ୍ରତ୍ୟ ପ୍ରଧାନ୍ ୨ ଅଧିବାସିମାନଙ୍କ ମାନସିକ ଭାବ ପରୀକ୍ଷା କରି ଦେଖି ଆସି ଅଛୁଁ ଯେ କାଳ ପର୍ଯ୍ୟନ୍ତ ଅଧିବାସିମାନେ ନବାବଙ୍କ ପାଇଁ ବିଳାପ କରୁଥିଲେ ।

ଅଯୋଧ୍ୟାର ଘଟଣା ଦେଖି ଭାରତବର୍ଷୀୟ ରାଜାମାନେ ଅତ୍ୟନ୍ତ ଚକିତ ହେଲେ । ବ୍ରିଟିସ ଗବର୍ଣ୍ଣମେଣ୍ଟଙ୍କ ପ୍ରତି ସେମାନଙ୍କର ଯେ କିଛି ରାଜଭକ୍ତି ଥିଲା ତାହା କ୍ରମଶଃ ହ୍ରାସ ପାଇବାକୁ ଲାଗିଲା । ପରେ ଦେଖାଯିବ ୧୮୫୭ ସାଲରେ ଯେ ଭୟାବହ ବିଦ୍ରୋହରେ ଭାରତବର୍ଷ ଆକୁଳିତ ହୋଇଥିଲା ଏହି ଘଟଣା ତାହାର ଅନ୍ୟତର ପ୍ରଧାନ ମୂଳୀଭୂତ କାରଣ ଅଟେ ।

ଅମ୍ଭେମାନେ କେତେ ପୃଷ୍ଠାରେ ଲର୍ଡ ଡେଲହୌସୀଙ୍କ ଦୁର୍ଗୁଣ ବିଷୟ ବର୍ଣ୍ଣନ କରି ଆସିଲୁଁ । କିନ୍ତୁ ଏକଥା ବିସ୍ମୃତ ହେବା ଉଚିତ ନୁହେ ଯେ ପ୍ରତ୍ୟେ-କର ସତ୍ ଓ ଅସତ୍ ଦୁଇ ଗୁଣ ଥାଏ । ତନ୍ମଧ୍ୟରେ ଯାହାର ଯେ ଗୁଣ ଅଧିକ ତାହାକୁ ସେହି ଗୁଣାବଲମ୍ବୀ ବୋଲି ଲୋକେ ବର୍ଣ୍ଣନ କରି ଥାଆନ୍ତି । ଲର୍ଡ ଡେଲହୌସୀ ଅନେକ ଗୁଡ଼ିଏ ରାଜାଙ୍କର ସର୍ବନାଶ କରି ଯାଇ ଅଛନ୍ତି ସତ୍ୟ ମାତ୍ର କେତେଗୁଡ଼ିଏ ସାଧାରଣ ହିତକର କାର୍ଯ୍ୟ କରି କୋଟି ୨ ଲୋକର ଉପକାର ସାଧନର ଉପାୟ କରି ଦେଇ ଯାଇ ଅଛନ୍ତି । ଅମ୍ଭେମାନେ ମଧ୍ୟ ତାହାଙ୍କ କୃତ ହିତକାର୍ଯ୍ୟର ଫଳ ଭୋଗ କରୁଅଛୁଁ ବୋଲି ତାହାଙ୍କୁ ଧନ୍ୟବାଦ ପ୍ରଦାନ କରୁଅଛୁଁ । ଲର୍ଡ ଡେଲହୌସୀ ବିଲାତରେ ବାଣିଜ୍ୟ ସଭାର ପ୍ରତିନିଧି ଥିଲେ ଏଥିକୁ ବାଣିଜ୍ୟ ଉନ୍ନତିର ଉପାୟ ତାହାଙ୍କୁ ଉତ୍ତମରୂପେ ଜଣା ଥିଲା । ସେ ୧୮୫୮ ସାଲରେ ବାଷ୍ପୀୟ ଶକଟ ଓ ଲୌହବର୍ତ୍ମ ନିର୍ମାଣ କଲେ ନ୍ତ । ତାହାସଙ୍ଗେ ତାରଡାକ ମଧ୍ୟ ନିର୍ମିତ ହେବାକୁ ଲାଗିଲା । ତାହାଙ୍କ ଉପସ୍ଥିତ

କାଳରେ ବାଷ୍ପୀୟ ଶକଟ ହାବଡ଼ାଠାରୁ ରାଣୀଗଞ୍ଜ ପର୍ଯ୍ୟନ୍ତ ଚାଲୁଥିଲା । ପଦାର୍ଥ-ବିଦ୍ୟା ପ୍ରଭାବରୁ ଯେସବୁ ଯନ୍ତ୍ର ଉଦ୍ଭାବିତ ହୋଇଅଛି ତନ୍ମଧ୍ୟରେ ବାଷ୍ପୀୟଶ-କଟ ଓ ବିଦ୍ୟୁତୀୟ ତାର ପ୍ରଧାନ ଅଟେ । ଏହି ଦୁଇ ଯନ୍ତ୍ରଦ୍ୱାରା ସାଧାରଣର ଯେ କିପର୍ଯ୍ୟନ୍ତ ଉପକାର ସାଧିତ ହେଉଅଛି ତାହା ବର୍ଣ୍ଣନା କରାଯାଏ ନାହିଁ ।

ଯବନ ରାଜାମାନେ ଜଳସିଞ୍ଚନ କାର୍ଯ୍ୟରେ ଅତିଶୟ ଅନୁରକ୍ତ ଥିଲେ । "ଜଳ ପୃଥିବୀର ଧନସ୍ୱରୂପ" ଏହି ଆରବ୍ୟ ପ୍ରବାଦଟି ସେମାନଙ୍କ ମନରେ ଅନୁ-କ୍ଷଣ ଜାଗରୂକ ଥିଲା । ଇଂରେଜମାନେ ଭାରତବର୍ଷରେ ଆଧିପତ୍ୟ ବିସ୍ତାର କରିବାର ଅନେକ ଦିନପର୍ଯ୍ୟନ୍ତ ସେ ବିଷୟରେ ଅମନୋଯୋଗୀ ଥିଲେ । ଅନ-ନ୍ତର ଡେଲହାଉସୀ ହରଦ୍ୱାର ସମୀପରେ ୨୫୦ କ୍ରୋଶ ଦୀର୍ଘ ୧୧୨ ହସ୍ତ ପ୍ରସ୍ଥ ବର୍ତ୍ତମାନ ଗଙ୍ଗାଖାଲ ଖନନ କରାଇ ଉକ୍ତ ଦୋଷର ପରିହାର କରି ଯାଇଅଛନ୍ତି ଏହି ଖାଲ ଖୋଳିବାରେ ପ୍ରାୟ ୧ କୋଟି ୫୦ ଲକ୍ଷ ଟଙ୍କା ବ୍ୟୟ ହୋଇଥିଲା । ଗଙ୍ଗା ଖାଲଦ୍ୱାରା ଉତ୍ତରପଶ୍ଚିମାଞ୍ଚଳର ଅନେକ ସ୍ଥାନ ଜଳସିକ୍ତ ଓ ଶସ୍ୟପୂର୍ଣ୍ଣ ହେଉଅଛି ।

ଲର୍ଡ ଡେଲହାଉସୀ ପୋଷ୍ଟ ଅଫିସର ଅନେକ ସୁରୀତି ସ୍ଥାପନ କରିଯାଇ ଅଛନ୍ତି ତାହାଙ୍କ ଅଧିକାର ପୂର୍ବେ ମାଇଲ ହିସାବରେ ଚିଠିର ମାସୁଲ ଆଦାୟ ହେଉଥିଲା ତେଣୁ ଅଧିକଦୂରକୁ ଚିଠି ପଠାଇଲେ ସେଥିରେ ଅନେକ ମାସୁଲ ଲାଗୁଥିଲା । ଏଥିରୁ ସାଧାରଣ ଲୋକେ ପତ୍ର ପଠାଇ ପାରୁ ନ ଥିଲେ । ଡେଲ-ହୌସୀ ଏହାର ଦୋଷ ଅନୁସନ୍ଧାନ କରି ୧୮୫୪ ସାଲରେ ୧୭ ଆଇନ ପ୍ରଚାର କଲେ । ସେହିଦିନଠାରୁ ଦୂରତ୍ୱ ନିୟମାନୁସାରେ ଚିଠିର ମାସୁଲପ୍ରଥା ଉଠିଗଲା । ଭାରତବର୍ଷର ସର୍ବତ୍ର ସମାନ ମାସୁଲରେ ଚିଠିପତ୍ର ଯିବାକୁ ଲାଗିଲା ।

ଲର୍ଡ ଡେଲହାଉସୀ ୮ ବରଷକାଳ ଗୁରୁତର ପରିଶ୍ରମ କରି ଏମନ୍ତ ଅସୁସ୍ଥ ହୋଇଥିଲେ ଯେ ଶୀଘ୍ର ସ୍ୱଦେଶକୁ ଫେରି ଯିବା ନିତାନ୍ତ ଆବଶ୍ୟକ, ତେଣୁ ସେ ଅଯୋଧ୍ୟା ଗ୍ରହଣକରିବା ମାସକଉତ୍ତାରେ ଇଂଲଣ୍ଡକୁ ଯାତ୍ରା କଲେ ।

—୦○*○୦—

## ଷୋଡ଼ଶ ଅଧ୍ୟାୟ ।

### ଲର୍ଡକ୍ୟାନିଂ ।

ଲର୍ଡ ଡେଲହାଉସୀ ପଦତ୍ୟାଗ କରିବାରୁ ଡିରେକ୍ଟରମାନେ ଲର୍ଡକେନିଂ ନାମକ ଜଣେ ଯୋଗ୍ୟପୁରୁଷଙ୍କୁ ଗବର୍ଣ୍ଣର ପଦରେ ମନୋନୀତ କଲେ । ବହୁ-କାଳରୁ ଡିରେକ୍ଟରମାନଙ୍କର ଏମନ୍ତ ରୀତି ଥିଲା ଯେ କୌଣସି ଲୋକଙ୍କୁ ଗବର୍ଣ୍ଣର ପଦରେ ନିଯୁକ୍ତ କରି ପଠାଇବା ସମୟରେ ତାହାଙ୍କୁ ଭୋଜ ପ୍ରଦାନ କରନ୍ତି ।

ତଦନୁସାରେ କେନିଂ ନିମନ୍ତ୍ରିତ ହୋଇଥିଲେ । ସେ ବିଦାୟଗ୍ରହଣ ସମୟରେ ଯେଉଁ ବକ୍ତୃତା କରିଥିଲେ ତାହାସହିତ ତାହାଙ୍କ ଅଧିକାର ସମୟର ଘଟନାବଳୀ ସଙ୍ଗରେ ତୁଳନା କରି ବିଚାର କଲେ ସେହି ବକ୍ତୃତାକୁ ଭବିଷ୍ୟଦ୍‌ବାଣୀ ବୋଲି-ଯାଇ ପାରେ । ଆମ୍ଭେମାନେ ଏସ୍ଥଳରେ ସେହି ବକ୍ତୃତାର ସାରାଂଶ ପ୍ରକାଶ କରୁଅଛୁଁ ।

"କାର୍ଯ୍ୟଗତିରେ କି କି ଘଟିପାରେ ଆମ୍ଭେ ତାହା ଜାଣୁ ନାହୁଁ । ତେବେ ପରମେଶ୍ୱରଙ୍କ ସମୀପରେ ଆମ୍ଭମାନଙ୍କର ପ୍ରାର୍ଥନା ଯେମନ୍ତ କାହାରିସହିତ ଆମ୍ଭ-ମାନଙ୍କୁ ଯୁଦ୍ଧ କରିବାକୁ ନ ହୁଏ । କୁଶଳରେ ରାଜ୍ୟଶାସନ କରିବା ଆମ୍ଭମାନଙ୍କର ବାଞ୍ଛନୀୟ ; ମାତ୍ର ଏହାମଧ୍ୟ ଆମ୍ଭମାନଙ୍କର ବିସ୍ମୃତ ହେବା ଉଚିତ ନୁହେ ଯେ, ଆମ୍ଭେମାନେ ଭାରତବର୍ଷରେ ଯେଉଁ ଅଧିରାଜ୍ୟ ବିସ୍ତାର କରିଅଛୁଁ ତାହାର ଶାସନକାର୍ଯ୍ୟ ନିରୁପଦ୍ରବରେ ନିର୍ବାହିତ ହେବା ପକ୍ଷରେ ଅନେକ ବ୍ୟାଘାତ ଘଟିବାକୁ ପାରେ । ବୋଧହୁଏ ପୃଥିବୀର ଅନ୍ୟ କୌଣସି ଭାଗରେ ତାଦୃଶ ବ୍ୟାଘାତ ଘଟିବାର ସମ୍ଭାବନା ଅତି ବିରଳ । ଆମ୍ଭମାନଙ୍କ ମନରେ ଏହା ନିର-ନ୍ତର ଜାଗରୂକ ଅଛି ଯେ, ଆକାଶ ନିର୍ମଳ ଥାଉ ଅଥବା ଏକ କୋଣରେ ଗୃଖଣ୍ଡେ ମାତ୍ର ମେଘ ଥାଉ ଆଉ କୌଣସି ଦୁର୍ଲକ୍ଷଣ ଦୃଷ୍ଟି ଗୋଚର ନ ହେଉ-ଥାଉ ; ମାତ୍ର ସେହି ମେଘଖଣ୍ଡ ଏତେଦୂର ବୃଦ୍ଧି ହୋଇପାରେ ଯେ, ପ୍ରବଳ ସଇଲ୍ଲବୀ ଉପସ୍ଥିତ ହୋଇ ଆମ୍ଭମାନଙ୍କର ସର୍ବନାଶ କରିପାରେ । ଯାହା ଥରେ ଘଟିଅଛି ତାହା ପୁନର୍ବାର ଘଟିବାକୁ ପାରେ । ଉଦ୍‌ବେଗର କାରଣ ସକଳ ବର୍ତ୍ତ-ମାନ ମନ୍ଦୀଭୂତ ହୋଇଅଛି ସତ୍ୟ , କିନ୍ତୁ ସେସକଳ ଏକାବେଳକେ ଦୂରୀଭୂତ ହୋଇ ନାହିଁ । ମାତ୍ର ଏସକଳ ଆଶଙ୍କା ବୃଥାହେବା ମଧ୍ୟ ଅସମ୍ଭବ ନୁହଇ । ଯାହା ହେଉ ବର୍ତ୍ତମାନ ସେ ସମସ୍ତକୁ ବିସର୍ଜନ ଦେବା ଉଚିତ ବିବେଚନା କରି ଆନନ୍ଦ ଚିତ୍ତରେ ପ୍ରତ୍ୟାଶା କରୁଁ ଭାରତବର୍ଷକୁ ଯାଇ ଆପଣମାନଙ୍କ ସାହାଯ୍ୟ-ଦ୍ୱାରା ଅନେକ ଲୋକହିତକର କାର୍ଯ୍ୟସାଧନ କରିପାରିବୁଁ ।"

ଲର୍ଡ କେନିଂ ୧୮୫୬ ସାଲ ଫେବ୍ରୁୟାରି ମାସ ତା ୨୯ ରିଖରେ କଲି-କତାରେ ଉପସ୍ଥିତ ହୋଇ ସେହିଦିନ କାର୍ଯ୍ୟ ଭାରଗ୍ରହଣ କଲେ । କାର୍ଯ୍ୟ-ଭାରଗ୍ରହଣ କରିବା ଅଳ୍ପକାଳଉତ୍ତାରେ ଅଯୋଧ୍ୟା ବିଷୟରେ ହସ୍ତକ୍ଷେପ କରିବାକୁ ହେଲା । ତନ୍ମଧ୍ୟ ସୁବିଚକ୍ଷଣ କମିଶନର ଆଉଟ୍ରାମ ପୀଡ଼ିତ ହୋଇ ବିଦାୟ ପ୍ରାର୍ଥନା କରିବାରୁ ତାହାଙ୍କ ପଦରେ ଅନ୍ୟଲୋକ ନିଯୁକ୍ତ କରିପଠାଇବା ଆବ-ଶ୍ୟକ ହେଲା । ଲର୍ଡ କେନିଂ ଉତ୍ତରପଶ୍ଚିମ ଦେଶୀୟ ବ୍ୟବହାରିକ କର୍ମଚାରୀ ଜ୍ୟାକସନ ନାମରେ ଜଣେ ଲୋକକୁ କମିଶନର ପଦରେ ନିଯୁକ୍ତକରି ପଠାଇଲେ ।

ଜ୍ୟାକ୍‌ସନଙ୍କ ଅଧୀନରେ ଗୋବନ ଏବଂ ଓମାନ ନାମରେ ଦୁଇଜଣ ଲୋକ ଥିଲେ । ତନ୍‌ମଧ୍ୟରେ ଗୋବଙ୍କ ଅତ୍ୟନ୍ତ ଉଦ୍ଧତପ୍ରକୃତ ଲୋକ ଥିଲେ । ସେ ନୂଆ କମିଶନରଙ୍କ ସହିତ ଏମନ୍ତ ବ୍ୟବହାର କରିବାକୁ ଲାଗିଲେ ଯେ, କେହି ଲୋକ ଉଚ୍ଚପଦାରୂଢ଼ ଲୋକସହିତ ଏମନ୍ତ ବ୍ୟବହାର କରିବ ନାହିଁ । ତେଣୁ ଉଭୟଙ୍କ ମଧ୍ୟରେ ଅତିଶୀଘ୍ର ଘୋର ବିବାଦ ଘଟିଲା । ଏହି ବିବାଦ କ୍ରମଶଃ ବଢ଼ି ଉଠି ଲର୍ଡକେନିଂଙ୍କ କର୍ଣ୍ଣଗୋଚର ହେଲା । ସେ ଏହି ବିବାଦ ଶାନ୍ତ ପାଇଁ ଅନେକ ଚେଷ୍ଟାକଲେ; ମାତ୍ର କାହିଁରେ କିଛି କରିପାରିଲେ ନାହିଁ । ଏହି ସମୟରେ ଅଯୋଧ୍ୟାର ନବାବ ଓୟାଜିଦଅଲି ଲକ୍ଷ୍ନୌସ୍ଥିତ ଇଂରେଜକର୍ମଚାରୀମାନଙ୍କର ନାନାପ୍ରକାର ଅତ୍ୟାଚାର ବର୍ଣ୍ଣନ କରି ଗବର୍ଣ୍ଣରଜେନେରଲଙ୍କ ନିକଟକୁ ଏକ ଆବେଦନ ପତ୍ର ପଠାଇଲେ । ଏହି ପତ୍ରରେ ଏହିପରି ବର୍ଣ୍ଣିତ ଥିଲା, "ଇଂରେଜମାନେ ରାଜଭବନକୁ ଅଶ୍ୱଶାଳା କରିଅଛନ୍ତି, ଅନ୍ତଃପୁରିକାମାନଙ୍କୁ ବହିଷ୍କୃତ କରିଦେଇ ଅଛନ୍ତି, ଦ୍ୱାର ଭାଙ୍ଗି ଧନାଗାର ଲୁଣ୍ଠନ କରିଅଛନ୍ତି, ଆମ୍ଭ ପରିବାରର ସମ୍ପତ୍ତି ବିକ୍ରୟ ନିମନ୍ତେ ନିଲାମକୁ ପଠାଇ ଅଛନ୍ତି, ଆମ୍ଭ ଅନୁଗତ ଲୋକମାନଙ୍କୁ କଏଦ କରିଅଛନ୍ତି ଇତ୍ୟାଦି" । କେନିଂସାହେବ ଯେବେହେଁ ଏହି ସକଳକଥା ବିଶ୍ୱାସ କଲେ ନାହିଁ, ମାତ୍ର ଏହି ସକଳକଥା ଅନୁସନ୍ଧାନକରି ରିପୋର୍ଟ କରିବା କାରଣ ଜ୍ୟାକସନ ସାହେବଙ୍କୁ ଲେଖିଲେ । ମାତ୍ର ଜ୍ୟାକସନ ନିମ୍ନସ୍ଥ କର୍ମଚାରୀମାନଙ୍କ ସହିତ ଏମନ୍ତ ବିବାଦରେ ବ୍ୟସ୍ତଥିଲେ ଯେ, ଗବର୍ଣ୍ଣର ଜେନେରଲଙ୍କର ଆଦେଶ ପତ୍ରର କୌଣସି ସଦୁତ୍ତର ଦେଇପାରିଲେ ନାହିଁ । ୧୮୫୬ ସାଲ ଅକ୍‌ଟୋବର ମାସ ୧୬ ତାରିଖରେ ଗବର୍ଣ୍ଣରଜେନେରଲ ପୁନର୍ବାର ଲେଖିଲେ ଏହା ଅତ୍ୟନ୍ତ ଆଶ୍ଚର୍ଯ୍ୟର ବିଷୟ ଯେ ନବାବ ଇଂରେଜ କର୍ମଚାରୀମାନଙ୍କ ବିରୁଦ୍ଧରେ ଯେଉଁ ପତ୍ର ଲେଖିଥିଲେ ତାହାର ସତ୍ୟାସତ୍ୟ ବିଷୟ ଅନୁସନ୍ଧାନ ପାଇଁ ତୁମ୍ଭଙ୍କୁ ଲେଖିଥିଲୁଁ, ମାତ୍ର ଏପର୍ଯ୍ୟନ୍ତ ତାହାର କୌଣସି ସଦୁତ୍ତର ପ୍ରାପ୍ତ ହେଲୁଁ ନାହିଁ । କମିଶନର ଯେ କାରଣରୁ ପ୍ରଥମ ପତ୍ରର ଉତ୍ତର ଦେଇ ପାରି ନ ଥିଲେ ସେହି କାରଣରୁ ଏହି ପତ୍ରର ମଧ୍ୟ ଉତ୍ତର ଦେଇ ପାରିଲେ ନାହିଁ । ଏଥିକୁ ଲର୍ଡକେନିଂ ମହା ବିରକ୍ତ ହୋଇ ବିବେଚନା କଲେ ଆମ୍ଭେ ଜ୍ୟାକସନଙ୍କୁ ଅଯୋଧ୍ୟାରେ କମିଶନର ନିଯୁକ୍ତ କରି ଭଲକରି ନାହୁଁ । ଏଥିକୁ ଜ୍ୟାକସନଙ୍କୁ ଛଡ଼ିଦେଇ ଅନ୍ୟଲୋକଙ୍କୁ ତତ୍‌ପଦରେ ନିଯୁକ୍ତ କରିବା କାରଣ ପରାମର୍ଶ କରୁଅଛନ୍ତି ଏମନ୍ତ ସମୟରେ ଶୁଣିଲେ ଯେ ଆଉଟ୍ରାମ ସାସ୍ଥ୍ୟଲାଭ କରିଅଛନ୍ତି, ସେ ଶୀଘ୍ର ଭାରତବର୍ଷକୁ ଫେରିଆସି ଆପଣାର ପଦ ଗ୍ରହଣ କରିବେ । ଏହି ସମ୍ବାଦ ପାଇଁ କେନିଂସାହେବ ଅତ୍ୟନ୍ତ ଆନନ୍ଦିତ ହେଲେ ।

ଲର୍ଡ଼କେନିଂ ଏଦେଶକୁ ଆସିବା ଉତ୍ତାରେ ପାରସ୍ୟରାଜାଙ୍କ ସହିତ ଇଂରେଜମାନଙ୍କର ଯୁଦ୍ଧ ଘଟିବାର ସମ୍ଭାବନା ହେବାରୁ ତେଣୁ ଭାରତବର୍ଷୀୟ ଗବର୍ଣ୍ଣମେଣ୍ଟଙ୍କୁ ଯୁଦ୍ଧର ଆୟୋଜନ କରିବାକୁ ହେଲା । ଇଂଲଣ୍ଡୀୟ କର୍ତ୍ତୃପକ୍ଷୀୟମାନେ ଅଉଟ୍ରମଙ୍କୁ ସେହି ଯୁଦ୍ଧରେ ସେନାପତି କରିବାକୁ ମନସ୍ଥ କଲେ । ଅଉଟ୍ରମ ଇଂଲଣ୍ଡରୁ ଗବର୍ଣ୍ଣରଜେନେରଲଙ୍କୁ ପତ୍ର ଲେଖିଲେ "ଆମ୍ଭେ ସ୍ୱାସ୍ଥ୍ୟଲାଭ କରିଅଛୁଁ, ଡିସେମ୍ବରମାସ ୨୦ ତାରିଖରେ ଭାରତବର୍ଷକୁ ଯାତ୍ରାକରିବୁଁ । ପାରସ୍ୟଯୁଦ୍ଧର ସେନାପତିପଦ ଗ୍ରହଣ କରିବାକୁ ଆମ୍ଭର ନିତାନ୍ତ ଇଚ୍ଛା ଅଛି; ମଧ୍ୟ ବୋର୍ଡ଼ଅବ୍ କଣ୍ଟ୍ରୋଲର ଅଧ୍ୟକ୍ଷଙ୍କଠାରେ ଅଭିପ୍ରାୟ ପ୍ରକାଶ କରିଅଛୁଁ । ଆପଣ ଆମ୍ଭଙ୍କୁ ସେନାପତି ପଦରେ ନିଯୁକ୍ତ କରି ପଠାଇଲେ ଇଂଲଣ୍ଡୀୟ ଗବର୍ଣ୍ଣମେଣ୍ଟ କୌଣସି ଆପତ୍ତି କରିବେ ନାହିଁ । ବୋଧକରୁଁ ଅଯୋଧ୍ୟାରେ ବର୍ତ୍ତମାନ କୌଣସି ଗୋଳମାଳ ନାହିଁ । ଆମ୍ଭେ ସେସ୍ଥାନକୁ ନ ଗଲେ କୌଣସି କ୍ଷତି ହେବ ନାହିଁ । ଆପଣ ଏହି ପତ୍ରର ଉତ୍ତର ଏଡ଼େନ ନଗରକୁ ପଠାଇବେ । ଆମ୍ଭେ ସେ ସ୍ଥାନରୁ ବୋମ୍ବେ ଯିବୁଁ" । ଗବର୍ଣ୍ଣରଜେନେରଲ ଡିସେମ୍ବର ମାସ ୨ ତାରିଖରେ ଉକ୍ତ ପତ୍ର ପ୍ରାପ୍ତହୋଇ ଅଉଟ୍ରମଙ୍କୁ ଲେଖିଲେ "ଆପଣଙ୍କ ସ୍ୱାସ୍ଥ୍ୟଲାଭ ସମ୍ବାଦ ଶ୍ରବଣକରି ଅତ୍ୟନ୍ତ ଆନନ୍ଦିତ ହେଲୁଁ; ପାରସ୍ୟ ଯୁଦ୍ଧରେ ଆପଣଙ୍କୁ ସେନାପତି କରି ପଠାଇବାକୁ ଆମ୍ଭର କୌଣସି ପ୍ରକାରେ ଇଚ୍ଛା ନାହିଁ ; କାରଣ ପାରସ୍ୟରାଜ ସହିତ ଯୁଦ୍ଧ ଘଟିବାର ତାଦୃଶ ସମ୍ଭାବନା ନାହିଁ; ତେଣୁ କୌଣସି ବିଚକ୍ଷଣ ନୀତିଜ୍ଞ ସେନାପତି ସେସ୍ଥାନକୁ ଯିବାରୁ ଆବଶ୍ୟକାଭାବ । ଅଯୋଧ୍ୟା ସମ୍ପୂର୍ଣ୍ଣ ରୂପରେ ଉପଶାନ୍ତ ଅଛି, ତେଥିପାଇଁ ଆପଣଙ୍କୁ ତହିଁପଦ ଗ୍ରହଣ କରିବାକୁ ଦେଖିଲେ ଅତ୍ୟନ୍ତ ଆନନ୍ଦିତ ହେବୁଁ" । ପ୍ରକୃତକଥା ତେତେବେଳେ ଅଯୋଧ୍ୟା ଶାସନକାର୍ଯ୍ୟର ଅତ୍ୟନ୍ତ ବିଶୃଙ୍ଖଳା ଘଟିଥିଲା ମଧ୍ୟ ସେସ୍ଥାନର କମିଶନର ଜ୍ୟାକସନ ସାହେବଙ୍କୁ ସ୍ଥାନାନ୍ତରିତ ନ କଲେ ଶାସନ କାର୍ଯ୍ୟର ଶୃଙ୍ଖଳାବଦ୍ଧ ହେବାର ସମ୍ଭାବନା ନ ଥିଲା । ଏଥିକୁ ଇଂଲଣ୍ଡେଶ୍ୱରୀ ଅଉଟ୍ରମଙ୍କୁ ପାରସ୍ୟ ଯୁଦ୍ଧରେ ସେନାପତି କରି ପଠାଇବାରୁ ଗବର୍ଣ୍ଣରଜେନେରଲଙ୍କ ଆଶା ବିଫଳ ହୋଇଗଲା ।

ପାରସ୍ୟଯୁଦ୍ଧର ଆୟୋଜନ ଦିନଠାରୁ କାବୁଲର ଅମୀର ଦୋସ୍ତମହମ୍ମଦଖାଁ ଇଂରେଜମାନଙ୍କ ସହିତ ସନ୍ଧି କରିବାର ଅଭିପ୍ରାୟ ପ୍ରକାଶ କରୁଥିଲେ । ତଦନୁସାରେ ପେଶୋୟାର କମିଶନର ଏଡ଼ୋୟାର୍ଡ଼ସାହେବଙ୍କ ପରାମର୍ଶାନୁସାରେ ଦୋସ୍ତ ମହମ୍ମଦଖାଁ ଅଗ୍ରସର ହେଲେ । ଏଣେ ପଞ୍ଜାବର କମିଶନର ସରଜନ ଲରେନସ ଓ ଏଡ଼ୋୟାର୍ଡ଼ ଉଭୟେ ଏକତ୍ର ହୋଇ ସସୈନ୍ୟେ ବୃଦ୍ଧ ଅମୀର ସହିତ ସନ୍ଧିକରିବାକୁ ବାହାରିଲେ ।

ଦୋସ୍ତମହମ୍ମଦଖାଁ ଆହ୍ୱାନପତ୍ର ପ୍ରାପ୍ତ ହୋଇ ଦୁଇପୁତ୍ର ଓ ମନ୍ତ୍ରୀମାନଙ୍କ ସହିତ ରାଜ୍ୟର ପ୍ରାନ୍ତଭାଗ ପର୍ଯ୍ୟନ୍ତ ଆସିଲେ । ୧୮୫୭ ସାଲ ଜାନୁୟାରି ମାସ ତା ୧ ରଖରେ ଖାଇବାର ଉପତ୍ୟକାଠାରେ ଉଭୟ ପକ୍ଷର ସାକ୍ଷାତ ହେଲା । ୧ମ ଓ ୨ୟ ଥର ସାକ୍ଷାତରେ କାର୍ଯ୍ୟର କୌଣସି କଥା ହେଲା ନାହିଁ, କେବଳ ଶିଷ୍ଟାଚାର ମାତ୍ର ହେଲା । ତା ୫ ରଖରେ ସାକ୍ଷାତ ହୁଅନ୍ତେ ଅମୀର କହିଲେ, ଯଦି ବ୍ରିଟିସ ଗବର୍ଣ୍ଣମେଣ୍ଟ ସାହାଯ୍ୟ କରିବେ ତେବେ ହିରାଟନଗର ଉଡ଼ାଇ ଦେବୁଁ । କମିଶନରମାନେ ପଚାରିଲେ ଆପଣଙ୍କର ବାର୍ଷିକ ଆୟ କେତେ ଓ କେତେ ସୈନ୍ୟ ଓ କମାଣ ଅଛି । ଆଉ ବ୍ରିଟିସ ଗବର୍ଣ୍ଣମେଣ୍ଟଙ୍କୁ ଅବା କି ସାହାଯ୍ୟ କରିବାକୁ ହେବ । ଅମୀର କହିଲେ, ଆଜରେ ଏ କଥା ଥାଉ କାଲି ବିଚାର କରି କହିବୁଁ ପରଦିନ ଅମୀରଙ୍କ ଦୁଇପୁତ୍ର ମନ୍ତ୍ରୀମାନଙ୍କ ସହିତ ଉପସ୍ଥିତ ହୋଇ ସର ଜନ୍ ଲରେନ୍ସଙ୍କୁ ଅଫଗାନସ୍ଥାନର ସମସ୍ତ ହିସାବ ଦେଇ କହିଲେ, ଆମ୍ଭମାନଙ୍କର ବର୍ତ୍ତମାନ ଗୋ ୭୦ ଟା କମାଣ ଓ ୩୫ ହଜାର ସୈନ୍ୟ ଅଛି; କିନ୍ତୁ ଅଳ୍ପଦିନ ମଧ୍ୟରେ ଆଉ ୧୫ ହଜାର ସୈନ୍ୟ ଗୋ ୪୦ ଟା କମାଣ ସଂଗୃହୀତ ହେବ । ଆମ୍ଭେମାନେ ୪୦ ହଜାର ସେନା ଓ ସମସ୍ତ କମାଣ ଘେନି ପାରସ୍ୟ ରାଜାଙ୍କ ସହିତ ଯୁଦ୍ଧ କରିବାକୁ ଯିବୁଁ । ଆଉ ଯେତେଦିନ ଯୁଦ୍ଧ ଚାଲିବ ବ୍ରିଟିସ ଗବର୍ଣ୍ଣମେଣ୍ଟଙ୍କୁ ସାଲୟାନା ୬୪ ଲକ୍ଷ ଟଙ୍କା ଓ ୫୦ ଟା କମାଣ ଏବଂ ତଦୁପଯୁକ୍ତ ଅନ୍ୟାନ୍ୟ ଉପକରଣ ଦେବାକୁ ହେବ । ଇଂରେଜମାନଙ୍କର ଯେତେହିର ସାହାଯ୍ୟ କରିବାର ଇଚ୍ଛା ଥିଲା ଅମୀରମାନେ ତାହାଠାରୁ ଅଧିକ ମାଗିବାରୁ ସର ଜନ ଲରେନସ୍ କହିଲେ, ହିରାଟରୁ ପାରସ୍ୟ ସେନା ଦୂର କରି ଦେବା ଆଉ ଆମ୍ଭେମାନେ କି ସାହାଯ୍ୟ କଲେ ଆପଣମାନେ କାବୁଲ ରକ୍ଷା କରି ପାରିବେ କହନ୍ତୁ । ଅମୀରମାନଙ୍କର ଯୁଦ୍ଧ କରିବାର ନିତାନ୍ତ ଇଚ୍ଛା ଥିଲା, ତେଣୁ ଇଚ୍ଛାନୁସାରେ କମିଶନର ସାହେବଙ୍କ କଥା ନ ହେବାରୁ ମନେ ମନେ ଅତ୍ୟନ୍ତ ବିରକ୍ତ ହେଲେ । ଯାହା ହେଉ ଅଗତ୍ୟା କହିଲେ ଆଜରେ ଏ କଥା ଥାଉ କାଲି ବାବାଙ୍କ ସଙ୍ଗରେ ପରାମର୍ଶ କରି ଉତ୍ତର ଦେବୁଁ । ପରଦିନ ଅମୀରମାନେ ପୁନର୍ବାର ଆସି କହିଲେ ୪ ହଜାର ବନ୍ଧୁକ ଓ ୮ ହଜାର ସିପାହିଙ୍କର ବାର୍ଷିକ ବେତନ ୧୨ ଲକ୍ଷ ଟଙ୍କା ସାହାଯ୍ୟ କଲେ ଆମ୍ଭେମାନେ କାବୁଲ ରକ୍ଷା କରି ପାରିବୁଁ । ବ୍ରିଟିସ କର୍ମଚାରୀମାନେ ଗବର୍ଣ୍ଣରଜେନେରଲଙ୍କ ଆଦେଶ ଅନୁସାରେ ସେଥିରେ ସମ୍ମତ ହେଲେ । ତା ୨୬ ରଖ ଜାନୁୟାରିରେ ସନ୍ଧିପତ୍ର ସ୍ୱାକ୍ଷରିତ ଓ ପ୍ରଚାରିତ ହେଲା । ଏହିରୂପେ ସନ୍ଧି ଶେଷ ହୁଅନ୍ତେ ଦୋସ୍ତମହମ୍ମଦଖାଁ ସ୍ୱୀୟ ରାଜଧାନୀ ଦିଗକୁ ଓ ବ୍ରିଟିସ କର୍ମଚାରୀମାନେ ସ୍ୱ ସ୍ୱ କର୍ମସ୍ଥାନାଭିମୁଖେ ଯାତ୍ରା କଲେ ।

ଜ୍ୟାକସନ କମିଶନଙ୍କ ପଦରେ ନିଯୁକ୍ତ ଥିବାରୁ ଅଯୋଧ୍ୟାରେ ଯେ ସକଳ କାର୍ଯ୍ୟ ବିଶୃଙ୍ଖଳା ଘଟିଥିଲା ତାହା ପୂର୍ବେ ଉଲ୍ଲେଖ କରାଯାଇ ଅଛି । ଗବର୍ଣ୍ଣର୍-ଜେନେରଲ ବାହାଦୁର ଅଉଟରାମ, ଅଯୋଧ୍ୟାକୁ ଫେର ଆସିଲେ ନିଶ୍ଚିନ୍ତ ହେବେ ବୋଲି ମନ ମଧ୍ୟରେ ଆଶା କରିଥିଲେ; କିନ୍ତୁ ବର୍ତ୍ତମାନ ପାରସ୍ୟ ଯୁଦ୍ଧରେ ସେନାପତି ପଦରେ ନିଯୁକ୍ତ ହେବାରୁ ତାହାଙ୍କ ଆଶା ନୈରାଶ୍ୟରେ ପରିଣତ ହେଲା । ଏତିକିବେଳେ ସେ ଅଯୋଧ୍ୟା କମିଶନଙ୍କ ପଦରେ ନିଯୁକ୍ତ କରିବାପାଇଁ ରାଜପୁତାନାର କମିଶନର ହେନେରଲରେନ୍‌ସସାହେବଙ୍କୁ ଲେଖିଲେ । ହେନେରି ଲରେନ୍‌ସଙ୍କର ଅଯୋଧ୍ୟା କମିଶନଙ୍କ ପଦରେ ନିଯୁକ୍ତ ହେବାର ଇଚ୍ଛା ବହୁଦିନରୁ ଥିଲା, ବର୍ତ୍ତମାନ ସେ ଗବର୍ଣ୍ଣରଜେନେରଲଙ୍କ ଆହ୍ୱାନ ପତ୍ର ପ୍ରାପ୍ତ ହୋଇ ଅବିଳମ୍ବେ ଅଯୋଧ୍ୟାଭିମୁଖେ ଆସିବାକୁ ଲାଗିଲେ । ଆଗମନ ସମୟରେ ସେ କେତେଦିନ ଆଗ୍ରାରେ ଥିଲେ । ସେତେବେଳେ ଆଗ୍ରାର ଲେଫ୍‌ଟେନେଣ୍ଟ ଗବର୍ଣ୍ଣର ମଧ୍ୟ ସେ ସ୍ଥାନରେ ବାସ କରୁଥିଲେ । ହେନେରି ଲରେନ୍‌ସ ଦିନକରେ ପରିହାସ କରି କୌଣସି ବନ୍ଧୁଙ୍କୁ ବୋଇଲେ " ଯେତେବେଳେ ସିପାହିମାନେ ବିଦ୍ରୋହୀ ହୋଇ ଲେଫ୍‌ଟେନେଣ୍ଟଗବର୍ଣ୍ଣରଙ୍କ ସହିତ ଅନ୍ୟାନ୍ୟ ଭଦ୍ର ଇଂରେଜ ଓ ଆମ୍ଭଙ୍କୁ ଏହି ଦୁର୍ଗ ମଧ୍ୟରେ କଏଦ କରି ରଖିବେ ସେଦିନ ଅଧିକଦୂରବର୍ତ୍ତୀ ନୁହଇ । " ହେନେରି ଲରେନ୍‌ସ ସିପାହିମାନଙ୍କର ମନୋଗତ ଭାବ ଉତ୍ତମରୂପେ ଜାଣିଥିଲେ, ଏକ-ସମୟରେ ସେମାନେ ଯେ ବିଦ୍ରୋହୀ ହେବେ ଏକଥା ତାହାଙ୍କୁ ଉତ୍ତମରୂପେ ଜଣା ଥିଲା; ମଧ୍ୟ ଏକଥା ସେ ଅନେକ ଦିନରୁ କହି ଆସୁଥିଲେ । ଲରେନ୍‌ସ ଉଲ୍ଲିଖିତ କଥା ଗୁଡ଼ିକ ପରିହାସଛଳରେ କହିଥିଲେ ସତ୍ୟ; ମାତ୍ର ହର୍ଷଠାରୁ ଅଧିକତର ବିଷାଦ ତାହାଙ୍କ ମୁଖଛବିରେ ପ୍ରକାଶ ପାଇଥିଲା । ଲରେନ୍‌ସ ବିପଦର ଆଶଙ୍କା କରି କେବେ କର୍ତ୍ତବ୍ୟ କର୍ମ ସାଧନରୁ ବିରତ ହୁଅନ୍ତି ନାହିଁ । ସେ ଆଗ୍ରାରୁ ଯାଇଁ ମାର୍ଚ୍ଚ ମାସ ତା ୨୦ ରିଖ ଉଷା ସମୟରେ ଲକ୍ଷ୍ନୌରେ ଉପସ୍ଥିତ ହେଲେ । ତାହାଙ୍କ ଉପସ୍ଥିତ ହେବାରୁ ଜ୍ୟାକସନ ଯେବେହେଁ ମନ ମଧ୍ୟରେ ଅତ୍ୟନ୍ତ ଅସ-ନ୍ତୁଷ୍ଟ ହେଲେ ମାତ୍ର ମୌଖିକ ପ୍ରଣୟ ପ୍ରକାଶ କରିବାରେ ତ୍ରୁଟି କଲେ ନାହିଁ । ଲରେନ୍‌ସ ପୂର୍ବରାତ୍ରୀ ଅନ୍ଧାରରେ ଅଶ୍ୱାରୋହଣ କରି ବାଟ ଚାଲି ଆସିଥିଲେ, ଉପସ୍ଥିତ ହୋଇ ମଧ୍ୟ ପ୍ରାତଃରାଶ ନ କରି କେନିଂ ସାହେବଙ୍କୁ ଖଣ୍ଡିଏପତ୍ର ଲେଖିଲେ ତାହାର ମର୍ମ ଏହି;—"ଆମ୍ଭେ ବର୍ତ୍ତମାନ ଏ ସ୍ଥାନରେ ଉପସ୍ଥିତ ହେଲୁଁ, ଜ୍ୟାକସନ ସାହେବଙ୍କ ସହିତ ୨ଘଣ୍ଟାକାଳ କଥାବାର୍ତ୍ତା ହେଲା, ସେ ଭଦ୍ରଲୋକ ପରି ଆମ୍ଭ ସହିତ ବ୍ୟବହାରକଲେ ।" ପତ୍ର ଖଣ୍ଡିକ ଶେଷ ନୋହୁଣୁ କେନିଂସାହେବଙ୍କର ଖଣ୍ଡିଏ ଉତ୍ସାହପୂର୍ଣ୍ଣ ଦୀର୍ଘ ପତ୍ର ପାଇଲେ; ତାହା ପାଠକରି

ଉତ୍ସାହିତ ଉତ୍ତର ଲେଖିଲେ, ଆପଣ ସାହାଯ୍ୟ କଲେ ଆମ୍ଭେ ଅବଶ୍ୟ କୃତ-କାର୍ଯ୍ୟ ହୋଇପାରିବୁଁ ସନ୍ଦେହ ନାହିଁ ।

ଇତିପୂର୍ବେ ଉଲ୍ଲିଖିତ ହୋଇଅଛି ଲର୍ଡ଼କେନିଂ ଡିରେକ୍‌ଟରମାନଙ୍କ ନିକଟରୁ ବିଦାୟ ଗ୍ରହଣକରିବା ସମୟରେ ବକ୍ତୃତା କରି କହିଥିଲେ ଯେ ନିର୍ମଳ ଭାରତାକାଶରେ ଗୃଷଣ୍ଡେ ମାତ୍ର ମେଘ ଉଦୟ ହୋଇ ତାହା ଆମ୍ଭମାନଙ୍କର ସର୍ବନାଶ ସାଧନ କରିପାରେ । ଡେଲହାଉସୀଙ୍କ ସମୟରେ ଅଲକ୍ଷ ଭାବରେ ବାଷ୍ପ ସଂଗୃହୀତ ହୋଇ ମେଘ ସଞ୍ଚରିତ ହୋଇଥିଲା; ବର୍ତ୍ତମାନ ତାହା ଦୃଷ୍ଟିଗୋଚର ହେବାର ସମୟ ଉପସ୍ଥିତ ହେଲା । ପେଗୁ ରାଜ୍ୟରେ ଅନେକ ଗୁଡ଼ିଏ ମାନ୍ଦ୍ରାଜୀ ସୈନ୍ୟ ଥିଲେ । ଲର୍ଡ଼କେନିଂ ସେହି ସେନାମାନଙ୍କୁ ବଙ୍ଗଦେଶକୁ ଆସିବାକୁ ଓ ବଙ୍ଗଳା ସେନାମାନଙ୍କୁ ପେଗୁ ଯିବାକୁ ଆଦେଶ କଲେ । ବଙ୍ଗଳାରୁ ପେଗୁ ଯିବାକୁ ହେଲେ ବୋଇତରେ ଯିବାକୁ ହୁଏ । ବୋଇତ ଆରୋହଣ ହିନ୍ଦୁ-ସମାଜ ବିରୁଦ୍ଧ, ବିଶେଷରେ ବଙ୍ଗଳା ସେନାମାନଙ୍କ ମଧ୍ୟରେ ଅଧିକାଂଶ ବ୍ରାହ୍ମଣ; ତେଣୁ ସେମାନେ ଯିବାପାଇଁ ଏକାବେଳକେ ଅସ୍ୱୀକୃତ ହେଲେ । କେନିଂ ସାହେବ ନୂଆ ଏଦେଶକୁ ଆସିଥିଲେ । ତେଣୁ ଏଦେଶର ଆଚାର ବ୍ୟବହାର ତାହାଙ୍କୁ ଉତ୍ତମ ରୂପେ ଜଣା ନ ଥିଲା । ସେ ସିପାହିମାନଙ୍କର ଏହି କୁସଂସ୍କାର କଥା ଶୁଣି ଅତ୍ୟନ୍ତ ବିରକ୍ତ ହେଲେ ଓ ୧୮୫୬ ସାଲ ଜୁଲାଇ ମାସ ୫ ତାରିଖରେ ଏକ ଆଜ୍ଞା ପ୍ରଚାର କଲେ ଯେ, ଏଉତ୍ତାରେ ନୂତନ ସିପାହି ନିଯୁକ୍ତ ସମୟରେ ସେମାନଙ୍କୁ ପ୍ରତିଜ୍ଞା କରିବାକୁ ହେବ ଯେ, "ଆମ୍ଭେମାନେ ଆଦେଶ ପ୍ରାପ୍ତ ହେଲୁଁ କୋମ୍ପାନୀଙ୍କ ରାଜ୍ୟ ବାହାରେ ହେଉ ଅବା ମଧ୍ୟରେ ହେଉ ବୋଇତ ଆରୋହଣ କରି ଯିବୁଁ । କୌଣସି ଆପତ୍ତି କରିବୁଁ ନାହିଁ" । ଏହାର କିଛିଦିନ ଉତ୍ତାରେ କେନିଂ ସାହେବ ଇଂଲଣ୍ଡର କର୍ତ୍ତୃପକ୍ଷୀୟମାନଙ୍କୁ ଲେଖିଲେ ବଙ୍ଗଳା-ସିପାହିମାନଙ୍କର ସମୁଦ୍ର ଯାତ୍ରା ନଷିଦ୍ଧ ବୋଲି ଯେଉଁ କୁସଂସ୍କାର ଥିଲା, ଆମ୍ଭେ ତାହାର ମୂଳଚ୍ଛେଦ କରିଅଛୁଁ । ଏଉତ୍ତାରେ ଆପଣମାନେ ଦେଖିବେ ସିପାହି-ମାନେ ସମୁଦ୍ର ଯାତ୍ରା କରିବାକୁ ସଙ୍କୁଚିତ ହେବେ ନାହିଁ । ଜାତି ଓ ଜନ୍ମସ୍ଥାନ ବିଷୟରେ ବୋମ୍ବେ ଓ ବଙ୍ଗଳା ସେନାମାନଙ୍କ ମଧ୍ୟରେ ସମାନ ସମ୍ପର୍କ; କିନ୍ତୁ ବୋମ୍ବାଇ ସେନାମାନେ ସମୁଦ୍ର ଯାତ୍ରାକୁ ଦୋଷାବହ ବୋଲି ମଣନ୍ତି ନାହିଁ । ମଧ୍ୟ ଆମ୍ଭେ ସମୁଦ୍ର ଯାତ୍ରା ବିଷୟରେ ନୂତନ ନିୟମ ପ୍ରଚାର କରି ଦେଖିଲୁଁ ଏଥିରେ କୌଣସି ସିପାହୀ ଅସନ୍ତୋଷର ଚିହ୍ନ ପ୍ରକାଶ କଲେ ନାହିଁ । କିନ୍ତୁ କେନିଂ ସାହେବଙ୍କର ଏହା ନିତାନ୍ତ ଭୁଲ । କାରଣ ନୂତନ ଆଦେଶ ଶ୍ରବଣ କରି ସିପାହିମାନେ ପ୍ରକାଶ୍ୟରେ କୌଣସି ଅସନ୍ତୋଷର ଚିହ୍ନ ଦେଖାଇ ନ ଥିଲେ

ସତ୍ୟ; ମାତ୍ର ସେହି ଆଦେଶ ସୈନିକ ଆବାସ ଓ ହାଟବାଟରେ ସ୍ୱଭା ଆନ୍ଦୋଳିତ ହୋଇଥିଲା । ସିପାହିମାନେ କହିଲେ ଆମ୍ଭମାନଙ୍କ ସମୁଦ୍ରଯାତ୍ରା ବିଷୟରେ ଗବର୍ଣ୍ଣରଜେନେରଲ ବାହାଦୁର ବଳ ପ୍ରକାଶ କଲେ ନାହିଁ ସତ୍ୟ ଅଟେ, ମାତ୍ର ଏକଥା ଅବଧାରିତ ଯେ ଆମ୍ଭମାନଙ୍କ ସନ୍ତାନମାନେ ସମୁଦ୍ରଯାତ୍ରା ବିଷୟରେ ଅନୁମତ ହେବେ ଅଥବା ପୁରୁଷାନୁକ୍ରମେ ଆମ୍ଭେମାନେ କୋମ୍ପାନୀ ସରକାରରେ ଯେଉଁ ଚାକିରି କରି ଆସୁଅଛୁଁ ସେମାନେ ( ସନ୍ତାନମାନେ ) ସେଥିରୁ ବଞ୍ଚିତ ହେବେ । ସୁତରାଂ ଏଯାଏଁ ଆମ୍ଭେମାନେ ଯେଉଁ ସ୍ୱତ୍ୱ ଭୋଗକରି ଆସୁଥିଲୁଁ ତାହା ବିଲୁପ୍ତ ହେଲା । ଅଭି ଏଉତ୍ତାରେ ବ୍ରାହ୍ମଣମାନେ ସିପାହି କର୍ମ ସ୍ୱୀକାର କରିବେ ନାହିଁ; ତେଣୁ ତତ୍ପଦରେ ଏମନ୍ତ ଲୋକ ନିଯୁକ୍ତ ହେବେ ଯେ, ସେମାନଙ୍କ ସଙ୍ଗରେ ଆମ୍ଭମାନଙ୍କର କୌଣସି ସମ୍ପର୍କ ରହିବ ନାହିଁ । ଏବେ ବନ୍ଧୁବାନ୍ଧବଶୂନ୍ୟ ହୋଇ କୋମ୍ପାନୀ ସରକାରରେ ଚାକିରି କରିବାର ଫଳକଣ ? ସିପାହିମାନେ ଯାହା ଅନୁମାନ କରିଥିଲେ ତାହା ନିତାନ୍ତ ବ୍ୟର୍ଥ ହେଲା ନାହିଁ । ଲର୍ଡ କେନିଂ ବାହାଦୁରଙ୍କ ଆଦେଶ ପ୍ରଚାରିତ ହେବା ଉତ୍ତାରେ କୌଣସି ବ୍ରାହ୍ମଣ ସୈନିକ ଦଳରେ ଭୁକ୍ତ ହେବାକୁ ସ୍ୱୀକୃତ ହେଲେ ନାହିଁ । ଏହା ମଧ୍ୟ ଶୁଣାଗଲା ଯେ, ଗବର୍ଣ୍ଣର ଜେନେରଲ ବାହାଦୁର ୯୦ ହଜାର ଶିଖସେନା ନିଯୁକ୍ତ କରିବେ । ଏତେବେଳେ ସିପାହିମାନେ କହିବାକୁ ଲାଗିଲେ ବ୍ରିଟିସ ଗବର୍ଣ୍ଣମେଣ୍ଟ କପାଁଇ ଆମ୍ଭମାନଙ୍କୁ ସ୍ନେହ କରିବେ ଯେତେଦିନ ଭାରତବର୍ଷମଧ୍ୟରେ ସୂଚ୍ୟଗ୍ର ମାତ୍ର ଭୂମି ଜୟ କରିବାକୁ ବାକି ଥିଲା ତେତେଦିନ ଆମ୍ଭମାନଙ୍କ ପ୍ରତି ତାହାଙ୍କର ଯଥେଷ୍ଟ ସ୍ନେହ ଥିଲା ବର୍ତ୍ତମାନ ଜୟତରଙ୍ଗ ସମୁଦ୍ରରେ ପଡ଼ିବାରୁ ଗବର୍ଣ୍ଣମେଣ୍ଟ ଏକାବେଳକେ ଆମ୍ଭମାନଙ୍କ ପ୍ରତି ମାୟାଶୂନ୍ୟ ହୋଇ ପଡ଼ିଲେଣି ।

ଲର୍ଡକେନିଂ ଭାରତବର୍ଷକୁ ଆସି ଯେଉଁ କେତେ ଗୁଡ଼ିଏ କର୍ମ କଲେ ତହିଁରେ ଲୋକମାନଙ୍କର ଧର୍ମଲୋପର ଆଶଙ୍କା ଜନ୍ମିବା ଅସମ୍ଭବ ନୁହଇ । ସେ ଭିନ୍ନ ସ୍ଥାନର ସୈନିକ କର୍ମଚାରୀମାନଙ୍କୁ ଖ୍ରୀଷ୍ଟୀୟ ଧର୍ମର ଉପଦେଶ ଦେଅଇଲେ ବାଇବେଲ ସୋସାଇଟୀର ଓ ମିଶନରି ସ୍କୁଲର ଉନ୍ନତିସାଧନ ପାଇଁ ଚେଷ୍ଟା କଲେ । ବହୁବିବାହ ନିବାରଣ ଓ ବିଧବା ବିବାହ ଆଇନ ପ୍ରଚାର କଲେ । ଲର୍ଡକେନିଂ ଉଲ୍ଲିଖିତ କର୍ମମାନଙ୍କ ଉନ୍ନତିସାଧନ ପକ୍ଷେ ଯତ୍ନବାନ୍ ଥିବା ସମୟରେ ତାହାଙ୍କ ସହଧର୍ମିଣୀ ବଙ୍ଗାଳୀ ସ୍ତ୍ରୀମାନଙ୍କ ଶିକ୍ଷା ବିଧାନ ବିଷୟରେ ମନୋଯୋଗୀନୀ ଥିଲେ । ଫଳେ ଏମାନଙ୍କର କୌଣସି ଦୁରଭିସନ୍ଧି ନ ଥିଲା ।

ହଠାତ୍ ଘଟଣାରେ ମହା ଗୋଳମାଳ ଉପସ୍ଥିତ ହେଲା । ଗବର୍ଣ୍ଣରଜେନେରଲ ସାହେବ ବଳ ପ୍ରକାଶ କରି ସମସ୍ତଙ୍କୁ ଖ୍ରୀଷ୍ଟାନ କରୁଅଛନ୍ତି ବୋଲି ସେ

ସ୍ଥାନର ଲୋକେ ଲୁହାଲୁହି କରିବାକୁ ଲାଗିଲେ । ମଧ୍ୟ ଏହି ସମୟରେ କ୍ଷୁଦ୍ର ପୁସ୍ତିକା ପ୍ରକାଶିତ ହେଲା ତାହାର ଉଦ୍ଦେଶ୍ୟ ଏହି "ଯଦି କାହାର ମନରେ ଧର୍ମ ଲୋପର ଆଶଙ୍କା ଜନ୍ମି ଥାଏ ତେବେ ଗବର୍ଣ୍ଣମେଣ୍ଟଙ୍କ କାର୍ଯ୍ୟାବଳୀ ତାହାର ମୂଳକାରଣ ।" ଏହି ସମୟରେ ପାରସ୍ୟ ରାଜ ଦିଲ୍ଲୀଶ୍ୱରଙ୍କ ନିକଟକୁ ଦୂତ ପ୍ରେରଣ କରି ଥିଲେ । କି ଅଭିପ୍ରାୟରେ ଯେ ଦୂତ ଆସିଥିଲା ତାହା କାହାକୁ ଜଣା ନାହିଁ । ମଧ୍ୟ ଏ ଦେଶରେ ଏମନ୍ତ ଏକ ଭବିଷ୍ୟତ୍ ବାଣୀ ପ୍ରଚାରିତ ଥିଲା- ଯେ, ଇଂରେଜମାନେ ଶହେ ବର୍ଷରୁ ଅଧିକକାଳ ଏ ଦେଶରେ ରାଜତ୍ୱ କରି ପାରିବେ ନାହିଁ । ସେମାନେ (ଇଂରେଜମାନେ) ୧୭୫୭ ସାଲରେ ଆଧିପତ୍ୟ ପ୍ରାପ୍ତ ହୋଇଥିଲେ । ବର୍ତ୍ତମାନ (୧୮୫୭ ସାଲ) କୌଣସି ପ୍ରକାର ରାଜବିପ୍ଳବ ଘଟିବାର ଆଶଙ୍କା ସମସ୍ତଙ୍କ ମନରେ ସଙ୍କ୍ରାମିତ ହୋଇ ଥିଲା । ବିଶେଷରେ ଗବର୍ଣ୍ଣମେଣ୍ଟଙ୍କ ଅତ୍ୟାଚାରରେ ଭୀତ ଓ ଅପକୃତ କେତେଲୋକ ବହୁ ଦିନରୁ ମନମଧ୍ୟରେ ବ୍ରିଟିସ ଗବର୍ଣ୍ଣମେଣ୍ଟଙ୍କ ଅମଙ୍ଗଳ ଚେଷ୍ଟା କରି ଆସୁଥିଲେ, ବର୍ତ୍ତମାନ ସେମାନେ ଅଭିଳାଷ ପୂରଣର ସମୟ ଜାଣି କ୍ରମଶେ ମୁଣ୍ଡ ଟେକିବାକୁ ଲାଗିଲେ ।

୧୮୫୭ ସାଲ ଜାନୁୟାରିମାସରେ ଭାରତବର୍ଷରେ କୌଣସି ଗୋଳମାଳ ନ ଥିଲା । ସର୍ବତ୍ର ଶାନ୍ତି ବିରାଜିତ ହେଉଥିଲା । ଏହି ସମୟରେ ସିପାହିମାନଙ୍କ ବ୍ରାଉନବେଶ ବନ୍ଧୁକ ପରିବର୍ତ୍ତରେ ରାଇଫଲ ବନ୍ଧୁକ ଦିଆଗଲା । ରାଇଫଲ୍ ବନ୍ଧୁକ ବ୍ରାଉନବେଶ ବନ୍ଧୁକ ଠାରୁ ଅନେକ ଗୁଣରେ ଉତ୍କୃଷ୍ଟ । ସିପାହିମାନେ ନୂତନ ବନ୍ଧୁକ ପାଇ ଅତ୍ୟନ୍ତ ଆନନ୍ଦିତ ହେଲେ ଓ ବ୍ରିଟିସଗବର୍ଣ୍ଣମେଣ୍ଟଙ୍କୁ ଅଗଣ୍ୟ ଧନ୍ୟବାଦ ଦେବାକୁ ଲାଗିଲେ । ମାତ୍ର ଏହି ଧନ୍ୟବାଦ ବା ଆନନ୍ଦ ଦୀର୍ଘକାଳସ୍ଥାୟୀ ହୋଇ ପାରିଲା ନାହିଁ; କାରଣ ସିପାହିମାନଙ୍କ ମଧ୍ୟରେ ଶୁଣା ଯିବାକୁ ଲାଗିଲା ଯେ, ନୂତନ ବନ୍ଧୁକ ପାଇଁ ଯେଉଁ ଟୋଟା ନିର୍ମିତ ହୋଇଅଛି ସେ ସକଳ ଗୋରୁ ଓ ଶୂକର ଚର୍ବିରେ ନିର୍ମିତ । ମୁସଲମାନମାନଙ୍କୁ ଶୂକର ଚର୍ବି ଯୁକ୍ତ ଓ ହିନ୍ଦୁମାନଙ୍କୁ ଗୋଚର୍ବି ଯୁକ୍ତ ଟୋଟା ଦିଆଯିବ, ସେମାନେ ତାହାକୁ ଦାନ୍ତରେ କାଟିବେ । ଏକଥାର ସମ୍ପୂର୍ଣ୍ଣ ସତ୍ୟତା ବିଷୟରେ ଆମ୍ଭମାନଙ୍କର ସନ୍ଦେହ ଜନ୍ମୁଅଛି; ମାତ୍ର ଏହା ମଧ୍ୟ ଆମ୍ଭମାନଙ୍କର ବିସ୍ମୃତ ହେବାର ଉଚିତ ନୁହଇ ଯେ, ନିଆଁ ନ ଥିଲେ ଧୂଆଁ କାହାରେ ନାହିଁ । ଜାନୁୟାରି ମାସ ତା ୨୮ ରିଖରେ ଜେନେରଲ ହ୍ୟୁୟର୍ସ ସାହେବ ବାରାକପୁରରୁ ଆଡଜୁଟେଣ୍ଟ ଜେନେରଲ ଅଫିସକୁ ରିପୋର୍ଟ କଲେ ଯେ, ଏ ସ୍ଥାନର ସିପାହିମାନେ ଟୋଟା କାଟିବା ବିଷୟରେ ଅତ୍ୟନ୍ତ ଗୋଳମାଳ ଓ ଅତ୍ୟନ୍ତ ଅସନ୍ତୋଷର ଚିହ୍ନ ପ୍ରକାଶ କରୁ ଅଛନ୍ତି । କୌଣସି କୁଲୋକ ଏମାନ ମଧ୍ୟରେ ରଟାଇ ଦେଇ ଅଛି ଯେ, ଗବର୍ଣ୍ଣମେଣ୍ଟ କୌଶଳରେ ସମସ୍ତଙ୍କ ଜା

ମାରିବେ । ହିୟାର୍ସସାହେବଙ୍କ ରିପୋର୍ଟ କରିବା କେତେଦିନ ଉତ୍ତାରେ ବାରକପୁରର ଟେଲିଗ୍ରାଫ ଅଫିସ ପୋଡ଼ିଗଲା ମଧ୍ୟ ଇଂରେଜମାନଙ୍କ କୋଠିରେ ଅଗ୍ନିକାଣ୍ଡ ଘଟିବାକୁ ଲାଗିଲା । ରାତ୍ରୀରେ ସିପାହିମାନେ ସଭା କରିବାକୁ ଲାଗିଲେ ଓ କଲିକତା ପୋଷ୍ଟଅଫିସ ଦ୍ୱାରା ଅନ୍ୟାନ୍ୟ ସୈନିକ ଶ୍ରେଣୀକୁ ପତ୍ର ପଠାଇବାକୁ ଲାଗିଲେ ଯେ, ତୁମ୍ଭେମାନେ ବର୍ତ୍ତମାନ ସାବଧାନ ହୁଅ, ଗବର୍ଣ୍ଣମେଣ୍ଟ ସମସ୍ତଙ୍କ ଜାତି ମାରିବାକୁ ବସିଅଛନ୍ତି । ବରହମପୁରରସିପାହିମାନେ ପ୍ରକାଶ୍ୟ ବିଦ୍ରୋହରେ ପ୍ରବୃତ୍ତ ହୋଇ ଥିଲେ କିନ୍ତୁ କର୍ଣ୍ଣେଲ ମିଚ୍ଚଲ ଅନେକ କୌଶଳରେ ସେମାନଙ୍କୁ ଶାନ୍ତ କରାଇଲେ; ଗବର୍ଣ୍ଣରଜେନେରିଲ ବରହମପୁରର ସିପାହିମାନଙ୍କର ବିଦ୍ରୋହ ବୃତ୍ତାନ୍ତ ଶୁଣି ସେମାନଙ୍କୁ ପଦଚ୍ୟୁତ କରିବା ପାଇଁ ସଙ୍କଳ୍ପ କଲେ ଓ କର୍ଣ୍ଣେଲ ମିଚ୍ଚଲ ସାହେବଙ୍କୁ ଲେଖିଲେ ତୁମ୍ଭେ ସିପାହିମାନଙ୍କୁ ବାରକପୁରକୁ ଆଣି ପଦଚ୍ୟୁତ କରିବ । ବାରକପୁରର ସେନାପତି ହିୟାର୍ସ ସାହେବ ଏ ସକଳ ବିଷୟ କିଛି ଜାଣନ୍ତି ନାହିଁ କିନ୍ତୁ ତାହାଙ୍କ ସିପାହିମାନଙ୍କୁ ଏସକଳ ବିଷୟ ଜଣା ଥିଲା । ଏହି ସମୟରେ ଗୋୟାଲିୟର ରାଜା କଲିକତା ଦେଖିବାକୁ ଆସିଥିଲେ । ସେ ମାର୍ଚ୍ଚମାସ ତା ୧୦ ରିଖରେ କୋମ୍ପାନୀ ବଗିଚାକୁ ପାରିଷଦମାନଙ୍କ ସହିତ ଗବର୍ଣ୍ଣରଜେନରଲଙ୍କୁ ଭୋଜନର ନିମନ୍ତ୍ରଣ କରିଥିଲେ । ଗବର୍ଣ୍ଣର ଜେନେରଲ ଅନୁପସ୍ଥିତ ସମୟରେ ସିପାହିମାନେ କଲିକତାର ଫୋର୍ଟଉଇଲିୟମ ଗଡ଼ ଦଖଲ କରିବେ ବୋଲି ମନସ୍ଥ କରିଥିଲେ; ମାତ୍ର ସେଦିନ ହଠାତ୍ ବୃଷ୍ଟି ହେବାରୁ ଗବର୍ଣ୍ଣରଜେନେରଲ ନିମନ୍ତ୍ରଣ ସ୍ଥଳକୁ ଯାଇ ପାରିଲେ ନାହିଁ । ତେଣୁ ସିପାହିମାନଙ୍କ ଆଶା ବିଫଳ ହୋଇଗଲା । କିନ୍ତୁ ସେହି ଦିବସ ସନ୍ଧ୍ୟାସମୟରେ ଅନ୍ୟ ଗୋଟିଏ ଘଟଣା ଘଟିଥିଲା । ଟଙ୍କଶାଳର ସୁବେଦାର ବସି ଖଣ୍ଡିଏ ପୁସ୍ତକ ପାଠ କରୁଅଛନ୍ତି ଏମନ୍ତ ସମୟରେ ଗଡ଼ରୁ ୨ ଜଣ ସିପାହି ଯାଇ ତାହାଙ୍କୁ କହିଲେ ଆଜି ରାତ୍ରିରେ ନଗରରକ୍ଷକ ସିପାହିମାନେ ଗଡ଼ ସିପାହିମାନଙ୍କ ସଙ୍ଗରେ ମିଶି ଗଡ଼ ଅଧିକାର କରିବେ । ଆପଣ ସେମାନଙ୍କ ସଙ୍ଗରେ ଯୋଗ ଦେଲେ ଭଲ ହେବ । ସୁବେଦାର ପ୍ରଭୁଭକ୍ତ ଥିଲେ, ସେ ସିପାହିମାନଙ୍କ କଥାରେ ନ ଭୁଲି ଧରାଇ ଦେବାରୁ ସେମାନଙ୍କୁ ୧୪ ବର୍ଷଲେଖାଏଁ କାରାବାସର ଦଣ୍ଡାଜ୍ଞା ପ୍ରଦତ୍ତ ହେଲା । ଏ ଉତ୍ତାରେ ବାରକପୁରରେ ଅନ୍ୟ ଗୋଟିଏ ଦୁର୍ଯୋଗ ଘଟିଲା । କେତେ ଜଣ ସିପାହି ପ୍ରକାଶ୍ୟ ବିଦ୍ରୋହରେ ପ୍ରବୃତ୍ତ ହୋଇ ଇଂରେଜ କର୍ମଚାରୀମାନଙ୍କୁ ବଧ କରିବାକୁ ଉଦ୍ୟତ ହେଲେ ।

ପୂର୍ବୋକ୍ତ ଆଦେଶ ଅନୁସାରେ କର୍ଣ୍ଣେଲମିଚ୍ଚଲ ପଦଚ୍ୟୁତ କରିବାପାଇଁ ସିପାହିମାନଙ୍କୁ ଘେନି ବାରକପୁରରେ ଉପସ୍ଥିତ ହେଲେ । ହିୟାର୍ସ ସାହେବ କାଳବିଳମ୍ବ ନ କରି ସିପାହିମାନଙ୍କୁ ସମବେତ ହେବାପାଇଁ ଆଜ୍ଞାପ୍ରଦାନ କଲେ ।

ସିପାହିମାନେ ଶ୍ରେଣୀବଦ୍ଧ ହୋଇ ଦଣ୍ଡାୟମାନ ହେଲେ । କର୍ଣ୍ଣେଲ ହ୍ୟାର୍ସି କରୁଣସ୍ୱରରେ କହିଲେ ତୁମ୍ଭେମାନେ ଅଳୀକକଥା ବିଶ୍ୱାସ କରି ବିଦ୍ରୋହରେ ପ୍ରବୃତ୍ତ ହୋଇଅଛ । ତେଣୁ ଗବର୍ଣ୍ଣମେଣ୍ଟ ତୁମ୍ଭମାନଙ୍କୁ ପଦଚ୍ୟୁତ କରିବାକୁ ଆଜ୍ଞା ଦେଇଅଛନ୍ତି । କିନ୍ତୁ ତୁମ୍ଭମାନଙ୍କର ପୋଷାକ ଛଡ଼ାଇ ନେବାକୁ ତାହାଙ୍କର ଇଚ୍ଛା ନାହିଁ । ମଧ୍ୟ ତୁମ୍ଭେମାନେ ବରହମପୁରରୁ ଆସିବାସମୟରେ ମାର୍ଗମଧ୍ୟରେ ସଦ୍‌ବ୍ୟବହାର କରିଥିଲ ଏଥିକୁ ତୁମ୍ଭମାନଙ୍କୁ ଘରଠାରେ ପହଞ୍ଚିବାପର୍ଯ୍ୟନ୍ତ ବାଟ ଖରଚ ଦିଆଯିବ । ସିପାହିମାନେ ଏକଥା ଶୁଣି ଶାନ୍ତଭାବରେ ଅସ୍ତ୍ର ଶସ୍ତ୍ର ପ୍ରଦାନ କଲେ ଓ ଆପଣାମାନଙ୍କ ଦୋଷ ସ୍ୱୀକାର କରି ବିଳାପ, ପରିତାପ କରିବାକୁ ଲାଗିଲେ । କେହି କେହି କହିଲେ ଆମ୍ଭେମାନେ ବାରକପୁରସ୍ଥ ୩୪ ସଂଖ୍ୟକ ରେଜିମେଣ୍ଟଙ୍କ କଥାରେ ଭୁଲି ବିଦ୍ରୋହରେ ପ୍ରବୃତ୍ତ ହୋଇଥିଲୁଁ ୧୦ ମିନିଟ ପାଁଇ ଆମ୍ଭମାନଙ୍କୁ ଅସ୍ତ୍ର ଦେଉନ୍ତୁ ସେମାନଙ୍କୁ ଦେଖାଇ ଦେଉଁ ।

ଏଣେ ଲର୍ଡ଼ କେନିଂ ବାହାଦୁର ବିଦ୍ରୋହୀ ସିପାହିମାନଙ୍କୁ ପଦଚ୍ୟୁତ କରିବାର ଆଦେଶ ପ୍ରଚାର କରି ଅତ୍ୟନ୍ତ ଚିନ୍ତିତ ଥିଲେ ମାତ୍ର ବିଦ୍ରୋହୀମାନଙ୍କୁ ଶାନ୍ତଭାବରେ ଅସ୍ତ୍ର ଶସ୍ତ୍ର ତ୍ୟାଗ କରିବା ସମ୍ବାଦ ଶୁଣି ଅତ୍ୟନ୍ତ ଆନନ୍ଦିତ ହେଲେ ଓ ସିପାହୀ ବିଦ୍ରୋହରେ ଭୀତ ଇୟୁରୋପୀୟ ଅଧିବାସିମାନଙ୍କ ଉତ୍ସାହ ବର୍ଦ୍ଧନ ନିମନ୍ତେ ଏହି ସମ୍ବାଦ ପ୍ରଚାର କରି ଦେଲେ ।

ଏତେବେଳେ ଲର୍ଡ଼ କେନିଂ ବାରକପୁରସ୍ଥ ୩୪ ସଂଖ୍ୟକ ରେଜିମେଣ୍ଟ ଦୋଷର ବିଷୟ ବିଚାର କରିବାର ଅବସର ପାଇଲେ । ସେ ବିବେଚନା କଲେ ବରହମପୁର ସିପାହିମାନଙ୍କଠାରୁ ୩୪ ସଂଖ୍ୟକ ରେଜିମେଣ୍ଟ ଅଧିକ ଦୋଷୀ, ତେଣୁ ଏକାବେଳକେ ସମସ୍ତଙ୍କୁ ପଦଚ୍ୟୁତ କରିବାପାଇଁ ଆଦେଶ ପ୍ରଦାନ କଲେ । ଯେତେବେଳେ କେନିଂ ବାହାଦୁର ୩୪ ସଂଖ୍ୟକ ରେଜିମେଣ୍ଟକୁ ପଦଚ୍ୟୁତ କରିବାପାଇଁ ଆଦେଶ ପ୍ରଦାନ କଲେ ତେତେବେଳେ ହିମାଳୟ ଉପତ୍ୟକାଠାରୁ କଲିକତାପର୍ଯ୍ୟନ୍ତ ସମସ୍ତସ୍ଥାନରୁ ଘୋର ବିପଦର ସମ୍ବାଦ ଆସୁଥିଲା । ମାତ୍ର ଦୃଢ଼ପ୍ରତିଜ୍ଞ କେନିଂବାହାଦୁର ଭବିଷ୍ୟତ ବିପଦ ଆଶଙ୍କା କରି କର୍ତ୍ତବ୍ୟ ସାଧନବିଷୟରେ ପରାଙ୍‌ମୁଖ ହେବାର ଲୋକ ନ ଥିଲେ । ମଧ୍ୟ ସେ ଏମନ୍ତ ସାହସୀ ଥିଲେ ଯେ ଅନୁପସ୍ଥିତ ବିପଦକୁ ଗୁରୁତର ବୋଲି ମଣୁ ନ ଥିଲେ । ଆଉ ବିଷଣ୍ଣଚିତ୍ତରେ ଉପସ୍ଥିତ ବିପଦବିଷୟ ଆଲୋଚନା କରୁ ନ ଥିଲେ ।

ପ୍ରଧାନ ସେନାପତି ଆନ୍‌ସନ କଲିକତାଠାରୁ ପାଞ୍ଚଶତ କ୍ରୋଶ ଦୂରବର୍ତ୍ତୀ ଅମ୍ବାଲାନଗରରେ ବାସ କରୁଥିଲେ, ତେଣୁ ସେହି ନଗର ସିପାହିମାନଙ୍କର ଶ୍ରେଷ୍ଠ ସ୍ଥାନଥିଲା । ପ୍ରଥମେ ତତ୍ରତ୍ୟ ୩୬ ସଂଖ୍ୟକ ରେଜିମେଣ୍ଟମଧ୍ୟରେ ଗୋଳମାଳ ଶୁଣା

ଗଲା। ଦନକରେ ଦୁଇଜଣ କର୍ମଗୃହୀ ବ୍ୟାଣ୍ଡମେଣ୍ଟ ଅର୍ଥାତ ସେନାନିବେଶକୁ ଫିବାରୁ ଇତ୍ୟାଦି କୌଣସି ସୁବେଦାର ସେମାନଙ୍କୁ କହିଲା ତୁମ୍ଭେମାନେ ବନ୍ଧୁକ କାରଖାନାରେ କର୍ମ କର ତୁମ୍ଭମାନଙ୍କର ଜାତି ଗଲାଣି ଆଉ ତୁମ୍ଭମାନଙ୍କ ହାତରୁ କେହି ପାଣି ଛୁଇଁବେ ନାହିଁ। ସିପାହିମାନେ ସେହି ହୃଦୟଭେଦୀ କଥା ଶୁଣି ସେନାପତିଙ୍କଠାରେ ନିବେଦନ କଲେ, " ଆମ୍ଭେମାନେ ବନ୍ଧୁକକାରଖାନାରେ କର୍ମ କରିବାରୁ ଆମ୍ଭମାନଙ୍କର ଜାତି ଯାଇଅଛି ଏଣୁ ଏଉତ୍ତରେ କେହି ଆମ୍ଭମାନଙ୍କସହିତ ଆହାର ବ୍ୟବହାର କରିବେ ନାହିଁ।" ସେନାପତି ଏହିକଥା ଶୁଣି ପରଦିନ ପ୍ରାତଃକାଳରେ ସମସ୍ତ ସିପାହିଙ୍କୁ ପରେଡସ୍ଥଳରେ ସମବେତ ହେବାପାଇଁ ଆଦେଶ ପ୍ରଦାନ କଲେ। ନିରୂପିତସମୟରେ ସମସ୍ତେ ଦଣ୍ଡାୟମାନ ହୁଅନ୍ତେ ସେନାପତି ବକ୍ତୃତା କରି କହିଲେ କାହାରିକୁ ବଳପୂର୍ବକ ଖ୍ରୀଷ୍ଟାନ କରିବା ଗବର୍ଣ୍ଣମେଣ୍ଟଙ୍କ କୌଣସିପ୍ରକାର ଇଚ୍ଛା ନୁହଇ, ତେବେ ଯେ ତୁମ୍ଭମାନଙ୍କ ଧର୍ମଲୋପର ଭୟ ଜନ୍ମି ଅଛି ସେ ଅଳୀକଆଶଙ୍କା ମାତ୍ର। ବକ୍ତୃତା ଶୁଣି ସିପାହିମାନେ କହିଲେ, ଟୋଟା କାଟିବାବିଷୟରେ ଆମ୍ଭମାନଙ୍କର କୌଣସିପ୍ରକାର ଆପତ୍ତି ନାହିଁ; ମାତ୍ର ଆମ୍ଭମାନଙ୍କ ସ୍ୱଜାତୀୟ ସହସ୍ର ଲୋକ ଏବିଷୟର ବିରୋଧୀ; ଏଥିଲୁ ଆମ୍ଭମାନଙ୍କର ଶେଷ-ଦଶା କି ହେବ ସେହି ଭାବନାରେ ବ୍ୟାକୁଳିତ ଅଛୁଁ।

ଏଥିର କତିପଦିନ ଉତ୍ତାରେ ଅମ୍ବାଲାରେ ଗୃହଦାହ ହେବାକୁ ଆରମ୍ଭ ହେଲା ଓ ମୀରଟରୁ ସମ୍ବାଦ ଆସିଲା ଯେ, ଦେଶୀୟଙ୍କର ଅଶ୍ୱାରୋହୀ ସେନାମାନେ ବିଦ୍ରୋହୀ ହୋଇଅଛନ୍ତି। ଏପ୍ରେଲ ମାସ ତା ୨୪ ରିଖ କାଓ୍ୟାଜ ସମୟରେ ନବେଜଣ ମାତ୍ର ସିପାହୀ ଉପସ୍ଥିତ ହେଲେ, ତନ୍ମଧ୍ୟରୁ ଜ ୫ ଣ ମାତ୍ର ଟୋଟା ନେଲେ, ଅବଶିଷ୍ଟ ସିପାହିମାନେ ଟୋଟା ଛୁଁଇଲେ ନାହିଁ।

ସେନାପତି ସ୍ମିଥ ସାହେବ ସେମାନଙ୍କୁ ଅନେକପ୍ରକାର ବୁଝାଇଲେ ମାତ୍ର କୌଣସିପ୍ରକାରେ କୃତକାର୍ଯ୍ୟ ହୋଇପାରିଲେ ନାହିଁ। ଲର୍ଡ୍ କେନିଂ ବାହାଦୁର ଏହି ସକଳ ଘଟନା ଶୁଣି କିଞ୍ଚିତ ଉଦ୍‌ବିଗ୍ନଚିତ୍ତ ହେଲେ। ତାହାଙ୍କର ଦୃଢ଼ପ୍ରତୀତି ଜନ୍ମିଲା ଯେ ସିପାହିମାନଙ୍କ ଅନ୍ତଃକରଣରେ ଯେ ଧର୍ମଲୋପର ଆଶଙ୍କାବଦ୍ଧମୂଳ ହୋଇଅଛି ତାହା ସହଜରେ ଅପନୀତ ହେବାର ନୁହଇ। କେବଳସିପାହୀ ନୁହନ୍ତି ଏପ୍ରେଲମାସ ଘଟନାହିଁ ଜଣାଗଲା ଯେ ଉତ୍ତର ପଶ୍ଚିମ ପ୍ରଦେଶୀୟ ପ୍ରାୟ ସମସ୍ତ ଲୋକର ଧର୍ମ ଲୋପର ଆଶଙ୍କା ଜନ୍ମିଅଛି। ଏହି ମାସ ପ୍ରାରମ୍ଭରେ କାନପୁରରେ ଅଟା ଦୁର୍ମୂଲ୍ୟ ହେଲା। ମୀରଟର କେତେ ଜଣ ମହାଜନ ଗବର୍ଣ୍ଣ-ମେଣ୍ଟ ବୋଟ ଭଡ଼ା ନେଇ କାନପୁରକୁ ଅଟା ଆମଦାନୀ କଲେ ଓ ବଜାରରେ ଅଳ୍ପ ମୂଲ୍ୟରେ ବିକ୍ରୟ କରିବା ପାଇଁ ପ୍ରସ୍ତାବ କଲେ। ଏଣୁ କାନପୁରରେ ଏହି

ଜନରବ ଉଠିଲା ଯେ ଗବର୍ଣ୍ଣମେଣ୍ଟ ସମସ୍ତଙ୍କୁ ଖ୍ରୀଷ୍ଟାନ କରବା ବାସନାରେ ଅଣ୍ଟା-ରେ ଗବାସ୍ଥିଚୂର୍ଣ୍ଣ ମିଶାଇ ଅଟା ଶସ୍ତା ଦରରେ ବକ୍ରୟ କରାଉଅଛନ୍ତ । ଏହ କଥା ପ୍ରଚାର ହୁଅନ୍ତେ କେହ ଅଉ ଆମଦାନୀଅଟା ସ୍ପର୍ଶ ମଧ କଲେ ନାହିଁ, ଏମନ୍ତକ ଯେଉଁମାନେ ରୁଟୀ ଖାଇବାକୁ ବସିଥିଲେ ସେମାନେ ଖାଦ୍ୟ ଫୋପାଡ଼ିଦେଇ ଅପ-ଣାକୁ ଅପବତ୍ର ଜ୍ଞାନକଲେ । କେହ୨ ବୋଲନ୍ତ କାନପୁରର ମହାଜନମାନେ ସ୍ୱାର୍ଥ-ସିଦ୍ଧିର ବ୍ୟାଘାତ ଦେଖି ଏହରୂପ ଜନରବ ରଟାଇ ଦେଇଥିଲେ; ମାତ୍ର ଅନ୍ୟ ଲୋକମାନେ ବୋଲନ୍ତ ଏହା ବପକ୍ଷମାନଙ୍କର ଚାତୁରୀ; ଗବର୍ଣ୍ଣମେଣ୍ଟପ୍ରତ ସାଧାରଣଙ୍କ ମନ ବରୂପ କରଦେବା ମାନସରେ ଏହକଥା ପ୍ରକାଶ କରନ୍ତ । କେଉଁକଥାଟା ସତ୍ୟ ନଃସନ୍ଦେହରୂପେ କୁହାଯାଇ ପାରେ ନାହିଁ । ମାତ୍ର ଯେରୂପେ ଏହ କଥା ପ୍ରଚାରତ ହେଉ, ଏଥିରେ ପଶ୍ଚିମଦେଶୀୟ ସାଧାରଣ ଲୋକଙ୍କ ମନରେ ବଶ୍ୱାସ ଜନ୍ମିଲା ଯେ ଗବର୍ଣ୍ଣମେଣ୍ଟ ସମସ୍ତଙ୍କୁ ଅଭକ୍ଷ ଭକ୍ଷଣ କରାଇ ଜାତପାତ କରାଉଅଛନ୍ତ ।

କେନଂ ବାହାଦୁର ଉପର୍ଯୁ୍ୟପର ଏହ ସକଳ ସମ୍ବାଦ ଶୁଣି ଉତ୍କଣ୍ଠିତ ହେଲେ; ଆଉ ସେ ଏହା ମଧ ବଗ୍ଭର କଲେ ଯେ ଏହ ଜନରବଦ୍ୱାରା ଗବର୍ଣ୍ଣମେଣ୍ଟର ଯେପର୍ଯ୍ୟନ୍ତ ଅନଷ୍ଟ ଘଟିବାର ସମ୍ଭାବନା, ଭାରତସ୍ଥ ପ୍ରଧାନ୨ ରାଜାମାନେ ଗବର୍ଣ୍ଣ-ମେଣ୍ଟ ବରୁଦ୍ଧରେ ଖଡ୍ଗହସ୍ତ ହେଲେ ମଧ ସେପର୍ଯ୍ୟନ୍ତ ଅନଷ୍ଟ ଘଟିବାର ସମ୍ଭାବନା ନାହିଁ । କେନଂ ବାହାଦୁର ପୂର୍ବରୁ ପଦଚ୍ୟୁତ ଅଯୋଧ୍ୟାପତ ମନ୍ତ୍ରିଙ୍କୁ ଏହ ସକଳ ଉତ୍ପାତର ମୂଳାଧାର ବୋଲି ସ୍ଥିର କରଥିଲେ; ବର୍ତ୍ତମାନ କାନପୁରର ଘଟନା ବୃତ୍ତାନ୍ତ ଶୁଣି ତାହାଙ୍କର ବଶ୍ୱାସ ବଦ୍ଧମୂଳ ହେଲା, ମାତ୍ର ନାନାସାହେବ ଭେଟେବେଳେ ଯେମନ୍ତ ଛଟପଟ ହେଉଥିଲେ ତାହାଙ୍କୁ ମଧ ଚକ୍ରାନ୍ତକାରୀ ବୋଲି ସ୍ଥିର କରବା ଉଚତ ଥିଲା ।

ନାନାସାହେବ ବଠୂର ନଗରରୁ ପ୍ରାୟ ବାହାର ହୁଅନ୍ତ ନାହିଁ । ମାତ୍ର ସେହ ଦାରୁଣ ଗ୍ରୀଷ୍ମ ସମୟରେ ମାସକ ମଧରେ କାନପୁର ଦିଲ୍ଲୀ ଓ ଲକ୍ଷ୍ନୌ ପର୍ଯ୍ୟ-ଟନ କରଥିଲେ । ଲକ୍ଷ୍ନୌ ନଗରରେ ସରହେନେର ଲରେନ୍ସଙ୍କ ସହତ ସାକ୍ଷାତ ହୋଇଥିଲା । ସେ ଆଗମନର କାରଣ ପଗ୍ଭରବାରୁ ନାନାସାହେବ କହଲେ, ଆମ୍ଭେ ସହର ଦେଖିବାକୁ ଆସିଅଛୁଁ । ଡେଲହାଉସୀ ନାନାସାହେବଙ୍କ ପ୍ରତ ଯେ ଅତ୍ୟାଗ୍ଭର କରଥିଲେ ତାହା ତାହାଙ୍କ ହୃଦୟରେ ପ୍ରସ୍ତରଖୋଦତ ରେଖାପର ଅଙ୍କିତ ଥିଲା । ସେ ନୟତ କୋମ୍ପାନୀଙ୍କ ଉଚ୍ଛେଦର ମନ୍ତ୍ରଣା କରୁଥିଲେ; ମାତ୍ର ଇଂରେଜମାନଙ୍କୁ ଏକଥା ଜଣା ନ ଥିଲା । ଇଂରେଜମାନେ ମନରେ ଭାବଥିଲେ ସେ ପୈତୃକ ମାନସମ୍ଭ୍ରମ ଲୋପର ଶୋକ ଏକାବେଳକେ ଭୁଲି ଯାଇଅଛନ୍ତ । ସେ ଯାହା ହେଉ ନାନାସାହେବ ଲକ୍ଷ୍ନୌରେ କେତେକ ଦନ ରହ ଲରେନ୍ସ

ସାହେବଙ୍କଠାରୁ ବିଦାୟ ନେଇ ଚାଲି ଆସିଲେ । ଏହିରୂପେ ଏପ୍ରେଲ ମାସ ଶେଷ ହେଲା ।

ମେ ମାସ ଆରମ୍ଭରେ ଅନେକ ସୁଲକ୍ଷଣ ଦେଖା ଗଲା । ବାରକପୁରସ୍ଥ ସିପାହିମାନେ ଶାନ୍ତଭାବରେ ଆପଣା କର୍ତ୍ତବ୍ୟ କର୍ମ ସାଧନ କରିବାକୁ ଲାଗିଲେ, ଦମଦମାରେ କୌଣସି ଗୋଲମାଲ ଶୁଣାଗଲା ନାହିଁ । ପଶ୍ଚିମାଞ୍ଚଳସ୍ଥ ସିପାହିମାନେ ଶାନ୍ତଭାବ ଅବଲମ୍ବନ କରି ଯୁଦ୍ଧବିଦ୍ୟା ଅନୁଶୀଳନ କରିବାକୁ ଲାଗିଲେ । ମୀରଟରୁ ମଧ୍ୟ ଆଉ କୌଣସି ପ୍ରକାର ଗୋଲମାଲ ସମ୍ବାଦ ଆସିଲା ନାହିଁ । ଏଥିକୁ କେନିଂବାହାଦୁର ବିଚାର କଲେ, ବୋଧ କରୁଁ ଈଶ୍ବରଙ୍କ ପ୍ରସାଦରୁ ସିପାହିମାନଙ୍କ ମନରୁ ମନୋମାଳିନ୍ୟ ଅନ୍ତର୍ହିତ ହୋଇଅଛି । କିନ୍ତୁ କେନିଂବାହାଦୁରଙ୍କର ଏହି ଆଶା ଦୀର୍ଘକାଳସ୍ଥାୟିନୀ ହୋଇ ପାରିଲା ନାହିଁ । ଅଯୋଧ୍ୟାର କମିଶନର ହେନେରି ଲରେନ୍ସ ସାହେବ ଗବର୍ଣ୍ଣର ଜେନେରଲଙ୍କୁ ଲେଖିଲେ "ଆମ୍ଭେ ଦେଖିଅଛୁଁ ଏ ସ୍ଥାନର ସିପାହିମାନଙ୍କର ମନ ନିତାନ୍ତ ବିଗଡ଼ି ଯାଇଅଛି ଓ ଅଧିକାଂଶ ସିପାହି ପ୍ରକାଶ୍ୟ ବିଦ୍ରୋହରେ ପ୍ରବୃତ୍ତ ହୋଇଥିଲେ ଓ କେତେକ ଜଣ ସିପାହି ଅସ୍ତ୍ର ଶସ୍ତ୍ର ଘେନି ଲେଫ୍‌ଟନେଣ୍ଟ ମିକାମକୁ ବଧ କରିବାକୁ ଯାଇଥିଲେ କିନ୍ତୁ ସେ ସାହସିକତା ଦେଖାଇ ଆତତାୟିମାନଙ୍କ ହସ୍ତରୁ ମୁକ୍ତି ଲାଭ କରିଅଛନ୍ତି । ଆମ୍ଭେ ପ୍ରକାଶ୍ୟବିଦ୍ରୋହରେ ପ୍ରବୃତ୍ତ ସିପାହିମାନଙ୍କୁ ପଦଚ୍ୟୁତ କରିଅଛୁଁ, ମାତ୍ର ଦେଖୁଅଛୁଁ ଅଯୋଧ୍ୟାର ବିପଦ ଦୂରବର୍ତ୍ତୀ ନୁହଇ ।" ହେନେରି ଲରେନ୍ସ ଉଲ୍ଲିଖିତ କଥା ସକଳ ଆଗରାର ଲେଫ୍‌ଟନେଣ୍ଟ ଗବର୍ଣ୍ଣର କଲଭିନଙ୍କୁ ମଧ୍ୟ ଜଣାଇଁ ଲେଖିଲେ ଯେ, ଆପଣ ଦୁର୍ଗ ସଂକଳ ସୁରକ୍ଷିତ କରନ୍ତୁ । କିନ୍ତୁ ଉପଯୁକ୍ତ ସମୟରେ ପତ୍ର ନ ପହୁଞ୍ଚିବାରୁ ସେ କୌଣସି ଚେଷ୍ଟା କରି ପାରିଲେ ନାହିଁ ।

୧୮୫୭ ସାଲ ମେମାସ ତା ୧୦ ରିଖରେ ମୀରଟର ସିପାହିମାନେ ପ୍ରକାଶ୍ୟ ବିଦ୍ରୋହରେ ପ୍ରବୃତ୍ତ ହେଲେ ଓ କି ସ୍ତ୍ରୀ କି ବାଳକ କି ପୁରୁଷ ଇଂରେଜ ଦେଖିବା ମାତ୍ର ବଧ କରିବାକୁ ଲାଗିଲେ । ଅବିଳମ୍ବରେ ମୀରଟଠାରୁ ଦିଲ୍ଲି ପର୍ଯ୍ୟନ୍ତ ସମସ୍ତ ସ୍ଥାନ ବିଦ୍ରୋହିମାନଙ୍କର ହସ୍ତଗତ ହେଲା, ଦିଲ୍ଲିସ୍ଥ ସେନାମାନେ ମଧ୍ୟ ସେମାନଙ୍କ ସଙ୍ଗରେ ମିଳିତ ହେଲେ । ଦିଲ୍ଲିର ବାଦସାହା ଲେଫ୍‌ଟନେଣ୍ଟ ଗବର୍ଣ୍ଣର କଲଭିନଙ୍କୁ ଲେଖିଲେ "ଆମ୍ଭ ନଗର ଓ ଦୁର୍ଗ ବିପକ୍ଷମାନଙ୍କର ହସ୍ତଗତ ହୋଇଅଛି, ଆମ୍ଭେ ମଧ୍ୟ ସେମାନଙ୍କ ହସ୍ତରେ ପଡ଼ିଅଛୁଁ ଓ ଅତ୍ରତ୍ୟ କମିଶନର ଓ ଅନ୍ୟାନ୍ୟ ଭଦ୍ର ଇଂରେଜମାନେ ନିଧନପ୍ରାପ୍ତ ହୋଇଅଛନ୍ତି ।" ମାତ୍ର ଅଳ୍ପକାଳ ଉତ୍ତାରେ ପ୍ରକାଶ ପାଇଲା ଯେ, ବାଦସାହା ବିଦ୍ରୋହିଙ୍କର ପୋଷକତା କରୁ-

ଅଛନ୍ତି । ପୁରାତନ ମୋଗଲପତାକା ପୁନର୍ବାର ଉତ୍ତୋଳିତ ହୋଇଅଛି । ବିଦ୍ରୋହୀମାନେ ଇଂରେଜ ଦେଖିବା ମାତ୍ର ବଧ କରୁଅଛନ୍ତି । ମଧ୍ୟ ବାଦସାହା ଭାରତବର୍ଷୀୟ ରାଜା ଓ ସର୍ବସାଧାରଣଙ୍କୁ ସମ୍ବୋଧନ କରି ଯେଉଁ ଘୋଷଣାପତ୍ର ପ୍ରଚାର କରି-ଅଛନ୍ତି ତାହାର ମର୍ମ ଏହି;—

"ଦିଲ୍ଲୀର ବାଦସାହା ସର୍ବସାଧାରଣଙ୍କୁ ଜଣାଉଅଛନ୍ତି ଯେ ଇଂରେଜମାନେ ଧର୍ମ ନାଶକ । ସେମାନେ ପୂର୍ବେ ବାଇବଲ ବାଣ୍ଟୁଥିଲେ, ଏତେବେଳେ ବିଧବା-ବିବାହ ଦେବାକୁ ଆରମ୍ଭ କରିଅଛନ୍ତି । ସହମରଣ ପ୍ରଥା ଉଠାଇ ଦେଇଅଛନ୍ତି । ଚେନି ଓ ମଇଦାରେ ଗବାସ୍ଥିର ଚୂର୍ଣ୍ଣ ମିଶାଇଅଛନ୍ତି । ନାଗପୁର ପ୍ରତି ଦୃଷ୍ଟିପାତ କରି ଦେଖ, ଦତ୍ତକ ପୁତ୍ର ରାଜ୍ୟାଧିକାରୀ ହେବାର ନାହିଁ । ଏଥିକୁ ଇଂରେଜ-ମାନେ ଆଉ କିଛିକାଳ ଭାରତବର୍ଷରେ ରହିଲେ ଧର୍ମର ନାମ ଆଉ ଶୁଣା ଯିବ ନାହିଁ । ଗୋବଧ ହିନ୍ଦୁଧର୍ମ ମତରେ ଅତ୍ୟନ୍ତ ନିଷିଦ୍ଧ; ଆମ୍ଭେ ଧର୍ମ ସାକ୍ଷୀ କରି କହୁଅଛୁଁ, ଯଦି ହିନ୍ଦୁ ରାଜାମାନେ ଇଂରେଜମାନଙ୍କୁ ଦୂର କରି ଦେବେ, ଆମ୍ଭେ ଭାରତବର୍ଷରୁ ଗୋହତ୍ୟା ଏକାବେଳକେ ଉଠାଇ ଦେବୁଁ । ଆଉ ଯେ ସକଳ ମୁସଲମାନ ଗୋମାଂସ ଭକ୍ଷଣ କରିବେ ସେମାନଙ୍କୁ ଶୂକରଖାଦକ ବୋଲି ଘୃଣା କରାଯିବ । ଇଂରେଜମାନେ ପ୍ରତାରକ, ବିଶ୍ୱାସଘାତକ । ଆମ୍ଭେ ହିନ୍ଦୁମାନଙ୍କୁ ଗଙ୍ଗା ଓ ଶାଳଗ୍ରାମର ଦୋହାଇ ଦେଇ କହୁଅଛୁଁ ସେମାନେ ମିଳିତ ହୋଇ ଦୁରାଚାର ଇଂରେଜମାନଙ୍କୁ ଭାରତବର୍ଷରୁ ଦୂର କରି ଦେଉନ୍ତୁ ଏମନ୍ତ ଦିନ ଆଉ ମିଳିବ ନାହିଁ" ।

ଇଂରେଜମାନଙ୍କର ସୌଭାଗ୍ୟର ବିଷୟ ବୋଲିବାକୁ ହେବ ଯେ କେନିଂ ବାହାଦୁର ସେ ସମୟରେ ଗବର୍ଣ୍ଣରଜେନେରଲ ପଦରେ ନିଯୁକ୍ତ ଥିଲେ । ତାଦୃଶ ଧୈର୍ଯ୍ୟଶୀଳ ଓ ସାହସୀ ଗବର୍ଣ୍ଣରଜେନେରଲ ନ ଥିଲେ ହୁଏତ ସେହି ଯାତ୍ରାରେ ଇଂରେଜମାନଙ୍କୁ ଭାରତବର୍ଷର ଆଶା ତ୍ୟାଗ କରିବାକୁ ହୋଇଥାନ୍ତା । ଦିଲ୍ଲୀ ଓ ମୀରଟର ଘୋର ବିପଦବାର୍ତ୍ତା କଲିକତାର କୌନ୍‌ସିଲର ଗୃହରେ ଉପସ୍ଥିତ ହୁଅନ୍ତେ କେନିଂ ବାହାଦୁର ମୁଦ୍ରାଯନ୍ତ୍ରର ସ୍ୱାଧୀନତା ରହିତ କରିବାର ଷଣ୍ଡିଏ ଆଇନ ପ୍ରଚାର କରିଦେଲେ । ବିଦ୍ରୋହଆକୁଳିତ ଦେଶମାନଙ୍କରେ ସାମରିକ ଆଇନ ପ୍ରଚଳିତ କରିଦେଲେ । ମଧ୍ୟ ବୋମ୍ବେ ଓ ମାନ୍ଦ୍ରାଜରୁ ସେନା ଆଣିବା କାରଣ ଉପାୟ ଚିନ୍ତା କରିବାକୁ ଲାଗିଲେ । ପ୍ରଥମରେ ଆଉଟରାମ୍ ସେନା ତାହାଙ୍କର ଲକ୍ଷ ହେଲା । ସେ ସମୟରେ ସେ ପାରସ୍ୟ ରାଜାଙ୍କ ସହିତ ସନ୍ଧି କରି ଫେରି ଆସୁଥିଲେ । କେନିଂ ବାହାଦୁର ତାହାଙ୍କୁ ଲେଖିଲେ ଆପଣ ଯେତେ ଶୀଘ୍ର ପାରନ୍ତି ସୈନ୍ୟ ସହିତ ଫେରି ଆସିବେ । ସୌଭାଗ୍ୟକ୍ରମେ ଅନ୍ୟ ଦିଗରୁ ମଧ୍ୟ

ସାହାଯ୍ୟ ପାଇବାର ସୁଯୋଗ ଘଟିଲା । ଲର୍ଡ ଏଲଗିନ ନାମକ ଜଣେ ସେନାପତି ଥୋକାଏ ସୈନ୍ୟ ଘେନ ଇଂଲଣ୍ଡୀୟ ଗବର୍ଣ୍ଣମେଣ୍ଟଙ୍କ ଆଦେଶମତେ ଚୀନାଧିପତିଙ୍କ ସହିତ ଯୁଦ୍ଧ କରିବାକୁ ଯାଉଥିଲେ । ଲର୍ଡ କେନିଂ ତାହାଙ୍କୁ ଲେଖିଲେ ଯେତେ ଶୀଘ୍ର ସମ୍ଭବ ଆପଣ ଆସି ଆମ୍ଭର ସାହାଯ୍ୟ କରନ୍ତୁ; ସେଥି ପାଇଁ ଇଂଲଣ୍ଡୀୟ ଗବର୍ଣ୍ଣମେଣ୍ଟ ଯଦି ଆପଣଙ୍କୁ କିଛି ବୋଲନ୍ତି ତେବେ ଆମ୍ଭେ ସେ ବିଷୟରେ ଜବାବଦିହି ହେବୁଁ । ଆମ୍ଭେ ପାଲ୍ଟି ଉଦ୍ଧାର ପାଇଁ ଆପଣଙ୍କୁ ଡାକୁ ନାହୁଁ । ତାହାର ଗୁରଅଡ଼େ ଯେ ସେନାମାନେ ଅଛନ୍ତି ସେ ସକଳ ସେ ସ୍ଥାନରେ ମିଳିଲେ କାହାର ସାଧ୍ୟ ଯେ ପାଲ୍ଟି ଉଦ୍ଧାର ନିବାରଣ କରିବାକୁ ପାରେ । ଏବେ ଆଗ୍ରାଠାରୁ ଏଣିକି ସେନାମାନେ କପରି ଅବସ୍ଥାରେ ଅଛନ୍ତି, କୌଣସି ସମ୍ବାଦ ନିଅାଯାଇ ନାହିଁ, ସେମାନଙ୍କ ମଧ୍ୟରୁ ଯଦି ଗୋଟିଏ ରେଜିମେଣ୍ଟ ମୁଣ୍ଡ ଟେକିବେ ତେବେ ବିଷମ ବିପଦ ଉପସ୍ଥିତ ହେବ । ଆମ୍ଭର କାର୍ଯ୍ୟ ସମାଧା ହେଲେ ଦଣ୍ଡେ ସୁଦ୍ଧା ଆପଣଙ୍କୁ ଅଟକାଇବୁଁ ନାହିଁ ।

ଏଥି ପୂର୍ବେ ଲର୍ଡ କେନିଂ ବିଦ୍ରୋହ ସମ୍ବାଦ ଥରେ ଇଂଲଣ୍ଡକୁ ପଠାଇ-ଥିଲେ । ବର୍ତ୍ତମାନ ପୁନର୍ବାର ଲେଖିଲେ, କେତେକ ଜଣ ମନ୍ଦଲୋକ ଓ ବ୍ରାହ୍ମଣ ଇଂରେଜମାନେ ସମସ୍ତଙ୍କର ଜାତି ମାରିବାକୁ ବସିଅଛନ୍ତି ଏହି କଥା ଉଠାଇ ଦେବାରୁ ଏହି ବିଦ୍ରୋହ ଘଟନା ଘଟିଅଛି । ମେ ମାସ ତା ୧୮ ରିଖରେ ପାଲ୍ଟି ଓ ମୀରଟର ବିଦ୍ରୋହର ସମ୍ବାଦ କାନପୁରରେ ପହଞ୍ଚିଲା । ତେତେବେଳେ ସେନାପତି ହୁଇଲରଙ୍କ ଅଧୀନରେ ଦେଢ଼ଶତ ଇଉରୋପୀୟ ସେନା ଓ ଗୁରପଲଟନ ସିପାହି ଥିଲେ । ତା ୧୬ ରିଖ ରାତ୍ରୀରେ ନିଅାଁ ଲାଗି ପ୍ରଥମ ରେଜିମେଣ୍ଟ ବାସଶ୍ରେଣୀ ପୋଡ଼ି ଯିବାରୁ ସେନାପତି କେତେ ଗୁଡ଼ିଏ କମାଣ ବସାଇ ବାରିକ ଦୃଢ଼ୀଭୂତ କଲେ ଓ ଇଉରୋପୀୟ ରମଣୀ ଓ ଖ୍ରୀଷ୍ଟ ବଣିକମାନଙ୍କୁ ବାରିକ ମଧ୍ୟରେ ଆଶ୍ରୟ ପ୍ରଦାନ କଲେ ।

ଏହି ଗୋଲମାଲ ସମୟରେ ନାନା ସାହେବ ବିଠୁରନଗରରେ ବାସ କରୁଥିଲେ । ବିଠୁର କାନପୁରର ନିକଟବର୍ତ୍ତୀ ଅଟେ । ନାନାସାହେବ କାନପୁରରେ ବିଦ୍ରୋହର ପୂର୍ବଲକ୍ଷଣ ଦେଖି ତିଳିତ୍ୟ ମାଜିଷ୍ଟ୍ରେଟ ସାହେବଙ୍କୁ ଲେଖିଲେ, ଆମ୍ଭର ୫ ଶତ ସେନା ଓ ଦୁଇଟା କମାଣ ଅଛି, ଆପଣଙ୍କର ଆବଶ୍ୟକ ହେଲେ ଆମ୍ଭେ ସାହାଯ୍ୟ କରିବାକୁ ପ୍ରସ୍ତୁତ ଅଛୁଁ । ନାନା ସାହେବଙ୍କପ୍ରତି ଇଂରେଜମାନଙ୍କର କୌଣସିପ୍ରକାର ଅବିଶ୍ୱାସ ନ ଥିଲା । ତେଣୁ ମାଜିଷ୍ଟ୍ରେଟ କାନପୁରର ଧନାଗାର ରକ୍ଷାର ଭାର ନାନା ସାହେବଙ୍କପ୍ରତି ଅର୍ପଣ କଲେ । ଧନାଗାର ନାନାସାହେବଙ୍କ

ପର ନିକଟରେ ଥିଲା । ସେ ସେସ୍ଥାନକୁ ଗୋ ୨ ଟା କମାଣ ଓ ୨ ଶତ ସିପାହୀ ପଠାଇ ଦେଲେ ।

ତା ୨୬ ରିଖରେ ଅଯୋଧ୍ୟାର କମିଶନର ଲରେନ୍‌ସଙ୍କ ପ୍ରେରିତ ୨ସ୍ୟ ଫଶ୍ୟକ ରେଜିମେଣ୍ଟ କାନପୁରରେ ପହୁଞ୍ଚିଲେ, ସେନାପତି ହୁଇଲାର ସେମାନଙ୍କ ପ୍ରତି ସନ୍ଦିହାନ ହୋଇ ସେମାନଙ୍କୁ ଫତେପୁରକୁ ପଠାଇଦେଲେ; ମାତ୍ର ସେମାନେ ମାର୍ଗମଧ୍ୟରେ ବିଦ୍ରୋହୀ ହୋଇ ସଙ୍ଗୀ ଇୟୁରୋପୀୟ କର୍ମଚାରୀମାନଙ୍କୁ ବଧ କଲେ । କାନପୁରରେ ଦୁର୍ଗ ନ ଥିଲା । ସେନାପତି ହୁଇଲାର ବଘର ନିକଟବର୍ତ୍ତୀ ଦେଖି ବାରକକୁ ପରିଖାବେଷ୍ଟିତ କଲେ ଓ ଇୟୁରୋପୀୟମାନଙ୍କୁ ସେଠାରେ ବାସ କରିବାକୁ ଆଦେଶ ପ୍ରଦାନ କଲେ । କାନପୁରରେ ସ୍ତ୍ରୀ ପୁରୁଷ ବାଳକସବୁ ପ୍ରାୟ ୨୫୦ ଇୟୁରୋପୀୟ ଥିଲେ ।

ଜୁନ ମାସ ତା ୪ ରିଖରେ ଏକମାସର ଆହାର ସାମଗ୍ରୀ ଓ ଲକ୍ଷେ ଟଙ୍କା ବାରକକୁ ନିଆ ଗଲା, ତେତେବେଳଯାଏ ମଧ୍ୟ ୯ ଲକ୍ଷ ଟଙ୍କା ଧନାଗାରରେ ବାକି ରହି ଗଲା । ତା ୭ ରିଖ ଜୁନ ରାତି ୨ଟା ସମୟରେ ସିପାହୀମାନେ ପ୍ରକାଶ୍ୟ ବିଦ୍ରୋହରେ ପ୍ରବୃତ୍ତ ହେଲେ, ପ୍ରଥମେ ସେମାନେ ଧନାଗାରକୁ ଗଲେ । ରକ୍ଷୀ-ସେନାମାନେ ସେମାନଙ୍କୁ କିଛି ବୋଲିଲେ ନାହିଁ; ତେଣୁ ସହଜରେ ସମସ୍ତ ଟଙ୍କା ଲୁଠ ହୋଇ ଗଲା । ବିଦ୍ରୋହୀମାନେ ଧନାଗାରରୁ ବାହାରି କାରାଗାରକୁ ଗଲେ, ସେସ୍ଥାନରୁ କୟେଦିମାନଙ୍କୁ ଖଲାସ କରି ଦେଲେ । ପରେ ସମସ୍ତ ଅଫିସ ପୋଡି ପକାଇଲେ । ତହିଁଉତ୍ତାରେ ଦିଲ୍ଲୀ ଯିବା ମାନସରେ କଲ୍ୟାଣପୁର ନାମକ ସ୍ଥାନରେ ଯାଇ ଛାଉଣି କଲେ ।

ଏତେବେଳେ ନାନା ସାହେବ ସମୟ ବୁଝି ଛଦ୍ମବେଶ ପରିତ୍ୟାଗପୂର୍ବକ ବିଦ୍ରୋହୀମାନଙ୍କ ନିକଟକୁଯାଇ କହିଲେ, ତୁମ୍ଭେମାନେ ଫେରିଆସ ଓ କାନପୁରସ୍ଥ ଦୁର୍ବୃତ୍ତ ଇଂରେଜମାନଙ୍କୁ ବଧ କର । କାନପୁର ହସ୍ତଗତ ହେଲା ଉତ୍ତାରେ ଯେସ୍ଥାନକୁ ଇଚ୍ଛା ଗମନ କରିବ । ବିଦ୍ରୋହୀମାନେ ନାନା ସାହେବଙ୍କ କଥାରେ ସମ୍ମତ ହେବାରୁ ସେ ସେମାନଙ୍କ ସଙ୍ଗରେ ପୁଣି କାନପୁରକୁ ଫେରି ଆସିଲେ ଓ ସେନାପତି ହୁଇଲାରଙ୍କୁ ଲେଖିଲେ ଆମ୍ଭେ ତୁମ୍ଭକୁ ଆକ୍ରମଣ କରିବାକୁ ଆସିଅଛୁଁ, ତୁମ୍ଭେ ପ୍ରସ୍ତୁତହୁଅ । ତେତେବେଳେ ହଠାତ୍ ଇଂରେଜମାନଙ୍କର ଚୈତନ୍ୟୋଦୟ ହେଲା; ମାତ୍ର ଆତ୍ମରକ୍ଷା କରିବାବିଷୟରେ ପ୍ରସ୍ତୁତ ହେବା ପାଇଁ ଅବସର ପାଇଲେ ନାହିଁ । କାରଣ ନାନାଙ୍କ ପକ୍ଷ ପଛେ ୨ ଗୋଳାବଳୀ ଗମନ କରିବାକୁ ଲାଗିଲା । ପ୍ରଥମଦିନରେ ଉଭୟପକ୍ଷରୁ ଘୋର ଯୁଦ୍ଧ ହେଲା; ମାତ୍ର କାହାରି ବିଛୁ କ୍ଷତି ହେଲା ନାହିଁ । ତହିଁ ପରଦିନ କାନପୁର ସହର ସମ୍ପୂର୍ଣ୍ଣରୂପେ

ନାନାସାହେବଙ୍କ ହସ୍ତଗତ ହେଲା । ବିଦ୍ରୋହୀମାନେ ବାରକର ନିକଟବର୍ତ୍ତୀ ହୋଇ ଭୟାନକରୂପେ ଆକ୍ରମଣ କଲେ । ବକଡ଼ା ମାସ ଜଳଧାର ପରି ଗୋଳା ବୃଷ୍ଟି ଅବରୁଦ୍ଧମାନଙ୍କ ଉପରେ ପଡ଼ିବାକୁ ଲାଗିଲା । ଅବରୁଦ୍ଧମାନଙ୍କ ମଧ୍ୟରୁ ପ୍ରାୟ ଶତାଧିକ ଲୋକ ପ୍ରାଣତ୍ୟାଗ କଲେ । ସ୍ତ୍ରୀ ଓ ଅଶକ୍ତ ଲୋକମାନେ ପାଗଳ ହୋଇ ଗଲେ; ତଥାପି ଇଂରେଜମାନେ ଜୁନ ତା ୨୭ ରିଖପର୍ଯ୍ୟନ୍ତ ଆତ୍ମରକ୍ଷା କରିଥିଲେ । ସେହି ଦିବସ ପ୍ରାତଃକାଳରେ ନାନା ସାହେବ ଇଂରେଜମାନଙ୍କ ନିକଟରେ ପ୍ରସ୍ତାବ କଲେ, ଯେଉଁମାନେ ଡେଲହାଉସୀଙ୍କ କାର୍ଯ୍ୟରେ ଲିପ୍ତ ନ ଥିଲେ ସେମାନେ ଅସ୍ତ୍ର ତ୍ୟାଗ କରି ଆମ୍ଭ ଶରଣାପନ୍ନ ହେଲେ ଆମ୍ଭେ ସେମାନଙ୍କ ଏଲାହାବାଦରେ ପହଞ୍ଚାଇ ଦେବୁଁ । ବାରକ ଆଶ୍ରୟୀ ଇଂରେଜମାନେ ଘୋର ବିପଦରେ ପଡ଼ିଥିଲେ, ବିଶେଷରେ ସେନାପତି ହୁଇଲାର ଏମନ୍ତ ଆଘାତ ପ୍ରାପ୍ତ ହୋଇଥିଲେ ଯେ ତାହାଙ୍କର ବଞ୍ଚିବାର ସମ୍ଭାବନା ନ ଥିଲା; ତେଣୁ ଇଂରେଜମାନେ ଉପାୟାନ୍ତର ନ ଦେଖି ନାନା ସାହେବଙ୍କ ପ୍ରସ୍ତାବରେ ସମ୍ମତ ହେଲେ । ଅବିଲମ୍ବେ ଖ ୩୦ ଣ୍ଡ ନୌକା ଅଣାଗଲା । ହତାବଶିଷ୍ଟ ଇଉରୋପୀୟମାନେ ଜୁନ ତା ୨୭ ରିଖରେ ଏଲାହାବାଦ ଯିବାମାନସରେ ବାରକରୁ ବାହାରିଲେ । ଏତେବେଳେ ନାନା ବିଶ୍ୱାସଘାତକତା କରିବାର ଅବସରପାଇଲେ । ନାଉଡ଼ିମାନେ ନୌକାତଳ କଣା କରି ଦେଇ ଅଡ଼ିକୁ ପଳାଇଆସିଲେ । ଉପରରୁ ଅବିରଳ ଗୋଳା ବୃଷ୍ଟି ହେବାକୁ ଲାଗିଲା । ୨୮ ଖଣ୍ଡ ନାବ ତତ୍କ୍ଷଣାତ୍ ପୋଡ଼ିଗଲା, ଅବଶିଷ୍ଟ ୨ ଖଣ୍ଡ ମଧ୍ୟରୁ ଖଣ୍ଡେ କେତେ ଦୂର ଯାଇ ଡୁବିଗଲା । ବାକି ଖଣ୍ଡେ ସୂର୍ଯ୍ୟପୁର ନାମକ ସ୍ଥାନରେ ଝାପ୍ତରେ ଲାଗିଗଲା ; ସେ ସ୍ଥାନରେ ନାନାଙ୍କ ସେନାମାନେ ଉପସ୍ଥିତ ହୋଇ ଆରୋହୀମାନଙ୍କୁ ବଧ କଲେ । କେବଳ ଜଣେ ଆରୋହୀ ଅକ୍ଷତ ଶରୀରରେ ୩।୪କୋଶ ପହଁରି ଯାଇ କୂଳରେ ଲାଗିଲା । ସେସ୍ଥାନରେ ମିତ୍ରରାଜ ଦିଗ୍‌ବିଜୟ ସିଂହଙ୍କର ୨ ଜଣ ସିପାହି ତାହାକୁ ରାଜାଙ୍କ ନିକଟକୁ ଘେନି ଗଲେ । ରାଜା ସେହି ହତଭାଗ୍ୟ ଇଂରେଜକୁ ଦେଖି ଅତ୍ୟନ୍ତ ଦୁଃଖିତ ହେଲେ ଓ ତାହାକୁ ସବଳ କରାଇ ମାସକ ଉତ୍ତାରେ ଏଲାହାବାଦକୁ ପଠାଇ ଦେଲେ ।

ଏଣେ ନାନାଙ୍କ ସେନାମାନେ କାନପୁରସ୍ଥ ଅବଶିଷ୍ଟ ଇଂରେଜମାନଙ୍କୁ ବଧ କରିବାକୁ ଲାଗିଲେ । ପରେ କେତେକ୍ଷଣ ଉତ୍ତାରେ ନାନାସାହେବଙ୍କ ଭ୍ରାତା ହତ୍ୟାକାଣ୍ଡ ରହିତକରି ଦେଲେ ଓ ସ୍ତ୍ରୀ ଓ ବାଳକମାନଙ୍କୁ ବିବିଘର ନାମକ ଗୋଟିଏ ବୃହତ୍ ଘରକୁ ଘେନି ଗଲେ ।

କାନପୁର ବିଦ୍ରୋହ ବୃତ୍ତାନ୍ତ ଏଲାହାବାଦରେ ପହୁଞ୍ଚନ୍ତେ ଜେନେରଲ ହ୍ୟାବଲକ ସସୈନ୍ୟେ କାନପୁର ଅଭିମୁଖେ ଯାତ୍ରା କଲେ । ମାର୍ଗ ମଧ୍ୟରେ

ଅନେକ ଶୋଚନୀୟ କାଣ୍ଡ ତାହାଙ୍କର ଦୃଷ୍ଟି ଗୋଚର ହେଲା । ଅନେକ ଗ୍ରାମ ଜନଶୂନ୍ୟ, ବହୁଦୂର ପର୍ଯ୍ୟନ୍ତ କୌଣସି ଲୋକ ତାହାଙ୍କର ଦୃଷ୍ଟିଗୋଚର ନ ହେଲା, ହ୍ୟାବଲକ ଜୁଲାଇ ମାସ ତା ୧୬ ତାରିଖରେ କାନପୁର ନିକଟରେ ପ୍ରଥମ ଯୁଦ୍ଧ ଆରମ୍ଭ କଲେ । ପ୍ରଥମ ଯୁଦ୍ଧରେ ବିଦ୍ରୋହୀମାନେ ପରାସ୍ତ ହୋଇ ଛିନ୍ନଭିନ୍ନ ହୋଇ ପଳାୟନ କଲେ । ନାନା ସାହେବ ଏହି ସମ୍ବାଦ ପାଇ ଅତ୍ୟନ୍ତ ଭଗ୍ନୋତ୍ସାହ ହେଲେ ଓ ଯେ ସକଳ ଇଂରେଜ ତାହାଙ୍କ ହସ୍ତରେ ପଡ଼ି ଇତ୍‌କାଳ ପର୍ଯ୍ୟନ୍ତ ଜୀବିତଥିଲେ ସେମାନଙ୍କୁ ବଧକରିବା କାରଣ ଆଦେଶ ପ୍ରଦାନ କଲେ । ତଦନୁସାରେ ସନ୍ଧ୍ୟାସମୟରେ ହତ୍ୟାକାଣ୍ଡ ଆରମ୍ଭ ହେଲା । ସିପାହୀମାନେ ପୂର୍ବୋକ୍ତ ବନ୍ଦିଘରରୁ ସ୍ତ୍ରୀ ଓ ବାଳକମାନଙ୍କୁ ବାହାର କରିବା ପାଇଁ ଅନେକ ଚେଷ୍ଟା କଲେ; ମାତ୍ର ସେମାନେ ଏମନ୍ତ ଥରଥର ହୋଇ ରହିଲେ ଯେ, ଶତ୍ରୁମାନେ କୌଣସି ପ୍ରକାରେ ସେମାନଙ୍କୁ ବାହାର କରି ପାରିଲେ ନାହିଁ । ଅବଶେଷରେ ନାନାଙ୍କ ରାକ୍ଷସ ସେନାମାନେ ଖିଡ଼ିକିବାଟେ ଗୁଳି ମାରିବାକୁ ଲାଗିଲେ । ବାଳକମାନଙ୍କର ଚୀତ୍କାର, ସ୍ତ୍ରୀମାନଙ୍କର ଆର୍ତ୍ତନାଦ, ମୁମୂର୍ଷୁମାନଙ୍କର ହୃଦୟଭେଦୀ ଅବ୍ୟକ୍ତ ଶବ୍ଦ ଓ ଧାର୍ମିକମାନଙ୍କର ଈଶ୍ୱର ସ୍ତବର କରୁଣସ୍ୱର ମିଳିତ ହୋଇ କେତେକକ୍ଷଣ ଆକାଶବାୟୁକୁ ଆକୁଳିତ କରିଥିଲା । ନରପିଶାଚମାନଙ୍କ ହସ୍ତରୁ ଯେ ୨।୪ ପ୍ରାଣୀ ରକ୍ଷା ପାଇଲେ, ( ସେମାନଙ୍କ ସହୋଦର ) ଘାତକମାନେ ଯାଇ ଖଡ୍ଗଦ୍ୱାରା ସେମାନଙ୍କୁ ଖଣ୍ଡ ୨ କରି ପକାଇଲେ । ଏହିରୂପେ ବନ୍ଦିଘରେ ଅବରୁଦ୍ଧମାନଙ୍କର ଦୁଃଖାନଳ ରକ୍ତ ସ୍ରୋତରେ ନିର୍ବାପିତ ହୋଇଗଲା । ପରଦିନ ଉଷା ସମୟରେ ନାନା ସାହେବଙ୍କ ଆଦେଶମତେ ବନ୍ଦିଘରସ୍ଥ ଶବଶ୍ରେଣି ସମୀପବର୍ତ୍ତୀ ଗୋଟାଏ କୂପରେ ନିକ୍ଷିପ୍ତ ହେଲା । ଏଉତ୍ତାରେ ନାନା ସାହେବ କାନପୁରର ଅସ୍ତ୍ରଶାଳା ତୋପରେ ଉଡ଼ାଇ ଦେଇ ପଳାୟନ କଲେ ।

ହ୍ୟାବଲକ ଜୁଲାଇ ତା ୧୭ ରିଖରେ କାନପୁର ପୁନରଧିକାର କଲେ । ତାହାଙ୍କ ସେନାମାନେ ବାଟରେ ଯୁଦ୍ଧକରି ଅତ୍ୟନ୍ତ କ୍ଳାନ୍ତ ହୋଇଥିଲେ, ଏଥିପାଇଁ ସେମାନଙ୍କ ବିଶ୍ରାମ ସଙ୍କାଶେ ଦୁଇଦିନ ଅବଶ୍ୟକ ହେଲା । ଜୁଲାଇ ୧୯ ତାରିଖରେ ହ୍ୟାବଲକ ବିଠୁର ଯାତ୍ରା କଲେ । ଏଥିପୂର୍ବରୁ ତାହାଙ୍କର ମାର୍ଗ ନିଷ୍କଣ୍ଟକ ହୋଇ ଥିଲା, କାରଣ ପାଷଣ୍ଡ ନାନା ସପରିବାରରେ ପଳାୟନ କରିଥିଲେ । ହ୍ୟାବଲକ ବିଠୁରରେ ଉପସ୍ଥିତ ହୋଇ ଅନାୟାସରେ ନାନାଙ୍କଘର ଭୂମିସାତ୍ କରି ପକାଇଲେ ଓ ବିଠୁରର ଅସ୍ତ୍ରଶାଳା ଉଡ଼ାଇ ଦେଇ କାନପୁରକୁ ଫେରିଆସିଲେ । ଏସ୍ଥଳରେ ଏହାମଧ୍ୟ ଉଲ୍ଲେଖ କରିବା ଆବଶ୍ୟକ ଯେ, ଶାହାବାଦ ଜିଲ୍ଲାର ଅନ୍ତଃପାତୀ ଜଗଦୀଶପୁରର ଜମିଦାର କୁମାରସିଂହ ନାନାଙ୍କ ସହିତ ମିଳିତ ହୋଇଥିଲେ

ଓ ବିଦ୍ରୋହିମାନଙ୍କ ମଧ୍ୟରେ ଏକ ଜଣେ ପ୍ରସିଦ୍ଧ ବୀରପୁରୁଷ ଅଟନ୍ତି । କୁମାରସିଂହ ଇଂରେଜମାନଙ୍କର ନାନାପ୍ରକାର ବିପକ୍ଷାଚରଣ କରି ଅବଶେଷେ ୧୮୫୮ ସାଲ୍‌ରେ ବର୍ତ୍ତମାନ ବିଦ୍ରୋହାନଳରେ ସ୍ୱୀୟ ଜୀବନ ଆହୁତି ପ୍ରଦାନ କଲେ ।

କତିପୟ ଦିନ ପୂର୍ବେ କେନିଂ ବାହାଦୁର ମାନ୍ଦ୍ରାଜରୁ ସେନା ଆସିବା ପାଇଁ ତାଡ଼ିତବାର୍ତ୍ତାବହ ଦ୍ୱାରା ସମ୍ବାଦ ପଠାଇଥିଲେ । ତଦନୁସାରେ ସେନାପତି ଜେନେରଲ ନୀଲ ସୈନ୍ୟ ସହିତ କଲିକତାରେ ଉପସ୍ଥିତ ହେଲେ; ନୀଲ ଉପସ୍ଥିତ ମାତ୍ର କେନିଂ ବାହାଦୁର ତାହାଙ୍କୁ ବିଦ୍ରୋହଆକୁଳିତ ସ୍ଥାନକୁ ପଠାଇଦେଲେ ।

ଏଣେ କମିଶନର ଲରେନସ ବିଦ୍ରୋହୀ ସେନାମାନଙ୍କୁ ଦଣ୍ଡିତ ଓ ପ୍ରଭୁଭକ୍ତ ସେନାମାନଙ୍କୁ ପୁରସ୍କୃତ କରନ୍ତେ ଲକ୍ଷ୍ନୌରେ ୨ । ୪ ଦିନ ଗୋଳମାଳର କୌଣସି କଥା ଶୁଣା ନ ଗଲା, ମାତ୍ର ପରେ ବିଦ୍ରୋହର ଚିହ୍ନ ଦେଖାଯିବାକୁ ଲାଗିଲା । ରାତିରେ ବିଦ୍ରୋହିମାନେ ସଭାକରିବାକୁ ଲାଗିଲେ ଓ ମୁସଲମାନମାନଙ୍କୁ ହସ୍ତଗତ କରିବାପାଇଁ ବାଟ ଛକରେ ଇସ୍ତାହାର ମାରିବାକୁ ଲାଗିଲେ । କମିଶନର ଲରେନସ ବିଦ୍ରୋହର ପୂର୍ବଲକ୍ଷଣ ଦେଖି ଆତ୍ମରକ୍ଷା ପାଇଁ ଆୟୋଜନ କରିବାକୁ ଲାଗିଲେ । ତନ୍ମଧ୍ୟ ମୃଚ୍ଛଭବନର ଚତୁଃପାର୍ଶ୍ୱରେ କମାଣ ବସାଇ ତାହାକୁ ଦୃଢ଼ୀଭୂତ କଲେ ଓ ସେ ସ୍ଥାନକୁ ଇୟୁରୋପୀୟ ନାରୀ ଓ ଅଶକ୍ତ ଲୋକମାନଙ୍କୁ ଘେନଗଲେ । ସୁଯୋଗ୍ୟ କମିଶନର ଏତିକରି ମଧ୍ୟ ନିରସ୍ତ ହେଲେ ନାହିଁ । ପ୍ରତ୍ୟହ ପ୍ରାତଃକାଳରେ ସେ ଅଶ୍ୱାରୋହଣ ପୂର୍ବକ ନଗର ମଧ୍ୟରେ ଭ୍ରମଣ କରୁଥିଲେ, ସଦୁପଦେଶଦ୍ୱାରା ନାଗରିକମାନଙ୍କୁ ବଶବର୍ତ୍ତୀ କରିବାକୁ ଚେଷ୍ଟା କରୁଥିଲେ, ଯେବେହେଁ ନଗରବାସିମାନେ ତାହାଙ୍କ ସମ୍ମୁଖରେ ଅସନ୍ତୋଷର କୌଣସି ଚିହ୍ନ ପ୍ରକାଶକରୁ ନ ଥିଲେ, ମାତ୍ର ସେମାନଙ୍କ ମନ ସେପରି ନ ଥିଲା । ମେ ମାସ ତା ୩୦ ରଖ ରାତିରେ ପ୍ରକାଶ୍ୟ ବିଦ୍ରୋହ ଆରମ୍ଭ ହେଲା । ପ୍ରଥମରେ ୭୧ ସଂଖ୍ୟକ ରେଜିମେଣ୍ଟ ବାସଶ୍ରେଣୀରୁ ବନ୍ଧୁକର ଶବ୍ଦ ଶୁଣାଗଲା; ଜେନରଲ ହ୍ୟାଣ୍ଡସକୋମ ବନ୍ଧୁକର ଶବ୍ଦ ଶୁଣି ସେସ୍ଥାନକୁ ଦୌଡ଼ି ଗଲେ; କିନ୍ତୁ ଗୁଳିଖାଇ ତତ୍‌କ୍ଷଣାତ ପଞ୍ଚତ୍ୱ ପ୍ରାପ୍ତହେଲେ । ଲେଫ୍‌ଟେନେଣ୍ଟ ଗ୍ରାଣ୍ଟ ପହରାରେ ଥିଲେ ସେମଧ୍ୟ କୋମଙ୍କ ସହଗମନ କଲେ । କମିଶନର ଲରେନ୍‌ସ ଗୋଳମାଳ ଶୁଣି ଘଟନାସ୍ଥଳକୁ ଦୌଡ଼ିଗଲେ ଓ ଥୋକାଏ ଇୟୁରୋପୀୟ ସେନାକୁ ବିଦ୍ରୋହିମାନଙ୍କୁ ଦମନ କରିବାପାଇଁ ଆଦେଶପ୍ରଦାନ କଲେ । ବିଦ୍ରୋହିମାନେ ଭାଙ୍ଗଖାଇ ପାଗଳା ପରି ହୋଇଥିଲେ, ଇୟୁରୋପୀୟ ସେନାମାନଙ୍କୁ ଦେଖିବାମାତ୍ର ଛିନ୍ନଭିନ୍ନ ହୋଇ ପଳାୟନ କଲେ । ଇୟୁରୋପୀୟ ସେନାମାନେ

ଗୋଡ଼ାଇ ଯାଇଁ ସେମାନଙ୍କୁ ମୃଦ୍‌ଗୀରଠାରେ ଛାଡ଼ିଆସିଲେ । ବିଦ୍ରୋହୀମାନଙ୍କ ମଧ୍ୟରୁ ୨।୩ ଜଣ ହତ ଓ ୨୦ ଜଣ ବନ୍ଦୀକୃତ ହେଲେ ।

ପରେ ଲରେନ୍‌ସ କ୍ୟାଣ୍ଟନମେଣ୍ଟ * ଓ ମୂଚିଭବନ ଦୁର୍ଗ ଦୃଢ଼ୀଭୂତ କଲେ ଓ ନଗରମଧ୍ୟରେ ସାଂଗ୍ରାମିକ ଆଇନ ଚଳାଇଦେଲେ । ବିଦ୍ରୋହୀମାନେ ନଗରବାସିମାନଙ୍କ ସହିତ ମିଳିତ ହୋଇ ପୁନର୍ବାର ଇଂରେଜମାନଙ୍କୁ ଆକ୍ରମଣ କଲେ ଓ କ୍ୟାଣ୍ଟନମେଣ୍ଟ ଓ ମୂଚିଭବନ ଦୁର୍ଗଉପରେ ଅଗ୍ନିବୃଷ୍ଟି କରିବାକୁ ଲାଗିଲେ; କିନ୍ତୁ କୌଣସି କ୍ଷତି କରିପାରିଲେ ନାହିଁ । ଲରେନ୍‌ସ ଦେଖିଲେ, ଦୁଇସ୍ଥାନ ରକ୍ଷା କରିପାରିବା ତାହାଙ୍କ ପକ୍ଷରେ ସୁକଠିନ, ତେଣୁ ସେ ମୂଚିଭବନ ଦୁର୍ଗ ଉଡ଼ାଇଦେଇ ତତ୍ରତ୍ୟ ସୈନ୍ୟମାନଙ୍କୁ କ୍ୟାଣ୍ଟନମେଣ୍ଟକୁ ଘେନିଗଲେ । ଏଥିରୁ ବିଦ୍ରୋହୀମାନେ ସାହସୀ ହୋଇ ଜୁଲାଇ ତା ୧ ରିଖରେ ରେସିଡେନ୍‌ସି ଅବରୋଧ କଲେ । କମିଶନର ଲରେନ୍‌ସ ସେହିଦିନ ଆପଣା କୋଠରୀରେ ବସି ଏକ କର୍ମଚାରୀସହିତ କଥୋପକଥନ କରୁଅଛନ୍ତି ଏମନ୍ତ ସମୟରେ ବିପକ୍ଷପକ୍ଷରୁ ଗୋଟିଏ ଗୋଳା ଆସି ତାହାଙ୍କ ନିକଟରେ ପଡ଼ିଲା, ମାତ୍ର ଗୋଳାଟା ଫାଟିବା ପୂର୍ବରୁ ଲରେନସ ସେ ସ୍ଥାନରୁ ପଳେଇ ଗଲେ । ଉକ୍ତ କର୍ମଚାରୀ ତାହାଙ୍କୁ କହିଲା, ଏହି କୋଠରୀ ବିପକ୍ଷମାନଙ୍କର ଲକ୍ଷ ହୋଇଅଛି; ଆପଣ ଅନ୍ୟ କୋଠରୀରେ ବାସ କରନ୍ତୁ; ମାତ୍ର ତେଜସ୍ୱୀ କମିଶନର ସେକଥାରେ କର୍ଣ୍ଣପାତ ମଧ୍ୟ କଲେ ନାହିଁ । ତହିଁ ଆରଦିନ ଆଉ ଗୋଟିଏ ଗୋଳାଆସି ଠିକ ସେହି ସ୍ଥାନରେ ପଡ଼ିଲା ଓ ପଡ଼ିବାମାତ୍ର ଫାଟିଗଲା । ସେଥିରେ ଲରେନସ ଅତ୍ୟନ୍ତ ଆଘାତ ପ୍ରାପ୍ତହେଲେ ଓ ଅତ୍ୟନ୍ତ ଯନ୍ତ୍ରଣା ଭୋଗ କରି ଜୁଲାଇମାସ ତା ୪ ରିଖରେ ପ୍ରାଣତ୍ୟାଗ କଲେ ।

ରେସିଡେନସିବାସୀ ଲୋକମାନେ ଲରେନସଙ୍କ ବୁଦ୍ଧି ଓ କୌଶଳରେ ସମ୍ପୂର୍ଣ୍ଣ ନିର୍ଭର କରୁଥିଲେ, ଏତେବେଳେ ତାହାଙ୍କର ଏମନ୍ତ ଶୋଚନୀୟ ପରିଣାମ ଦେଖି ସମସ୍ତଙ୍କର ଆଶାଭରସା ଏକାବେଳକେ ଉଡ଼ିଗଲା । ବିଦ୍ରୋହୀମାନଙ୍କ ଅତ୍ୟାଚାରରେ ସେମାନଙ୍କର ପ୍ରାଣ ଓଷ୍ଠାଗତ ହୋଇଥିଲା । ଭୃତ୍ୟମାନେ ଥରେ ବାହାରକୁ ଗଲେ ଆଉ ଫେରିଆସନ୍ତି ନାହିଁ । ଆଉ ଅଧିକ ବେତନ ଦେଲେ ମଧ୍ୟ କେହି ଚାକିରି କରିବାକୁ ମଙ୍ଗିଲେ ନାହିଁ । ଏଥିରୁ ରେସିଡେନସିବାସିମାନଙ୍କର ଅତ୍ୟନ୍ତ କଷ୍ଟହେବାକୁ ଲାଗିଲା । ଏତେବେଳେ ରେସିଡେନସିବାସିମାନେ ସର୍ବବିଷୟରେ ନିରାଶହୋଇ କେବଳ ହ୍ୟାବଲକ କାନପୁରରୁ ଆସି ସେମାନଙ୍କୁ ଉଦ୍ଧାରକରିବେ ଏହିଆଶା ଅବଲମ୍ବନ କରି ବିଦ୍ରୋହୀମାନଙ୍କର

* ଯେ ସ୍ଥାନରେ ସେନାମାନେ କ୍ୟାପକଭାବେ ବାସ କରନ୍ତି ।

ଅତ୍ୟାଗ୍ରହ ସହ୍ୟ କରିବାକୁ ଲାଗିଲେ; ମାତ୍ର ବହୁଦିନପର୍ଯ୍ୟନ୍ତ ତାଙ୍କର କୌଣସି ବିଶେଷ ସମ୍ବାଦପାଇଲେ ନାହିଁ । ଏହିରୂପ କଷ୍ଟଦିନ ଗତହେଲା । ସେପ୍ଟେମ୍ବରମାସ ତା ୨୫ ରଖରେ ହ୍ୟାବଲକ୍ ଓ ଅଉଟ୍ରାମ ଦୁଇଜଣ ସସୈନ୍ୟେ ଆସି ଲକ୍ଷ୍ନୌରେ ଉପସ୍ଥିତ ହେଲେ । ସେମାନେ ଉପସ୍ଥିତ ହେବାମାତ୍ର ଅଧିବାସିମାନେ ଛାତ ଠାଉପରୁ ଭୟଙ୍କର ଗୋଳ ଗୋଳା ବର୍ଷଣ କରିବାକୁ ଲାଗିଲେ । ଏଥିରେ ହ୍ୟାବଲକଙ୍କ ଅନେକ ସେନା ଆଘାତ ପ୍ରାପ୍ତ ହେଲେ; ମାତ୍ର ସେମାନେ କୌଣସି ପ୍ରକାରରେ ଫେରିଲେ ନାହିଁ । ଏହିରୂପ ରେସିଡେନ୍‌ସିବାସିମାନଙ୍କର ଦୁଃଖ ଅନେକ ଅଂଶରେ ହ୍ରାସ ହେଲା ସତ୍ୟ; ମାତ୍ର ସେମାନେ ଉଦ୍ଧାର ପାଇ ପାରିଲେ ନାହିଁ; ଯେହେତୁରୁ ଅସଂଖ୍ୟ ବିଦ୍ରୋହୀ ସେମାନଙ୍କୁ ଘେରି ରହିଥିଲେ ଓ ରେସିଡେନ୍‌ସି ମଧ୍ୟରେ ଅନେକ ସ୍ତ୍ରୀ, ବାଳକ ଓ ଅଶକ୍ତଲୋକ ଥିବାରୁ ହ୍ୟାବଲକ ବିଦ୍ରୋହିମାନଙ୍କ ସହିତ ଯୁଦ୍ଧ କରି ପାରିଲେ ନାହିଁ ।

ଏଣେ ଦିଲ୍ଲିସହର ବିଦ୍ରୋହିମାନଙ୍କର ପ୍ରଧାନ ଘାଟିସ୍ଥାନ ଥିଲା । ସେ ସ୍ଥାନରେ ଇୟୁରୋପୀୟ ସେନା ନ ଥିଲେ, ଯେ ସକଳ ଦେଶୀସେନା ଥିଲେ ସେମାନେ ବିଦ୍ରୋହିମାନଙ୍କ ସହିତ ମିଳିତ ହୋଇଥିଲେ, ଲେଫ୍‌ଟେନେଣ୍ଟ ଉଇଲବି ସାହେବ ଦିଲ୍ଲି ଅସ୍ତ୍ରଶାଳାର ଅଧ୍ୟକ୍ଷ ଥିଲେ । ସେ ତାହା ରକ୍ଷା କରିବା, ତାହାଙ୍କ ପକ୍ଷରେ କଠିନ ମଣି ଅଗ୍ନିଦାନ କରି ତାହା ଉଡ଼ାଇ ଦେଲେ; ଦିଲ୍ଲି ବାସୀ, ଯେ କେତେଜଣ ଇୟୁରୋପୀୟ ପୂର୍ବେ ସାବଧାନ ହୋଇଥିଲେ କେବଳ ସେହିମାନେ ରକ୍ଷା ପାଇଲେ, ଅବଶିଷ୍ଟମାନଙ୍କୁ ବିଦ୍ରୋହିମାନେ ବଧ କଲେ । ଅବସର ଦେଖି ମୋଗଲ ସମ୍ରାଟ୍ ସିଂହାସନାରୋହଣ କଲେ ଓ ଜୟପତାକା ଉଡାଇଲେ । ପ୍ରଧାନ ସେନାପତି ଦିଲ୍ଲି ଉଦ୍ଧାର ମାନସରେ ସସୈନ୍ୟେ ଆସୁଥିଲେ; ମାତ୍ର ଦୁର୍ଭାଗ୍ୟ ପ୍ରଯୁକ୍ତ ମାର୍ଗ ମଧ୍ୟରେ ଓଲାଉଠାରୋଗାକ୍ରାନ୍ତ ହୋଇ ପ୍ରାଣତ୍ୟାଗ କଲେ । ପରେ ବାର୍ନାର୍ଡ ପ୍ରଧାନ ସେନାପତି ପଦ ଗ୍ରହଣ କରି ଦିଲ୍ଲି ଆସୁଥିଲେ, ସେ ମାର୍ଗମଧ୍ୟରେ ନିଧନପ୍ରାପ୍ତ ହେଲେ । ଏଥିରୁ ବିଦ୍ରୋହିମାନଙ୍କ ଉତ୍ସାହ ଦ୍ୱିଗୁଣ ବଢ଼ିଗଲା ।

ଏଣେ ସରକ୍ୟୋଲିନ କ୍ୟାମ୍ବେଲ କଲିକତାରୁ ଯାଇ ଲକ୍ଷ୍ନୌସ୍ଥିତ ରେସିଡେନ୍‌ସିବାସିମାନଙ୍କୁ ଉଦ୍ଧାର କଲେ; କିନ୍ତୁ ସହସା ନଗର ହସ୍ତଗତ କରି ପାରିଲେ ନାହିଁ କାରଣ ତାହାଙ୍କ ସୈନ୍ୟଠାରୁ ବିଦ୍ରୋହୀ ସଂଖ୍ୟା ଅନେକ ଗୁଣ ଅଧିକ ଥିଲା; ଏଥିରୁ ଅଧିକ ସୈନ୍ୟ ଅପେକ୍ଷାରେ ଦିନ କାଟିବାକୁ ଲାଗିଲେ ।

ଦିଲ୍ଲି, ବିଦ୍ରୋହିମାନଙ୍କର ହସ୍ତଗତ ହେବାର ସମ୍ବାଦ ପାଇ କେନିଂ ବାହାଦୂର ସୈନ୍ୟ ପଠାଇବା କାରଣ ପଞ୍ଜାବର କମିଶନର ସରଜନ ଲରେନସଙ୍କୁ ଲେଖିଥିଲେ, ତଦନୁସାରେ ସେ ଯୋଦ୍ଧା ଶିଖସେନା ପ୍ରେରଣ କଲେ ଓ ପଞ୍ଜାବର

ଓ ଝିନ୍ଦିର ରାଜାମାନେ ମଧ୍ୟ ସେନା ପଠାଇ ଅନେକ ସାହାଯ୍ୟ କଲେ । ଜେନେରଲ ଉଇଲସନ ସେହି ସକଳ ସେନାର ଅଧିନାୟକ ହୋଇ ଆସି ଦିଲ୍ଲି ଅବରୋଧ କଲେ ଓ ଦୁଇଦିନ କାଳ ଦୁର୍ଗ ଉପରେ ଗୋଳା ବର୍ଷଣ କରିବାରୁ ଦୁର୍ଗପ୍ରାଚୀର ଦୁଇସ୍ଥାନରେ ଭାଙ୍ଗିଗଲା । ଏଥିରୁ ବିଦ୍ରୋହିମାନେ ଆତ୍ମରକ୍ଷା କରିବାକୁ ଅସମର୍ଥ ହୋଇ ଅଯୋଧ୍ୟାକୁ ପଳାୟନ କଲେ; ତେଣୁ ଦିଲ୍ଲି ସହର ସହଜରେ ସେନାପତି ଉଇଲସନଙ୍କ ହସ୍ତଗତ ହେଲା । ବୃଦ୍ଧ ମୋଗଲ ସମ୍ରାଟ୍ ପଳାୟନ କରୁଥିଲେ; ମାତ୍ର କେତେକ ଅଶ୍ୱାରୋହୀ ସେନା ଯାଇ ତାହାଙ୍କୁ ଧରି ପକାଇଲେ । ଏହି ସମୟରେ ସିଂହଳ ଓ ଚୀନ ପ୍ରଭୃତି ସ୍ଥାନରୁ ବ୍ରିଟିସ ସେନାମାନେ ଆସି ଉପସ୍ଥିତ ହେଲେ । ନେପାଳର ସେନାପତି ଜଂବାହାଦୁର ମଧ୍ୟ ଇଂରେଜମାନଙ୍କର ସାହାଯ୍ୟ କରିବା ଉଦ୍ଦେଶ୍ୟରେ ଆସି ଉପସ୍ଥିତ ହେଲେ । ସେନାପତି ସରକୋଲିନ କ୍ୟାମ୍ବେଲ ଏହି ସକଳ ସେନା ସମଭିବ୍ୟାହାରରେ ଯାଇ ମାର୍ଚ୍ଚମାସ ତା୧୭ରିଖରେ ଲକ୍ଷ୍ନୌ ନଗର ଅଧିକାର କଲେ ।

୧୮୫୮ ସାଲ ମାର୍ଚ୍ଚମାସ ତା ୧୬ ରିଖରେ ଲର୍ଡ କେନିଂ ଅଯୋଧ୍ୟାର କମିଶନର ଆଉଟ୍ରାମଙ୍କ ନିକଟକୁ ଏହି ଉପଦେଶ ସହିତ ଖଣ୍ଡିଏ ଘୋଷଣାପତ୍ର ପଠାଇଲେ ଯେ, ଅଯୋଧ୍ୟା ହସ୍ତଗତ ହେବାମାତ୍ରେ ଏହି ଘୋଷଣାପତ୍ର ପ୍ରଚାର କରିବେ । ସେହି ଘୋଷଣାପତ୍ରର ମର୍ମ ଏହି :—

“ ବ୍ରିଟିସ ଗବର୍ଣ୍ଣମେଣ୍ଟ ଉପରେ ଅଯୋଧ୍ୟାର ଯେଉଁ ଜ୬ଣ ତାଲୁକଦାରଙ୍କର ଭକ୍ତି ଅବିଚଳିତ ଅଛି, କେବଳ ସେହିମାନେ ପଦସ୍ଥ ରହିବେ । ଆଉ ସମସ୍ତ ତାଲୁକଦାରଙ୍କ ଭୂମି ବାଜେୟାପ୍ତ ହେବ । ତେବେ ବର୍ତ୍ତମାନ ଯେ ସମସ୍ତ ତାଲୁକଦାର ଅସ୍ତ୍ର ଶସ୍ତ୍ର ତ୍ୟାଗ କରି ବ୍ରିଟିସ ଗବର୍ଣ୍ଣମେଣ୍ଟଙ୍କ ଆଶ୍ରୟ ଗ୍ରହଣ କରିବେ ଓ ସେମାନଙ୍କ ମଧ୍ୟରୁ ଯେଉଁମାନେ ଇଂରେଜହତ୍ୟାରେ ଲିପ୍ତ ନ ଥିଲେ ଏପରି ପ୍ରମାଣ ହେବ, ଗବର୍ଣ୍ଣରଜେନେରଲ ଅଙ୍ଗୀକାର କରୁଅଛନ୍ତି ସେମାନଙ୍କର ଜୀବନ ଓ ମର୍ଯ୍ୟାଦା ରକ୍ଷା କରିବେ । ଏତଦ୍ଭିନ୍ନ ତାଲୁକଦାର ଓ ପ୍ରଧାନ ଲୋକମାନଙ୍କ ଉପରେ ଅନୁଗ୍ରହ ପ୍ରକାଶ କରିବା ଅଥବା ଦଣ୍ଡଦାନ କରିବା ବ୍ରିଟିସ ଗବର୍ଣ୍ଣମେଣ୍ଟଙ୍କ ବିଚାର ଓ ସ୍ୱେଚ୍ଛାଧୀନ, ସେଥି ପାଇଁ ସେ କୌଣସି ପ୍ରକାର ଅଙ୍ଗୀକାର କରି ନ ପାରନ୍ତି ” ।

ଲକ୍ଷ୍ନୌ ହସ୍ତଗତ ହେବାଉତ୍ତାରେ ସେନାପତି କ୍ୟାମ୍ବେଲ ରୋହିଲଖଣ୍ଡରେ ପ୍ରବେଶ କଲେ । ବରେଲି ନଗର ରୋହିଲଖଣ୍ଡର ରାଜଧାନୀ । ସେନାପତି ତତ୍ରତ୍ୟ ପ୍ରଧାନ ବିଦ୍ରୋହୀ ଖାଁବାହାଦୁରଙ୍କୁ ଆକ୍ରମଣ କରନ୍ତେ ଅନ୍ୟାନ୍ୟ ବିଦ୍ରୋହିମାନେ ଛିନ୍ନଭିନ୍ନ ହୋଇ ପଳାୟନ କଲେ; ତେଣୁ ମେ ମାସ ତା ୭ ରିଖରେ

ବରେଲୀ ସମ୍ପୂର୍ଣ୍ଣରୂପେ ହସ୍ତଗତ ହେଲା । ଏ ଉତ୍ତାରେ ସେନାପତି ଏଲାହାବାଦକୁ ଫେରି ଗଲେ ।

ଏଣେ ମଧ୍ୟଭାରତବର୍ଷ ଓ ବୁନ୍ଦେଲଖଣ୍ଡରେ ମଧ୍ୟ ବିଦ୍ରୋହାଗ୍ନି ପ୍ରଜ୍ୱଳିତ ହୋଇଥିଲା, ସେନାପତି ସରହ୍ୟୁଗ୍ ରୋଜ ଯାଇ ତାହା ନିଭାଇଲେ । ସରହ୍ୟୁଗ୍ ରୋଜ ଏହିରୂପେ ଅନେକ ବିଦ୍ରୋହାକୁଳିତ ସ୍ଥାନରେ ଶାନ୍ତିସ୍ଥାପନ ପୂର୍ବକ ଝାନ୍‌ସିରେ ଆସି ଉପସ୍ଥିତ ହେଲେ ।

ଲର୍ଡ ଡେଲ୍‌ହାଉସୀ ଝାନ୍‌ସିରାଣୀ ଲକ୍ଷ୍ମୀବାଈଙ୍କ ପ୍ରତି ଯେଉଁ ଅତ୍ୟାଚାର କରିଥିଲେ ତାହା ତାଙ୍କର ହୃଦୟପଟରେ ଅଙ୍କିତ ଥିଲା ଓ ସେହି ଦିନ ଠାରୁ ବ୍ରିଟିସ ଗବର୍ଣ୍ଣମେଣ୍ଟଙ୍କ ଅମଙ୍ଗଳ ଚିନ୍ତା କରି ଆସୁଥିଲେ, ବର୍ତ୍ତମାନ ସମୟ ବୁଝି ସ୍ୱୟଂ ଖଡ୍ଗ ଧାରଣ ପୂର୍ବକ ସମରରେ ପ୍ରବୃତ୍ତ ହେଲେ, ଝାନ୍‌ସିରେ ଯେ ସକଳ ଇୟୁରୋପୀୟ ବାସ କରୁଥିଲେ ରାଣୀ ସେମାନଙ୍କୁ ବଧ କଲେ । ଗୋୟାଲିୟରର ରାଜ୍ୟର ବିଦ୍ରୋହି ସିପାହିମାନେ ଓ ଲକ୍ଷ୍ନୌର ପଳାୟିତ ବିଦ୍ରୋହିମାନେ ରାଣୀଙ୍କ ସେନା ସହିତ ମିଳିତ ହେଲେ । ନାନାସାହେବଙ୍କ ପ୍ରଧାନ ସେନାପତି ଟାଣ୍ଟିଆଟୋପି ମଧ୍ୟ ରାଣୀଙ୍କ ସହିତ ମିଳିତ ହେଲେ ।

ରାଣୀ ଏହିରୂପେ ବର୍ଦ୍ଧିତସାମର୍ଥ୍ୟ ହୋଇ ଅଶ୍ୱାରୋହୀ ବେଶରେ ଅସ୍ତ୍ରଧାରଣପୂର୍ବକ ଅପ୍ରେଲ ମାସ ୩୦ ତାରିଖରେ ବ୍ରିଟିସ ସେନାପତିଙ୍କୁ ଆକ୍ରମଣ କଲେ । ଇଂରେଜମାନେ ଯାହାଙ୍କୁ ଅଯୋଗ୍ୟା ମଣି ତାହାଙ୍କ ହସ୍ତରୁ ରାଜ୍ୟଭାର ଛଡ଼ାଇ ନେଇ ଥିଲେ ବର୍ତ୍ତମାନ ତାହାଙ୍କୁ ପ୍ରକୃତିପ୍ରଦତ୍ତ ଅଧିନାୟକ ଗୁଣରେ ବିଭୂଷିତା ଦେଖିବାକୁ ପାଇଲେ । ରାଣୀଙ୍କ ଅସାଧାରଣ ସୈନ୍ୟଚାଳନା ନୈପୁଣ୍ୟରେ ବ୍ରିଟିସ-ସେନାମାନେ ଅସ୍ଥିର ହୋଇଥିଲେ; ମାତ୍ର ଯୁଦ୍ଧର ଶେଷଭାଗରେ ରାଣୀଙ୍କ ସେନା-ମାନେ ଭଙ୍ଗଦେଇ ପଳାୟନ କଲେ । ପରେ କୁଲ୍‌ପି ନାମକ ସ୍ଥାନରେ ପୁନର୍ବାର ଯୁଦ୍ଧ ହେଲା । ଏହି ଯୁଦ୍ଧରେ ରାଣୀ ସମ୍ପୂର୍ଣ୍ଣରୂପେ ପରାଜିତ ହେଲେ; କିନ୍ତୁ ତଥାପି ସେ ଭଗ୍ନୋତ୍ସାହା ହେଲେ ନାହିଁ । ସେ ଗୋୟାଲିୟର ରାଜ୍ୟରେ ପୁନର୍ବାର ଯୁଦ୍ଧାରମ୍ଭ କଲେ; ମାତ୍ର ସରହ୍ୟୁଗ୍‌ରୋଜ ଉଷ୍ଟ୍ରାରୋହୀ ସେନା ସହିତ ଯାଇ ରାଣୀଙ୍କ ସେନାମାନଙ୍କୁ ଛିନ୍ନଭିନ୍ନ କରାଇ ଦେଲେ । କୌଣସି ବ୍ରିଟିସସୈନ୍ୟ ରାଣୀଙ୍କୁ ପଡ଼ିଯିବାରେ ଏକାକିନୀ ପାଇ ତାହାଙ୍କ ଗଳାରେ ଲମ୍ବିତ ରତ୍ନମାଳ ଲୋଭରେ ତରବାରିରେ ତାଙ୍କୁ ବଧ କଲା, ରାଣୀଙ୍କ ଏପରି

ଭଯ୍ୟିବକ ପରିଣାମ ଅତ୍ୟନ୍ତ ଦୁଃଖର ବିଷଯ଼ । ବ୍ରିଟିଶସେନାପତି ହ୍ୟୁରୋଜ ରାଣୀଙ୍କର ବିପକ୍ଷ ଥିଲେ, ସେ ମଧ୍ୟ ତାହାଙ୍କର ଯଥେଷ୍ଟ ପ୍ରଶଂସା କରି ଯାଇ ଅଛନ୍ତି ।

ଲର୍ଡକେନିଂ ଭାରତବର୍ଷରେ ପ୍ରଧାନ ଶାସନକର୍ତ୍ତା ପଦ ଗ୍ରହଣ କରିବା ଉତ୍ତାରେ ଯେଉଁ ବିଦ୍ରୋହରୂପ ମହାନାଟକର ଅଭିନଯ଼ କ୍ରିଯ଼ା ଆରମ୍ଭ ହୋଇଥିଲା ଗୋଯ଼ାଲିଯ଼ରର ରଙ୍ଗଭୂମିରେ ତାହାର ଯବନିକା ପତନ ହେଲା ।

---